# ବ୍ରହ୍ମବୈବର୍ତ୍ତ ପୁରାଣ



ଦ୍ୱିତୀୟ ଭାଗ

ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର

ଅଲଣାବଜାର, କଟକ-୨

# ବ୍ରହ୍ମବୈବର୍ତ୍ତ ପୁରାଣ

## ପ୍ରକୃତି ଖଣ୍ଡ

(ଦ୍ୱିତୀୟ ଭାଗ)

ନୂତନ ମୁଦ୍ରଣ

**କ୍ଷେତ୍ରମୋହନ ପ୍ରଧାନଙ୍କ ଦ୍ୱାରା ପଦ୍ୟାନୁବାଦିତ**




**ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର**

ଅଲିଶା ବଜାର କଟକ-୨

ପ୍ରାପ୍ତିସ୍ଥାନ:—ଧର୍ମଗ୍ରନ୍ଥ ଷ୍ଟୋର

ପ୍ରୋପ୍ରାଇଟର—ଶ୍ରୀ ଗଦାଧର ସାହୁ

ଅଲିଶାବଜାର, କଟକ-୨

ଫୋନ ନମ୍ବର : ୨୪୭୯୬

ମୂଲ୍ୟ ୯-୦୦

# ବ୍ରହ୍ମବୈବର୍ତ୍ତ ପୁରାଣ
## ପ୍ରକୃତ ଖଣ୍ଡର
# ସୂଚିପତ୍ର

**ବିଷୟ** **ପୃଷ୍ଠାଙ୍କ**

| ବିଷୟ | ପୃଷ୍ଠା |
| --- | --- |

| ବିଷୟ | ପୃଷ୍ଠା |
|---|---|


* ପ୍ରକୃତି ଖଣ୍ଡର ସୂଚିପତ୍ର ସମାପ୍ତ *

# ବ୍ରହ୍ମବୈବର୍ତ୍ତ ପୁରାଣ

## ପ୍ରକୃତି ଖଣ୍ଡ

—*—

### ଶ୍ରୀ ଗଣେଶଙ୍କ ବନ୍ଦନା

ଦନ୍ତୋଦ୍ୟତ୍ର ପୁଷ୍କରଶ୍ରୀଃ ସ୍ଫୁରିତ ଶିଖରଧୃତୋନ୍ମତ୍ତଚଞ୍ଚଳ ଲେଖା—
ଽଳଂକୃତାଷାମ ମଧ ସ୍ଥିମୁଦ୍ଭେଦୟନ୍ତନୁ ଦକ୍ଷପକ୍ଷସ୍ୟ ରକ୍ଷାନ୍ ।
ସଦ୍ୟୋଽବିଦ୍ୟାନ୍ଧକାରପ୍ରରଶ୍ମିଧର ପୁରସ୍କାର୍ଯ୍ୟ ଦୂର୍ବାର୍ଯ୍ୟ ବୀର୍ଯ୍ୟୋ
ଦେବଃ ଶ୍ରୀ ପାର୍ବତୀ ବାଲବତ୍ସ ବଦତସ୍ତୁ ଶାଃ ସ୍ୱର୍ଗବର୍ଗାଗ୍ର ପୂଜ୍ୟଃ ।

*******************************************



ଜୟ ଜୟ ଗଣନାଥ ଗଉରୀ ନନ୍ଦନ
ତବ ପାଦ ପଦ୍ମତଳେ କରୁଛି ବନ୍ଦନ ।
ନ ଆସିବା ପର୍ଯ୍ୟନ୍ତ କନ୍ଦଅ ମୋତେ
ହେ ଗଣନାଥ ବନ୍ଦଇ ତବ ପାଦଗତେ ।
ଏକଦନ୍ତ ବିଘ୍ନରାଜ ଦୟାକର ବାରେ
ଭାସୁଅଛି ମୁହିଁ ଘୋର ପାପର ବକ୍ଷରେ ।
ଶୋଭାଏ ମାତର ପଥ ଅନ୍ତକାଳ ଧାଈ
ମୋ ନଜଦା ଆସିଅଛି ପାଶାଙ୍କୁଶ ଧରି ।
ତୁମ୍ଭେ ଦୟାକଲେ କୂଳେ ଲାଗିବି ତୁରିତେ
ହେ ଗଣନାଥ ବନ୍ଦୁଛି ତବ ପାଦଗତେ ।
ଭକ୍ତଙ୍କ ମଧ୍ୟରେ ମୁହିଁ ନୁହଁଇଟି ଗଣ୍ୟ
ତାହାଙ୍କ ପାଦ ରେଣୁକୁ ନୁହଇଁ ଭାଜନ ।

କେବଳ ତୁମ୍ଭର ଦୟା ପାଇବା ଆଶାରେ
ସାହସ କରି ଲେଖନୀ ଧରୁଛି ହସ୍ତରେ ।
ଶ୍ରାବଣମାସରେ ଘନ ବାରି ବର୍ଷା ପରି
ମୋ ଲେଖନୀ ମୁନରୁ ପ୍ରଭୁ ପଦ ପଡ଼ୁ ଝରି ।
ଛନ୍ଦ, ଅର୍ଥ, ପଦଗତ, ଠିକ ହୋଇଥିବ
ଶ୍ରୋତାମାନଙ୍କ କର୍ଣ୍ଣରେ ଅମିୟ ଢାଳିବ ।
ଯେବେ ନ ବୁଝିବ ତେବେ ହସିବ ଏ ସ୍ରୋତେ
ହେ ଗଣନାଥ ବନ୍ଦଇ ତବ ପାଦଗତେ ।
ତବ ହୃଦୟେ ପୂରିଛି ଯେ କରୁଣାବାରି
ତହିଁରୁ ହେ ପ୍ରଭୁ ମୋତେ କଣେ ଦାନକରି ।
ଅଭୟ ଦେଲେ ଚାଲିବି ମୁଁ ଗନ୍ତବ୍ୟ ପଥେ
ହେ ଗଣନାଥ ବନ୍ଦଇ ତବ ପାଦଗତେ ।
ଏତିକ ମାତର ଅଟେ ବିନତି ଦାସର
କ୍ଷେତ୍ରମୋହନକୁ ଯାହା ଦୃଷ୍ଟ ଗଣେଶ୍ୱର ।



## ଶ୍ରୀ ଦୁର୍ଗାଙ୍କ ବନ୍ଦନା

ବନ୍ଦଇ ଜନନୀ ତବ ଚରଣ କମଳେ
ନ ଆସିବା ପ୍ରଦମାନ କଣ୍ଟକ ହେଲେ ।
ତବ ବିନୁ ଆନ କିଛି ନ ଜାଣଇ ମୁହିଁ
ଯାହା ବା କହୁଛି ସବୁ ତୁମ୍ଭର ଦୟାହିଁ ।
ତୁମ୍ଭେ ପ୍ରକୃତି ରୂପିଣୀ ଜଗତ ଜନନୀ
ଦିବସ ରଜନୀ ତବ ନାମ ଜପି ମୁନି ।
ଭବ ସାଗର କଷ୍ଟରୁ ପାର ହୋଇଛନ୍ତି
ତବ ନାମ ଜପି ମୂର୍ଖ ପଣ୍ଡିତ ବୋଲନ୍ତି ।
ମୂର୍ଖ କାଳିଦାସ ବନିତାର ଅପମାନେ
ତୋତେ ସୁମରି ବୁଲିଲ ଗହନ କାନନେ ।
ଏକାଗ୍ର ଭକତି ତାର ଦେଖିଣ ନୟନେ
ଦରଶନ ଦେଲୁ ମାତ ସନ୍ତୋଷିତ ମନେ ।
ସାତ ଜନ୍ମ ମୂର୍ଖ ଦୋଷ କ୍ଷଣକ ମଧ୍ୟରେ
ନାଶକରି ବିଦ୍ୟାଦାନ କରିଲୁ ତାହାରେ ।
ପୃଥିବୀ ମଧ୍ୟରେ ଯେତେ ବିଦ୍ୱାନ ପଣ୍ଡିତ
ସଭିଙ୍କ ଉପରେ ଶ୍ରେଷ୍ଠ ବୋଲାଇଲେ ସେତ ।
ଆଜି ମଧ୍ୟ ଏ ଜଗତେ କେତେ ୨ ଭକ୍ତ
ଶ୍ରେଷ୍ଠ ବୋଲାଇ ଅଛନ୍ତି ତୋର ପାଦସେବ ।
ଶାରଳା ଦାସ ନାମରେ ଥିଲେ ଜଣେ ବ୍ୟକ୍ତି
ଯାଇ ନ ଥିଲେ ସେ କେବେ ପାଠଶାଳା କତି ।
ତୋର ନାମ ହୃଦ ପଦ୍ମେ କରିଣ ଭଜନ
ସେ ଶୂଦ୍ରମୁନି ଶାରଳା ହେଲା ବିଜ୍ଞଜନ ।
ଅଠର ଖଣ୍ଡ ଭାରତ ରଚନା କରିଣ
ଉତ୍କଳ ଜନନୀ ପାଦେ ଦେଲେ ସେହୁ ଦାନ ।
ଦୀନକୃଷ୍ଣ ଉପେନ୍ଦ୍ର, ବଳରାମ ଆଦି
ବାଣୀ ଭଣ୍ଡାରେ ଯା ରଖି ଅଛନ୍ତି ସମ୍ପାଦି ।
ଆଜି ଜାତିର ଅମୂଲ୍ୟ ରତ୍ନ ସେ ଅଟଇ
ଘରେ ଘରେ ପୁରେ ପୁରେ ପୂଜା ପାଉଛନ୍ତି ।
ଏରୂପରେ କେତେ ଅବା କରିବି ବର୍ଣ୍ଣନ
ମୁଁ ଅତି ମୂରୁଖ ପୁଣି ଅଟେ ଜ୍ଞାନହୀନ ।
ଆଜନମ ତୋର ପାଦପଦ୍ମ ଅନୁସ୍ମରି
ବୁଲୁଛି ସଂସାର ସାଗରରେ ବାହି ତରି ।
ଆଜି ତୋହର ଦୟାରୁ ଧରିଛି ଲେଖନ
ତେଣୁ ପାଦ ପଦ୍ମତଳେ କରେ ନିବେଦନ ।
ଅଗାଧ ସାଗର ପରି ଯେ ଗ୍ରନ୍ଥ ଅଟଇ
ଲେଖିବା ପାଇଁ ମୋହର ହଂସା ଉଡ଼ୁଛଇ ।
ମାଗୁଛି ଅଭୟ ଚରଣରେ ମେଲିକର
ଅମାପ ଅକଳନ ଯେ ମହିମା ତୋହର ।
ନିମିଷେ ମାତ୍ରକ ତା ମଧ୍ୟରୁ କର ଦାନ
ଜଗତରେ ବଢ଼ା ତୋର ସନ୍ତାନ ସମ୍ମାନ ।
ବ୍ରହ୍ମବୈବର୍ତ୍ତ ବୋଲି ଯେ ପୁରାଣ ଅଟଇ
ଲାଗିଛି ଚାରିଭାଗରେ ବିଭକ୍ତିର ପାଇଁ ।
ଆଦ୍ୟ ବ୍ରହ୍ମଖଣ୍ଡ କରିଅଛି ମୁଁ ରଚନା
ନ ଜାଣେ ଭଲ କି ଭେଲ ହୋଇଛି ଯେ ପୁଣ
କେବଳ ତୋ ପାଦପଦ୍ମେ ନିବେଶି ମାନସ
ବ୍ରହ୍ମଖଣ୍ଡ ଲେଖିବାକୁ କରିଲି ସାହସ ।
ତାପରେ ପୁଣି ପ୍ରକୃତି ଖଣ୍ଡ ରଚୁଅଛି ।
ବ୍ରହ୍ମ ଆଉ ପ୍ରକୃତିର ସାମଞ୍ଜସ୍ୟ ଅଛି ।
ତେଣୁ ବ୍ରହ୍ମଖଣ୍ଡପରେ ପ୍ରକୃତି ବର୍ଣ୍ଣନ
କରିବା ପାଇଁକି ମାତ ବଳାଇଛି ମନ ।
ଯେପରି ଏ ଗ୍ରନ୍ଥ ହେବ ସର୍ବାଙ୍ଗ ସୁନ୍ଦର
ଆକର ଜନ ସମାଜେ ହୋଇବ ଆଦର ।
ଏତିକି ମାତର ମାଗେ ପାଦପଦ୍ମ ତଳେ
ଅଧମ ସେବକ ମୋହତେ ଦୟାକରି ହେଳେ ।

—*—

## ପ୍ରକୃତିର ରୂପରେଖ ବର୍ଣ୍ଣନ

ଶୁଣନ୍ତୁ ବିବୁଧ ଜନେ ଦେଇ ମନ କର୍ଣ୍ଣ
ଯାହା ଶ୍ରବଣରେ ପାପ ହୋଇବ ମୋଚନ ।
ଏ ବ୍ରହ୍ମବୈବର୍ତ୍ତ ଗ୍ରନ୍ଥ ଅଟଇଁ ମହାନ
ଯେଣୁ ବ୍ରହ୍ମଙ୍କ ମହିମା ହୋଇଅଛି ପୂର୍ଣ୍ଣ ।
ଆଦ୍ୟନ୍ତରୁ ପ୍ରାନ୍ତଯାଏ ପାଠକଲେ ସବୁ
ବ୍ରହ୍ମଙ୍କ ଦୟାରୁ ପାରି ହୋଇବ ଏ ଭବୁଁ ।
ପ୍ରାଣ ଯିବା ପର୍ଯ୍ୟନ୍ତେ ବ୍ରହ୍ମଙ୍କ ପାଶରେ
ମିଶିବ ଯାଇଣ ସର୍ବେ ଶୁଣ ସୁଚିତ୍ତରେ ।

ନୈମିଷାରଣ୍ୟରେ ପୌରାଣିକ ସୂତ ପୁତ୍ର
ବସିଥାନ୍ତି ମଧ୍ୟେ ସେଠି ଥାନ୍ତି ତପୋଧନ ।
ମଣ୍ଡଳ ଆକାରେ ସର୍ବେ ବେଢ଼ି ବସିଥାନ୍ତି
ସୌତିଙ୍କ ମୁଖରୁ ଶୁଣୁଥାନ୍ତି ବ୍ରହ୍ମଗୀତ ।
ଏହି ସମୟେ ଶୌନକ ପୁଚ୍ଛିଲେ ବିନୟେ
ଦୟାକର କୁହ ଆହେ ସୌତି ମହାଶୟେ ।
ପ୍ରକୃତି ରୂପିଣୀ ଦୁର୍ଗା-ରାଧା-ସରସ୍ୱତୀ
ନାରାୟଣଙ୍କର ରମା ଆବର ସାବିତ୍ରୀ ।
ଏମାନେ କାହିଁକି ପାଞ୍ଚ ଭାଗରେ ବିଭକ୍ତ
ହୋଇଲେ ତାହା ବିସ୍ତାରି କୁହ ତପୋବନ୍ତ ।
ସେ ପ୍ରକୃତି ଗଣଙ୍କର ଚରିତ ବର୍ଣ୍ଣନ
କରିଣ ଆମ୍ଭ ସଂଶୟ କରନ୍ତୁ ମୋଚନ ।
କେଉଁଠାରୁ କେଉଁପରେ ହେଲେ ଜନ୍ମପତ
ସମସ୍ତ ବିସ୍ତାରି ଭାବେ ବୁଝାଅନ୍ତୁ ସନ୍ତ ।
ଏହିରୂପେ ନାରଦଙ୍କ ବିନୟ ବଚନ
ଶୁଣି ଆନନ୍ଦ ହୋଇଣ ସୂତଙ୍କ ନନ୍ଦନ ।
କହିଲେ ଯାହା ପୁଚ୍ଛିଲ ଶୁଣ ମନଦେଇ
ପ୍ରକୃତି ତତ୍ତ୍ୱ ଜାଣିବା ସହଜ ନୁହଇ ।
କେବଳ ଏକମାତର ତିନିପୁର ମଧ୍ୟେ
କିଛି ମାତ୍ର ଜାଣିଛନ୍ତି ସଦାଶିବ ହାଦେ ।
ତାହାଙ୍କ ମୁଖରୁ ଯାହା ଶୁଣିଅଛି ମୁହିଁ
କହୁଅଛି ଗୋଟି ଗୋଟି ଶୁଣ ମନଦେଇ ।
ପ୍ର, ବୋଲି କହ ଯେଉଁ ପଦ ଗୋଟି ଜାଣ
ପ୍ରକୃଷ୍ଟ ତାହାର ନାମ ତପୀବର ଶୁଣ ।
କୃତି, ର ଯେ ଅନ୍ୟ ନାମ ଅଟେ ପୁଣି ସୃଷ୍ଟି
ତାହା ରଚିତ କରିଣ ଛନ୍ତି ପରମେଷ୍ଠି ।
ଏହାଅନ୍ତେ ପ୍ରକୃଷ୍ଟ ଯେ ଅଟେ ସତ୍ତ୍ୱଗୁଣ
ପ୍ର-ଶବ୍ଦରୁ ତାହାହିଁ ବୋଧହୁଏ ପୁଣ ।
ରଜୋଗୁଣ ହୁଏ କୃ-ଶବ୍ଦର ଯେ ଅର୍ଥ
ତମୋଗୁଣ ଅର୍ଥ ତି-ଶୁଣ ହେଇ ଚିତ୍ତ ।
ଏହିରୂପେ ତିନିଗୋଟି ଗୁଣେ ଯେହୁ ଯୁକ୍ତ
ପ୍ରକୃତି ତାହାର ନାମ ହୋଇଲା ବିଦିତ ।
ସୃଷ୍ଟି ରଚନାରେ ସେହୁ ପ୍ରଧାନା ଅଟନ୍ତି
ତାହାଙ୍କଠାରେ ଯେ ଠୁଳ ସକଳ ଶକତି ।
ପ୍ରକୃଷ୍ଟଇ ପ୍ର-ଶବ୍ଦ ପ୍ରଥମ ଅକ୍ଷରେ
ସୃଷ୍ଟି ଅର୍ଥ ଯେ ପ୍ରସିଦ୍ଧ କୃତି ଶବ୍ଦରେ ।

ଏଣୁ ସଂସାର ମଧ୍ୟରେ ଯେହୁ ଆଦ୍ୟାଶକ୍ତି
ଆଦ୍ୟ ଦେବୀ ବୋଲି ତାଙ୍କୁ ମହନ୍ତେ ବୋଲନ୍ତି
ପରମ ପୁରୁଷ ସୃଷ୍ଟି ରଚିଲା କାଳରେ
ଦୁଇଭାଗ କଲେ ନିଜ ରୂପକୁ ସେଠାରେ ।
ତାଙ୍କ ଦକ୍ଷିଣ ଭାଗଟି ପୁରୁଷ ହୋଇଲା
ବାମ ଭାଗରୁ ପ୍ରକୃତି ଦେବୀ ଜାତହେଲା ।
ବ୍ରହ୍ମ ସ୍ୱରୂପିଣୀ ମାୟା ପ୍ରକୃତି ରୂପରେ
ବିଖ୍ୟାତ ହୋଇଲା ଏହି ତିନି ଜଗତରେ ।
ପରମ ପୁରୁଷଙ୍କର ଯେ ଦକ୍ଷିଣ ଅଂଶ
ହୋଇଣ ଥିଲେ ପୁରୁଷ ରୂପରେ ପ୍ରକାଶ ।
ସର୍ବ ଶକ୍ତିମନ୍ତ ପୁଣି ନିତ୍ୟ ବ୍ରହ୍ମମୟ
ତାହାଙ୍କଠାରୁ ଏ ସୃଷ୍ଟି ହୋଇଲା ଉଦୟ ।
ତେଣୁ ଆହେ ମୁନିବର ଶୁଣ ମନଦେଇ
ପୁରୁଷ ନାରୀଙ୍କ ମଧ୍ୟେ ଭିନ୍ନାଭିନ୍ନ ନାହିଁ ।
ଏହି ନିଖିଳ ଜଗତ ଅଟେ ବ୍ରହ୍ମମୟ
ପ୍ରତ୍ୟେକ ଘଟରେ ବ୍ରହ୍ମଅଛନ୍ତି ନିଶ୍ଚୟ ।
କୀଟଠୁଁ ପତଙ୍ଗଯାଏ ଯେତେ ଜୀବ ଛନ୍ତି
ବ୍ରହ୍ମ ସଭିଙ୍କର ହୃଦ ମଧ୍ୟ ବିରାଜନ୍ତି ।
ବ୍ରହ୍ମ ନ ଥିବାର ବ୍ୟକ୍ତି ଶୂନ୍ୟ କାଠ ପରି
ବ୍ରହ୍ମ ଅଟଇ ପରାଣ ଶୁଣ କର୍ଣ୍ଣଡେରି ।
ବ୍ରହ୍ମ ଥିବାଯାଏ ସର୍ବେ ହୋନ୍ତି ଆତଯାତ
ବ୍ରହ୍ମ ଚାଲିଗଲେ ଜୀବ ହୁଅଇ ଯେ ମୃତ ।
ବ୍ରହ୍ମ ଅର୍ଥ ଭଗବାନ ଅରୂପ ବହାସ
ତାହାଙ୍କୁ ଚିହ୍ନିବା ଶକ୍ତି ନାହିଁ ଯେ କାହାର ।
ଅଣୁ ପରମାଣୁ ଠାରୁ ପ୍ରତ୍ୟେକ ସ୍ଥାନରେ
ବ୍ରହ୍ମରୂପୀ ନାରାୟଣ ଅଛନ୍ତି ଗୁପ୍ତରେ ।
ପବିତ୍ର ହୃଦୟ ଆଉ ନିର୍ମଳ ଚିତ୍ତରେ
ବ୍ରହ୍ମ ଉପାସନା ଯେହୁ କରଇ ନିତ୍ୟରେ ।
ପୁଣି ଏକାଗ୍ର ଚିତ୍ତରେ କରେ ଯେ ଭଜନ
ତାହାଙ୍କୁ ଦର୍ଶନ ଦିଅନ୍ତି ବ୍ରହ୍ମ ସନାତନ ।
ଓଁକାର ମଧ୍ୟରେ ବାସ ଅଟଇ ତାଙ୍କର
ବ୍ରହ୍ମ ପ୍ରକୃତି ଯୁଗଳେ କରନ୍ତି ବିହାର ।
ମହାବ୍ରହ୍ମଙ୍କ ଆଦେଶେ ପ୍ରକୃତି ରୂପିଣୀ
ପାଞ୍ଚ ଭାଗରେ ବିଭକ୍ତ ହୋଇଛନ୍ତି ପୁଣି ।
ସଦାଶିବଙ୍କର ପ୍ରିୟା ଗଣେଶ ଜନନୀ
ଦେବୀ ମହାମାୟୀ ବ୍ରହ୍ମରୂପୀ ନାରାୟଣୀ ।

ସେ ସକଳ ଦେବତାଙ୍କ ଅଟନ୍ତି ପୂଜିତା
ନିତ୍ୟଶକ୍ତି ସନାତନୀ ତ୍ରିଜଗତ ମାତା ।
ସତ୍ୟଧର୍ମ ଜ୍ଞାନ ଆଉ ପୁଣ୍ୟ ସମ୍ବନ୍ଧରେ ।
ସକଳ ମିଳଇ ଯେହ୍ନ ଜପେ ପ୍ରକୃତିରେ ।
ତୋହିଏ ଅଂଶୁ ପ୍ରକୃତି ଭବେ ହୋଇ ଜାଣ
ଗଙ୍ଗା ରୂପରେ ବିଭକ୍ତ ହୋଇଅଛି ଶୁଣ ।
ଯେହୁ ମହାଦେବ ବାମା ପାର୍ବତୀ ଅଟନ୍ତି
ବିଷ୍ଣୁଙ୍କ କୋଳରେ ଲକ୍ଷ୍ମୀରୂପେ ଶୋଭାପାନ୍ତି ।
ସାବିତ୍ରୀ ରୂପେ ଶୋଭନ୍ତି ବିଧାତାଙ୍କ ପୁରେ
ସରସ୍ୱତୀ ରାଧା ମଧ୍ୟ ସେହି ପ୍ରକାରେ ।
ସେହି ଅଧିଷ୍ଠାତ୍ରୀ ମାତାଙ୍କର ଯେ ଚରିତ
ଶ୍ରବଣ କରନ୍ତୁ ବାରେ ତୋଷ କରି ମତି ।
ମହାଯୋଗୀ ଯୋଗେଶ୍ୱର ଦେବାଧିଶଙ୍କର
ଆଦ୍ୟା ଶକ୍ତିଙ୍କୁ ସଦା ରଖି ଅଙ୍କପର ।
ମୂଳକମଳ ମଧ୍ୟରେ ଲୟ କରିଛନ୍ତି
ସେ ପ୍ରକୃତି ବଳେ ମୃତ୍ୟୁକୁ ସେ ଜିଣିଛନ୍ତି ।
କ୍ଷୁଧା, ତୃଷା, ବୁଦ୍ଧି, ବିଦ୍ୟା, ନିଦ୍ରା, କ୍ଷାନ୍ତିଦୟା
ଶାନ୍ତି, କାନ୍ତି, ଜାତି, ଭ୍ରାନ୍ତି, ତନ୍ଦ୍ରା ପୁଣି ଶ୍ରଦ୍ଧା
ଚେତନା ଯେ ତୁଷ୍ଟି ପୁଷ୍ଟି ଲକ୍ଷ୍ମୀ ବୃତ୍ତି ମାତା
ଏଣୁପର ଯୋଗ ମାୟା ସର୍ବ ଶକ୍ତିଭୂତା ।
ତାହାଙ୍କର ଗୁଣ କେତେ ବର୍ଣ୍ଣିବ ମୂର୍ଖ
ବେଦ ପୁରାଣରେ ଅଳ୍ପମାତ୍ର ଅଛି ରଖ ।
ଆନ ଦେବତାଙ୍କ କଥା ସଂକ୍ଷେପଟେ ଶୁଣ
କେଉଁ ପ୍ରକାର ଅଟଇ ତାହାଙ୍କର ଗୁଣ ।
ନାରାୟଣଙ୍କର ପତ୍ନୀ କମଳା ଅଟନ୍ତି
ଅନ୍ନପୂର୍ଣ୍ଣା ଜଗତକୁ ଅନ୍ନ ପରଶନ୍ତି ।
ସୁନ୍ଦର ପଣରେ ମୋହୁଥାନ୍ତି ତ୍ରିଭୁବନ
ଶାନ୍ତ କ୍ଷାନ୍ତ ଦୟା ଧର୍ମ ଅଛଇ କାରଣ ।
ଲୋଭ ମୋହ ଅହଙ୍କାର କାମ କ୍ରୋଧରୂପ
ଏମାନେ କଦାପି ଆସି ନ ପାରନ୍ତି ପାଖ ।
ଭକତବତ୍ସଳା ମାତ ଜଗତ ଜନନୀ
ତାହାଙ୍କ ହାତେ ସଭିଙ୍କ ଅଟେ ଦାନା ପାଣି ।
ତାଙ୍କର ଦୟାରେ ଶସ୍ୟ ଆଦି ହୁଏ ଜାତ
ଭକ୍ଷଣ କରିଣ ଜୀବ ହୋଇଛି ଜୀବିତ ।
ମହାଲକ୍ଷ୍ମୀ ବୋଲନ୍ତି ସେ ବୈକୁଣ୍ଠପୁରେ
ନିବାସିନୀ ରହିଥାନ୍ତି ସ୍ୱାମୀଙ୍କ ସେବାରେ ।।

ଅମର ପୁରରେ ସ୍ୱର୍ଗ ଲକ୍ଷ୍ମୀ ସେ ଅଟନ୍ତି
ଅତୁଳ ଐଶ୍ୱର୍ଯ୍ୟ ଇନ୍ଦ୍ରେ ଦାନ କରିଛନ୍ତି ।
ଆଉର ପ୍ରତ୍ୟେକ ଘରେ ଗୃହ ଲକ୍ଷ୍ମୀରୂପେ
ସ୍ଥାନେ ୨ ବିରାଜିତ ହୋଇଥାନ୍ତି ଆପେ ।
ପୁଣି ସକଳ ଜଗତ ପ୍ରାଣୀଙ୍କ ଦେହରେ
ପ୍ରକାଶ ହୁଅନ୍ତି ଶୋଭା ଲକ୍ଷ୍ମୀ ସ୍ୱରୂପରେ ।
ପୁଣ୍ୟବନ୍ତ ଜନଙ୍କର ପ୍ରୀତି ସେ ଅଟନ୍ତି
ନୃପତିଙ୍କ ଅଙ୍ଗେ ପ୍ରଭା ଲକ୍ଷ୍ମୀ ସେ ବୋଲନ୍ତି ।
ସାଧକଙ୍କ ଅଙ୍ଗେ ଥାନ୍ତି ବାଣିଜ୍ୟ ରୂପରେ
କଳହା ବୋଲନ୍ତି ପାପୀଙ୍କର ନିକଟରେ ।
ପ୍ରକାଶ କରନ୍ତି ନିଜ ଭକ୍ତ ଜନେ ଦୟା
କପଟି ଲୋକଙ୍କଠାରେ ଆଚରନ୍ତି ମାୟା ।
ଚଞ୍ଚଳ ଅଟଇ ଯେଉଁମାନଙ୍କର ମତି
ଚଞ୍ଚଳା ରୂପରେ ସେମାନଙ୍କ ପାଶେ ଥାନ୍ତି ।
ଜଗତରେ ସ୍ଥାବର ଜଙ୍ଗମ ପ୍ରାଣୀ ଯେତେ
ତାଙ୍କ ବିନେ ମୃତପରି ହୁଅନ୍ତି ସମସ୍ତେ ।
ଏମନ୍ତ ଯେ କମଳିନୀ ଦେବୀ ମହାମାୟା
ସେ ମହାବିଷ୍ଣୁ ଶକତି ଅଟନ୍ତି ବିଖ୍ୟାତା ।।
ସକଳ ଜନରେ ପୂଜ୍ୟା ଦେବୀ ଅଟେ ସେହି
ଅଧିକ ତାହାଙ୍କଠାରୁ ଜଗତେ କେ ନାହିଁ ।
ସେହୁ ବଚନ ଦେବତା ତୃତୀୟା ଶକତି
ଏବେ କହୁଅଛୁ ଶୁଣ ତାହାଙ୍କର ଗତି ।
ବାକ୍ୟ ବୁଦ୍ଧି ବିଦ୍ୟାଦାତ୍ରୀ ଜ୍ଞାନଦାତ୍ରୀ ସେହି
ପରମାତ୍ମା ବାମା ସରସ୍ୱତୀ ଯେ ବୋଲାଇ ।
ଯାପରେ ସୁଦୟା ବହି ସେ ହୋନ୍ତି ପ୍ରସନ୍ନ
ମହାପଣ୍ଡିତ ପଣରେ ହୁଏ ସେ ଗଣନ ।
କବିତା ଶକତି ତାଙ୍କଠାରେ ଯେ ବଢ଼ଇ
ଜଗତ ଜନରେ ସେହି ପୂଜା ପାଉଥାଇ ।
ଅଗମ୍ୟ ବିବିଧ ଶାସ୍ତ୍ର ଅର୍ଥ ସ୍ୱରୂପରେ
ପ୍ରକାଶ ହୁଅନ୍ତି ପୁଣି ନାନାଦି ଗ୍ରନ୍ଥରେ ।
ପୁନଶ୍ଚ ସନ୍ଦେହ ଜାତ ହୁଅଇ ଯାହାର
ମିମାଂସା କରି ଦିଅନ୍ତି ସେହୁ କ୍ଷଣକର ।
ତାହାଙ୍କ ଦୟାରେ ହୋଇ କେ ଈଶ୍ୱରପତି
କେତେ ପ୍ରାଣୀଙ୍କୁ ଜୀଅନ୍ତା ଫାଶି ଦେଉଛନ୍ତି ।
ତାହାଙ୍କ ସ୍ୱକରେ ବୀଣା ପୁସ୍ତକ ଶୋଭଇ
ସତ୍ତ୍ୱ ଗୁଣରେ ସର୍ବଦା ପରିପୂର୍ଣ୍ଣ ସେହି ।

ନବ ପଲ୍ଲବ ଅଙ୍ଗ କାନ୍ତି ସୁଲଳିତ
ନିତ୍ୟ ହରଣ କରନ୍ତି ଶ୍ରୀକୃଷ୍ଣଙ୍କ ଚିତ୍ତ ।
ମଲ୍ଲିକା କୁସୁମ ପ୍ରାୟ କାନ୍ତି ମନୋହର
ଦର୍ଶନ ମାତ୍ରକେ ପାପ ହୋଇଯାଏ ଦୂର ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ମାନସ ମୋହନେ
ସର୍ବଦା ଚେଷ୍ଟିତ ହୋଇଥାନ୍ତି ସଯତନେ ।
ସେହି ଜଗତର ମାତା କୃଷ୍ଣପ୍ରିୟା ଶକତି
ଦୁର୍ଲ୍ଲଭ ସମ୍ପଦ ଦାନ କରିଣ ପାରନ୍ତି ।
ଆବର ଚତୁର୍ଥ ଦେବୀଙ୍କର ଗାଥା ଶୁଣ
ବେଦ ଶାସ୍ତ୍ରରେ ଯେପରି ହୋଇଛି ପ୍ରମାଣ ।
ତାଙ୍କଠାରୁ ଚାରିବେଦ ଅଙ୍ଗ ସହିତରେ
ନାନାବିଧ ଛନ୍ଦେ ଗ୍ରନ୍ଥରେ ପ୍ରକାଶେ ସଂସାରେ ।
ତନ୍ତ୍ର ମନ୍ତ୍ର ଜପ ତପ ସନ୍ଧ୍ୟା ଉପାସନା
ତାଙ୍କଠାରୁ ଅବତାର ହୋଇଛନ୍ତି କି ନା ।
ମାତା ବୋଲକରି ନାମ ଅଟଇ ତାଙ୍କର
ତନ୍ତ୍ର ସ୍ୱରୂପ ଅଟନ୍ତି ଜଗତ ମଧ୍ୟର ।
ବ୍ରହ୍ମ ତେଜୋମୟୀ ଶକ୍ତି ଅଧିଷ୍ଠାତ୍ରୀ ଦେବୀ
ଜଗତ ପବିତ୍ର ହୁଏ ତାଙ୍କ ପାଦ ସେବି ।
ଏମନ୍ତ ପ୍ରକାରେ ଅଟେ ତାହାଙ୍କର ଗିର
ଚତୁର୍ଥ ଦେବଶ୍ରୀ ନାମ ଅଟଇ ତାଙ୍କର ।
ଆବର ପଞ୍ଚମ ଦେବୀଙ୍କର ଗୁଣ ଗାନ
କରିବା ସକଳେ ବସି ଏକମନେ ଯେନ ।
ଅତି ପ୍ରିୟେ ସହଚରୀ ସେ ଶ୍ରୀକୃଷ୍ଣଙ୍କର
ସଉଭାଗ୍ୟବତୀ ନାମ ଅଟଇ ତାଙ୍କର ।
ସର୍ବାଙ୍ଗ ସୁନ୍ଦରୀ ମାତ ନିପୁର ମୋହିନୀ
କୀରତି ପବିତ୍ର ଆଉ ସୁଖ ପ୍ରଦାୟିନୀ ।
ଗୁଣ ଆଉ ତେଜରେ ସେ ଅଟନ୍ତି ସମାନ
ଅର୍ଦ୍ଧାଙ୍ଗ ରୁପିଣୀ ନାମ୍ନୀ ମସ୍ତକ ମଣ୍ଡନ ।
ତାଙ୍କପରି ପତିବ୍ରତା ସତୀ କେହି ନାହିଁ
ବସ୍ତ୍ରାଳୁ ପଣରେ ସବୁଠାରୁ ବଳ ସେହି ।
ସର୍ବଦା ଆନନ୍ଦମୟୀ ପରମ ପୂଜିତା
ସ୍ଥାବର ଜଙ୍ଗମ ବିଶ୍ୱ ଜୀବଙ୍କର ମାତା ।
ରାସକ୍ରୀଡ଼ା ଦେବତୀ ସେ ପରମାତ୍ମାଙ୍କର
ହୋଇ ଅଛନ୍ତି ଆନନ୍ଦ ବିଧାନେ ତତ୍ପର ।
ତାହାଙ୍କ ସୌନ୍ଦର୍ଯ୍ୟ ଯେନ ରାସକ୍ରୀଡ଼ା ସ୍ଥଳ
ବିବିଧ କଳା ବିଳାସେ ହଉଇ ମଞ୍ଜୁଳ ।

ଗୋପାଙ୍ଗଣୀ ବେଶେ ଗୋଲକରେ ବାସକରି
ନିଜ ସ୍ୱରୂପ ଅଛନ୍ତି ସେ ପ୍ରକାଶ କରି ।
ପରମ ଆହ୍ଲାଦମୟୀ ଅଟନ୍ତି ସେ ଏକା
ସନ୍ତୋଷ ହରଣ ଭଏ ତାଙ୍କଠାରେ ଦେଖା ।
ଆକାର ଶୂନ୍ୟ ନିର୍ଗୁଣ ବୋଲିଣ ତାହାଙ୍କୁ
ଜ୍ଞାନୀଜନେ କହଇଛନ୍ତି ଶାସ୍ତ୍ର ପ୍ରମାଣକୁ ।
ତାଙ୍କଠାରେ ଅହଙ୍କାର ଲୋଳ ତିଳେ ନାହିଁ
ଭକ୍ତଙ୍କ ପରମ ବନ୍ଧୁ ଅଟନ୍ତି ସେହି ।
ବେଦଶାସ୍ତ୍ରେ ବିଚକ୍ଷଣ ମୁନି ମାନଙ୍କର
ସୂକ୍ଷ୍ମ ବୁଦ୍ଧି ପ୍ରଭାବରେ ହୁଅନ୍ତି ଗୋଚର ।
ଦେବତା ଦାନବ ଯକ୍ଷ ରକ୍ଷ ଆଉ ଯେତେ
ଦେଖି ନ ପାରନ୍ତି ସ୍ଥୂଳଦୃଷ୍ଟିରେ କଞ୍ଚିତେ ।
ଅନଳ ପବିତ୍ର ବାସ ପରିଧାନ କରି
ସୁନ୍ଦର ଦିଶନ୍ତି ନାନା ଅଳଙ୍କାର ଭରି ।
କୋଟିଏ ଶରଦଚନ୍ଦ୍ର ପ୍ରଭାର ସମାନ
ଜାଜ୍ୱଲ୍ୟମାନ ଦିଶଇ ତାଙ୍କ ଅଙ୍ଗେ ଧନ ।
ଶ୍ରୀକୃଷ୍ଣଙ୍କ ଦାସୀପଣ ଆଶ୍ରେକରି ପୁଣି
ଦିନ ନେଉଥାନ୍ତି ପ୍ରଭୁଙ୍କର ଗୁଣ ଗୁଣି ।
ବରାହ ସ୍ୱରୂପ ଯହୁଁ ହେଲେ ନରହରି
ବୃଷଭାନୁ ପତ୍ନୀଙ୍କର ଗର୍ଭରୁ ସୁନ୍ଦରୀ ।
ଜନମଲଭି ପ୍ରଭୁଙ୍କ ସଙ୍ଗିନୀ ହୋଇଲେ
ପାଦ ପରଶରେ ମହୀ ପାପ ନିବାରିଲେ ।
ତାହାଙ୍କ ଯୋଗେ ଭାରତ ହୋଇଲା ପବିତ୍ର
ଦରଶନ କଲା ତାଙ୍କୁ ସବୁଙ୍କର ନେତ୍ର ।
ଜଗତ ଜନନୀ ନାରୀଜନଙ୍କର ମୁଖ୍ୟ
ଆଶ୍ରୟ କରନ୍ତି ସଦା ଶ୍ରୀକୃଷ୍ଣଙ୍କ ବକ୍ଷ ।
ନୂତନ ମେଘ ଦେହରେ ବିଜୁଳି ଲତିକା
ରୂପରେ ବିରାଜମାନ ହୁଅନ୍ତି ସେ ଏକା ।
ତାଙ୍କ ରୂପ ଦେଖିବାକୁ ବ୍ରହ୍ମା ପ୍ରଜାପତି
ଷାଠିଏ ବରଷ ତପ କଲେ ଦେଇ ମତି ।
ସ୍ୱପନରେ ହେଲେ ଦେଖି ନ ପାରିଲେ ଥରେ
ପ୍ରତ୍ୟକ୍ଷେ ଦେଖିବା କଥା ଅଛଇ ତ ଦୂରେ ।
ସେ ସକାଶୁଁ ପୁଣି ଆଉ ଷାଠିଏ ବରଷ
ତପ ଆଚରଣ କରି ପ୍ରଜାଙ୍କର ଈଶ ।
ସୁନ୍ଦର ଅରଣ୍ୟ ବୃନ୍ଦାବନେ ତାହାଙ୍କର
ଦିବ୍ୟ ରୂପକୁ ଦେଖିଣ ହେଲେ ତୋଷକର ।

ରାଧିକା ଅଟନ୍ତି ସେହି ପ୍ରକୃତି ପଞ୍ଚମ
ମାନ୍ୟ ବୋଲକର ତାଙ୍କୁ ଜାଣ ଦ୍ୱିଜୋତ୍ତମ ।
ବିଶ୍ୱ ଜଗତରେ ଯେତେ ଦେବୀ ସ୍ତ୍ରୀ ଗ୍ରାମଣ
ସମସ୍ତେ ତାଙ୍କର କଳା ଅଂଶରୂପେ ଜନ୍ମ ।
ପୂର୍ଣ୍ଣ ଅଂଶେ ଏହି ପାଞ୍ଚ ଦେବୀ ଜାତ ହେଲେ
ପ୍ରଧାନ ଅଂଶର କଥା ଶୁଣ ଏବେ ଭଲେ ।
ବିଶ୍ୱର ପବିତ୍ରକାରୀ ଭୁବନପାବନୀ
ବିଷ୍ଣୁ ପଦରୁ ଜାତ ଦେବୀ ମନ୍ଦାକିନୀ ।
ନଦୀରୂପେ ସ୍ୱର୍ଗଭାବେ ଯାଉଛନ୍ତି ବହି
ପ୍ରକୃତି ପ୍ରଧାନ ଅଂଶ ଅଟନ୍ତି ସେହି ।
ପାପୀଙ୍କର ପାପରୂପ ଦହନ ଅନଳ
ସ୍ୱରୂପ ଅଟଇ ସେହି ମନ୍ଦାକିନୀ ଜଳ ।
ଦର୍ଶନ ସ୍ପର୍ଶନ ସ୍ନାନ ପାନ କଲେ ତାହା
ମୁକତି ମିଳଇ ଜାଣ ଆହେ ମୁନିନାହା ।
ଗୋଲକକୁ ଯିବାପାଇଁ ସୋପାନ ରଚନା
କରିଅଛନ୍ତି ସେହି ଆହେ ମହାମନା ।
ଭାରତବର୍ଷରେ ଯେତେ ପୁଣ୍ୟ ତୀର୍ଥମାନ
ତାହାଙ୍କ ମଧ୍ୟେ ଅଧିକ ଅଟନ୍ତି ସେ ଜାଣ ।
ମଙ୍ଗଳ ବିଧାନକର୍ତ୍ତା ସଦାଶିବଙ୍କର
ମସ୍ତକରେ ବିରାଜନ୍ତି ଯେହ୍ନେ ମୁକ୍ତାହାର ।
ତାହାଙ୍କ ପବିତ୍ର ତଟେ ତପସ୍ୱୀଏ ବସି
ମୋକ୍ଷ ଲଭିବାକୁ ତପ ହୁଅନ୍ତି ପ୍ରୟାସୀ ।
ଶଙ୍ଖ ଶ୍ୱେତ ପଦ୍ମପତ୍ର ଜିଣଇ ବରନ
ନିର୍ମଳ ସ୍ୱଭାବ ପୁଣି ଅହଙ୍କାରଶୂନ୍ୟ ।
ନାରାୟଣ ଦେବଙ୍କର ପ୍ରୀତିକାରିଣୀ
ଦୟାବତୀ ସତୀ ପତିବ୍ରତାଙ୍କ ଅଗ୍ରଣୀ ।
ତୁଳସୀ ଅଟନ୍ତି ସେହୁ ବିଷ୍ଣୁ ପ୍ରିୟବତୀ
ପ୍ରକୃତି ପ୍ରଧାନ ଅଂଶେ ତାଙ୍କର ଉତ୍ପତ୍ତି ।
ବିଷ୍ଣୁଙ୍କ ଦେହରେ ରହି ଆଭରଣ ପରି
ରହନ୍ତି ସର୍ବଦା ବେନି ପାଦରେ ସେପରି ।
ଫୁଟିଥିବା ପଦ୍ମଫୁଲେ ଭ୍ରମର ସଦୃଶ
ଲଗ୍ନ ହୋଇଥାନ୍ତି ଜାଣ ଆହେ ମୁନିଈଶ ।
ପୂଜା ଉପହାର ପୁଷ୍ପଗଣରେ ପ୍ରଧାନ
ବୋଲି କହଣ ତାହାଙ୍କୁ ଜାଣ ତପୋଧନ ।
ଦର୍ଶନ ସ୍ପର୍ଶନ ସେବା କଲେ ତାହାଙ୍କର
ମୁକତି ଲାଭ ହେବାରେ ସନ୍ଦେହ ନ କର ।

କଳିଯୁଗେ ପାପରାଶି ଶୁଷ୍କ କାଷ୍ଠ ତୃଣ
ଦଗ୍ଧ କରିବା ବିଷୟେ ପ୍ରତ୍ୟକ୍ଷ ଦହନ ।
ତାହାଙ୍କ ପାଦ ପରଶେ ପବିତ୍ରତା ମହୀ
ଆବର ଯେତେକ ପୁଣ୍ୟତୀର୍ଥ ଛନ୍ତି ରହି ।
ଆପଣାର ଦେହ ଶୁଦ୍ଧ କରିବାର ପାଇଁ
ଯାହାଙ୍କ ଦର୍ଶନ ସ୍ପର୍ଶ ଥାନ୍ତି ମନଦେଇ ।
ତାଙ୍କ ବିନା ଜଗତରେ ଧର୍ମ କର୍ମ ଯେତେ
ବନ୍ଧ୍ୟା ବୃକ୍ଷପରି ଫଳ ଶୂନ୍ୟ ସେ ସମସ୍ତେ ।
ମୋକ୍ଷ ଇଚ୍ଛାକରି ତାଙ୍କୁ କଲେ ଆରାଧନା
ଅବଶ୍ୟ ସଫଳ ସେହି କରନ୍ତି କାମନା ।
କଳ୍ପବୃକ୍ଷ ସମାନ ସେ ଭାରତବର୍ଷରେ
ପ୍ରଭାବ ବିସ୍ତାର କରିଥାନ୍ତି ନିରନ୍ତରେ ।
ଆବର ମନସା ନାମେ କଶ୍ୟପ ଦୁହିତା
ପ୍ରକୃତିପ୍ରଧାନ ଅଂଶେ ଅଟନ୍ତି ସମ୍ଭୂତା ।
ଶଙ୍କରଙ୍କ ପ୍ରିୟ ଶିଷ୍ୟା ଜ୍ଞାନରେ ନିପୁଣ
ନାଗପତି ଶେଷ ଦେବ ଭଗିନୀ ସେ ଜାଣ ।
ସକଳ ନାଗଗଣର ଅଧିକାରୀ ସେହି
ସୁନ୍ଦରୀପଣରେ ତାଙ୍କ ସମାନ କେ ନାହିଁ ।
ନାଗଙ୍କ ଜନନୀ ହୋଇଥିବାରୁ ସେ ପୁଣି
ପୂଜନ୍ତି ତାହାଙ୍କ ପାଦେ ନାଗେ ତୋଷ ମଣି ।
ଯେଉଁଠାକୁ ଯେତେବେଳେ କରନ୍ତି ଗମନ
ବହନ୍ତି ବଶିଷ୍ଟ ନାଗେ ତାହାଙ୍କର ଯାନ ।
ନାଗଲୋକେ ବାସ କରି ଥାନ୍ତି ସେ ସର୍ବଦା
ନାଗ କନ୍ୟାଗଣ ହୋଇଥାନ୍ତି ବଶଂବଦା ।
ଭକତି କରନ୍ତି ବିଷ୍ଣୁ ଦେବଙ୍କ ପାଦରେ
ମନ ଦେଇଥାନ୍ତି ସଦା ତାଙ୍କର ପୂଜାରେ ।
ତପ ସ୍ୱରୂପାରେ ସେହି ହୁଅନ୍ତି ପ୍ରକାଶ
ଜାଣ ଆହେ ଦେବଋଷିଗଣଙ୍କର ଈଶ ।
ଶ୍ରୀହରିଙ୍କଠାରେ ମନଦେଇ ସେ ଅବଳା
ତପ କଲେ ସହସ୍ର ଯୁଗ ନ କରି ହେଳା ।
ସେ ସକାଶୁ ଜଗତରେ ଯେତେ ତପୀଜନ
ପ୍ରଶଂସା କରେ ଆନନ୍ଦେ ବୋଲି ଧନ୍ୟଧନ୍ୟ ।
ସର୍ବମନ୍ତ୍ର ଅଧିଷ୍ଠାତ୍ରୀ ଦେବତା ରୂପରେ
ପରିଚିତ ଅଟନ୍ତି ସେ ସମସ୍ତ ଲୋକରେ ।
ତାହାଙ୍କ ଅଙ୍ଗରେ ବ୍ରହ୍ମତେଜ ଅନର୍ଗଳ
ପ୍ରକାଶିତ ହୁଏ ଯେହ୍ନେ ପ୍ରଚଣ୍ଡ ଅନଳ ।

ଜରତ୍କାରୁ ମୁନିଙ୍କର ଭାର୍ଯ୍ୟା ସେ ପ୍ରିୟା
ଆସ୍ତିକ ଋଷି ଅଟନ୍ତି ପୁତ୍ର ଯାହାଙ୍କର ।
ସକଳ ବିଷୟ ତେଜ ତପସ୍ୟାରେ ତତ୍ତ୍ୱ
ଅବେକ୍ଷିତ କରିଥାନ୍ତି ଆହେ ବିଧିସୁତ ।
ସେ ମଧ୍ୟ ପ୍ରଧାନ ଅଂଶେ ଜାତହୋଇ ମସ୍ତ
ବିଭୂଷିତ କଲେ ନିଜ ପ୍ରଭବ ଦେଖାଇ ।
ଆଉର କୁମାର ପତ୍ନୀ ଦେବୀ ଦେବସେନା
ପ୍ରକୃତି ପ୍ରଧାନ ଅଂଶେ ଜାତ ସେ ଲଳନା ।
ଅଷ୍ଟ ଦଶ ମାତୃଗଣେ ପ୍ରଧାନ ଅଟନ୍ତି
ଷଷ୍ଠୀଦେବୀ ବୋଲି ଅନ୍ୟ ନାମକୁ ବହନ୍ତି ।
ବିଶ୍ୱଜଗତରେ ଯେତେ ବାଳକ ବାଳିକା
ସଭିଙ୍କର ପାଳନକର୍ତ୍ତ୍ରୀ ଅଟନ୍ତି ସେ ଏକା ।
ସୂତିକାଗୃହରେ ତାଙ୍କ ନାମ ଶୁଣି କରି
ଷଷ୍ଠୀକାଳୀ ଦୁଷ୍ଟଗଣ ପଳାନ୍ତି ସେ ଡରି ।
ବିଷ୍ଣୁ ସେବାକାରିଣୀ ସେ ତପସ୍ୱୀଙ୍କ ବଶ
ତାଙ୍କ ପର ସତୀ ଆଉ ଥିବ ନାହିଁ ଯଶ ।
ପ୍ରକୃତିଙ୍କ ଷଷ୍ଠ ଅଂଶେ ଜାତ ହୋଇବାରୁ
ଷଷ୍ଠୀନାମେ ଖ୍ୟାତ ହେଲେ ଜନମକାଳରୁ ।
ଅପୁତ୍ରିକ ମାନବଙ୍କୁ ପୁତ୍ର ପୌତ୍ର ଦାନ
କରିବାକୁ ସାମରଥ୍ୟ ଅଟନ୍ତି ସେ ଜାଣ
ଅଖିଳବ୍ରହ୍ମାଣ୍ଡ ଶିଶୁମାନଙ୍କୁ ସେ ଦେବୀ
ପାଳନ କରନ୍ତି ପୁତ୍ରତୁଲ୍ୟ ମନେ ଭାବି ।
ସହଜେ ଯୌବନବତୀ ସୁନ୍ଦରୀ ଅଟନ୍ତି
ବୃଦ୍ଧା ରମଣୀ ପରାୟେ ଶିଶୁଙ୍କୁ ରଖନ୍ତି ।
ପ୍ରତ୍ୟେକ ମାସରେ ସେହି ଷଷ୍ଠୀଦେବୀଙ୍କର
ପୂଜା ଉପାସନା କରିଥାନ୍ତି ସବୁ ନର ।
ପ୍ରସବ ହେବା ଦିନରୁ ଷଷ୍ଠ ଦିବସରେ
ପୂଜା କରନ୍ତି ନାରୀଏ ସୂତିକାଗୃହରେ ।
ପୁଣି ଏକୋଇଶ ଦିନେ ଆରାଧନା କରି
ଶିଶୁଙ୍କୁ ସକଳ କଷ୍ଟୁଁ କରାନ୍ତି ସେ ପାର ।
ଦିନେ ଦିନେ ବାଳକଙ୍କ ମଙ୍ଗଳ ସମ୍ପଦ
ତାହାଙ୍କ ଯୋଗରେ ହୁଏ ଜାଣ ହେ ନାରଦ ।
ମାତାଠାରୁ ଅଧିକରେ ଦୟାବତୀ ହୋଇ
ରକ୍ଷା କରନ୍ତି ସେ ଷଷ୍ଠୀଦେବୀ ମହାମାୟୀ ।
ଜଳେ ସ୍ଥଳେ ଆକାଶରେ ସ୍ୱପନ ଗୋଚର
ହୋଇଥାନ୍ତି ସବୁ ସମୟରେ ଶିଶୁଙ୍କର ।।

ମଙ୍ଗଳା ଚଣ୍ଡିକା ନାମେ ଆଉ ଏକ ଦେବୀ
ପ୍ରକୃତିଙ୍କ ମୁଖରୁ ସେ ଅଛନ୍ତି ସମ୍ଭବି ।
ପ୍ରଧାନ ଅଂଶ ବୋଲିଣ ତାଙ୍କୁ ମନେ କର ।
ମଙ୍ଗଳ ବିଧାନ କାର୍ଯ୍ୟ ଅଟଇ ତାହାର ।
ସୃଷ୍ଟି ଆରମ୍ଭରେ ସେହୁ ମଙ୍ଗଳା ବୋଲନ୍ତି
ସଂହାର କାଳରେ ମୃତ୍ୟୁ ସ୍ୱରୂପ ହୁଅନ୍ତି ।
ସେ ଯେଣୁ ମଙ୍ଗଳଚଣ୍ଡୀ ବୋଲିଣ ପଣ୍ଡିତେ
ବୋଲନ୍ତି ତାହାଙ୍କୁ ଜାଣ ମୁନି ମହାମତେ ।
ମଙ୍ଗଳବାର ହୋଇଲେ ତାହାଙ୍କର ପୂଜା
କରନ୍ତି ମାନବେ ଭକ୍ତିଭାବେ ଦେଇ ମଜା ।
ପ୍ରତି ମଙ୍ଗଳବାରରେ ପଞ୍ଚ ଉପଚାରେ
ପୂଜା ନାରୀଏ ତାଙ୍କୁ ଅତି ଭକତିରେ ।
ଲଭ କରନ୍ତି ସେ ପୁତ୍ର ପୌତ୍ର ଧନ ଯଶ
ଶୋକ ଦୁଃଖ ଆଦି ନ ଆସଇ ତାଙ୍କ ପାଶ ।
ସନ୍ତୋଷ ହୁଅନ୍ତି ଯେବେ ସେ ନାରୀଙ୍କଠାରେ
ମନୋବାଞ୍ଛା ସେହୁ ପୂର୍ଣ୍ଣ କରନ୍ତି ତାଙ୍କରେ ।
କ୍ରୋଧ ହେଲେ କ୍ଷଣକରେ ସକଳ ସମ୍ପତ୍ତି
ବିନାଶ କରନ୍ତି ତାର ଆହେ ମହାମତି ।
ଆଉ ଏକ ଦେବୀଙ୍କର କଥା ତୁମ୍ଭେ ଶୁଣ
ଅପାର ମହିମା ଅଟେ ତାହାଙ୍କର ଜାଣ ।
ଯେ ବେଳେ ଶୁମ୍ଭ ନିଶୁମ୍ଭ ଦାନବ ସଙ୍ଗରେ
ରଣ କରୁଥିଲେ ମାତ ଦର୍ପସୁ ଶରୀରେ ।
ସେବେଳେ ତାଙ୍କ ଲଲାଟ ପଟରୁ ବାହାର
ହୋଇଲେ ଯେ ଦେବୀ ନାମ ଶୁଣ ତାହାଙ୍କର ।
କମଳ ଲୋଚନ କାଳୀ ତାହାଙ୍କର ନାମ ।
ପ୍ରକୃତି ପ୍ରଧାନ ଅଂଶେ ତାଙ୍କର ଜନମ ।
ଅର୍ଦ୍ଧ ଅଙ୍ଗ ଦୁର୍ଗାଙ୍କର ଅଟନ୍ତି ସେ ବୋଲି
ଜ୍ଞାନୀମାନେ କହିଛନ୍ତି ଏହା ମନେ ଭଲି ।
ତପ୍ତ ସ୍ୱର୍ଣ୍ଣସମ ପ୍ରଭା ଅଟଇ ତାଙ୍କର
ନିନ୍ଦା କରଇ କୋଟିଏ ସୂର୍ଯ୍ୟଙ୍କୁ ସତ୍ୱର ।
ସବୁ ଶକ୍ତି ମଧ୍ୟରେ ସେ ପ୍ରଧାନ ଅଟନ୍ତି
ତାଙ୍କଠାରୁ ବଳେ କେହି ଅଧିକା ନାହାନ୍ତି ।
ଅଠର ଲକ୍ଷ ଯୋଗିନୀ ତାହାଙ୍କର ପାଶେ
ରହି ଅଛନ୍ତି ସର୍ବଦା ଭକ୍ତିଭାବ ବଶେ
କୃଷ୍ଣ ପୂଜା ପରାୟଣୀ ଅଟନ୍ତି ସେ ସତୀ
ଶ୍ରୀକୃଷ୍ଣଙ୍କ ଭାବ କୃଷ୍ଣବର୍ଣ୍ଣା ହୋଇଛନ୍ତି ।

ତାହାଙ୍କ ନାସାରୁ ଯେଉଁ ଅନଳ ବାହାର
କ୍ଷଣକ ମଧ୍ୟରେ ସୃଷ୍ଟି ଧ୍ୱଂସ କରନ୍ତେଇ ।
ମହାବଳ ଦାନବଙ୍କୁ ହେଳାପୂର୍ବେ ମାରି
ହେଲେ ଏକ ଜଗତର ପ୍ରଭୁ ରକ୍ଷାକାରୀ ।
ଉତ୍ତମ ସ୍ୱର୍ଗରେ ଯେହୁ ତାହାଙ୍କୁ ପୂଜଇ
ଧର୍ମ ଅର୍ଥ କାମ ମୋକ୍ଷ ସ୍ୱାଗତ ହୁଅଇ ।
ତେତିଶ କୋଟି ଦେବତାମାନେ ଭକ୍ତିଭରେ
ଅର୍ଚ୍ଚନା କରନ୍ତି ତାଙ୍କ ଅଭୟ ପାଦରେ ।
ଏ ପୃଥ୍ୱୀ ଅଟେ ମଧ୍ୟ ପ୍ରକୃତିଙ୍କ ଅଂଶ
କେଣୁ ଜଗଦ୍ଧାରଣେ ସକ୍ଷମ ଅବଶ୍ୟ ।
ଯେବେ ଚରାଚର ପ୍ରାଣୀ ଜଗତେ ଅଛନ୍ତି
ଆଧାର ସ୍ୱରୂପେ ତାଙ୍କୁ ଆଦ୍ୟ ସେ ଯୋଗାନ୍ତି
ତାହାଙ୍କ ଅଙ୍ଗରେ ଖାଦ୍ୟ ବିବିଧ ପ୍ରକାରେ
ଜାତ ହୁଏ ପ୍ରାଣୀଙ୍କର ଜୀବ ସହାୟରେ ।
ଅଶେଷ ରତ୍ନ ଥିବାରୁ ଗର୍ଭରେ ତାଙ୍କର
ରତ୍ନଗର୍ଭା ବୋଲି ତାଙ୍କୁ ବୋଲନ୍ତି ସଭିଏ ।
ସବୁ ପ୍ରଜାଙ୍କର ଭୂପେ ନରପତିମାନେ
କରନ୍ତି ତାହାଙ୍କୁ ପୂଜା ଜାଣ ସର୍ବଜନେ ।
ଆଶ୍ରୟ ରୂପରେ ତାଙ୍କୁ ପାଇ ଜୀବ ବୃନ୍ଦ
ଭୋଗକରି ଅଛନ୍ତି ସେ ଅଚଳ ସମ୍ପଦ ।
ସେହି ମହାଦେବୀଙ୍କର ବିନେ ଚରାଚର
ମୁହୂର୍ତ୍ତକ ମଧ୍ୟ ରହି ନ ପାରଇ ସ୍ଥିର ।
ପ୍ରକୃତି ପ୍ରଧାନ ଅଂଶେ ଯେଉଁମାନେ ଜାତ
କହିଲି ତାହାଙ୍କ ଗାଥା ଫେଇଣ ସମସ୍ତ ।
ଏବେ ତାହାଙ୍କ କଳାରୁ ଜାତ ଯେଉଁମାନେ
ଜନ୍ମିଛନ୍ତି ତାଙ୍କ କଥା ଶୁଣ ସାବଧାନେ ।
ଯେଉଁ ମାନଙ୍କର ମହୀ ସେମାନେ ଅଟନ୍ତି
କହୁଛି ବର୍ଣ୍ଣନା କରି ଶୁଣ ସର୍ବ ସତି ।
ସ୍ୱାହା ଦେବୀ ଅଟନ୍ତି ସେ ଅଗ୍ନିଙ୍କ ଘରଣୀ
ମହା ତେଜୋମୟୀ ଦେବୀ ପ୍ରକୃତି ରୂପିଣୀ ।
ତାଙ୍କ ବିନେ ଯାଗଯଜ୍ଞେ ହବି ପାଇବାକୁ
ସମର୍ଥ ନୁହନ୍ତି ଦେବେ କହିଲି ତୁମ୍ଭଙ୍କୁ ।
ଦକ୍ଷ ଯଜ୍ଞପ୍ରିୟା ଦକ୍ଷିଣା ସର୍ବସ୍ୱ ପୂଜିତା
ସେ ନ ଥିଲେ ସବୁ କର୍ମ ନିଷ୍ଫଳ ହୁଅନ୍ତା ।
ସ୍ୱଧା ଅଟେ ପିତୃମାନଙ୍କର ପତ୍ନୀ ଜାଣ
ତାହାଙ୍କ ନିମନ୍ତେ ପୂଜା ପାଆନ୍ତି ପିତୃଗଣ ।

ବାୟୁଙ୍କ ଘରଣୀ ସ୍ୱସ୍ତି ଦେବୀ ତ ଅଟନ୍ତି
ସକଳ ଜନେ ତାହାଙ୍କୁ କରନ୍ତି ଭକତି ।
ତାହାଙ୍କ ସହାୟେ ବିନା ଆଦାନ ପ୍ରଦାନ
କେହି ହେଲେ କରି ନ ପାରନ୍ତି ମନେ ଘେନ ।
ଜଗତ ପୂଜିତା ମାତ ପୁଷ୍ଟି ମହାସତୀ
ଗଣାନନଙ୍କର ସେ ଅଟନ୍ତି ପ୍ରିୟବତୀ ।
ପୁରୁଷ ବା ସ୍ତ୍ରୀ ତାଙ୍କ ବିନେ କ୍ଷଣେମାତ୍ର
ଦେହଧାରଣ କରି ନ ପାରନ୍ତି ଏ ମର୍ତ୍ତ୍ୟ ।
ଅନନ୍ତ ଗୃହିଣୀ ତୁଷ୍ଟି ନାମରେ ଦେବତା
ତିନିଲୋକ ମଧ୍ୟରେ ସେହୁ ଅଟନ୍ତି ପୂଜିତା ।
ସେ ଯଦି ନ ଥାନ୍ତା ଜନ୍ତୁମାନଙ୍କର ମନେ
ପରିବେଶ କରି ନ ପାରନ୍ତା ଶାନ୍ତି କ୍ଷଣେ ।
ଈଶାନ ଘରଣୀ ନାମ ଅଟଇ ସମ୍ପତ୍ତି
ସୁର ଓ ମନୁଷ୍ୟମାନେ ତାହାଙ୍କୁ ପୂଜନ୍ତି ।
ସେ ନଥିଲେ ଜଗତରେ ଦରିଦ୍ର ଅବସ୍ଥା
ଲୋକଙ୍କୁ କରୁଣ ଥାନ୍ତା ନାନାବିଧ ଦୁରବସ୍ଥା ।
ଧୃତି ନାମ ଅଟଇ ସେ କପିଳ ପତ୍ନୀର
ଧୈର୍ଯ୍ୟଶାଳୀ ହୋଇଥାନ୍ତି ତାଙ୍କ ଲାଗି ନର ।
ଜଳୁପତିଙ୍କର ନାରୀ କ୍ଷମା ସେ ଅଟଇ
ଅତି ପତିବ୍ରତା ଶିରୋମଣି ନାରୀ ସେହି ।
ସକଳ ମାନବେ ତାଙ୍କୁ କରନ୍ତି ପୂଜନ
ସେ ନ ଥିଲେ ଦୁଷ୍ଟ ହୋଇଯାନ୍ତେ ସର୍ବଜନ ।
ପୁଣି କ୍ରୀଡ଼ା ଅଧିପତି କନ୍ଦର୍ପ ରମଣୀ
ତାହାଙ୍କ ନାମ ସେ ସତୀ ପତିବ୍ରତା ରାଣୀ ।
ସେ ନ ଥିଲେ ଜୀବାମନେ ହରଷ ନ ଥାନ୍ତା
କ୍ରୀଡ଼ା କଉତୁକ ରାଜ୍ୟ ଉଠି ଯାଇଥାନ୍ତା ।
ଶାନ୍ତି ଦେବୀ ଅଟନ୍ତି ସେ ସତ୍ୟବ୍ରତ ପତ୍ନୀ
ସକଳ ଜନେ କରନ୍ତି ତାଙ୍କଠାରେ ଭକ୍ତି ।
ତାଙ୍କ ବିନେ ଜନେ ସ୍ନେହ ବନ୍ଧୁତା ସମ୍ବନ୍ଧ
ନ ପାଇ କରନ୍ତେ ସର୍ବ ଜନରେ ବିବାଦ ।
ସେହିରୂପେ ପୁଣ୍ୟପତ୍ନୀ ପ୍ରତିଷ୍ଠା ଅଟନ୍ତି
ଜନଲୋକେ ନ ମିଳିବେ ତାଙ୍କପରି ସତୀ
ଚରାଚର ଜୀବଗଣେ ତାହାଙ୍କ ବ୍ୟତୀତ
ଜୀଇଥାଇ ମୃତପ୍ରାୟ ହୋଇଥାନ୍ତେ ସେତ ।
କର୍ମଦେବଙ୍କ ଘରଣୀ କୀର୍ତ୍ତି ମହାମତି
ଦେବତା ଅସୁର ସର୍ବେ ତାହାଙ୍କୁ ପୂଜନ୍ତି ।

ହୁଏ ଯଶ ପଞ୍ଚକ୍ଷ ତାହାଙ୍କ ନିମନ୍ତେ
ମନ ଦେଇ କରି ଶୁଣ ଆହେ ତପୋବନ୍ତେ ।
ସିଦ୍ଧ ଯୋଗ କାମିନୀ ନିଦ୍ରା ଜଗତ ପାବନୀ
ଉଚ୍ଚନ ହୁଅନ୍ତେ ସର୍ବେ ତାଙ୍କ ଲାଗି ପୁଣି ।
ମିଥ୍ୟା ନାମ ଅଟଇ ଯେ ଅଧର୍ମ ପତ୍ନୀର
ତାହାଙ୍କ ନିମନ୍ତେ ପାପ ବଢ଼ଇ ସଂସାର ।
ଧୂର୍ତ୍ତମାନେ ତାହାଙ୍କର ପୂଜା ସବୁବେଳେ
କରୁଥାନ୍ତି ଭକ୍ତିଭରେ ନମି ପାଦତଳେ ।
ତାଙ୍କ ବିନା ବନ୍ଧୁ କୂଟ କପଟ ଘଟଣା
ନହୁଅନ୍ତା ଜାଣ ହେ ନାରଦ ମହାମନା ।
ତାହାଙ୍କର ସତ୍ତ୍ୱ ନ ରହଇ ସତ୍ୟଯୁଗେ
ତ୍ରେତା ଯୁଗରେ ଆହୁରି କମେ ଏକଭାଗେ ।
ଦ୍ୱାପର ଯୁଗରେ ଅର୍ଦ୍ଧେ ପ୍ରକାଶ ହୁଅଇ
କଳିଯୁଗ ଜାଣ ପୂର୍ଣ୍ଣରୂପେ ବଢି ଯାଇ ।
ଅତ୍ୟନ୍ତ ସାହସୀ ସେହି ସକଳ ସ୍ଥାନରେ
ଛଦ୍ମବେଶ ହୁଅନ୍ତି ରଣ ଗୋଳ ହେବାଠାରେ ।
ତାଙ୍କ ସହୋଦର ଭାଇ ଅଟଇ କପଟ
ନେଇଣ ତାହାଙ୍କୁ ପ୍ରତି ଘରେ ହୋନ୍ତି ଭେଟ ।
ତଦନ୍ତେ ଶାନ୍ତି ଲଜ୍ଜ୍ୟା ଦୁଇଗୋଟି ସ୍ତ୍ରିୟ
ଅଟନ୍ତି ଅଧର୍ମ ପତ୍ନୀ ଆହେ ତପସ୍ୱୀ ।
ଅତ୍ୟନ୍ତ ଉତ୍ତମ ତାଙ୍କ ସ୍ୱଭାବ ଚରିତ
ସାଧ୍ୱୀ ପଣରେ ସମ ନୋହେ କେହି ମାତ ।
ପ୍ରତ୍ୟେକ ଜନଙ୍କ ହୃଦେ ନଥିଲେକ ସେହି
ହନ୍ଦ ଲଗାନ୍ତେ ମାନବ ଯେ ଉନ୍ମାଦ ହୋଇ ।
ଆବର ତିନୋଟି ଭାର୍ଯ୍ୟା ଜ୍ଞାନର ଅଟନ୍ତି
ତାହାଙ୍କ ନାମ କହୁଛି ଶୁଣ ତେଣୁ ଶୁଭ ।
ସ୍ମୃତି ଆଉ ବୁଦ୍ଧି ମେଧା ହୋଇଅଛି ଖ୍ୟାତ
ସେ ନଥିଲେ ମୂର୍ଖ ହୋଇ ଥାଆନ୍ତେ ସମସ୍ତ ।
ମୂର୍ତ୍ତି ଯାହାଙ୍କର ନାମ ସେ ଧର୍ମଙ୍କ ପତ୍ନୀ
ମନୋହର ତେଜରେ ସେ ଶୋଭା ବଢାଅନ୍ତି ।
ରୂପ ଲକ୍ଷ୍ମୀ ବୋଲି ତାଙ୍କୁ କୁହନ୍ତି ଜଗତ
ଶୋଭା ରୂପରେ ସର୍ବଙ୍କ ହୁଅନ୍ତି ପୂଜିତ ।
ନିଦ୍ରା ଆଉ ମହାମାୟା ଏ ରୁଦ୍ରଙ୍କ ପତ୍ନୀ
ପୂର୍ଣ୍ଣ ରହିଅଛି ତ୍ରିଲୋକରେ ତାଙ୍କ ମାୟା ।
ସେ କେବା ସିଦ୍ଧ ଯୋଗିନୀ ତାଙ୍କ ମାୟାବଳେ
ମୋହିତ ହୁଅନ୍ତି ସର୍ବ ଜନ ସବୁକାଳେ ।

ସନ୍ଧ୍ୟା ରାତ୍ରି ଦିବା ଏହି ତିନୋଟି କାମିନୀ
କାଳର ଭାର୍ଯ୍ୟା ଅଟନ୍ତି ଜାଣ ଆହେ ମୁନି ।
ସ୍ୱୟଂ ବିଧାତା ତାହାଙ୍କ ବ୍ୟତୀତେ ଜାଣ
ଗଣି ନ ପାରନ୍ତି ଦିନ ବର୍ଷ ମାସ ପୁଣ ।
ଲୋଭର ଘରଣୀ କ୍ଷୁଧା ପିପାସା ଏ ଦୁଇ
ପ୍ରତ୍ୟେକ ଘଟରେ ବିଜେ କରିଛନ୍ତି ସେହି ।
ସେ ନ ଥିଲେ କର୍ମ କେବେଁ ନ କରନ୍ତା ନର
କ୍ଷୁଧା ତୃଷା ନ ଲାଗନ୍ତା କାହାକୁ ମହୀର ।
ତେଜର ଭାର୍ଯ୍ୟା ପ୍ରଭା ଦାହିକା ଶକତି
ସବୁଠାରୁ ବଳ ପୂଜା ଯୋଗ୍ୟା ସେ ଅଟନ୍ତି ।
ସେ ନଥିଲେ ଏ ଜଗତ ନିର୍ମାଣ ନିମନ୍ତେ
ସମର୍ଥ ହୋଇ ନଥାନ୍ତା ବିଧାତା ଜଗତେ ।
ମୃତ୍ୟୁ ଆଉ ଜରା ଦୁଇ କାଳର ଦୁହିତା
ଜ୍ୱରର ଘରଣୀ ଦୁହେଁ ଜୀବଙ୍କର ହନ୍ତା ।
ସେ ନ ଥିଲେ ଜନ୍ମ ଆଉ ମୃତ୍ୟୁର ବିଧାନ
ନ ଜାଣି ପାରନ୍ତେ ଧାତା ଶୁଣ ଦେଇ ମନ ।
ତନ୍ଦ୍ରା ଆଉ ପ୍ରୀତି ଦୁହେଁ ନିଦ୍ରାର ତନୟା
ସୁଖର ପ୍ରେୟସୀ ହୋଇ ଅଛନ୍ତି ଯେ ସେହି ।
ବିଧି ବିଧାନରେ ଏହି ଜଗତରେ ଜାଣ
ବ୍ୟାପ୍ତ ହୋଇ ରହିଛନ୍ତି ସେହି ଦୁହେଁ ପୁଣ ।
ଶ୍ରଦ୍ଧା ଭକ୍ତି ବୈରାଗ୍ୟର ଭାର୍ଯ୍ୟା ଅଟନ୍ତି
ପତି ସନ୍ନିଧରେ ସବୁବେଳେ ରହିଛନ୍ତି ।
ହେ ନାରଦ ସେ ଦୁହିଁଙ୍କୁ ପାଇଣ ଜଗତେ
ଇହଲୋକେ ମୁକ୍ତ ହୋଇ ଥାଆନ୍ତି ଜୀବନ୍ତେ ।
ସୁରଭି ଦେବୀ ଅଦିତି ଦେବଙ୍କର ମାତା
ଗାଭୀ ମାନଙ୍କ ଜନନୀ ତ୍ରିପୁର ଶୋଭିତା ।
ଦାନବଙ୍କ ମାତା ଦିତି ବନିତା ବା ଏତ
ଦନୁ ଆଦି କରି ଯେତେ ତ୍ରିପୁରେ ଅଛନ୍ତି ।
ପ୍ରକୃତି ଅଙ୍ଗରୁ ଜନ୍ମ ଲଭିଣ ଏମାନେ
ମନ ଧ୍ୟାନ ଢାଳିଦେଲେ ସୃଷ୍ଟି ସରଜନେ ।
ଏଥିଅନ୍ତେ କାଳମଧ୍ୟ ଆଉ ଯେ ସମ୍ଭୂତ
କହି ବସିଲେ ବର୍ଷକେ ନ ହେବ ସମାପ୍ତ ।
ତାହାଙ୍କ ମଧ୍ୟରୁ କେତେ ଗୋଟିଙ୍କର ନାମ
କହିବା ମନ ଦେଇଣ ଶୁଣ ଋଷିତମ ।
ଚନ୍ଦ୍ରଙ୍କ ପତ୍ନୀ ରୋହିଣୀ ସୂର୍ଯ୍ୟପତ୍ନୀ ଛାୟା
ସଂଜ୍ଞା ନାମେ ସୂର୍ଯ୍ୟଙ୍କର ଆଉ ଏକ ଜାୟା ।

ଶତରୂପା ନାମେ ସତୀ ମନୁଙ୍କ ଘରଣୀ
ଶଚୀଦେବୀ ଇନ୍ଦ୍ରଙ୍କର ପ୍ରିୟବତୀ ରାଣୀ ।
ତାରା ଅଟନ୍ତି ଯେ ବୃହସ୍ପତିଙ୍କର ନାରୀ
ଅରୁନ୍ଧତୀ ବଶିଷ୍ଠଙ୍କ ହୃଦୟ ଈଶ୍ୱରୀ ।
ଅହଲ୍ୟା ନାମରେ ଏକ ଅପୂର୍ବ ସୁନ୍ଦରୀ
ଗୌତମ ଋଷିଙ୍କର ଅଟେ ମନୋହାରୀ ।
ଅତ୍ରି ମୁନିଙ୍କର ନାରୀ ନାମ ଅନସୂୟା
ଦେବହୂତୀ ଅଟନ୍ତି ଯେ କର୍ଦ୍ଦମଙ୍କ ଜାୟା ।
ଦକ୍ଷ ଘରଣୀଙ୍କ ନାମ ଶୁଣ ମନଦେଇ
ପ୍ରସୂତି ବୋଲି ପୁରାଣ ମଧ୍ୟେ ଅଛି ରହି ।
ପିତୃଙ୍କ ମାନସୀ କନ୍ୟା ମେନକା କାମିନୀ
ଯାହାଙ୍କଠାରୁ ଅମ୍ବିକା ଜନମିଲେ ପୁଣି ।
ଲୋପାମୁଦ୍ରା ଆହୁତି ଯେ କୁବେରଙ୍କ ପ୍ରିୟା
ବରୁଣ ଯମଙ୍କ ସ୍ତ୍ରୀ ବଳିଙ୍କର ଜାୟା ।
ଦେବକୀ ଯଶୋଦା ଶୈବ୍ୟା ଦମୟନ୍ତୀ ସତୀ
ଗାନ୍ଧାରୀ ଦ୍ରୌପଦୀ ଆଉ ସାବିତ୍ରୀ ଯେ କୁନ୍ତୀ ।
କଳାବତୀ ରାଣୀ ବୃଷଭାନୁଙ୍କ ଘରଣୀ
ରାଧାଙ୍କ ଜନନୀ ସେହୁ ଶୁଣ ତପିମଣି ।
କୈଟଭୀ ସୁଭଦ୍ରା କଉଶଲ୍ୟା ମନ୍ଦୋଦରୀ
ସତ୍ୟଭାମା ରଇବତୀ କାଳନ୍ଦୀ ସୁନ୍ଦରୀ ।
ମିତ୍ର ବିନ୍ଦା ଜାମ୍ବୁବତୀ ଲକ୍ଷ୍ମଣା ରୁକ୍ମିଣୀ
ବ୍ୟାସଙ୍କ ଜନନୀ ନାମ ସତ୍ୟବତୀ ପୁଣି ।
ଉଷାଚିତ୍ର ଲେଖା ବାଣ ପୁତ୍ରୀ ମହାସତୀ
ଲକ୍ଷ୍ମଣ ଜାନକୀ ଲକ୍ଷ୍ମୀ ଇଳା ନଗ୍ନାଜିତୀ ।
ଭୃଗୁ ଜନନୀ ରେଣୁକା ବଳଦେବଙ୍କର
ଜନନୀ ରୋହିଣୀ ମାତ ସର୍ବ ପରେ ସାର ।
ଏହିପରି ପୁଣ୍ୟମୟ ଏ ଜମ୍ବୁଦ୍ୱୀପରେ
ଜନ୍ମିଛନ୍ତି ବହୁ ବାମା ପ୍ରକୃତି କଳାରେ ।
ଯେତେକ ଗ୍ରାମ୍ୟ ଦେବତା ସ୍ଥାନେ ସ୍ଥାନେ ଛନ୍ତି
ପ୍ରକୃତି କଳାରୁ ସର୍ବେ ଜନ୍ମ ଲଭିଛନ୍ତି ।
ପ୍ରତ୍ୟେକ ଯୁଗରେ ଯେଉଁ ପ୍ରକୃତିର କଳା
ଜନମ ଲଭି ଥାଆନ୍ତି ମଙ୍ଗଳ ମଙ୍ଗଳା ।
ତେଣୁ ଅପମାନ ଯେବେ ଦେବ ରମଣୀଙ୍କୁ
ପ୍ରକୃତି ଅପାର ଶାସ୍ତି ଦେବ ସେ ନରକୁ ।
ଦେଖ ପୁତ୍ରବତୀ ଯେଉଁ ବ୍ରାହ୍ମଣ କାମିନୀ ।
ବସ୍ତ୍ର ଅଳଙ୍କାରେ ତାଙ୍କୁ ତୋଷକଲେ ଆଣି ।

ପ୍ରକୃତି ତାହାଙ୍କପରେ ସନ୍ତୋଷ ଲଭନ୍ତି
ଏ ମାନୁଷ ପୂଜା ସେହୁ ବର ଯାଚି ଦ୍ୟନ୍ତି ।
ହୋଇଥିବ ଆଠ ବର୍ଷ ଯେବଣ କୁମାରୀ
ପୂଜିବ ତାହାକୁ ନାନାଦ୍ରବ୍ୟ ଦେଇକରି ।
ଏମନ୍ତ କଲେ ପ୍ରକୃତି ହୁଅନ୍ତି ସନ୍ତୋଷ
ଏଥିରେ ଜାଣିଥା ମିଥ୍ୟା କଥା ନାହିଁ ଲେଶ ।
ପ୍ରକୃତି ଠାରୁ ଯେତେ ତ ନାରୀ ଜନ୍ମିଛନ୍ତି
ଉତ୍ତମ ମଧ୍ୟମ ଆଉ ନିମ୍ନ ଆଉ ଛନ୍ତି ।
ଯେଉଁମାନେ ଜନ୍ମ ହୋନ୍ତି ସତ୍ତ୍ୱଅଂଶ ଯୋଗ
ବୋଲନ୍ତି ସେ ପତିବ୍ରତା ନାରୀ ଶିରୋମଣି ।
ରଜ ଗୁଣ ଯୋଗ ଜନ୍ମ ହୋଇଥାନ୍ତି ଯେତେ
ସଂସାରରେ ଭୋଗ ଯୋଗ୍ୟ ଅଟନ୍ତି ସମସ୍ତେ ।
ସୁଖଭୋଗ କରିବାକୁ ସଦା ତାଙ୍କମନ
ବଳାଇ ଆପଣ କାର୍ଯ୍ୟ କରନ୍ତି ସାଧନ ।
ତମ ଗୁଣ ଯୋଗ ଜନ୍ମ ହୁଅନ୍ତି ଯେତେକ
କୁଳଶୀଳ ସ୍ୱତ ନ ଜାଣନ୍ତି ମନେ ରଖ ।
କଳହରେ ସବୁବେଳେ ଢାଳିଦ୍ୟନ୍ତି ମନ
କୁଳଟା ନାରୀଙ୍କ ମଧ୍ୟେ ହୁଅନ୍ତି ସେ ଗଣ୍ୟ ।
ପୃଥିବୀ ମଧ୍ୟେ କୁଳଟା ଯାହାକୁ ବୋଲନ୍ତି
ଅମର ମଣ୍ଡଳେ ତାଙ୍କୁ ଅପ୍ସରା କହନ୍ତି ।
ପ୍ରକୃତି ତ ମସ ଗୁଣେ ହୋଇବାରୁ ଜାତ
ପୁଂଶ୍ଚଳୀ ବୋଲିଣ ତାଙ୍କ ନାମ ଅଟେ ଖ୍ୟାତ ।
ପ୍ରକୃତି ଦେବୀ ଚରିତ ଏପରି ଭାବରେ
ପ୍ରବଳ ହୋଇଛନ୍ତି ଏହି ସଂସାର ମଧ୍ୟରେ ।
ଏପୂର୍ବେ ଭୂମି ଭାରତେ ତାଙ୍କ ପୂଜାବିଧି
କରନ୍ତି ମାନବେ ଭକ୍ତିଭାବେ ଦେଇବୁଦ୍ଧି ।
ତେଜସ୍ୱୀ ମଣ୍ଡଳ ନୃପ ସୁରଥ ଆଦ୍ୟରେ
ପୂଜାକଲେ ଶ୍ରୀ ଦୁର୍ଗାଙ୍କୁ ଭକ୍ତି ସହକାରେ ।
ତତପରେ ରାବଣକୁ ମାରିବା ସମୟେ
ଶ୍ରୀରାମ ପୂଜିଲେ ତାଙ୍କୁ ଆପଣା ହୃଦୟେ ।
ତାଙ୍କ ଇଚ୍ଛା ଅନୁସାରେ ବର ଯାଚି ଦେଇ
ଜଗତେ ପୂଜିତା ହେଲେ ଦେବୀ ମହାମାଈ ।
ଦକ୍ଷ ପତ୍ନୀଙ୍କ ଉଦର ମାତ ପ୍ରଥମରେ
ଜନମ ଲଭିଲେ ଦୈତ୍ୟ ନାଶିବାକୁ ପରେ ।
ସେ ଜନମେ ପତିଙ୍କର ନିନ୍ଦାକର୍ଣ୍ଣେ ଶୁଣି
ଯଜ୍ଞ ସ୍ଥାନରେ ଜୀବନ ତେଜିଲେ ମାତ ଜାଣି ।

ତାହାପରେ ହିମାଳୟ ପତ୍ନୀ ଗର୍ଭଜାତ
ହୋଇ ବାଲ୍ୟକାଳେ କଲେ ତପସ୍ୟା ବହୁତ ।
ବହୁ ତପ କରି ଶଙ୍କରଙ୍କୁ ପତିରୂପେ
ବରଣ କରି ବିବାହ କରିଲେ ମା ଆପେ ।
ପୃଣି କେତେଦିନ ଅନ୍ତେ ମାତ ଭଗବତୀ
ଗଣେଶ ନାମରେ ପୁତ୍ର ହେଲେ ଜଗପତି ।
ବିଷ୍ଣୁ ଅଂଶେ କାର୍ତ୍ତିକେୟ ହୋଇଲେକ ଜାତ
ତାହାଙ୍କ ସଙ୍ଗରେ ସମ ନୃହନ୍ତି ଆଦିତ୍ୟ ।
ମଙ୍ଗଳ ଭୂପତି ପରେ ବିଷ୍ଣୁ ପାଟରାଣୀ
ଦେବୀଙ୍କୁ ପୂଜା କରିଲେ ମାତ କମଳିନୀ ।
ଚତୁର୍ଦ୍ଦିଗ ଲୋକରେ ପୂଜା ପାଇଲେକି ମେନ୍ତ
ତାହାଙ୍କ ସଙ୍ଗରେ ସମ ତ୍ରିପୁରେ କେ ନାହିଁ ।
ତାହାପରେ ସାବିତ୍ରୀଙ୍କୁ ସେ ନର ନାଥିକ
ପୂଜା କରିବାରୁ ଭକ୍ତି କଲେ ସବୁଲୋକ ।
ବିଧାତା କରନ୍ତେ ପୂଜା ସରସ୍ୱତୀଙ୍କର
ଅନ୍ୟମାନେ ତାହାସବୁ କେଷିଣ ନେଇର ।
ଅତି ଭକତରେ ମାତାଙ୍କର ପୂଜା କଲେ
ସେହିଦିନୁଁ ବିଦ୍ୟାଦାତ୍ରୀ ନାମ ସେ ବହିଲେ ।
ଗୋଲକେ ରାସମଣ୍ଡଳେ ରାଧା ଠାକୁରାଣୀ
ଶ୍ରୀକୃଷ୍ଣଙ୍କଠାରୁ ପୂଜା ପାଇବାର ଜାଣି ।
ଗୋପୀ ଗୋପାଳ ଆଦିର ଗୋପଶିଶୁ ସାଥେ
ପୂଜା ଆରାଧନା କଲେ ତାହାଙ୍କୁ ସମସ୍ତେ ।
ତାହା ଦେଖି ସୁରାସୁର ଗନ୍ଧର୍ବ କିନ୍ନର
ପୂଜା କରିବାରେ ମନ ଦେଲେ ନିରନ୍ତର ।
ପ୍ରଥମେ ତାହାଙ୍କର ପୂଜା କରିଲେ ମନସ୍ତେ
ରାଧିକା ପ୍ରକୃତି କୃଷ୍ଣ ପ୍ରିୟତମ ଜଗତେ ।
କାର୍ତ୍ତିକ ପୂର୍ଣ୍ଣିମୀ ଦିନ ତାହାଙ୍କ ଅର୍ଚ୍ଚନା
ଦିବସ ହୁଅଇ ଜାଣ ଆହେ ମହାମନା ।
ତାହା ଜାଣି ବ୍ରହ୍ମା ଆଦି ମୁନିଋଷିମାନେ ।
ସେ ଦିନ ତାହାଙ୍କୁ ପୂଜା କରନ୍ତି ଯତ୍ନରେ ।
ଗନ୍ଧ ପୁଷ୍ପ ଧୂପ ଦୀପ ଆସନ ଦେଇ
ନାନା ପରକାର ସ୍ତୁତି ସ୍ତୋତ୍ର ଆଦି ଗାଇ ।
ଦେବ ଋଷିବୃନ୍ଦ ତୋଷେ ବନ୍ଦନା କରନ୍ତି
ଭୂତପତି ସଦାଶିବ ଆନନ୍ଦ ହୁଅନ୍ତି ।
ପୁଣ୍ୟମୟ ଭାରତରେ କରିଲେ ପ୍ରଚାର
ତାହା ଦେଖି ଆରାଧନା କଲେ ସର୍ବ ନର ।
ସେହିଦିନୁଁ ତିନିପୁରେ ହୋଇ ପ୍ରତିଷ୍ଠିତ
ପଞ୍ଚ ଈଶ୍ୱରୀ ମଧ୍ୟେ ହେଲେ ସେ ପୂଜିତ ।
ଏ ସବୁ କଳାରୁ ଜାତ ହୋଇ ଦେବୀଗଣ
ସକଳ ସ୍ଥାନରେ ପୂଜା ଲଭୁଛନ୍ତି ଜାଣ ।
ଗ୍ରାମ୍ୟ ଦେବତା ରୂପରେ ଭାରତବର୍ଷରେ
ବିଜେ କରିଛନ୍ତି ମାତ ପ୍ରତ୍ୟେକ ଗ୍ରାମ୍ୟରେ ।
ପ୍ରକୃତି ମହିମା ଆଉ ତାର ଗୁଣମାନ
କହିଲି ଗୋଟି ଗୋଟି କରିଣ ପ୍ରଣିଧାନ ।
ଆଉ ଯେବେ ଶୁଣିବାକୁ ମନ ଅଛି ତବ
ପଚାର ସମସ୍ତ ଗାଥା ଦେବଇଁ ବୁଝାଇ ।
ଏଥର କହି ମଉନ ହେଲେ ନାରାୟଣ
ଅଧମ କ୍ଷେତ୍ର ମୋହନ ସେ ପାଦେ ଶରଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ପ୍ରକୃତି ବର୍ଣ୍ଣନେ ନାମ ପ୍ରଥମୋଽଧ୍ୟାୟଃ

—-—o—-—

## ଦ୍ୱିତୀୟ ଅଧ୍ୟାୟ

## ନାରାୟଣଙ୍କଠାରୁ ଦେବ ଦେବୀମାନଙ୍କର ଉତ୍ପତ୍ତି ବିଧାନ

ଶୁଣ ୨ ସାଧୁଜନେ ଅପୂର୍ବ କଥନ
ଯାହା ଶ୍ରବଣରେ ପାପ ହୋଇବ ମୋଚନ ।
ଏରୂପେ ଦେ ଦ ନାରାୟ ି ନୀ
ଶୁଣି ତାଙ୍କୁ ପଚାରିଲେ ଶୌନକ ସତ୍ତର ।
ଆହେ ତ୍ରୈଗୁଣିକ ତବ ମୁଖୁଁ ଏ ପ୍ରକୃତି
ବର୍ଣ୍ଣିଲ ଶୁଣି ମୋ ମନ ହୋଇଲାକ ତୃପ୍ତି ।
ୀ କ ନ୍ଧ ସ୍ୱ ମୋହର
ମୋଚନ କରନ୍ତୁ ଦାରେ ତପୀଙ୍କ ଶେଖର ।

କି ରୂପେ ପ୍ରକୃତି ଦେବୀ ସୃଷ୍ଟି ଆରମ୍ଭରେ
ଜାତ ହେଲେ ବସ୍ତ୍ରାକର ରୂହନ୍ତୁ ଏଠାରେ ।
ପୁଣି ନିଜେ କେଉଁପରି ହେଲେ ପାଞ୍ଚଭାଗ
ଏକଥା ଶୁଣିବା ପାଇଁ ବଳନ୍ତୁ ସରାଗ ।
କେଉଁ କେଉଁ କଳା ଯେବେ ହେଲେ ତ୍ରିଗୁଣ
ଅବନୀ ମଧ୍ୟରେ ଜାତ ହୋଇ ନାରାୟଣ
ତାହାଙ୍କ ଚରିତ ସବୁ ଉତ୍ତମ ଭାବରେ
ଶୁଣିବା ପାଇଁକି ଇଚ୍ଛା କରନ୍ତି ମନରେ ।
ମୁଖ୍ୟ ଦେବୀଙ୍କର ଜନ୍ମ ପୂଜାମନ୍ତ୍ର ଧ୍ୟାନ
ସ୍ତୋତ୍ର କବଚ ଐଶ୍ୱର୍ଯ୍ୟ ଆଦି କଥାମାନ ।
ଆପଣଙ୍କ ଶ୍ରୀ ମୁଖରୁ କରିଲେ ଶ୍ରବଣ
ସଂଶୟ ହୋଇବ ଦୂର ଆହେ ତପିରାଣ ।
ଦସ୍ତ୍ରାକର ପ୍ରକାଶନ୍ତୁ ଆଗରେ ମୋହର
ସଂଶୟ ସମସ୍ତ ମନୁଁ ହୋଇବ ଯେ ଦୂର ।
ଏହିରୂପେ ନାରଦଙ୍କ ବଚନକୁ ଶୁଣି
କହି ଆରମ୍ଭିଲେ ନାରାୟଣ ପୁଣ ପୁଣି ।
ବୋଇଲେ ହେ ମୁନି ଶୁଣ ହୋଇ ସାବଧାନ
କହିବା ପୁଚ୍ଛିଲ ଯାହା ତାହାର ବିଧାନ ।
କାଳ ଦିଗ ସହିତରେ ଆଶା ଅନ୍ତରୀକ୍ଷ
ନିତ୍ୟ ପଦାର୍ଥ ସବୁର ମତରେ ପ୍ରତ୍ୟକ୍ଷ ।
ନିତ୍ୟ ଗୋଲକ ଅଟଇ ବ୍ରହ୍ମାଣ୍ଡ ମଧ୍ୟରେ
ଶ୍ରୀକୃଷ୍ଣ ବାସ କରଣ ଛନ୍ତି ତା ମଧ୍ୟରେ ।
ତାହାର ଗୋଟିଏ ଅଂଶ ବୈକୁଣ୍ଠ ଅଟଇ
କହୁଛି ସେକଥା ତାରେ ଶୁଣ ମନଦେଇ ।
ବ୍ରହ୍ମରେ କି ଲୀନ ହୋଇ ପ୍ରକୃତି ଦେବତା
ଥିବାରୁ ଅଟଇ ନିତ୍ୟ ତାହାଙ୍କର ସତ୍ତା ।
ଯେପରି ଅନଳେ ଅଛି ଦାହିକା ଶକତି
ଚନ୍ଦ୍ର ପଦ୍ମରେ ସୌନ୍ଦର୍ଯ୍ୟ ସୂର୍ଯ୍ୟଠାରେ କାନ୍ତି
ଥାଇ ଜେମନ୍ତ ଭାବରେ ପ୍ରକୃତି ଆଶାରେ
ବିରାଜିତା ହୋଇଥାନ୍ତି ନିତ୍ୟ ସ୍ୱରୂପରେ ।
ସ୍ୱର୍ଣ୍ଣକାର କୁମ୍ଭାକାର ସୁବର୍ଣ୍ଣ ମୃତ୍ତିକା
ନଥିଲେ ରହନ୍ତି ଯେହ୍ନେ ହୋଇଣ ତାଟକା ।
ସେହିପରି ତାଙ୍କ ବିନା ବ୍ରହ୍ମମୟ ହରି
ନ ପାରନ୍ତି କେବେଁ ସୃଷ୍ଟି ସରଜନା କରି ।
ସର୍ବ ଶକ୍ତି ସ୍ୱରୂପା ସେ ହୋଇଛନ୍ତି ବୋଲି
ତାଙ୍କ ଯୋଗ ଯେଣୁ ବ୍ରହ୍ମସୃଷ୍ଟି ଶକ୍ତିଶାଳୀ ।

ଶକ୍' ଶବ୍ଦ ଯେ ଶ୍ରୀଶ୍ୱର୍ଯ୍ୟ ଆତ୍ମା ପ୍ରକାଶଇ
ତି' ଶବ୍ଦରୁ ପରାକ୍ରମ ଜଣାଯାଇ ।
ସେଥିଲାଗି ଅଷ୍ଟୈଶ୍ୱର୍ଯ୍ୟ ଦେବାକୁ ସମର୍ଥ
ଯେ ଅଟନ୍ତି ସେହି ଏକା ଶକ୍ତି ଶବ୍ଦ ଅର୍ଥ ।
ସମୃଦ୍ଧି ବୁଦ୍ଧି ସମ୍ପତ୍ତି ଯଶ ଏହିପରି
ଭଗ ଶବ୍ଦରୁ ବୁଝାଯାଏ ଅର୍ଥ ଧୀର ।
ଏ ସର୍ବ ଶକ୍ତିଙ୍କଠାରେ ଥିବାରୁଟି ଜାଣ
ତାହାଙ୍କର ନାମ ଭଗବତୀ ଯେ ପ୍ରମାଣ ।
ଭଗ ବୋଲକର ପୁଣି ଅଟଇ ଭାବରେ
ଆହେ ତପସ୍ୱୀ ତାଙ୍କୁ ବୋଲନ୍ତି ବିଧିରେ ।
ତାଙ୍କ ସହିତରେ ଆତ୍ମା ଥିବାରୁ ସତତେ ।
ଭଗବାନ ନାମ ପାଇ ଅଛନ୍ତି ଜଗତେ ।
ଇଚ୍ଛାମୟ ଶ୍ରୀକୃଷ୍ଣଟି ବୋଲି ତାଙ୍କୁ ଜାଣ
ସାକାର ହେଲେହେଁ ନିରାକାର ସେହି ପୁଣ ।
ତେଜରୂପେ ଯୋଗୀଙ୍କର ନୟନ ଗୋଚର
ହୋଇଥାନ୍ତି ତପବଳେ ପ୍ରଭୁ ଯୋଗୀଶ୍ୱର ।
ପରମାତ୍ମା ପରଂବ୍ରହ୍ମ ବୋଲନ୍ତି ତାହାଙ୍କୁ
ନିଜେ ଦେଖା ନ ଦେଇ ସେ ଦେଖନ୍ତି ସବୁଙ୍କୁ ।
ସର୍ବଦାତା ସର୍ବଜ୍ଞାତା ସମସ୍ତ କାରଣ ।
ସର୍ବରୂପ ରୂପଶୂନ୍ୟ ଅଟନ୍ତି ସେ ଜାଣ ।
ମାନବ ଯେ ସୂକ୍ଷ୍ମଦର୍ଶୀ ବଇଷ୍ଣବମାନେ
ରୂପ ନ ଦେଖିଲେ ପ୍ରୀତେ ନ ଯାଆନ୍ତି ମନେ ।
ବୋଲନ୍ତି କାହାର ତେଜ ଜଣାଯିବ କିସ
ତେଜୋବନ୍ତ ବ୍ୟକ୍ତି ଯେବେ ନ ହେବ ପ୍ରକାଶ ।
ଏତେ ବୋଲି ଦିବ୍ୟ ନେତ୍ରେ ନିରୀକ୍ଷଣ କରି
ଦେଖନ୍ତି ସେ ଦିବ୍ୟ ତେଜ ମଧ୍ୟରେ ଶ୍ରୀହରି ।
ସ୍ୱେଚ୍ଛାମୟ ସର୍ବରୂପ ସକଳ କାରଣ
ଅତ୍ୟନ୍ତ ସୁନ୍ଦର ମନୋହର ବେଶ ପୁଣ ।
କିଶୋର ବୟସ ଶାନ୍ତ ସୁଧୀର ସ୍ୱଭାବ ।
ପରମ ପୁରୁଷ ବିଶ୍ୱରୂପ ବାସୁଦେବ ।
ନବୀନ ନୀରଦ ଦୁର୍ବା ଶ୍ୟାମଳ ବରନ
ହସନ୍ତି ରାସମଣ୍ଡଳ ମଧ୍ୟରେ ଶୋଭନ ।
ଶରତକାଳ ମଧ୍ୟାହ୍ନ ପଦ୍ମଦଳ ସମ
ଦେଖାଯାଏ ନେତ୍ରଯୁଗ ଅତି ମନୋରମ ।
ଗୁମ୍ଫିତ ମୁକୁତା ଶ୍ରେଣୀ ପ୍ରାୟେ ଦନ୍ତପନ୍ତି
ନିନ୍ଦା କରଇ ତେଜରେ କୁନ୍ଦଚନ୍ଦ୍ର କାନ୍ତି ।

ଶିଖାରେ ବିଚିତ୍ର କେକୀପୁଚ୍ଛ ଶୋଭିବନ
ମାଳତୀ କୁସୁମ ମାଳା ଗଳେ ଲମ୍ବମାନ
ସସ୍ମିତ ସୁନ୍ଦର ମୁଖ ପଦ୍ମ ବିରାଜିତ
ଅଗ୍ନି ଶୌଚ ବସ୍ତ୍ର ଯୋଗେ କଟି ସୁଲଳିତ ।
ଆଜାନୁ ଲମ୍ବିତ ବେନିବାହୁ ଅତ୍ୟଶୋଭା
କରିକର ସରୋରୁହ କି ଉପମା କେବା ।
ହସ୍ତରେ ମୁରଲୀ ଦିଶେ ଅତି ମନୋହର
ରତ୍ନ ଅଳଙ୍କାରେ ପୂର୍ଣ୍ଣ ସମସ୍ତ ଶରୀର
ସର୍ବାଧାର ସର୍ବେଶ ସର୍ବଶକ୍ତି ଯୁତ
ଐଶ୍ୱର୍ଯ୍ୟ ଦାୟକ ପ୍ରଭୁ ମଙ୍ଗଳ ସଙ୍କେତ ।
ଏମନ୍ତ ରୂପକୁ ବଇଷ୍ଣବେ ଧ୍ୟାନକରି
ମହା ଆନନ୍ଦରେ ଦିନ ନେଉଥାନ୍ତି ହରି ।
ତାଙ୍କ ପ୍ରସାଦରେ ଜନ୍ମ ମୃତ୍ୟୁ ଜରା ବ୍ୟାଧି
କେତେବେଳେ ଶରୀରକୁ ନ ପାରଇ ବାଧି ।
ବ୍ରହ୍ମାଙ୍କର ବରଷକେ ଗୋଟିଏ ନିମେଷ
ସେ ମହାତ୍ମା ପ୍ରଭୁଙ୍କର ହୋଇଥାଏ ଶେଷ ।
ଶ୍ରୀକୃଷ୍ଣ ନାମରେ ସେହି ବିଖ୍ୟାତ ଅଟନ୍ତି
ଚରାଚର ପ୍ରାଣୀ ଜଗତରେ ବିରାଜନ୍ତି ।
କୃଷ ଶବ୍ଦ କୃଷ୍ଣଭକ୍ତି ଅର୍ଥକୁ ବୁଝାଏ
ଣକାର ତାହାଙ୍କ ଦାସୀ ଭାବ ଅର୍ଥ ଦିଏ ।
ଆପଣାର ଭକ୍ତି ଦାସ୍ୟ ଦିଅଇଟି ସେହି
ସେଥି କାରଣରୁ କୃଷ୍ଣ ବୋଲି ତାଙ୍କୁ କହି ।
କୃଷ ଶବ୍ଦ ପୁଣି ସର୍ବ ବାଚକ ହୁଅଇ
ଣକାର ବୀଜ ଅର୍ଥକୁ ପ୍ରକାଶ କରଇ ।
ସର୍ବବୀଜ ପରଂବ୍ରହ୍ମ ସ୍ୱରୂପ ହେବାରୁ
କୃଷ୍ଣ ନାମ ତାହାଙ୍କର ହେଲା ପ୍ରଥମରୁ ।
ଅସଂଖ୍ୟ ବ୍ରହ୍ମାଙ୍କ ନାଶ ହେଲାପରେ ପୁଣି
ଗତହେଲେ ତତକାଳ ଆହେ ଋଷିମଣି ।
ଯାହାଙ୍କର ଗୁଣନ୍ଦୁଁ ଲବେ ମାତ୍ର କ୍ଷୟ
ସେ ପ୍ରଭୁ ନିର୍ଗୁଣ ନିରାକାର ନିରାମୟ ।
ସକଳ ସୃଷ୍ଟି ଆଦରେ ଏକ ହୋଇଥିଲେ
ସର୍ଜନା କରିବାପାଇଁ ମନ ବଳାଇଲେ ।
ନିଜ ଇଚ୍ଛା ଅନୁସାରେ ଆପଣା ଦେହକୁ
ଦୁଇଭାଗ କରିଦେଲେ ବଢ଼ି ସନ୍ତୋଷକୁ
କାମିନୀ ସ୍ୱରୂପ ହେଲା ବାମଭାଗ ଅଂଶ
ଦକ୍ଷିଣ ଭାଗ ଯେସନି ହୋଇଲା ପୁରୁଷ !

ଅତ୍ୟନ୍ତ ସୁନ୍ଦରୀ ସେହି କାମିନୀ ରତନ
ସ୍ୱର୍ଣ୍ଣ ଚମ୍ପକ ସଦୃଶେ ଦିଶଇ ବରନ ।
ଚନ୍ଦ୍ରମା ମଣ୍ଡଳ ତୁଲ୍ୟ ନିତମ୍ବ ଯୁଗଳ
କରିକର ପରି ଶ୍ରୋଣୀ ଅଟଇ ମଞ୍ଜୁଳ ।
ଶ୍ରୀଫଳ ଆକାରେ ବେନି ସ୍ତନ ମନୋହର
ଦରଶନେ ମୁନି ମନ ହୋଇବ ଅସ୍ଥିର ।
ଡମ୍ବରୁ ସମାନ ମଧ୍ୟଭାଗ ଅତି କ୍ଷୀଣ
ମନୋରମ ଦିଶେ ପୁଷ୍ଟ ଶୁଭ୍ର ଅପଘନ ।
ସୁଶୀଳ ସସ୍ମିତ ମୁଖ ସୁବିଶାଳ ନେତ୍ର
ଯେସନେ ଶାରଦା ବିକଶିତ ପଦ୍ମପତ୍ର ।
ବହ୍ନି ଶୁଦ୍ଧ ବସନରେ ଅଙ୍ଗ ଶୋଭାକଲା
ନାନାବିଧ ରତ୍ନ ଅଳଙ୍କାରେ ଦିଶେ ଝଲା ।
ନୟନ ଚକୋର ତାର ଶ୍ରୀକୃଷ୍ଣଙ୍କଠାରେ
ପୁନଃ ପୁନଃ ମୁଖଚନ୍ଦ୍ର କର ପାନ କରେ ।
କସ୍ତୁରୀ କୁଙ୍କୁମ ବିନ୍ଦୁ ସହିତେ ଚନ୍ଦନ
ତିଳକ ଲଲାଟପଟେ ଦିଶେ ଶୋଭାବନ ।
ତା ପାଖେ ସିନ୍ଦୁରବିନ୍ଦୁ ବାଳଇନ୍ଦୁ ପରି
ପ୍ରକାଶ କରଇ ମୁଖମଣ୍ଡଳ ମାଧୁରୀ ।
ବଙ୍କିମ କବରୀଭାର ମାଳତୀ କୁସୁମ
ମାଳା ଯେଣିକାରୁ ଦିଶୁଅଛି ମନୋରମ ।
ରତ୍ନସାରହାର ଲମ୍ବି ହୃଦୟ ଦେଶରେ
ପ୍ରତ୍ୟୁଷଜଳଦ ବିଦ୍ୟୁଲ୍ଲେଖା ନିଭାକରେ ।
ଶରଦ ପାର୍ବଣ କୋଟି ଚନ୍ଦ୍ର ପ୍ରକାଶିନୀ ।
ଦରଶକ ମନ ନେତ୍ର ନେଉଅଛି କିଣି ।
ରାଜ ହଂସ ଗଜରାଜ ଖଞ୍ଜରୀଟ ଗତି
ଗତିରେ ଛଡ଼ାଇ ନେଇଅଛି ସେ ସୁବତୀ ।
ଏମନ୍ତ ସୁଷମାମୟ ରମଣୀକୁ ଦେଖି
ରାସଅଧିପତି କୃଷ୍ଣହୋଇ ମହାସୁଖୀ ।
ଏକାନ୍ତରେ ନେଇ ତାଙ୍କୁ ନାନା କଉତୁକେ
ରାସମଣ୍ଡଳରେ କ୍ରୀଡ଼ା କଲେ ଯେ କୌତୁକେ ।
ମୂର୍ତ୍ତିମନ୍ତ ଆଦିରସ ସଦୃଶ ଶ୍ରୀହରି
ଉପଭୋଗ କଲେ କାମ ସୁଖରେ ବିହରି ।
ବ୍ରହ୍ମାଙ୍କ ବୟସ ଅଟେ ଯେତେକ ସମସ୍ତ
ମୁହୂର୍ତ୍ତେକ ପରି ତାହା ହୋଇଗଲା ଅସ୍ତ ।
ଯେ ଅନ୍ତରେ ରତିଶ୍ରମେ ସେ ରମଣୀଠାରେ
ବୀର୍ଯ୍ୟ ନିବେଶିତ କଲେ ଶୁଭ ସମୟରେ ।

ସେ ସକାଶୁଁ ଖେଦ ପାଇ ସେ ସୁନ୍ଦରୀ ସ୍ତ୍ରିଶ
ନିଜ ଦେହୁ ସ୍ୱେଦଧାର ଦେଲାକ ଉଦ୍‌ଗାର ।
ଏ ବାହାରେ ଖରଳର ନିଃଶ୍ୱାସ ମୁଞ୍ଚିଲ
ଶୁଣ ହେ ନାରଦ ଏଥୁଅନ୍ତେ ଯାହା ହେଲ ।
ଯେଉଁ ଶ୍ରମଜଳ ଜାତ ହୋଇଥିଲା ତହିଁ
ବିଶ୍ୱଗୋଳକ ଜଗତେ ବୋଲାଇଲା ସେହି ।
ନିଃଶ୍ୱାସ ପବନ ବାୟୁ ନାମକୁ ବହିଲା
ଆଧାର ଭାବରେ ବିଶ୍ୱ ମଧ୍ୟରେ ରହିଲା ।
ସେ ବାୟୁର ବାମଭାଗୁଁ ହେଲା ଏକ ସ୍ତ୍ରିଶ
ପବନଦେବତାଙ୍କର ସେହି ମନୋହାରୀ ।
ତାହାଠାରୁ ପାଞ୍ଚଗୋଟି ସୁତ ଜାତ ହେଲେ
ସବୁ ପ୍ରାଣୀଙ୍କର ପଞ୍ଚପ୍ରାଣ ବୋଲାଇଲେ ।
ପ୍ରାଣ ଅପାନ ସମାନ ଉଦାନ ସେ ବ୍ୟାନ
ଏପରି ତାହାଙ୍କ ନାମ ଆହେ ତପୋଧନ ।
ଜଗତରେ ଉପକାର କରିଣ ସେମାନେ
ସଞ୍ଚାର କରନ୍ତି ବୁଲିବୁଲି ସ୍ଥାନେ ସ୍ଥାନେ ।
ସ୍ୱେଦଜଳ ଅଧିଷ୍ଠିତ ଦେବତା ବରୁଣ
ନାମରେ ବିଖ୍ୟାତ ହୋଇ ରହିଲେଟି ଜାଣ ।
ତାଙ୍କ ବାମ ଭାଗୁଁ ତାଙ୍କ ପତ୍ନୀ ହୋଇଲେ ଜାତ
ବରୁଣାନୀ ବୋଲି ହେଲେ ସଂସାରେ ବିଖ୍ୟାତ ।
ଏଥୁଅନନ୍ତରେ କୃଷ୍ଣ ଶକ୍ତି ମହାମାୟା
ଗର୍ଭଧାରଣ କଲନ୍ତେ ପୁଷ୍ଟ ହେଲା କାୟା ।
ଶତେ ମନ୍ୱନ୍ତର ଯାଏ ବ୍ରହ୍ମତେଜ ଘେନି
ଅତିଶୟ ଦୀପ୍ତିମନ୍ତ ଦେଖାଗଲେ ପୁଣି ।
କୃଷ୍ଣଙ୍କର ପ୍ରାଣ ଅଧିଷ୍ଠାତ୍ରୀ ଦେବୀ ସେହି
ପ୍ରାଣୁ ଅଧିକ ମଣନ୍ତି ଜଗତ ଗୋସାଇଁ ।
ସବୁବେଳେ ତାହାଙ୍କର ସଙ୍ଗିନୀ ଅଟନ୍ତି
ସ୍ଥଳପରି ଅନୁଗତ ହୋଇ ରହିଥାନ୍ତି ।
ଏହିପରି ଶତେ ମନ୍ୱନ୍ତର ଗତ ହେଲା
ପ୍ରସବ କଲେ ସେ ରମ୍ୟ କୁଞ୍ଚିତ କୁନ୍ତଳା ।
ବୃହତ ଆକାର ଡିମ୍ବ ଗୋଟି ହେଲା ଜାତ
ବିଶ୍ୱ ଧାର ଅଟଇ ସେ ଆହେ ତପୋବନ୍ତ ।
ବ୍ରହ୍ମବୀର୍ଯ୍ୟରେ ଯେଣୁ ସେ ଉତ୍ପନ୍ନ ହୋଇଲା
ବ୍ରହ୍ମାଣ୍ଡ ବୋଲିଣ ନିଜ ନାମକୁ ପାଇଲା ।
ତାହାକୁ ଦେ[illegible] ଦେବୀ ମନରେ ବିରତ
ହେଲେ ସେ ଅନ୍ତରେ ପୁଣି ଅଳ୍ପ ମାତ୍ର ଶେଷ ।

ଗୋଲକ ଜଳେ ତାହାକୁ ବିସର୍ଜନ କଲେ
ଶ୍ରୀକୃଷ୍ଣଙ୍କୁ ଅନାଇଣ ମଉନେ ରହିଲେ ।
ତାହା ଦେଖି ମହାପ୍ରଭୁ ହାହାକାର କରି
ବୁହାଇଲେ ନୟନରୁ ଶୋକ ଅଶ୍ରୁ ବାରି ।
ବୋଇଲେ ଗୋ ଦୁଷ୍ଟମତି ନିଷ୍ଠୁର ସ୍ୱଭାବେ
କ୍ରୋଧରେ ଯେ ମନ୍ଦକାର୍ଯ୍ୟ କଲ ତୁମ୍ଭେ ଏବେ ।
ଏହିରୂପେ କରିବାର ନୁହଇ ଉଚିତ
କହି ଶାପ ଦେବାପାଇଁ ବୋଇଲେ ତ୍ୱରିତ ।
ଉପଯୁକ୍ତ ଶାପ ଆମ୍ଭେ ଦେଉଅଛୁ ଜାଣ
ଆଜଠୁଁ ଅପତ୍ୟ ଶୂନ୍ୟ ବୋଲାଇବ ପୁଣ ।
ତୁମ୍ଭଠାରୁ ଏଥୁଅନ୍ତେ ହୋଇବ ଯେ ଜାତ
ଅପତ୍ୟହୀନ ହୋଇବ ସେ ମଧ୍ୟ ଜଗତ ।
ସର୍ବଦା ସ୍ଥିର ହୋଇଣ ତାଙ୍କ ଯଉବନ
ତୁମ୍ଭ ସମାନ ରହିବ ମନ ମଧ୍ୟେ ଘେନ ।
ଏ ସମୟେ ଦେବୀଙ୍କର ଜିହ୍ୱାରୁ ଜନମ
ହେଲା କନ୍ୟାଟିଏ ରୂପେ ଅଟେ ଅନୁପମ ।
ଶୁକ୍ଳବର୍ଣ୍ଣ ମନୋହର ଦିଶଇ ସର୍ବାଙ୍ଗ
ଲଳିତ ପୀତବସନ ହୋଇଅଛି ସଙ୍ଗ ।
ବିରାଜଇ ଅଷ୍ଟରତ୍ନ ନିର୍ମିତ ଭୂଷଣ
ହସ୍ତରେ ଦିଶଇ ବୀଣା ପୁସ୍ତକ ଶୋଭନ ।
ସର୍ବଶାସ୍ତ୍ର ଅଧିକାରୀ ଦେବତାଟି ସେହି
ତାଙ୍କବିନା ବିଦ୍ୟା ଦେଇ ନ ପାରନ୍ତି କେହି ।
ଏଥୁଅନନ୍ତରେ କେତେକାଳ ଗଲା ପରେ
ଦୁଇଭାଗ ହେଲେ ଦେବୀ ପୁଣି ଆଉଥରେ ।
ବାମ ଭାଗଟି କମଳା ନାମେ ଖ୍ୟାତ ହେଲେ
ଦକ୍ଷିଣ ଭାଗ ରାଧିକା ନାମକୁ ପାଇଲେ ।
ସେହିରୂପେ ଆପଣାର ଅଙ୍ଗକୁ ଶ୍ରୀହରି
ଦୁଇଭାଗ କଲେ ପୁଣି ବିଳମ୍ବ ନ କରି ।
ଦୁଇଗୋଟି ଭାଗ ଦୁଇ ପୁରୁଷ ହୋଇଲେ ।
ଦକ୍ଷିଣ ଭାଗ ପୁରୁଷ ଦ୍ୱିଭୁଜ ବହିଲେ ।
ବାମଭାଗ ପୁରୁଷଙ୍କ ବାହୁ ଚତୁଷ୍ଟୟ
ହେଲା ସେ କାଳରେ ଆହେ ବ୍ରହ୍ମାଙ୍କ ତନୟ ।
ଦ୍ୱିଭୁଜ ପୁରୁଷ ନିଜେ ଶ୍ରୀକୃଷ୍ଣ ଅଟନ୍ତି
ଅନ୍ୟ ପୁରୁଷ ଯେ ନାରାୟଣ ନାମେ ଖ୍ୟାତି
ସ[illegible]ସ୍ୱତୀଙ୍କ ମୁଖକୁ ଶ୍ରୀକୃଷ୍ଣ ଅନାଇଁ
ବୋଇଲେ ମୋ ପାରୁ ଶୁଣ ଆଗୋ ବାକ୍ୟଦେଈ

ନାରାୟଣଙ୍କର ସ୍ତ୍ରୀ ହୁଅ ଏତେକ ତୁମ୍ଭେ
ସନ୍ତୋଷରେ ଉପଦେଶ ଦେଉଅଛୁ ଆମ୍ଭେ ।
ସେମାନରେ ମାନିନୀ ହୋଇ ରାଧିକା ସୁନ୍ଦରୀ
ଅତ୍ୟନ୍ତ ତ ମୋହର ସେ ହେବେ ମନୋହାରୀ ।
ଏହା କହିକରି ପୁଣି କମଳାଦେବୀଙ୍କୁ
ସମର୍ପଣ କଲେ ନେଇ ସେ ନାରାୟଣଙ୍କୁ ।
ସେ ଦୁହିଙ୍କୁ ସଙ୍ଗେ ଘେନି ପ୍ରଭୁ ନାରାୟଣ
ବୈକୁଣ୍ଠ ଭୁବନକୁ କଲେକ ପ୍ରୟାଣ ।
ସେ ଦୁହେଁ ଅପତ୍ୟହୀନ ହୋଇଣ ରହିଲେ
ଯେଣୁ ସେ ରାଧିକାଙ୍କର ଅଂଶେ ଜନ୍ମିଥିଲେ ।
ନାରାୟଣଙ୍କ ଅଙ୍ଗରୁ ପାରିଷଦଗଣ
ଚତୁର୍ଭୁଜ ହୋଇ ଜାତହେଲେ ସେହିକ୍ଷଣ ।
ତେଜ ଓଜ ବଳ ରୂପ ବୟସେ ସମାନ
ଅଟନ୍ତି ଶ୍ରୀହରିଙ୍କର ସେ ସମସ୍ତ ଜାଣ ।
କମଳାଦେବୀଙ୍କ ଅଙ୍ଗୁ କୋଟି କୋଟି ଦାସୀ
ଜନମିଲେ ତାଙ୍କର ସେ ସମାନ ବୟସୀ ।
ସେପରି ଗୋଲୋକନାଥ କୃଷ୍ଣଙ୍କ ଦେହରୁ
ଜାତ ହେଲେ ଗୋପଗଣ ରୂପେ ଅତି ଗୁରୁ ।
ଆଉରି ବୟସ ତେଜେ ସମାନ ତାଙ୍କର
ହୋଇଥିଲେ ଆହେ ମୁନି ଋଷିଙ୍କର ବର ।
ପୁଣି ପାରିଷଦଗଣ ସମାନ ରୂପରେ
ଜନମିଲେ ତାଙ୍କଠାରୁ ସେହି ସମୟରେ ।
ରାଧାଙ୍କ ରୋମକୂଳରେ ଗୋପାଳ କନ୍ୟକା
ଅସଂଖ୍ୟ ଜନମ ହେଲେ ସେ କାଳରେ ଏକା ।
ତାହାଙ୍କ ରୂପଗୁଣରୁ କିଞ୍ଚିତ ନ୍ୟୂନ
କେହିହେଲେ ହୋଇ ନ ଥିଲେଟି ମନେଘେନ ।
ସବୁରି ଅଙ୍ଗରେ ନବ ଯଉବନ ଥିଲା
ସୁବର୍ଣ୍ଣ ଭୂଷଣେ ଶୋଭା ଦିଶୁଥିଲ ବଳ ।
ଶ୍ରୀକୃଷ୍ଣଙ୍କ ଶାପଯୋଗେ ସକଳ କାମିନୀ
ଅପତ୍ୟବିହୀନ ହେଲେ ହେ ନାରଦମୁନି ।
ଏଥିଅନ୍ତେ ଶ୍ରୀକୃଷ୍ଣଙ୍କ ଦେହରୁ ସେକ୍ଷଣି
ବାହାର ହୋଇଲେ ଦୁର୍ଗାଦେବୀ ଠାକୁରାଣୀ ।
ଅଟନ୍ତି ସେ ବଇଷ୍ଣବୀ ମାୟା ସନାତନୀ
ନାରାୟଣ ଶିବ ସର୍ବଶକ୍ତି ସ୍ୱରୂପିଣୀ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ବୁଦ୍ଧି ଅଧିଷ୍ଠାତ୍ରୀ
ଦେବତା ଅଟନ୍ତି ସେହି ତ୍ରିଜଗତଧାତ୍ରୀ ।
ସର୍ବଦେବୀଙ୍କର ବୀଜ ସ୍ୱରୂପ ଅଟନ୍ତି
ସେହିକାରଣରୁ ମୂଳ ପ୍ରକୃତି ବୋଲନ୍ତି ।
ତପତ କାଞ୍ଚନପରି ବରଣ ଅଙ୍ଗଶୋଭା
କୋଟିସୂର୍ଯ୍ୟ ସମାନରେ ବିରାଜଇ ପ୍ରଭା ।
ମନୋହର ମନ୍ଦହାସେ ଶ୍ରୀମୁଖ ମଣ୍ଡିତ
ସାଜଇ ସହସ୍ର ଭୁଜେ ଶସ୍ତ୍ର ଅସ୍ତ୍ର ମାଳ ।
ତିନିନୟନା ବହ୍ନିଶୁଦ୍ଧ ବସନ ଧାରଣୀ
ଦିବ୍ୟରତ୍ନ ବିଭୂଷିତା ସୌନ୍ଦର୍ଯ୍ୟଶାଳିନୀ ।
ଯାହାଙ୍କ ଅଂଶ କଳାରେ ସକଳ ସେ ସ୍ଥିତ
ଜନମ ହୋଇଣ ପୂରି ଅଛନ୍ତି ଜଗତ ।
ଏ ବାହାରେ ତ୍ରିଲୋକ ଜୀବଜନ୍ତୁଗଣ
ଯାହାଙ୍କ ମାୟାରେ ମୋହ ପାଇଥାନ୍ତି ଜାଣ ।
ଐଶ୍ୱର୍ଯ୍ୟଦାୟିନୀ ସେହି ସଦାଶିବପ୍ରିୟା
ସନ୍ତୋଷ ହେଲେ ଦିଅନ୍ତି ମାଗଇ ଯେ ଯାହା ।
ବଇଷ୍ଣବମାନଙ୍କର ତାଙ୍କ ସେବା ବଳେ
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି ହୁଅଇ ନିଶ୍ଚଳେ ।
ମୁମୁକ୍ଷୁମାନଙ୍କର ସେ ମୋକ୍ଷଦାୟିନୀ
ସୁଖ ଅଭିଳାଷୀଙ୍କର ଆନନ୍ଦକାରିଣୀ ।
ସ୍ୱର୍ଗଭୁବନରେ ସ୍ୱର୍ଗଲକ୍ଷ୍ମୀ ସେ ଅଟନ୍ତି
ଗୃହସ୍ଥଙ୍କ ଘରେ ଗୃହଲକ୍ଷ୍ମୀ ବୋଲାଅନ୍ତି ।
ତପସ୍ୱୀଙ୍କ ତପରୂପେ ହୁଅନ୍ତି ପ୍ରକାଶ
କରନ୍ତି ରାଜଭବନେ ଲକ୍ଷ୍ମୀରୂପେ ବାସ ।
ଅଗ୍ନିରେ ଦାହିକାଶକ୍ତି ସୂର୍ଯ୍ୟଠାରେ ପ୍ରଭା
ଚନ୍ଦ୍ରପଦ୍ମ ଦୁହିଙ୍କରେ ଅଟନ୍ତି ସେ ଶୋଭା ।
ପରମାତ୍ମା ଶ୍ରୀକୃଷ୍ଣଙ୍କଠାରେ ମହାମାୟା
ସର୍ବଶକ୍ତି ରୂପେ ପୁଷ୍ଟ କରିଥାନ୍ତି କାୟା ।
ତାଙ୍କଯୋଗେ ପରମାତ୍ମା ଅଟନ୍ତି ଶକ୍ତିମନ୍ତ
ଏ ବାହାରେ କାର୍ଯ୍ୟଦକ୍ଷ ହୁଅଇ ଜଗତ ।
ସେ ନ ଥାନ୍ତେ ଯେବେ ମହାଜ୍ଞାନବାଦୀ ମାନବେ
ମୃତତୁଲ୍ୟ ହୋଇ ରହି ଥାଆନ୍ତେ ସରବେ ।
ସଂସାର ବୃକ୍ଷର ବୀଜ ସ୍ୱରୂପ ସେ ଦେବୀ
ବସନ୍ତ ସନ୍ନ୍ୟାସୀମାନେ ତାଙ୍କୁ ମନେ ଭାବି ।
ଫଳବୃଦ୍ଧି କ୍ଷୁଧା ତୃଷା ନିଦ୍ରା କ୍ଷମା ଧୃତି
ତନ୍ଦ୍ରା ଦୟା ଶ୍ରଦ୍ଧା ଲଜ୍ଜା କାନ୍ତି ଶାନ୍ତି ସ୍ମୃତି ।
ଏ ବାହାରେ ତୁଷ୍ଟି ପୁଷ୍ଟି ଆଦି ଯେ ସମସ୍ତ
ସକଳସ୍ଥାନରେ ବ୍ୟାପି ରହିଛନ୍ତି ଜଗତ ।

ଯେଉଁ ସ୍ୱରୂପରେ ଦେବୀ ପ୍ରକାଶ ହୁଅନ୍ତି
ତାଙ୍କୁ ଅଧିକ ହୋଇ କେ ଜନନେ ନାହାନ୍ତି ।
ଶ୍ରୀକୃଷ୍ଣଙ୍କୁ ସ୍ତୁତିକରି ତାହାଙ୍କ ଆଗରେ
ବସିଲେ ଯେକାଳେ ଦେବୀ ଅତି ସଗରରେ ।
ତାହା ଦେଖିଣ ଶ୍ରୀକୃଷ୍ଣ ଉତ୍ତମ ଆସନ
ଦେଲେ ତାଙ୍କୁ ଆନନ୍ଦିତ କରି ନିଜମନ ।
ଏଥୁଅନ୍ତେ ଶ୍ରୀକୃଷ୍ଣଙ୍କ ନାଭିକମଳରୁ
ଜାତହେଲେ ପ୍ରଜାପତି ବିଜଗତଗୁରୁ ।
ତପସ୍ୱୀଗଣ ମଧ୍ୟରେ ଶ୍ରେଷ୍ଠ ସେ ଅଟନ୍ତି
ହସ୍ତେ କମଣ୍ଡଳୁ ଜପାମାଳା ଧରନ୍ତି ।
ସମୁଜ୍ଜ୍ୱଳ ବ୍ରହ୍ମ ତେଜ ବିରାଜଇ ଅଙ୍ଗେ
ସୁନ୍ଦରୀ କାମିନୀଟିଏ ରହିଛନ୍ତି ସଙ୍ଗେ ।
ତାହାଙ୍କ ଶରୀର କାନ୍ତି ଶରଚ୍ଚନ୍ଦ୍ରଠାରୁ
ଅଧିକ ସୁଷମା ଯୋଗେ ଦିଶୁଅଛି ଚାରୁ ।
କରିଛନ୍ତି ବହ୍ନି ଶୁଦ୍ଧ ବସ୍ତ୍ର ପରିଧାନ
ପୂର୍ଣ୍ଣ ହୋଇଅଛି ଅଙ୍ଗେ ବିବିଧ ଭୂଷଣ ।
ଶ୍ରୀକୃଷ୍ଣଙ୍କ ବଦନକୁ ଚାହିଁ ସେ ବନିତା
ମସ୍ତକରେ କରଯୋଡ଼ି କଲେ ନାନା ସ୍ତୁତି ।
ଅନୁଜ୍ଞା ପାଇଣ ରତ୍ନ ସିଂହାସନ ପରେ
ବସିଲେ ସେ ଅନ୍ତେ ଯାଇ ହରଷ ମନରେ ।
ଏଥୁଅନନ୍ତରେ କୃଷ୍ଣ ପୁଣି ଆପଣାର
ଶରୀରକୁ ବେନି ଭାଗ କଲେକ ସତର ।
ବାମ ଭାଗୁଁ ମହାଦେବ ଉତ୍ପନ୍ନ ହୋଇଲେ
ଦକ୍ଷିଣ ଭାଗଟି ନିଜ ରୂପରେ ରହିଲେ ।
ସେ ମହାଦେବଙ୍କ ଦେହ ସ୍ଫଟିକ ସଦୃଶ
ତେଜ ନିଦାକରେ କୋଟି ସୂର୍ଯ୍ୟର ପ୍ରକାଶ ।

ଯୋଗାଧିପୁରୁଷ ମହାଯୋଗୀ ଭୋଳାନାଥ
ଦେହେଁ ନାଗ ହୋଇଥାନ୍ତି ଯଜ୍ଞ ଉପବୀତ ।
ତ୍ରିଶୂଳ ପଟ୍ଟୀଶ ହସ୍ତଦେଶରେ ବିରାଜେ
କଟିତଟେ ପୁଣି ଶୁଦ୍ଧ ବ୍ୟାଘ୍ରଚର୍ମ ସାଜେ ।
ମସ୍ତକ ଉପରେ ଶୋଭାଦିଶେ ଜଟାଭାର
ଭସ୍ମ ବୋଳା ହୋଇଅଛି ସମସ୍ତ ଶରୀର ।
ଏ ବାହାରେ ଚନ୍ଦ୍ରକଳା ଶିଖର ଦେଶରେ
ଜାହ୍ନବୀ ତରଙ୍ଗ ଲେଖା ଶୋଭା ଭୁଜଙ୍କରେ ।
ବହଳ ଅଞ୍ଜନ ତୁଲ୍ୟ କଣ୍ଠର ନୀଳିମା
ନିନ୍ଦାକରେ ଜଳମୟ ଜଳଦ ସୁଷମା ।
ଦିଗମ୍ବର ପ୍ରତିଅଙ୍ଗ ବଳିତ ଠାଣିରେ
ରତ୍ନମାଳା ବିରାଜଇ ଦକ୍ଷିଣ ହସ୍ତରେ ।
ସନାତନ ବ୍ରହ୍ମସ୍ତୁତି ପଞ୍ଚମୁଖେ ଗାନ
କରୁଛନ୍ତି ପୁଣି ବ୍ରହ୍ମ ସ୍ୱରୂପକୁ ଧ୍ୟାନ ।
ଅଶେଷ ମଙ୍ଗଳକାରୀ ପ୍ରଭୁ ସଦାଶିବ
ମଙ୍ଗଳମୟ ସକଳ ଦେବଙ୍କର ଦେବ ।
ଶ୍ରୀକୃଷ୍ଣଙ୍କ ଆଗେ ଉଭା ହୋଇକରି ପୁଣି
ପ୍ରାର୍ଥନା କରିଲେ ନାନାରୂପେ ସ୍ତୋତ୍ର ଭଣି ।
ହେ ଅନାଦି ଦେବ ତୋର ଆଦିଅନ୍ତ ନାହିଁ
କୋଟି ୨ ଶଙ୍କର ତା ପାଇବେ ବା କାହିଁ ।
ଶିବଙ୍କ ସ୍ତବରେ କୃଷ୍ଣ ତୃପତ ହୋଇଣ
ପାଖକୁ ଡ଼କାଇ ସ୍ନେହେ କରିଲେ କଲ୍ୟାଣ ।
ତାଙ୍କୁ ବସିବା ନିମନ୍ତେ ରତନ ଆସନ
ଦେଖାଇଣ ଦେଲେ ପ୍ରଭୁ କମଳ ଲୋଚନ ।
ଶୁଣିଣ ଆନନ୍ଦେ ପାଶେ ବସିଲେ ଈଶ୍ୱର
ସେ ପାଦ ଚିନ୍ତଇ ସଦା ଦୀନ କ୍ଷେତ୍ର ସୁର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣଙ୍କଠାରୁ ଦେବଦେବୀମାନଙ୍କର ଉତ୍ପତ୍ତି ବିଧାନ କଥନେ ନାମ ଦ୍ୱିତୀୟୋଽଧ୍ୟାୟ ।

—— * ——

## ତୃତୀୟ ଅଧ୍ୟାୟ

## ନାରାୟଣଙ୍କ ଦ୍ୱାରା ବ୍ରହ୍ମାଣ୍ଡ ନିର୍ଣ୍ଣୟ କଥନ

ଶୁଣ ଶୁଣ ସାଧୁଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ନାରଦଙ୍କ ମୁଖ ଚାହିଁ ପ୍ରଭୁ ନାରାୟଣ
ବୋଇଲେ ବିଶ୍ୱ ନିର୍ଣ୍ଣୟ କଥା ତୁମ୍ଭେ ଶୁଣ ।

ଏଥୁଅନ୍ତେ ଏକ ଡିମ୍ବ ଜଳ ମଧ୍ୟେ ପଡ଼ି
ସେହିକ୍ଷଣି ଦୁଇ ଭାଗ ହୋଇଗଲା ଗଡ଼ି ।
ସେ ଡିମ୍ବ ମଧ୍ୟରେ ଏକ ଦିବ୍ୟଶିଶୁ ଥିଲା
ଯାର ତେଜ କୋଟି ସୂର୍ଯ୍ୟପରି ଦିଶୁଥିଲା ।
ସ୍ୱଭାବେ ବାଳକ ସ୍ତନ୍ୟପାନ ଅଭିଳାଷେ
ରୋଦନ କରିଲା ଉଦରର ଜ୍ୱାଳାରେ ସେ ।
ପିତା ମାତା ତା ପାଶରେ ନ ଥିଲେକ କେହି
ତେଣୁ ସେ ରୋଦନ କଲା ବ୍ୟାକୁଳିତ ହୋଇ ।
ଅଖିଳ ବ୍ରହ୍ମାଣ୍ଡ କର୍ତ୍ତା ହେଲେ ସେ ବାଳକ
ଅନାଥ ପରାୟେ ତହିଁ ହୋଇଲା ନିରେଖ ।
ତାହାଙ୍କର ଅଙ୍ଗ ସ୍ଥୂଳତାରୁ ସ୍ଥୂଳତର
ତେଜ ନିନ୍ଦା କରୁଥିଲା ମଧ୍ୟାହ୍ନ ଭାସ୍କର ।
ସୂକ୍ଷ୍ମରୁ ଅଧିକ ସୂକ୍ଷ୍ମ ତା କାୟା ଅଟଇ
ଯେହେତୁ ପରମାଣୁ ସର୍ବ ବସ୍ତୁମୂଳ ହୋଇ ।
ତେମନ୍ତ ଅଟଇ ସେହି ବାଳକ ସ୍ୱଭାବ
ମହାବିରାଟ ବୋଲିଣ ଅଟେ ତାର ନାମ ।
ଷୋଳଭାଗୁ ଏକଭାଗ ବାଳକ ଅଙ୍ଗରେ
ଶ୍ରୀକୃଷ୍ଣଙ୍କ ତେଜ ମିଶିଥିଲା ଶୁଣ ବୀରେ ।
ସେହି ସେ ପରମ ବିଷ୍ଣୁ ପୁରୁଷ ପ୍ରଧାନ
କୃପାମୟ ଭଗବାନ ଜଗତ ଜୀବନ ।
ତାହାଙ୍କ ଲୋମ କୂପରେ ଏ ମାୟାଜଗତ
ଚର୍ଚ୍ଚିତ ହୋଇ ରହିଛି ଶୁଣ ଦେଇ ଚିତ୍ତ ।
ସଂଖ୍ୟା କରିବାକୁ ନିଜେ ଶ୍ରୀକୃଷ୍ଣ ତାହାର
ସମରଥ ନୁହନ୍ତି ହେ ମୁନିଗଣବର ।
ସମୁଦ୍ର କୂଳର ବାଲି ଗଣିଲେ ସରିବ
ବିଶ୍ୱଜଗତ ଗଣନା କରି ନ ହୋଇବ ।
ସେହିପରି ବ୍ରହ୍ମା ବିଷ୍ଣୁ ଶିବଙ୍କ ଗଣନା
କେହି କରି ନ ପାରିବେ ଆହେ ମହାମନା ।
ପାତାଳ ଭୁବନଠାରୁ ବ୍ରହ୍ମଲୋକ ଯାଏ
ସମସ୍ତ ଲୋକ ମିଶିଣ ବ୍ରହ୍ମାଣ୍ଡ ବୋଲାଏ ।
ତାହାର ଉପରି ଭାଗେ ବୈକୁଣ୍ଠପୁର
ତହିଁ ଆଶ୍ରମ ମନ୍ଦିର ନାରାୟଣଙ୍କର ।
ତା ଉପରେ ପଞ୍ଚାଶତ କୋଟି ଯୋଜନରେ
ଗୋଲୋକ ବିରାଜମାନ ହୋଇଛି ଯେଠାରେ ।
ନିତ୍ୟ ସତ୍ୟ ସ୍ୱରୂପ ସେ ଦୁଇକୋଟି ପୁର
ଯେଉଁରୂପେ ନାରାୟଣ ଶ୍ରୀକୃଷ୍ଣ ଆବର ।

ଗୋଲୋକ ଅଟଇ ସପ୍ତଦ୍ୱୀପା ବସୁମତୀ
ଆବର ସପ୍ତସିନ୍ଧୁ ତହିଁରେ ଅଛନ୍ତି ।
ଜମ୍ବୁଦ୍ୱୀପ ଅଛି ପୁଣି ଅନେକ ଗୋଟି
ଏ ବାହାରେ ଶୈଳବନ ବୃକ୍ଷ କୋଟି କୋଟି
ତାହାର ଊର୍ଦ୍ଧ୍ୱଦେଶରେ ସପ୍ତ ସ୍ୱର୍ଗଲୋକ
ସେ ମଧ୍ୟରେ ମିଶି ରହିଅଛି ବ୍ରହ୍ମଲୋକ ।
ସପ୍ତ ପାତାଳ ତାହା ସଙ୍ଗେ ମିଶିକରି
ରହିଛି ପୁଣି ବ୍ରହ୍ମାଣ୍ଡ ମଣ୍ଡଳକୁ ଧରି ।
ପୃଥିବୀ ଉପରେ ଭୂଲୋକର ଅବସ୍ଥାନ
ଭୁବର୍ଲୋକ ତାର ମଧ୍ୟ ଅଛନ୍ତି ଜାଣ ।
ସ୍ୱର୍ଲୋକ ତା ପରେ ପୁଣି ମହା ତପୋଜନ
ସତ୍ୟଲୋକ ସନ୍ନତରେ ନିଅମ ଦେବ୍ୟମାନ ।
ସମସ୍ତ ଲୋକରେ ବ୍ରହ୍ମଲୋକ ଅବସ୍ଥିତ
ତପତ କାଞ୍ଚନ ପରି ଦିଶଇ ଶୋଭିତ ।
ଏହିପରି ବ୍ରହ୍ମାଣ୍ଡରେ ଅଛି ଯେତେ ଲୋକ
କୃତ୍ରିମ ଅଟଇ ଆହେ ଦ୍ୱିଜଙ୍କ ନାୟକ ।
ସେ ସବୁ ବିନାଶ ହେବେ ଚରାଚର ପ୍ରାଣୀ
ବିନାଶ ହୁଅନ୍ତି ବୋଲିକରି ଥାଅ ଜାଣି ।
ଜଳ ପରେ ଭାସୁଥିବା ଫେନପୁଞ୍ଜ ପରି
ରହି ନ ପାରେ ଜଗତ ସ୍ଥିର ଭାବ ଧରି ।
କେବଳ ଗୋଲୋକ ବୈକୁଣ୍ଠ ଦୁଇପୁର
ନିତ୍ୟ ସତ୍ୟ ଅକୃତ୍ରିମ ସ୍ୱଭାବ ସୁନ୍ଦର ।
ବ୍ରହ୍ମାଣ୍ଡ ରହସ୍ୟ କଥା ନିଜେ ସନାତନ
ଶ୍ରୀକୃଷ୍ଣ ତ ନ ଜାଣନ୍ତି ଜୀବ କେ ଆନ ।
ପ୍ରତ୍ୟେକ ବ୍ରହ୍ମାଣ୍ଡ ମଧ୍ୟେ ବ୍ରହ୍ମା ବିଷ୍ଣୁ ଶିବ
ପୁରନ୍ଦର ଆଦି ତ୍ରୟସ୍ତ୍ରିଂଶ କୋଟି ଦେବ ।
ଦିକପାଳ ଗ୍ରହପୁଞ୍ଜ ନକ୍ଷତ୍ରନିକର
ଯକ୍ଷ ରକ୍ଷ ଭୂତ ପ୍ରେତ ପିଶାଚ ଆବର ।
ଏ ବାହାରେ ନାଗ ଅଧିପତି ସର୍ପଗଣ
ଆଦି ଯେ ପାତାଳବାସୀ ଜୀବଜନ୍ତୁ ପୁଣ ।
ପୁନଃ ପୁନଃ ଜାତହୋଇ ମରଣ ଲଭନ୍ତି
ଏହିପରକାରେ ତାହାଙ୍କର ସୃଷ୍ଟି ସ୍ଥିତି ।
ଏଥୁଅନନ୍ତରେ କଥା ଶୁଣ ତପସ୍ୱୀ
ବିରାଟ ପୁରୁଷରୂପୀ ପ୍ରଭୁ ନରହରି ।
ଦଶଦିଗ ଆକାଶକୁ ଅନାଇବା କାଳେ
ସବୁଆଡ଼େ ଶୂନ୍ୟମୟ ହୋଇଛି ଦେଖିଲେ ।

ବାଳକ ସ୍ୱଭାବ ହେତୁ କ୍ଷୁଧାରେ ପୀଡ଼ିତ ।
ହେବାରୁ ରୋଦନ ତହୁଁ କଲେକ ବହୁତ ।
ନାମ ତାହାଙ୍କର ପଦ୍ମ ଉଦେଦେହେଲା ଜ୍ଞାନ
ଶ୍ରୀକୃଷ୍ଣଙ୍କୁ କଲେ ମନ ମଧ୍ୟରେ ସେ ଧ୍ୟାନ ।
ସେହିକ୍ଷଣି ତାହାଙ୍କର ଆଗେ ବ୍ରହ୍ମଜ୍ୟୋତି
ଦେଖାଗଲେ ସେ ଅପୂର୍ବ ଦର୍ଶନ ଅଟନ୍ତି ।
ନବୀନ ନୀରଦ ଶ୍ୟାମବରନ ଦ୍ୱିଭୁଜ
ପୀତବାସଯୁକ୍ତ ସୌମ୍ୟ ବଦନ ସରୋଜ ।
ସସ୍ମିତ ମୁରଲୀହସ୍ତ ଭକତ ବତ୍ସଳ
ଅନନ୍ତ ସ୍ୱରୂପ ଦେବ ପ୍ରଭୁ ଆଦ୍ୟମୂଳ ।
ତାହାଙ୍କୁ ଦେଖି ବାଳକ ହୋଇଲେ ଆନନ୍ଦ
ବଦନ ଦିଶିଲା ଯେହ୍ନେ ପୂର୍ଣ୍ଣିମାର ଚନ୍ଦ୍ର ।
ଆପଣା ଜନମ ବୋଲି ବୁଝି ନ ପାରିଲେ
ଧୀରେ ଅନାଇ ମନ୍ଦହାସ ପ୍ରକାଶିଲେ ।
ସନ୍ତୋଷ ହୋଇଣ ଦେବ ତାଙ୍କ ରୂପ ଦେଖି
ସମସ୍ତ ଉଚିତ ବର ଦେଲେ ହୋଇ ସୁଖୀ ।
ବୋଇଲେ ହେ ସୁତ ମୋର ତୁଲ୍ୟ ହୁଅ ତୁମ୍ଭେ
କ୍ଷୁଧା ତୃଷା ନିବାରଣ ହେଉ ବୋଲୁ ଆମ୍ଭେ ।
ବ୍ରହ୍ମାଣ୍ଡ ମଧ୍ୟରେ ସବୁଠାରେ ବାସକର
ନିଷ୍କାମ ନିର୍ଭୟ ଚିର ହେଉ ଯେ ତୁମ୍ଭର ।
ସୃଷ୍ଟି ଥିବାଯାଏ ମୁନି ଋଷିମାନଙ୍କର
ବର ଦାନକର୍ତ୍ତା ହୋଇଥାଅ ନିରନ୍ତର ।
ଏତେବୋଲି ତାହାଙ୍କର ଦକ୍ଷିଣ କର୍ଣ୍ଣରେ
ଷଡ଼ାକ୍ଷର ମହାମନ୍ତ୍ର ଦେଲେ ହରଷରେ ।
ତିନଥର ସେ ମନ୍ତ୍ରକୁ ଉଚାରିଲେ ଆଗ
ତାହାର ସ୍ୱରୂପ ଏବେ ଶୁଣ ମହାଭାଗ ।
ପ୍ରଥମେ ଓଁକାର ପରେ କୃଷ୍ଣାୟ ଏପର
ଚତୁର୍ଥ ପଦ ଯେ ପୁଣି ସ୍ୱାହା ବୋଲିକରି ।
ଷଡ଼ାକ୍ଷର ମହାମନ୍ତ୍ର ଏହିଟି ଅଟଇ
ଏହାକୁ ଜପିଲେ ସର୍ବ ବିଘ୍ନ ନାଶ ଯାଇ ।
ଏମନ୍ତ ମନ୍ତ୍ର ପ୍ରଦାନ କଲାପରେ ପୁଣି
ଆହାର କଳ୍ପନା କରାଇଲେ ସେହିକ୍ଷଣି ।
ସେ କଥା କହୁଛି ଶୁଣ ମନଦେଇକରି
ବିଷ୍ଣୁଙ୍କୁ ଯେ ନଇବେଦ୍ୟ ମନ୍ତ୍ରକୁ ଉଚାରି ।
ଦିଅନ୍ତି ତାହାର ଷୋଳଭାଗରୁ ଗୋଟିଏ
ଭାଗ ପାଇ ଶ୍ରୀକୃଷ୍ଣଙ୍କ ଭୋଗ ଯୋଗ୍ୟ ହୁଏ ।

ଆଉ ଯେ ପନ୍ଦର ଭାଗ ତହିଁରୁ ବଳଇ
ବୈକୁଣ୍ଠ ପୁରୁଷଙ୍କୁ ସେ ପ୍ରାପତ ହୁଅଇ ।
ନିର୍ଗୁଣ ନିରହଂକାର ପୁରୁଷ ପ୍ରଧାନ
ଅଟନ୍ତି ଶ୍ରୀକୃଷ୍ଣ ନିତ୍ୟରୂପ ସନାତନ ।
ନୈବେଦ୍ୟରେ ତାହାଙ୍କର ପ୍ରୟୋଜନ ନାହିଁ
କେବଳ ସେ ମହାବିରାଟଙ୍କ ତୋଷପାଇଁ ।
ଆଉର ଯେ ଲୋକ ଯେଉଁ ଦେବଙ୍କ ମନ୍ତ୍ରରେ
ଯେଉଁ ନଇବେଦ୍ୟ ଦ୍ରବ୍ୟ ସମର୍ପଣ କରେ ।
ତାହାସବୁ ସେ ପୁରୁଷ କରନ୍ତି ଭକ୍ଷଣ
ସେଥିରେ ତୁଷ୍ଟ ହୁଅନ୍ତି ସର୍ବ ଦେବଗଣ ।
ଏ ଅନ୍ତରେ ପୁତ୍ରଙ୍କର ମୁଖକୁ ଅନାଇ
ପୁଣି ପଚାରିଲେ ଦେବ ତ୍ରୈଲୋକ୍ୟ ଗୋସାଇଁ ।
ଯେବେ ତବ ଇଚ୍ଛା ଅଛି ମାଗ ଅନ୍ୟବର
ଯାହା ଯାହା ଆମ୍ଭେ ଦେଇପାରୁ ଏଠାବର ।
କୃଷ୍ଣଙ୍କ ବଚନ ଶୁଣି ସେ ମହାପୁରୁଷ
କହିଲେ ଉଚିତ ବାକ୍ୟ ହୋଇଣ ହରଷ
ବୋଇଲେ ହେ ଦେବ ତୁମ୍ଭ ପାଦପଙ୍କଜରେ
ରହିବ ମୋହର ମନ ସବୁ ସମୟରେ ।
ଏହି ବର ଏକା ମୋରେ ଦିଅନ୍ତୁ ଆପଣ
କାମନା ମୁଁ ନ କରଇ ଆନ ବରେ ଜାଣ ।
ଆପଣଙ୍କ ଠାରେ ଭକ୍ତି ହୁଅଇ ଯାହାର
ଜୀବନରେ ମୁକ୍ତିଲାଭ ହୁଏ ନିଶ୍ଚେ ତାର ।
ଯେଉଁ ମୂର୍ଖ ତୁମ୍ଭ ପାଦେ ଭକ୍ତି ନ କରଇ
ଜୀଇଁଥିଲେ ହେଲେ ମଲା ପରି ଅଟେ ସେହି ।
ଜପ ହୋମ ଯଜ୍ଞକର୍ମ ଦେବତା ଅର୍ଚ୍ଚନ
ସମସ୍ତ ବିଫଳ ତାର ହୁଅଇଟି ଜାଣ ।
ସଂସାର ସାର ଅଟଇ ଶ୍ରୀକୃଷ୍ଣ ଭକତି
ତାହାବିନା ଅନ୍ୟକର୍ମେ ନ ମିଳଇ ମୁକ୍ତି ।
ଯେତେ ଦିନଯାଏ ଅଙ୍ଗେ ଆତ୍ମା ରହିଥାଇ
ସେହି ପର୍ଯ୍ୟନ୍ତେ ବଳ ପୌରୁଷ ବଢ଼ଇ ।
ଛାଡ଼ିଯିବା ସମୟରେ ତାହା ପଛେ ପଛେ
ସମସ୍ତେ ଯାଆନ୍ତି କେହି ନ ରହିଣ ସ୍ୱଚ୍ଛେ ।
ସେହି ଆତ୍ମା ଅଟ ତୁମ୍ଭେ ଆହେ ମହାବାହୁ
ଅଧିକ ତୁମ୍ଭଙ୍କୁ କିସ କହିବି ମୁଁ ଆଉ ।
ସର୍ବଅନ୍ତର୍ଯ୍ୟାମୀ ନାଥ ପ୍ରକୃତିରୁ ପର
ସ୍ୱେଚ୍ଛାମୟ ବ୍ରହ୍ମଜ୍ୟୋତି ସ୍ୱରୂପ ତୁମ୍ଭର ।

ଏତେ ବୋଲି ସେ ବାଳକ ଅଦୃଷ୍ଟ ହୋଇଲେ
ଶ୍ରୀକୃଷ୍ଣ ତାହାଙ୍କୁ ପୁଣି ଅନାଇ କହିଲେ ।
ବୋଇଲେ ହେ ବତ୍ସ ତୁମ୍ଭେ ମୋହର ସମାନ
ଚିରକାଳ ଯାଏ ଲୋକେ ହୁଅ ବର୍ତ୍ତମାନ ।
ଅସଂଖ୍ୟ ବ୍ରହ୍ମାଙ୍କ ପାତ ହେଲେହେଁ ତୁମ୍ଭର
କଦାପି ବିନାଶ ନ ହୋଇବ ମନେକର ।
ପ୍ରତି ବ୍ରହ୍ମାଣ୍ଡରେ ମୋର ଅଂଶ ସେହିକରି
ପ୍ରକାଶ ହୋଇବ ନିଜ ରୂପେ ଅବତରି ।
ତୁମ୍ଭ ନାଭିକମଳରୁ ପ୍ରଜାପତି ଜାତ
ହୋଇବ ଏ କଥା ସତ୍ୟ ଜାଣ ଆହେ ସୁତ ।
ବ୍ରହ୍ମାଙ୍କ ଲଲାଟଦେଶୁଁ ରୁଦ୍ର ଏକାଦଶ
ଜନମ ହୋଇବେ ସେହି ଶିବଙ୍କର ଅଂଶ ।
କାଳାଗ୍ନି ରୁଦ୍ର ବୋଲି ଅଙ୍ଗରୁ ତାଙ୍କର
ହୋଇବ ଏକଇ ରୁଦ୍ର ମନେ ଦେଖୁକର ।
ସକଳ ସୃଷ୍ଟିକି ସେହି କରିବେ ସଂହାର
ଅନନ୍ତ ସମାନ ରୂପ ହେବ ତାହାଙ୍କର ।
ଏ ବାହାରେ ରୁଦ୍ରଅଂଶ ଦେବ ନାରାୟଣ
ସମ୍ଭୂତ ହୋଇବେ ବିଷ୍ଣୁ ନାମରେଟି ଜାଣ ।
ପାଳନ କରିବେ ତ୍ରିଭୁବନକୁ ସେହି
ତାଙ୍କପରି ତେଜଶାଳୀ ହୋଇବ କେ ନାହିଁ ।
ତୁମ୍ଭଙ୍କୁ ଯେ ବର ଏବେ ଦେଉଅଛୁ ମୁହିଁ
ମୋଠାରେ ତୁମ୍ଭର ସଦା ଭକ୍ତି ଥିବ ରହି ।
ଧ୍ୟାନଯୋଗେ ମୋର ଦିବ୍ୟ ରୂପକୁ ଦେଖିବ
ସର୍ବଦା ମୋହର ପାଦେ ଭକ୍ତି ରଖିଥିବ ।
ଆଉର ମୋ ବକ୍ଷସ୍ଥଳେ ମାତାଙ୍କୁ ତୁମ୍ଭର
ଦରଶନ କରୁଥିବ ସନ୍ଦେହ ନ କର ।
ନିଜ ସଦନକୁ ଯାଉଅଛୁ ଏବେ ମୁହିଁ
ଭୟ ଦୂରକରି ତୁମ୍ଭେ ସୁଖେ ଥାଅ ରହି ।
ଏରୂପେ ପୁତ୍ରଙ୍କୁ ବର ଦେଇ ଜନାର୍ଦ୍ଦନ
ଗୃହୁଁ ଗୃହୁଁ ସେହିକ୍ଷଣି ହେଲେ ଅନ୍ତର୍ଦ୍ଧାନ ।
ସ୍ୱର୍ଗଲୋକରେ ସେକାଳେ ପ୍ରବେଶି ହୋଇଲେ
ବ୍ରହ୍ମା ଶଙ୍କର ଦୁହିଁଙ୍କୁ ଦେଖିଣ କହିଲେ ।
ବ୍ରହ୍ମାଙ୍କୁ ବୋଇଲେ ଆହେ ପ୍ରଜାପତି ଶୁଣ
ସୃଷ୍ଟି କରିବାକୁ ତୁମ୍ଭେ ହୁଅ ସାବଧାନ ।
ମହା ବିରାଟଙ୍କ ନାଭିକମଳରୁ ଜାତ
ହେଲ ପରେ ସରଜନା କରିବ ଜଗତ ।

ସେ ଅନ୍ତେ ମହାଦେବଙ୍କୁ ବୋଇଲେ ହେ ତୁମ୍ଭେ
ଅବିଳମ୍ବେ କର ସେବା କହୁଅଛୁଁ ଆମ୍ଭେ ।
ବ୍ରହ୍ମା ଲଲାଟପଟରୁ ତାହାଙ୍କର ଅଂଶେ
ଜନ୍ମନେଇ କରି ତପ କର ଯାଇ ତୋଷେ ।
ଏମନ୍ତ କହି ଶ୍ରୀକୃଷ୍ଣ ବିରତ ହୋଇଲେ
ତାଙ୍କ ବାକ୍ୟ ଶୁଣି ବ୍ରହ୍ମା ଶିବଙ୍କର ତୁଲେ ।
ନମସ୍କାର କରି ବେଗହୋଇ ଗଲେ ଚଳି
ମହାବିରାଟ ମୂର୍ତ୍ତିସ୍ଥ ଅଙ୍ଗଦେଶେ ମିଳି ।
ସେ ଯାହାର ସ୍ଥାନ ଦେଖି ନିଷ୍ଠେ ରହିଲେ
ସେ ମହାବିରାଟ କ୍ଷୁଦ୍ରରୂପ ତହୁଁ ହେଲେ ।
ବ୍ରହ୍ମାଣ୍ଡ ଗୋଲୋକ ତଳେ କଲେକ ଶୟନ
ପୀତବସ୍ତ୍ରଧାରୀ ଯୁବା ଶ୍ୟାମଳ ବରନ ।
ଦିବ୍ୟ ମନୋହର କାନ୍ତି ପ୍ରସନ୍ନ ବଦନ
ମନ୍ଦମନ୍ଦ ହାସ କରି ଜନଙ୍କ ପାଳନ ।
ତାଙ୍କ ନାଭିକମଳରୁ ବ୍ରହ୍ମା ହେଲେ ଜାତ
ସେ ମହତ୍କର୍ମୀ ତ୍ରିଭୁବନ ବନ୍ଦିତ ।
ପ୍ରଭୁଙ୍କ ନାଭି ପଦ୍ମରେ ଲକ୍ଷେ ଯୁଗଯାଏ
ଭ୍ରମଣ କରି ଦେଖିଲେ ଦେବଙ୍କର ସଙ୍ଗେ ।
କେଉଁଠାରୁ ଆଦ୍ୟ କାହିଁ ଶେଷ ନ ଜାଣିଲେ
ତେଣୁ ମନେ ମହାଚିନ୍ତା କରିଣ ବସିଲେ ।
ଆପଣା ସ୍ଥାନକୁ ଆସି ଏକାଗ୍ର ଚିତ୍ତରେ
ଶ୍ରୀକୃଷ୍ଣଙ୍କୁ ଧ୍ୟାନ କଲେ ସେ ମନମଧ୍ୟରେ ।
ସେହି ସମୟରେ ପରମାତ୍ମା ନାରାୟଣ
କ୍ଷୁଦ୍ରରୂପେ ଦେଖାଦେଲେ ତାହାଙ୍କ ନେତ୍ରେଣ
ଗୋଲୋକ ତଳ ଜଳରେ ବ୍ରହ୍ମାଣ୍ଡ ମଧ୍ୟରେ
ଶୟନ କରିଅଛନ୍ତି ନିର୍ଲିପ୍ତ ମନରେ ।
ତାଙ୍କ ଲୋମକୂପ ମଧ୍ୟେ ଅଶେଷ ବ୍ରହ୍ମାଣ୍ଡ
ଠାବ ଠାବ ହୋଇ କେତେ ହୋଇଛନ୍ତି ରୁଣ୍ଡ ।
ଏମନ୍ତ ରୂପକୁ ନେତ୍ରେ ଦେଖି ବେଦବର
ବର ମାଗିଣ କହିଲେ ସେ ସୃଷ୍ଟି ତିଆର ।
ତାହାଙ୍କ ମନୁଁ ଶନକ ଆଦି ଋଷିଗଣ
ଜନମିଲେ ଶାନ୍ତ ଭାବ ପ୍ରକାଶ କରିଣ ।
କପାଳରୁ ରୁଦ୍ରଗଣ ଜନମ ହୋଇଲେ
ଶିବଙ୍କ ଅଂଶରେ ସେହି ଜଗପତି ହେଲେ ।
ସୃଷ୍ଟି ପାଳନ କରତା ବିଷ୍ଣୁ ସେ କାଳରେ
ଜାତ ହୋଇଲେ ତାହାଙ୍କ ବାମ ପାର୍ଶ୍ୱରେ ।

ଶାନ୍ତ ସୌମ୍ୟ ମୂର୍ତ୍ତି ଚତୁର୍ଭୁଜ ବିଶ୍ୱପତି
କଲେକ ଯାଇଣ ଶ୍ୱେତ ଦ୍ୱୀପରେ ବସତି ।
ସେ ମହାବିରାଟ ନାଭି ସରସିଜେ ବସି
ତା ଉପରେ ବ୍ରହ୍ମା ଜାତକଲେ ସୃଷ୍ଟି ରାଶି ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ଆଦି ନିର୍ମାଇଲେ
ସକଳ ଜୀବ ଜନ୍ତୁଙ୍କୁ ସରଜନା କଲେ ।
ଏହିପରିକାରେ ଜାଣ ପ୍ରତ୍ୟେକ ଯୁଗରେ
ସୃଷ୍ଟି ସରଜନା ହୁଏ ବିରାଟ ଅଂଶରେ ।
ପୁନଶ୍ଚ ତାହାଙ୍କ ଲୋମ କୂପ ଅନ୍ତରାଳେ
ପ୍ରକାଶ ହୁଅନ୍ତି ସୃଷ୍ଟି ସରଜନା କାଳେ ।
ଆହେ ମୁନିଙ୍କ ଉତ୍ତମ ନାରଦ ମହର୍ଷି
ଶୁଣିଲତ ଶ୍ରୀକୃଷ୍ଣଙ୍କ ମହିମା ବିଶେଷି ।
ଆଉ ଯେବେ ଶୁଣିବାକୁ ଥାଏ ତବ ମନ
ପଚର ମତୁଁ ସଂଶୟ କରିଣ ମୋଚନ ।
ଏହିପରି ନାରଦଙ୍କୁ କହି ନାରାୟଣ
ମଉନ ହୋଇଲେ ଗୀତେ କହଇ ମୋହନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡ ନାରାୟଣଙ୍କ ଦ୍ୱାରା ବ୍ରହ୍ମାଣ୍ଡ ନିର୍ଣ୍ଣୟ କଥନେ ନାମ ତୃତୀୟୋଽଧ୍ୟାୟଃ ।

---

## ଚତୁର୍ଥ ଅଧ୍ୟାୟ

### ସରସ୍ୱତୀଙ୍କ କବଚ ସମ୍ବନ୍ଧରେ ନାରାୟଣଙ୍କ ମୁଖରୁ ନାରଦଙ୍କର ଶ୍ରବଣ

ଶୁଣନ୍ତୁ ବିବୁଧଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ନାରାୟଣଙ୍କ ମୁଖରୁ ସୃଷ୍ଟି ସମାଚାର
ଶୁଣିଣ ଆନନ୍ଦ ହୋଇ ଧାତାଙ୍କ କୁମର ।
ବୋଇଲେ ହେ ଦେବଦେବ ପତିତପାବନ
ତବ ଶ୍ରୀମୁଖରୁ ଯାହା କରିଲି ଶ୍ରବଣ ।
ମନରେ ମୋର ଆନନ୍ଦ ହୋଇଲା ଅପାର
ପ୍ରକୃତି ସମ୍ବନ୍ଧେ ପ୍ରଭୁ କୁହ କିଛୁ ଗିର ।
ଯେ ପ୍ରକୃତି ଅଂଶୁ ଯେତେ ଦେବୀ ହେଲେ ଜାତ
କୁହନ୍ତୁ କପରି ତାଙ୍କ ପୂଜାର ଚରିତ ।
କାହାର କେମନ୍ତ ପୂଜା ହୁଅଇ ମର୍ତ୍ତ୍ୟରେ
କେଉଁ ଦେବୀଙ୍କୁ ସନ୍ତୋଷ କଲେ କେ ପୂର୍ବରେ
ପୁଣି କାହାଠାରୁ କେହୁ ବର ଥିଲେ ପାଇ
କେଉଁ ପରି ଫଳା ଫଳ ପାଇଲେକ ସେହି ।
ଏହା ସବୁ ମୋ ଆଗରେ କୁହନ୍ତୁ ଠାକୁର
ଶୁଣିବାପାଇଁ କି ମନ ବଳୁଛି ମୋହର ।
କବଚ ସ୍ତୋତ୍ର ପଠନ ଧ୍ୟାନ ଆଦି କରି
ସମସ୍ତ ବିଧାନ ମୋତେ କୁହନ୍ତୁ ମୁରାରି ।
ନାରାୟଣ ବୋଇଲେକ ନାରଦଙ୍କୁ ଚାହିଁ
ଉତ୍ତମ ସମ୍ବାଦ ବ୍ୟାଖ୍ୟା ଶୁଣ ମନଦେଇ ।
ଦୁର୍ଗା ରାଧା ସାବିତ୍ରୀ ସେ ଲକ୍ଷ୍ମୀ ସରସ୍ୱତୀ
ଏହିରୂପେ ପାଞ୍ଚଭାଗ ହେଲେ ସେ ପ୍ରକୃତି ।
ଅଦ୍ଭୁତ ପ୍ରଭାବଶାଳୀ ଅଟନ୍ତି ସେମାନେ ।
ତାହାଙ୍କ ପୂଜାବିଧାନ ପ୍ରସିଦ୍ଧ ଭୁବନେ ।
ସକଳ ମଙ୍ଗଳ ଅଟୁ ତାଙ୍କର ଚରିତ
ନିର୍ମଳ ମଧୁର ଯେହ୍ନେ ପ୍ରତ୍ୟକ୍ଷ ଅମୃତ ।
ଅଂଶକଳା ଘେନ ଶୁଣି ଯେତେକ ଦେବତା
ଜନ୍ମିଲେ ତାଙ୍କ ଚରିତ ଶୁଣ ବ୍ରହ୍ମବେତ୍ତା ।
କାଳୀ ଗଙ୍ଗା ବସୁନ୍ଧରା ଷଷ୍ଠୀ ମହାମାୟା
ମନସା ତୁଳସୀ ନିଦ୍ରା ଦେବୀ ସୁଧା ସ୍ୱାହା ।
ଦକ୍ଷିଣାକୁ ଆଦିକରି ଯେତେ ଦେବୀଗଣ
ସଂକ୍ଷେପରେ ସେମାନଙ୍କ କଥା ଏବେ ଶୁଣ ।
କେବଳ ରାଧିକା ଦୁର୍ଗା ଦୁହିଙ୍କ ବିଷୟ
ବିସ୍ତାର କହିବ ପଛେ ଆହେ ମହାଶୟ ।
ପ୍ରଥମରେ ସରସ୍ୱତୀ ଦେବୀଙ୍କ ଅର୍ଚ୍ଚନା
ଯେମନ୍ତ ପ୍ରକାରେ କଲେ କୃଷ୍ଣ ମହାମନା ।
ଯେଉଁ ସରସ୍ୱତୀଙ୍କର ଅନୁଗ୍ରହ ବଳେ
ପଣ୍ଡିତ ହୁଅଇ ମୂର୍ଖ ଲୋକ ମହୀତଳେ ।
ଶ୍ରୀକୃଷ୍ଣ ଦେବୀଙ୍କ ମୁଖୁଁ ଜନ୍ମ ସେ ହୋଇଲେ
କାମ ଅନଳରେ କୃଷ୍ଣଦେବଙ୍କୁ ଚାହିଁଲେ ।

ତାହାଙ୍କର ମନକଥା ଜାଣି ଭଗବାନ
କହିଲେ ତାହାଙ୍କୁ ମନ୍ଦ୍ୟକୋମଳ ବଚନ ।
ବୋଇଲେ ହେ ଗୋ ସରସ୍ୱତି ମୋର ଅଂଶସେନ
ଜନ୍ମି ଅଛନ୍ତି ନାରାୟଣ ବ୍ରହ୍ମ ତପ୍ରିକ୍ଷାମ ।
ଆଜାନୁଲମ୍ବିତ ଶୁଣ୍ଡକ ବରାଜନ
ସୁନ୍ଦର ଯୁବକ ରୂପ ସର୍ବଗୁଣଯୁକ୍ତ ।
ମୋହର ସମାନ ତେଜୋବନ୍ତ ସେ ଅଟନ୍ତି
ତାହାଙ୍କଠାରୁ ଅଧିକ ହୋଇ କେ ନାହାନ୍ତି ।
କନ୍ଦର୍ପ ସୁନ୍ଦରଭାବ ଲାବଣ୍ୟ ସମ୍ପଦ
କରନ୍ତି ତାହାଙ୍କଠାରେ ପରସ୍ପର ବାଦ ।
ତାହାଙ୍କର କାନ୍ତା ହୋଇ ରହ ଯାଇ ପାଶେ
ନିଶ୍ଚୟ ତୁମ୍ଭର ଇଚ୍ଛା ପୂର୍ଣ୍ଣ କରିବେ ସେ ।
ଆଗୋ ଦେବୀ ଯେବେ ମୋତେ ପତିରୂପେ ବର
ବସିବ ମଙ୍ଗଳ କେବେ ନୋହିବ ତୁମ୍ଭର ।
ଦେଖ ତୁମ୍ଭଠାରୁ ଯେହୁ ବଳରେ ଅଧିକା
ଅଟନ୍ତି ମୋହର ପତ୍ନୀ ଶ୍ରୀମତି ରାଧିକା ।
ସପତ୍ନୀ ହୋଇଣ ତାଙ୍କ ପାଖେର ରହିଲେ
କୁଶଳ ହେବ କି ମନେ ବିଚାର ତ ଭଲେ ।
ବଳବନ୍ତ ଲୋକପାଶେ ଦୁର୍ବଳ କି ରହି
ପାରଇ ମନରେ ଥରେ ବିଚାର ଗୋ ସହି ।
ବୋଲିବ ବା ତୁମ୍ଭେ ଅଟ ପ୍ରଧାନ ପୁରୁଷ
ଦୁହିଙ୍କୁ ସମାନ ଭାବେ କରିଇବ ତୋଷ ।
ସେଥିର ଉତ୍ତର ଏବେ କହୁଅଛି ଶୁଣ
ସର୍ବଲୋକ ଅଧିପତି ହେଲେ ମୁହିଁ ପୁଣ ।
ରାଧାଙ୍କର ଅଭିପ୍ରାୟ ଜାଣିବାକୁ ମୋର
ପ୍ରଭାବ ଘଟଇ ନାହିଁ ବେଳ ମନେକର ।
ତେଜ ଗୁଣ ରୂପରେ ସେ ମୋହର ସମାନ
ଆବର ଜୀବନ ଦେବୀ ଅଟନ୍ତି ଜାଣ ।
ଜଗତରେ ଜୀବନକୁ ଛାଡ଼ିବାକୁ କେହି
ସମରଥ ହୁଅଇ କି ଚିନ୍ତ ମନେ ଧାୟି ।
ସେ ସକାଶୁଁ ତାଙ୍କ କଥା ମୋହର ଅଧିକ
ପ୍ରୀତିକର ହେବ ନାହିଁ କହୁଅଛି ଠିକ୍ ।
ମୋର ବୋଲେ ଏବେ ତୁମ୍ଭେ ବୈକୁଣ୍ଠକୁ ଯାଅ
ନାରାୟଣଙ୍କ ଆଶ୍ରୟେ ମହାସୁଖେ ରହ ।
ସେହିଠାରେ ମହାଲକ୍ଷ୍ମୀ କରନ୍ତନ୍ତି ବାସ
ରୂପଗୁଣେ ଅଟନ୍ତି ସେ ତୁମ୍ଭର ସଦୃଶ ।
କାମ କ୍ରୋଧ ଲୋଭ ମୋହ ହିଂସା ଅଭିମାନ
ପାଶ ନାହାନ୍ତି ଏମାନେ ତାଙ୍କ ଦେହେ ସ୍ଥାନ ।
ତାଙ୍କ ସଙ୍ଗେ ପ୍ରୀତି ଯେବେ କରିବଟି ତୁମ୍ଭେ
ମହାସୁଖରେ ରହିବ ଜାଣୁଅଛୁ ଆମ୍ଭେ ।
ତୁମ୍ଭ ପ୍ରତ୍ନ ନାରାୟଣ ଦ୍ୱିଜପତ୍ନୀଠାରେ
ସମାନ ସ୍ନେହ କରିବେ ଜାଣ ଆମ୍ଭ ବରେ ।
ନିଖିଳ ଜଗତେ ମାଘ ଶୁକ୍ଳପଞ୍ଚମୀରେ
ତୁମ୍ଭର ପୂଜା କରିବେ ସବୁଠାରେ ନରେ ।
ଏ ବାହାରେ ବିଦ୍ୟାରମ୍ଭ କରିବ ଯେ ଲୋକ
କରିବ ତୁମ୍ଭର ପୂଜା ହୋଇଣ ଭକ୍ତିକ ।
ଦେବତା ଗନ୍ଧର୍ବ ଋଷି ଦାନବ ମାନବେ
ତୁମ୍ଭ ଉପାସନା ବିଧି କରିବେଟି ସର୍ବେ ।
ଆମ୍ଭ ବରସେନ ସବୁ କଲ୍ପ ସବୁ ଜନ
ଭକ୍ତିରେ କରିବେ ପୂଜା ଉପଚାର ଦାନ ।
ବେଦଉକ୍ତ କାଣ୍ୱଶାଖା ବିଧାନ ପ୍ରକାରେ
ଧ୍ୟାନ ମନ୍ତ୍ରସ୍ତୁତି ସ୍ତୋତ୍ର ପଢ଼ି ଆନନ୍ଦରେ ।
ଜିତେନ୍ଦ୍ରିୟ ସତ୍ୟବ୍ରତ ପୁଣ୍ୟକର୍ମୀଗଣ
ଭକ୍ତିଭରେ ବସି ଚିତ୍ତ କରିବେ ସ୍ମରଣ ।
ସୁବର୍ଣ୍ଣ ଗୁଟିକା କରି ତହିଁପୂର୍ଣ୍ଣ ଦେଇ
ସେମାନେ କବଚ ବାହୁକଣ୍ଠେ ବୋଧ ବନ୍ଧି ।
ଏ ବାହାରେ ସ୍ତୋତ୍ରପାଠ ପୂଜା ସମସ୍ତରେ
ପଠନ କରିବେ ତହିଁ ଜ୍ଞାନବନ୍ତା ନରେ ।
ଏହିରୂପେ କହି କୃଷ୍ଣ ବାକ୍ୟ ଦେବତାଙ୍କୁ
ପୂଜା କଲେ ଆନନ୍ଦରେ ମହାଇ ଚିତ୍ତକୁ ।
ତାହା ଦେଖି ବ୍ରହ୍ମା ବିଷ୍ଣୁ ମହେଶ୍ୱର ଅନ
ଦେବ ପୂଜା କଲେ ପୁଣି ଭକ୍ତିଭାବ ସେନ ।
ଆବର ଅନନ୍ତ ନାଗଲୋକ ଅଧିପତି
ଧର୍ମଦେବତା ସନକ ଆଦି ସପ୍ତପତି ।
ଇନ୍ଦ୍ର ଆଦି ଦେବଗଣ ନରପତି ସର୍ବେ
ସେ ଯାହାର ଅନୁରୂପେ ପୂଜା କଲେ ଭାବେ ।
ସେହି ଦିନଠାରୁ ଦେବୀ ସକଳ ଲୋକରେ
ପୂଜିତା ହୋଇଲେ ଜାଣ ବିଧାତା ପ୍ରକାରେ ।
ନାରଦ ବୋଇଲେ ସେହି ପୂଜାର ବିଧାନ
କେମନ୍ତ ପ୍ରକାର ପୁଣି ସ୍ତୁତି ସ୍ତୋତ୍ର ଧ୍ୟାନ ।
ଗନ୍ଧପୁଷ୍ପ ଧୂପଦୀପ ନଇବେଦ୍ୟ ଦ୍ରବ୍ୟ
କେଉଁ ବିଧାନେ ଅର୍ପଣ କରାଯାଏ ସର୍ବ ।

ଏବେ ଶୁଣିବାକୁ ମୋର କଉତୁକ ଜାତ
ହେଉଅଛି ଆହେ ମୁନି କହିଦେଲ ମତ ।
ଆପଣ ଅଟନ୍ତି ବେଦ ଶାସ୍ତ୍ର ତତ୍ତ୍ୱଜ୍ଞାନୀ
କହ ସେ ସମସ୍ତ କଥା ମୋ ବିନୟ ଘେନି ।
ତାହା ଶୁଣି ନାରାୟଣ କହନ୍ତି ବଚନ
ଶୁଣ ହେ ନାରଦ ମୁନି ସ୍ଥିରକରି ମନ ।
କାଣ୍ୱଶାଖା ପଦ୍ଧତିରେ ସରସ୍ୱତୀଙ୍କର
ଅର୍ଚ୍ଚନା ହୋଇଛି ଲେଖା ଯେମନ୍ତ ପ୍ରକାର ।
ବିଶଦରୂପରେ ତାହା କରିବା ବର୍ଣ୍ଣନ
ଏ ବାହାରେ ସ୍ତବ ସ୍ତୋତ୍ର ମନ୍ତ୍ର ନ୍ୟାସ ଧ୍ୟାନ ।
ମାଘମାସ ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ
ଆକର ବିଦ୍ୟା ଆରମ୍ଭ ଦିନମାନଙ୍କରେ ।
ପୂର୍ବ ଦିବସରେ ଅଧିବାସ କର୍ମକରି
ସେହିଦିନ ସ୍ନାନଆଦି ନିତ୍ୟକର୍ମ ସାରି ।
ଶୁଚିମନ୍ତ ହୋଇ ଦେବୀ ମନ୍ଦିରକୁ ଯିବ
ଜଳପୂର୍ଣ୍ଣ କରି କୁମ୍ଭ ସ୍ଥାପନ କରିବ ।
ତହିଁର ଦେଇ ଷଡ଼ଦେବତା ପୂଜନ
ପ୍ରଥମେ କରିବ ସେହି କୁମ୍ଭରେଟି ଜାଣ ।
ସେ ଅନ୍ତରେ ଗଣପତି ସୂର୍ଯ୍ୟ ବୈଶ୍ୱାନର
ବିଷ୍ଣୁ ମହାଦେବ ଦୁର୍ଗାଦେବୀଙ୍କୁ ଆଦର ।
ବିଧି ଅନୁସାରେ ପୂଜା କଲା ପରେ ପୁଣି
ଇଷ୍ଟ ଦେବତାଙ୍କ ପାଦପଦ୍ମ ମନେ ଗୁଣି ।
ଧ୍ୟାନ ଅନ୍ତେ ବାହ୍ୟ ଘଟେ ଆବାହନ କରି
ଷୋଡ଼ଶୋପଚାରେ ପୂଜା କରିବ ବିସ୍ତରି ।
ବେଦଶାସ୍ତ୍ର ନୈବେଦ୍ୟ ଦ୍ରବ୍ୟ ଯେଉଁରୂପେ
ନିର୍ଦ୍ଦିଷ୍ଟ ହୋଇଛି ତାହା ଯୋଗାଇଣ ଆପେ ।
ଦେବୀଙ୍କ ସନ୍ତୋଷ ପାଇଁ କରିବ ଅର୍ପଣ
ସେ ଦ୍ରବ୍ୟମାନଙ୍କ ନାମ କହୁଅଛି ଶୁଣ ।
ନବନୀତ ଦଧି କ୍ଷୀର ଲଜା ଲଡ଼ୁ ପିଠା
ଇକ୍ଷୁଦଣ୍ଡ ଆଦି ଯେତେ ଦ୍ରବ୍ୟ ଅଟେ ମିଠା ।
ଶୁକଳ ଶାକର ମଧୁ ଶୁକଳ ଅକ୍ଷତ
ଖଣ୍ଡକୋରା ଆଦି ଶୁକ୍ଳ ବରନ ପଦାର୍ଥ ।
ଶୁକ୍ଳଧାନ୍ୟ ତଣ୍ଡୁଳରେ ନିର୍ମିତ ମୋଦକ
ଆବର ସୈନ୍ଧବ ଲୁଣ ଘୃତରେ ଯେ ପାକ ।
ହବିଷ୍ୟ ଅନ୍ନ ବ୍ୟଞ୍ଜନ ଘୃତ ସହିତରେ
ରନ୍ଧା ହୋଇଥିବ ଯାହା ପବିତ୍ର ଭାବରେ ।

ଗହମ ଚୂର୍ଣ୍ଣରେ ଘୃତ ସଂଯୁକ୍ତ ପିଷ୍ଟକ
ଅଥବା ଯବଚୂର୍ଣ୍ଣରେ ନିର୍ମିତ ମୋଦକ ।
ପାଚିଲା କଦଳୀ ଜାମୁ ନାରିକେଳ ଫଳ
ମୃତ୍ତିକ ସଦ୍ୟୁତ ମିଷ୍ଟାନ୍ନ ଯେ କେବଳ ।
ମୂଳକ ଆର୍ଦ୍ରକ ପଦ୍ମପୁଷ୍ପର କେଶର
ଶ୍ରୀଫଳ ବଦରୀକୋଳି ଗାଈଦୁଗ୍ଧ ସାର ।
ଦେଶକାଳ ଜାତପୁଷ୍ପ ଫଳମୂଳ ଯେତେ
ଗ୍ରହଣଯୋଗ୍ୟ ଶୁକଳ ଦ୍ରବ୍ୟର ସହିତେ ।
ସୁଗନ୍ଧ ଶୁକଳ ପୁଷ୍ପ ସୁବାସ ଚନ୍ଦନ ।
ନୂତନ ସୁରମ୍ୟ ମୃଦୁ ଶୁକଳ ବସନ ।
ଏ ବାହାରେ ଶୁକ୍ଳବର୍ଣ୍ଣ କୁସୁମର ମାଳ
ନାନାବିଧ ରତ୍ନମୟ ବିଭୂଷଣ ଜାଳ ।
ଏହିରୂପେ ଦ୍ରବ୍ୟମାନ ସରସ୍ୱତୀଙ୍କର
ପ୍ରୀତିକର ଅଟଇ ହେ ବ୍ରହ୍ମାଙ୍କ କୁମର ।
ଧ୍ୟାନ ଆଦିକରି ବେଦ ଶାସ୍ତ୍ରରେ ଯେପରି
ରହିଅଛି କୁମ୍ଭଆଗେ କହିବା ବିସ୍ତାରି ।
ଶୁକ୍ଳବର୍ଣ୍ଣା ସ୍ମିତମୁଖୀ ମନୋହର ବେଶା
ନମସ୍ତେ ଶ୍ରୀ ସରସ୍ୱତୀ ନାରାୟଣ ଯେ ଦା ।
କୋଟିଚନ୍ଦ୍ର କମନୀୟ ପୁଷ୍ଟ କଳେବର
ସସ୍ମିତ ଲାବଣ୍ୟମୟ ଶ୍ରୀମୁଖ ସୁନ୍ଦର ।
ଅଗ୍ନିଶୌଚ ସୁନିର୍ମଳ ବସନଧାରିଣୀ
ରତ୍ନ ବିଭୂଷଣ ଦିବ୍ୟ ଶୋଭାବିକାଶିନୀ ।
ବ୍ରହ୍ମା ବିଷ୍ଣୁ ଶିବଆଦି ଦେବଗଣଙ୍କରେ
ପୂଜିତା ଅଟନ୍ତି ଯେହୁ ବିଧାନ ପ୍ରକାରେ ।
ସେହି ନେକ ପୂଜନୀୟ ଦେବୀ ସରସ୍ୱତୀ
ତାଙ୍କ ପାଦ ପଙ୍କଜରେ କରଇ ଭକତି ।
ନମସ୍ତେ ଜଗତମାତା ତ୍ରୈଲୋକ୍ୟପାବନୀ
ଅଶେଷ ଜଡ଼ତା ଦୁଃଖ ବିନାଶକାରିଣୀ ।
ଏହିରୂପେ ଧ୍ୟାନକରି ମନ୍ତ୍ରକୁ ଉଚ୍ଚାରି
ସମସ୍ତ ଦ୍ରବ୍ୟ ଅର୍ପଣ କରିବ ବିସ୍ତରି ।
ସେ ଅନ୍ତରେ ସ୍ତବପାଠ କଲାପରେ ପୁଣି
କବଚ ଘେନି ପ୍ରଣାମ କରିବ ସେକ୍ଷଣି ।
ଦଣ୍ଡବତ ହୋଇ ତଳେ ଉଠି ସେ ଅନ୍ତରେ
ପ୍ରାର୍ଥନା କରିବ ବେନିକର ଯୋଡ଼ି ଶିରେ ।
ଯେଉଁମାନଙ୍କର ଇଷ୍ଟଦେବୀ ସରସ୍ୱତୀ
ସେମାନଙ୍କ ବିଷୟରେ ଏହି ପୂଜା ରୀତି ।

ଉଦ୍ୟାରମ୍ଭ କାଳେ ସବୁ ଲୋକଙ୍କ ପକ୍ଷରେ
ପୂଜନୀ ଅଟନ୍ତି ଦେବୀ ଶାସ୍ତ୍ର ମତାନ୍ତରେ ।
ଆଉ ବସନ୍ତ ପଞ୍ଚମୀ ଶ୍ରବଣେ
ଶୁକ୍ଳ ପକ୍ଷ ମାଘମାସେ ।
ବୈଦିକ ଅଷ୍ଟାକ୍ଷର ମନ୍ତ୍ର ଉପଯୋଗେ
ପୂଜନ୍ତି ସେ ସରସ୍ୱତୀ ଦେବୀଙ୍କର ଆଗେ ।
ଯେଉଁମାନେ ଯେଉଁରୂପେ ଉପଦେଶ କରି
ଅଟେ ଏହି ମନ୍ତ୍ରକୁ ସେମାନେ ଜାଣି ।
ଓଁ କାର ପ୍ରଥମେ ଚାଡ଼ ପରେ ଦେବୀଙ୍କର
ଚତୁର୍ଥୀ ନାମ ନ୍ୟାସ କରିଣ ଆବର ।
ସ୍ୱାହା ଶେଷ ଅକ୍ଷରକୁ ବସାଇବ ଶେଷେ
ଏରୂପେ ହୋଇଲେ ମନ୍ତ୍ରରାଜ ବୋଲାଏ ସେ ।
ଏ ମନ୍ତ୍ର କଳ୍ପବୃକ୍ଷ ସଦୃଶ ଅଟଇ
ଜପିଲେ ନିଶ୍ଚୟ ମନକାମନା ପୂରଇ ।
ପୂର୍ବକାଳେ ପୁଣ୍ୟକ୍ଷେତ୍ର ଭାରତବର୍ଷରେ
ପତିତପାବନୀ ଗଙ୍ଗାନଦୀ ସମୀପରେ ।
ଜପ ମଧ୍ୟ ନାରାୟଣ ବାଲ୍ମୀକି ମୁନିଙ୍କୁ
ଦେଇଥିଲେ ଦୟାକରି ଏ ମନ୍ତ୍ରରାଜକୁ ।
ପୁଷ୍କର ତୀର୍ଥରେ ସୂର୍ଯ୍ୟ ପର୍ବ ଦିନେ ଜାଣି
ଶୁକଙ୍କୁ ପ୍ରଦାନ କଲେ ଭୃଗୁ ଋଷିମଣି ।
ଚନ୍ଦ୍ରପର୍ବ ଅବସରେ ମାରୀଚ ସେପରି
ବୃହସ୍ପତିଙ୍କୁ ପ୍ରଦାନ କଲେ ସ୍ନେହ ଧରି ।
ବଦରିକା ଆଶ୍ରମରେ ଦେବ ପିତାମହ
ଭୃଗୁଙ୍କୁ ଅର୍ପଣ କଲେ ପୁଣି କରି ସ୍ନେହ ।
କ୍ଷୀର ସମୁଦ୍ରର ତଟେ ଜରତ୍କାରୁ ମୁନି
ଆସ୍ତିକଙ୍କୁ ଦାନ କଲେ ନ ହୋଇଣ ଊଣି ।
ବିଭାଣ୍ଡକ ମୁନି ମେରୁଶିଖର ପ୍ରଦେଶେ
ଋଷ୍ୟଶୃଙ୍ଗ ମହର୍ଷିଙ୍କୁ ଦେଲେକ ହରଷେ ।
ଗୌତମ କଣାଦ ବେନି ମୁନିଙ୍କୁ ଡକାଇ
ମହାଦେବ ଏ ମନ୍ତ୍ରକୁ ଦେଲେ ତୋଷ ହୋଇ ।
ସେହିପରି ଦିନକର ଯାଜ୍ଞବଲ୍କ୍ୟ ପୁଣି
କାତ୍ୟାୟନ ମହର୍ଷିଙ୍କୁ ପାଶେ ଡାକି ଆଣି ।
ଏ ମନ୍ତ୍ର ପ୍ରଦାନ କରିଥିଲେ ହେ ନାରଦ
ଆଉ ଅନନ୍ତ ମନ୍ତ୍ର ଶାସ୍ତ୍ର ବିଶାରଦ ।
ପାଣିନି ଭରଦ୍ୱାଜଙ୍କୁ ସନ୍ତୋଷରେ ଦେଇ
ସାବଧାନ ହୋଇ ଜପ କର ହେ ବୋଇଲେ ।

ଗମ ତଟେ ଥିଲେ ସେ ଶାକଟାୟନ ଋଷି
ତାଙ୍କୁ ଅନନ୍ତଦେବ ଦେଲ ହେଇ ତୋଷି ।
ଏ ମନ୍ତ୍ରକୁ ଚାରିଲକ୍ଷ ଥର ଜପ କଲେ
ମନୁଷ୍ୟ ସିଦ୍ଧ ହୁଅଇ କହିଅଛ ଭଲେ ।
ମନ୍ତ୍ର ସିଦ୍ଧ କଲା ଲୋକ ବୃହସ୍ପତିଙ୍କର
ସମାନ ଅଟଇ ଦେଖ ମନରେ ବିଚାର ।
ମନ୍ତ୍ରର ବିଧାନ ସବୁ କହିଲେ ବିସ୍ତାର
କବଚ ସ୍ତୋତ୍ର ଏବେ ଶୁଣି ତପୋଧନ ।
ଯେଉଁ କବଚକୁ ବ୍ରହ୍ମା ଗନ୍ଧମାଦନରେ
ଭୃଗୁଙ୍କୁ କହିଥିଲେ ହରଷ ମନରେ ।
ଏହି ବିଶ୍ୱଶ୍ରେଷ୍ଠ ବିଶ୍ୱଜୟ କବଚକୁ
ଶୁଣ ମନଦେଇ କରି କହୁଛି ତୁମକୁ ।
ଦିନେ ଭୃଗୁ ମହାମୁନି ବ୍ରହ୍ମାଙ୍କ ଆଗରେ
ପଚାରିଲେ କଥା ବସି ଅତି ଆଦରରେ ।
ବୋଇଲେ ହେ ବ୍ରହ୍ମତତ୍ତ୍ୱ ଜ୍ଞାନ ବିଶାରଦ
ଆପଣଙ୍କଠାରୁ ଜାତ ହୋଇଅଛି ବେଦ ।
ସର୍ବଜ୍ଞ ସର୍ବଜନକ ସର୍ବ ଲୋକପୂଜ୍ୟ
ଅଟ ତୁମ୍ଭେ ପ୍ରଜାପତି ଦେବ ଅଧିରାଜ ।
ସରସ୍ୱତୀ ଦେବୀଙ୍କର କବଚକୁ ମୁହିଁ
ତୁମଠାରୁ ଶୁଣିବାକୁ ଇଚ୍ଛା ମୋ କରଇ ।
ସେହି ବିଶ୍ୱଜୟକାରୀ ଦିବ୍ୟ କବଚକୁ
କହିଣ ସନ୍ତୋଷ କର ମୋହର ମନକୁ ।
ଏହା ଶୁଣିକରି ବ୍ରହ୍ମା ବୋଇଲେ ହେ ବତ୍ସ
ଶୁଣ ମନ ଦେଇକରି ଯାହା ପଚାରୁଛ ।
ସର୍ବ ଶୁଭପ୍ରଦ ସେହି ଉତ୍ତମ କବଚ
ଯାହାର ମହିମା ଅଟେ ସବୁଠାରୁ ଉଚ୍ଚ ।
ଶ୍ରୁତି ସୁଖକର ଶ୍ରୁତି ପୂଜିତ ଅଟଇ
ଅନେକ ପ୍ରକାର ଫଳ ଦେଇ ସେ ପାରଇ ।
ଗୋଲୋକରେ ବୃନ୍ଦାବନେ ପ୍ରଭୁ ଭଗବାନ
ମନେ ଭାବି ମୋତେ ଯାହା କରିଥିଲେ ଦାନ
ଆଉ ରାସମଣ୍ଡଳେ ସେହି ଅଧୀଶ୍ୱର
ଯେଉଁ କବଚକୁ ଦେଇଥିଲେ ପୁନର୍ବାର ।
ଅତ୍ୟନ୍ତ ଗୋପିତ କଳ୍ପବୃକ୍ଷର ସମାନ
ଫଳଦାନ ବିଷୟରେ ଅଟଇ ମୋ ଜାଣ ।
ଅଶ୍ରୁତ ଅଦ୍ଭୁତ ମନ୍ତ୍ରସମୂହ ସହିତ
ଧାରଣ କଲେ ଶରୀର ଅଟଇ ରକ୍ଷିତ ।

ବୃହସ୍ପତିଙ୍କ ସମାନ ବୃଦ୍ଧି ବୃତ୍ତି ହୁଏ
ଦୁସ୍ତର ଜନ୍ମଜଣି ଦୂର ହୋଇଯାଏ ।
ଯାହାକୁ ଧାରଣ କରି ଶୁକ୍ର ମହାପତି
ରାକ୍ଷସଙ୍କ ମଧ୍ୟେ ପୂଜା ପାଇଲେକ ଅତି ।
ଆବର ବାଲ୍ମୀକ ମୁନି ପଠନ ଧାରଣ
କରନ୍ତି କବୀନ୍ଦ୍ରାଶକ୍ତି ପାଇଲେଟି ଜାଣ ।
ସାୟଂଭୁବ ମନୁ ମଧ୍ୟ ଯାହା ପ୍ରଭାବରେ
ପୂଜିତ ହୋଇଲେ ସବୁ ଲୋକଙ୍କ ମଧ୍ୟରେ ।
କଣାଦ ଗୌତମ କଣ୍ୱ ପାଣିନୀୟ ମୁନି
ଶାକଟ ସୁନନ୍ଦ ଆଦି ଯେତେ ଶାସ୍ତ୍ରଜ୍ଞାନୀ ।
ଯେଉଁ କବଚ ଯୋଗରେ ଗ୍ରନ୍ଥ ସଂକଳନ
କରିଥିଲେ ସେହିପରି ଦକ୍ଷ କାତ୍ୟାୟନ ।
ମହାମୁନି ବେଦବ୍ୟାସ ଯାହା ପ୍ରଭାବରେ
ଅଶେଷ ଗ୍ରନ୍ଥ ରଚନା କଲେ ସହଜରେ ।
ଶତାତପ ପରାଶର ସମ୍ବର୍ତ୍ତ ବଶିଷ୍ଠ
ଯାଜ୍ଞବଲ୍କ୍ୟ ଆଦି ଯେତେ ମୁନି ଋଷିଶ୍ରେଷ୍ଠ ।
ଯେଉଁ କବଚ ଧାରଣ ପଠନ ଯୋଗରେ
ସୁନ୍ଦର ଗ୍ରନ୍ଥ କଳ୍ପନା କଲେ ବସି ଘରେ ।
ଋଷ୍ୟଶୃଙ୍ଗ ଭରଦ୍ୱାଜ ଆସ୍ତିକ ଜାବାଲ
ଦେବଳ ପ୍ରଭୃତି ଯେତେ ମୁଖ୍ୟ ତପଶୀଳୀ ।
ସର୍ବପୂଜିତ ହୋଇଲେ ଯାହାର ପ୍ରଭାବେ
ତାଠାରୁ ଅଧିକ ହୋଇ ନାହିଁ କିଛି ଭବେ ।
ସେହି କବଚର ଋଷି ବ୍ରହ୍ମ ପ୍ରଜାପତି
ନିର୍ଦ୍ଦିଷ୍ଟ ହୋଇଛୁ ଛନ୍ଦ ରୂପରେ ବୃହତୀ ।
ଦେବତା ଅଟନ୍ତି ପ୍ରଭୁ ରାସ ଅଧୀଶ୍ୱର
ସର୍ବ ଅର୍ଥ ତତ୍ତ୍ୱଜ୍ଞାନ ସର୍ବ ଶାସ୍ତ୍ର ସାର ।
ସକଳ କବିତା ବୋଧ ଅର୍ଥେ ବିନିଯୋଗ
ହୁଅଇ ଜାଣ ହେ ଭୃଗୁ ମୁନି ମହାଭାଗ ।
ଯେଉଁ ନାମ ଚତୁର୍ଥ୍ୟନ୍ତ ମନ୍ତ୍ରକୁ ପ୍ରଥମେ
କହିଲି ସକଳ ବାକ୍ୟ ଆରମ୍ଭେ ସେ କ୍ରମେ ।
କରିବେଣି ତା ପରେ ସରସ୍ୱତୀଙ୍କ ପ୍ରାର୍ଥନା
କହିଲେ ଭୃଗୁଙ୍କୁ ବ୍ରହ୍ମା କରିଣ ଯୋଜନା ।
ମନଦେଇ ଶୁଣ ହେ ନାରଦ ମହାମୁନି
ତୁମ୍ଭଙ୍କୁ ଯେ କଥା କହୁଅଛୁ ତେତେ ଶୁଣ ।
ମସ୍ତକ ଦେଶକୁ ରକ୍ଷା କର ସରସ୍ୱତୀ
ଆବର ଭାଲକୁ ରଖ ବାକ୍ୟ ଅଧିଷ୍ଠାତ୍ରୀ ।

ଜଗତ ପାବନୀ ବେଦ ଶ୍ରୋତ୍ର ରକ୍ଷ କର
ରଖ ଓଗୋ ଭାରତୀ ଦେବୀ ଦୁଇନେତ୍ର ମୋର ।
ନାସାକୁ ପାଳନ କର ବଚନ ଦେବତା
ଓଷ୍ଠକୁ ରଖ ଗୋ ଦେବୀ ଅଧିଷ୍ଠାତ୍ରୀ ମାତା ।
ବ୍ରାହ୍ମୀଦେବୀ ଦୁଇ ଦନ୍ତପଂକ୍ତି ରକ୍ଷାକର
କଣ୍ଠକୁ ସର୍ବଦା ରଖ ମନ୍ତ୍ର ରକ୍ଷ କର ।
ମାୟାସ୍ୱରୂପିଣୀ ମୋର ଗ୍ରୀବାକୁ ପାଳନ ।
କରନ୍ତୁ ଶ୍ରୀରୂପା ସ୍କନ୍ଧଦ୍ୱୟକୁ ରକ୍ଷଣ ।
ବକ୍ଷକୁ ରଖନ୍ତୁ ବିଦ୍ୟା ଅଧିଷ୍ଠାତ୍ରୀ ଦେବୀ
ବିଦ୍ୟା ସ୍ୱରୂପିଣୀ ରକ୍ଷା କରନ୍ତୁ ଯେ ନାଭି ।
ସ୍ୱାହାରୂପା ସରସ୍ୱତୀ ପୃଷ୍ଠକୁ ରଖନ୍ତୁ
ସର୍ବ ବର୍ଣ୍ଣାତ୍ମିକ ଦେବୀ ପାଦକୁ ପାଳନ୍ତୁ ।
ସକଳ ଅଙ୍ଗକୁ ମୋର ରାଗ ଅଧିଷ୍ଠାତ୍ରୀ
ରକ୍ଷା କରନ୍ତୁ ସର୍ବଦା ଦେବୀ ଜଗଦ୍ଧାତ୍ରୀ ।
ମା କଣ୍ଠ ବାସିନୀ ପୂର୍ବଦିଗ ରକ୍ଷାକର
ଜିହ୍ୱାଗ୍ର ବାସିନୀ ରଖ ଅଗ୍ନିକୋଣ ମୋର ।
ବୁଧଙ୍କ ଜନନୀ ମା ଭାରତୀ ସରସ୍ୱତୀ
ଦକ୍ଷିଣ ଦିଗକୁ ରକ୍ଷାକର ଗୋ ସତତ ।
ତ୍ରିଅକ୍ଷର ରୂପିଣୀ ଦେବୀ ନୈର୍ଋତ ଦିଗକୁ
କବି ଜିହ୍ୱାଗ୍ର ବାସିନୀ ରଖ ପଶ୍ଚିମକୁ ।
ଦେବୀ ଅମ୍ବିକା ରୂପିଣୀ ବାୟବ୍ୟ ପାଳନ
ସର୍ବଦା କରନ୍ତୁ ମୋର ହିତେ ଦେଇ ମନ ।
ଉତ୍ତର ଆଶାରେ ଗଦ୍ୟପଦ୍ୟ ନିବାସିନୀ
ସଦାୟ ହୋଇ ରଖନ୍ତୁ କରୁଛୁ ବନ୍ଦୀ ମୁଁ ।
ସର୍ବଶାସ୍ତ୍ର ନିବାସିନୀ ଈଶାନ୍ୟ କୋଣରେ
ମାତ୍ର ହୋଇଥାନ୍ତୁ ଯେ ମଙ୍ଗଳ କରିବାରେ ।
ଊର୍ଦ୍ଧ୍ୱସ୍ଥଳେ ସାହା ହୁଅ ସକଳ ପୂଜିତା
ରଖ ମୋତେ ରସାତଳେ ପୁସ୍ତକ ବାସିନୀ ।
ସକଳ ସ୍ଥାନରେ ଗ୍ରନ୍ଥବୀଜ ସ୍ୱରୂପିଣୀ
ଦୟା ବହିଣ ମନରେ ରଖନ୍ତୁ ମା ଜାଣି ।
କବଚ ବିଧାନ ଅଟେ ଏହି ପଦକରେ
ସକଳ ମନ୍ତ୍ରର ବୀଜ ଅଟେ ଏ ବିଧିରେ ।
ଏହାର ନାମ ଅଟଇ ବିଶ୍ୱଜୟ ଜାଣ
ସାକ୍ଷାତରେ ପରଂବ୍ରହ୍ମ ସ୍ୱରୂପ ପ୍ରମାଣ ।
ପୂର୍ବକାଳେ ଧର୍ମ ମୁଖୁଁ ଗନ୍ଧ ମାଦନରେ
ଶୁଣିଥିଲି ମୁହିଁ ଏକ ସମୟରେ ।

ଏହି ସେନ୍ଦେହେ ବଖାଣିଲ ତୁମ୍ଭ ଅଗ୍ରତରେ
ବଧ୍ୟେପ୍ ନ ଦେଇ ଏହା କହିବା ଅନ୍ୟରେ ।
ବସ୍ତପୁଷ୍ପ ପୁଣି ବସ୍ତ୍ର ଅଳଙ୍କାର ମାନ
ଆଣି ଗୁରୁଙ୍କୁ ତୋଷିବ କରିଣ ପୂଜନ ।
କବଚ ଧାରଣ କରି ତାଙ୍କୁ ଦଣ୍ଡବତ
କରିଲେ ସକଳକାର୍ଯ୍ୟ ହୁଅଇ ସାଧିତ ।
ସିଦ୍ଧି ହୁଏ ପାଞ୍ଚଲକ୍ଷ ଜପିଲେ ଏକାନ୍ତେ
ଏହିରୂପେ ଲେଖା ହୋଇଅଛି ନାନା ଶାସ୍ତ୍ରେ
କବଚ ଧାରଣ କଲେ ବୃହସ୍ପତି ପରି
ହୁଅଇ ସେ ବ୍ୟକ୍ତି ଭ୍ରମ ନାହିଁ ସେ କାହାରି ।
ବିଦ୍ୟା ବୁଦ୍ଧିରେ ସେ ଜନ ପଣ୍ଡିତ ହୁଅଇ
ତିନିଲୋକରେ ସର୍ବଦା ସେହୁ ପୂଜାପାଇ ।
ବାଗ୍ଦେବୀ ତାଙ୍କୁ ଦୟା କରନ୍ତି ଅଚିରେ
ସେହିନା ହୁଅଇ ଶ୍ରେଷ୍ଠ କବିଙ୍କ ମଧ୍ୟରେ ।
ଯେ କବଚ ସେହିଜନ ଧାରଣ କରଇ
ମଧ୍ୟନରେ ସମସ୍ତଙ୍କୁ ସେ ଜିଣିପାରଇ ।
ଏହିପରି ନାରାୟଣ ଗୋଟି ଗୋଟି କରି
ବିଧାତା ନନ୍ଦନ ଆଗେ କହିଲେ ବିସ୍ତାରି ।
କବଚ ପୂଜନ ସ୍ତୋତ୍ର ଧ୍ୟାନ ଆଦି ଯେତେ
ବୁଝାଇ ଦେଲେ ନାରଦ ପ୍ରଭୁ ଜଗନ୍ନାଥେ ।
ଏହା ପରେ ଆନଗାଥା କହିବି ଉଚିତ
ଶ୍ରୀ ନନ୍ଦ ଭାବ ଲେଖେ ନେନବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସରସ୍ୱତୀଙ୍କ କବଚ ସମ୍ବନ୍ଧରେ ନାରାୟଣଙ୍କ ମୁଖରୁ ନାରଦଙ୍କର ଶ୍ରବଣ ବର୍ଣ୍ଣନେ ନାମ ଚତୁର୍ଥୋଽଧ୍ୟାୟ ।

---

# ପଞ୍ଚମ ଅଧ୍ୟାୟ

## ନାରାୟଣଙ୍କ ଦ୍ୱାରା ସରସ୍ୱତୀ ସ୍ତୋତ୍ର ବର୍ଣ୍ଣନ

ଏଥୁଅନ୍ତେ ଆନ ଗାଥା ଶୁଣ ମନଦେଇ
ନାରଦଙ୍କୁ ନାରାୟଣ କହନ୍ତେ ବୁଝାଇ ।
ଆହେ ମୁନିବର ତୁମ୍ଭେ ସାବଧାନେ ଶୁଣ
ସରସ୍ୱତୀଙ୍କର ସ୍ତବ କରିବା ବଖାଣ ।
ପୂର୍ବେ ଯାଜ୍ଞବଲ୍କ୍ୟ ନାମେ ଏକ ମୁନି ଥିଲେ
ଏହି ସ୍ତବ ଦ୍ୱାରାହିଁ ସେ ସନ୍ତୁଷ୍ଟ କରିଲେ ।
ସରସ୍ୱତୀ ଦେବୀ ତାଙ୍କୁ ହେଲେ ପରସନ୍ନ
କବିତା ଶକତି ଦିବ୍ୟ ଜ୍ଞାନକଲେ ଦାନ ।
ଆଦ୍ୟରେ ସେ ଗୁରୁଙ୍କର ଶାପ ପାଇକରି
ରହିଲେ ବ୍ରହ୍ମାଣ୍ଡେ ବିଦ୍ୟାହୀନ ହୋଇକରି ।
ସେଥିଲାଗି ଭାସ୍କରଙ୍କ ସନ୍ନିଧିକୁ ଗଲେ
କୋଣାର୍କ ତୀର୍ଥରେ ରବି ଦରଶନ କଲେ ।
ଦୁଃଖିତ ମନରେ ବସି କଲେ ପୁଣି ଧ୍ୟାନ
ସ୍ତୁତି କଲେ ଶୋକଜଳେ ଭାସି ପୁନଃ ପୁନଃ ।
ତାହା ଜାଣି ଦିନକର ପ୍ରସନ୍ନ ହୋଇଲେ
ଉତ୍ତମ ପ୍ରକାରେ ତାଙ୍କୁ ବେଦ ପଢ଼ାଇଲେ ।
ସେ ଅନ୍ତେ ବୋଇଲେ ଶୁଣ ଆହେ ଋଷିବର
ସ୍ତୁତିପାଠ କର ତୁମ୍ଭେ ସରସ୍ୱତୀଙ୍କର ।
ତାହାଙ୍କୁ ସେବିବ ପ୍ରସନ୍ନ କରାଇ ପାରିବ
ତେବେ ତୁମ୍ଭର ଏ କଷ୍ଟ ଦୂର ହୋଇଯିବ ।
ଏରୂପେ କହିଣ ଅନ୍ତର୍ଧାନ ହେଲେ ରବି
ଯାଜ୍ଞବଲ୍କ୍ୟ ମୁନି ତାହାଙ୍କର କଥା ଭାବି ।
ସ୍ନାନ ସନ୍ଧ୍ୟାଆଦି ନିତ୍ୟକର୍ମକୁ ସାରିଲେ
ସରସ୍ୱତୀ ଦେବୀଙ୍କର ସ୍ତୁତି ଆରମ୍ଭିଲେ ।
ବୋଇଲେ ଗୋ ବାକ୍ୟଦେବୀ ତ୍ରୈଲୋକ୍ୟଈଶ୍ୱରୀ
ବିଦ୍ୟା ଅଧିଷ୍ଠାତ୍ରୀ ନାମ ଅଟଇ ତୁମ୍ଭରି ।
ଗୁରୁଙ୍କ ଶାପରେ ମୁହିଁ ବିଦ୍ୟାହୀନ ହୋଇ
ରହିଛି ଆବର ସ୍ମୃତିଶକ୍ତିକୁ ହଜାଇ ।
ମୋହିପାରେ ଦୟାକରି ହେ ଜଗନ୍ମାତ
ଜ୍ଞାନ ଦିଅ ସାର୍ଥ ହେଉ ମୋ ଜୀବିତ ।
ଭାଗ୍ୟ କାତରାଙ୍କୁ କର ଉଦ୍ଧରଣ
ଏ ବାହାରେ ବେଧକାଳ ହିତ ସ୍ତବ ।

ଅଧ୍ୟାପନା କରିବାର ଶକତିକୁ ଦିଅ
ଉତ୍ତମ ଶିଷ୍ୟବର୍ଗରେ ଖ୍ୟାତି କରାଅ ।
ଆଉର ପ୍ରଦାନ କର ଗ୍ରନ୍ଥକାରୀପଣ
ପ୍ରତିଭା ଉତ୍ତର ଶକ୍ତି ସମିତିରେ ପୁଣ ।
ଉତ୍ତମ ଜନରେ ମୋର ସତ୍ୟବୋଧ ଜ୍ଞାନ
ଲୋପ ପାଇବାରୁ ମୂର୍ଚ୍ଛି ହୋଇଅଛି ହୀନ ।
ନୂତନ ଭାବରେ ତାହା କର ସରଜନା
ହୃଦୟରୁ ନିବାର ଘୋର ଦୁଃଖର ବେଦନା ।
ଯେଉଁରୂପେ ବୈଦ୍ୟ ନିଏ ବ୍ୟାଧିକୁ ନିବାଇ
ସେରୂପେ ବଦେ ମୋ'ର ହର ମହାମାୟୀ ।
ବ୍ରହ୍ମସ୍ୱରୂପା ପରମ ଦେବୀ ସନାତନୀ
ନମସ୍ତେ ଶ୍ରୀ ନାରାୟଣ ବକ୍ଷବିଳାସିନୀ ।
ସକଳ ଶାସ୍ତ୍ରରୂପିଣୀ ଅଟ ତୁମ୍ଭେ ମାତ
ତୁମ୍ଭ ଚରଣକମଳେ ରହୁ ମୋର ଚିତ୍ତ ।
ତୁମ୍ଭ ବିନା ଏ ଜଗତ ଜୀବନ୍ତାବସ୍ଥାରେ
ଥିଲେ ହେଲେ ମଲା ପରି ହୁଏ ନିରନ୍ତରେ ।
ଆଉର ଚେତନାବନ୍ତ ଯେଉଁ ପ୍ରାଣୀମାନେ
ମୂକ ସଦୃଶ ହୁଅନ୍ତି ତୁମ୍ଭର ବିହୁନେ ।
ତୁମ୍ଭ ଯୋଗେ ଜ୍ଞାନଶୀଳ ଅଟେ ଚରାଚର
ଘେନ ଗୋ ଜନନୀ ମୋର କୋଟି ନମସ୍କାର
ଯେ ତୁମ୍ଭେ ବଚନ ଅଧିଷ୍ଠାତ୍ରୀ ଦେବୀ ଅଟ
ବାକ୍ୟ ସ୍ୱରୂପରେ ସର୍ବ ସ୍ଥାନରେ ପ୍ରକଟ ।
ହିମ ଚନ୍ଦନ କୁମୁଦ କୁନ୍ଦ ଇନ୍ଦୁ ଶୋଭା
ତୁଚ୍ଛ କରୁଅଛି ତୁମ୍ଭ ନିଜ ଅଙ୍ଗପ୍ରଭା ।
ବର୍ଣ୍ଣ ଅଧିଷ୍ଠାତ୍ରୀ ଦେବୀ ଅକ୍ଷରରୂପିଣୀ
ନମସ୍ତେ ଶ୍ରୀସରସ୍ୱତୀ ଦୁଃଖନିବାରଣୀ ।
ବିସର୍ଗ ବିନ୍ଦୁ ମାତ୍ରାର ଅଧିପତି ଯେହୁ
ସେ ଭାରତୀ ଚରଣରେ ପ୍ରଣାମ କରଇ ।
ଯାହାଙ୍କ ବିନା ଲେକରେ ସଂଖ୍ୟାକାରୀଗଣ
ହୋଇ ନ ପାରନ୍ତି ସଂଖ୍ୟା କାର୍ଯ୍ୟରେ ନିପୁଣ
କାଳସଂଖ୍ୟା ସ୍ୱରୂପିଣୀ ଯେହୁ ଦେବୀଙ୍କର
ଚରଣପଙ୍କଜେ ମୋର କୋଟି ନମସ୍କାର ।
ବ୍ୟାଖ୍ୟାରୂପେ ଯେଉଁ ଦେବୀ ପ୍ରକାଶ ହୁଅନ୍ତି
ତର୍କର ଅଧିକାରିଣୀ ଦେବତା ବୋଲନ୍ତି ।
ଭ୍ରମ ନିବାରିଣୀ ହେତୁ ତୁମ୍ଭଙ୍କର ପାଦେ
ସର୍ବଦା ମୋହର ମନ ରହୁ ଏ ପ୍ରମାଦେ ।

ସ୍ମୃତିଶକ୍ତି ଜ୍ଞାନଶକ୍ତି ବୁଦ୍ଧିଶକ୍ତି ଯେହୁ
ଯାହାଙ୍କ ପ୍ରତିଭା ସିଦ୍ଧିଶକ୍ତି ବୋଲି କହୁ ।
ତାହାଙ୍କ ଚରଣେ ମୋର ହେଉ ନମସ୍କାର
କରନ୍ତୁ ସେ ଭକ୍ତଙ୍କର ବିପଦୁଁ ଉଦ୍ଧାର ।
ଯେତେବେଳେ ବିଧାତାଙ୍କ ସନତ୍‌କୁମାର
ପଚାରିଲେ ଆସି ତତ୍ତ୍ୱଅର୍ଥ ଜ୍ଞାନସାର ।
ଜଡ଼ପରି ହୋଇ ବ୍ରହ୍ମା ତତ୍ତ୍ୱର ସିଦ୍ଧାନ୍ତ
କହି ନ ପାରିଲେ ଯେଣୁ ନ ପାଇଲେ ଅନ୍ତ ।
ସେ ସମୟେ ତାହା ଜାଣି ପ୍ରଭୁ ଭଗବାନ
ଶ୍ରୀକୃଷ୍ଣ ମିଳିଲେ ବ୍ରହ୍ମାଙ୍କର ସନ୍ନିଧାନ ।
କୋମଳ ମଧୁରତର ବଚନ କହିଲେ
ବଚନଦେବୀଙ୍କ ସ୍ତୁତି କର ହେ ବୋଇଲେ ।
ତାହା ଜାଣି ପ୍ରଜାପତି ଆନନ୍ଦ ମନରେ
କଲେ ସରସ୍ୱତୀଙ୍କର ସ୍ତୁତି ସେ କାଳରେ ।
ତାଙ୍କ ପ୍ରସାଦରେ ସର୍ବ ତତ୍ତ୍ୱର ସିଦ୍ଧାନ୍ତ
କହିଲେ ଉତ୍ତମରୂପେ ସେ ତ ଜ୍ଞାନବନ୍ତ ।
ଯେଉଁଣ କାଳରେ ମହୀ ଶେଷଙ୍କ ପାଖରେ
ପୁଚ୍ଛା କଲେ ଶାସ୍ତ୍ରତତ୍ତ୍ୱ ବୁଝିବା ଇଚ୍ଛାରେ ।
ଶେଷଦେବ ମଧ୍ୟ କିଛି କହି ନ ପାରିଲେ
ବାଳକ ପରାଏ ନାନା ସନ୍ଦେହ ପାଇଲେ ।
କଶ୍ୟପ ମୁନିଙ୍କଠାରୁ ଉପଦେଶ ଘେନି
ସେଅନନ୍ତ ସରସ୍ୱତୀଙ୍କ ସ୍ତୁତିକଲେ ପୁଣି ।
ସେ ସଭାଶୁଁ ସୁନିର୍ମଳ ସିଦ୍ଧାନ୍ତ କହିଲେ
ପୃଥ୍ୱୀରେ ଯେ ଭ୍ରମ ଥିଲା ନିବାରଣ କଲେ ।
ବାଲ୍ମୀକି ମହର୍ଷିଙ୍କୁ ବ୍ୟାସ ମୁନିବର
ପୁଚ୍ଛିଲେ ପୁରାଣସୂତ୍ର ତତ୍ତ୍ୱ ସେ କାଳର ।
ମଜ୍ଜନ ହୋଇଣ ସରସ୍ୱତୀଙ୍କୁ ସ୍ମରଣ
କଲେ ସେ କାଳରେ ସ୍ଥିରକରି ନିଜ ମନ ।
ସେ ଘେନି ନମସ୍ତେ ତତ୍ତ୍ୱ ପ୍ରକାଶ କରିଲେ
ସକଳ ସନ୍ଦେହ ଦୂର କରାଇଣ ଦେଲେ ।
ବ୍ୟାସଦେବ ତାଙ୍କଠାରୁ ତାହା ସବୁ ଶୁଣିଲେ ।
ପ୍ରମାଦ ଧ୍ୱଂସ କାରଣ ଜ୍ଞାନକୁ ପାଇଲେ ।
ଶ୍ରୀକୃଷ୍ଣଙ୍କ କଳାରେ ତ ଜନ୍ମ ସେ ଅଟନ୍ତି
ଶୁଣିଣ ପୁରାଣସୂତ୍ର ତୋଷକରି ମତି ।
ଶତବର୍ଷ ପର୍ଯ୍ୟନ୍ତେ ପୁଷ୍କର ତୀର୍ଥରେ
ଆରାଧିଲେ ସରସ୍ୱତୀଦେବୀ ତୁମ୍ଭ ଚରଣରେ ।

ମନ ନିବେଶିତ କରି ଧ୍ୟାନ କଲେ ବସି
ସେତେବେଳେ ତୁମ୍ଭେ ତାଙ୍କ ମାନସରେ ପ୍ରବେଶି
ଇଷ୍ଟ ଅନୁସାରେ ବର ମାଗ ବୋଲି କହି
ପଣ୍ଡିତଙ୍କ ଦୟାବନ୍ତ ହୁଅନ୍ତେ ତୁମ୍ଭେହି ।
କବିତା ଶକତି ବୁଦ୍ଧି ଦେବାପାଇଁ ବର
ମାଗିଲେ ଯେ ବ୍ୟାସଦେବ ମୁନିଙ୍କ ଶେଖର ।
ଅସ୍ତୁବୋଲି ମହାମାୟେ ଗଲ ତୁମ୍ଭେ ଚନ୍ତ
କବିତା କଲେ ଯେ ତହୁଁ ସବୁଠାରୁ ବଳି ।
ବେଦ ବିଭାଗ ଆବର ଅନେକ ପୁରାଣ
ଉପପୁରାଣ ସଂହିତା କଲେକ ରଚନ ।
ମହେନ୍ଦ୍ର ଯେ ସମୟରେ ଶ୍ରୀସଦାଶିବଙ୍କୁ
ତତ୍ତ୍ୱଜ୍ଞାନ ପଚାରିଲେ ଯାଇ ସମୀପକୁ ।
ତୁମ୍ଭଙ୍କୁ ମୁହୂର୍ତ୍ତେ ଯାଏ ସୁମରଣା କରି
ଦେଲେ ତତ୍ତ୍ୱଜ୍ଞାନ ତାଙ୍କୁ ଦେବ ତ୍ରିପୁରାରି ।
ବୃହସ୍ପତିଙ୍କୁ ମହେନ୍ଦ୍ର ଶବ୍ଦଶାସ୍ତ୍ର ବିଧି
ଯେ କାଳେ ପୁଚ୍ଛିଲେ ସ୍ଥିର ନ କରିଣ ବୁଦ୍ଧି
ପୁଷ୍କର ତୀର୍ଥରେ ବୃହସ୍ପତି ମହାମନା
ଦିବ୍ୟବର୍ଷ ସହସ୍ରେକ ତୁମ୍ଭଙ୍କୁ ଭାବନା ।
କରିବାରୁ ତୁମ୍ଭ ତହୁଁ ବର ପାଇକରି
ଇନ୍ଦ୍ରଙ୍କୁ କହିଲେ ଶବ୍ଦ ଶାସ୍ତ୍ର ଯେ ବିସ୍ତରି ।
ଯେଉଁ ମୁନିଶ୍ରେଷ୍ଠମାନେ ବେଦ ଅଧ୍ୟୟନ
କରନ୍ତି ଅଥବା ଶିକ୍ଷା ଦିଅନ୍ତି ଯେ ପୁଣ ।
ସେମାନେ ତୁମ୍ଭଙ୍କୁ ମନେ ସୁମରି ସତତ
ସେହି କାର୍ଯ୍ୟମାନଙ୍କରେ ହୁଅନ୍ତି ପ୍ରବୃତ୍ତ ।
ମୁନୀନ୍ଦ୍ର ମାନବ ଶ୍ରେଷ୍ଠ ମନୁ ଯେ ମାନବ
ସୁରାସୁର ଯକ୍ଷ ରକ୍ଷ ବ୍ରହ୍ମା ବିଷ୍ଣୁ ଶିବ ।
ଏମାନେ ତୁମ୍ଭର ସ୍ତୁତି କରନ୍ତି ସର୍ବଦା
ନମସ୍ତେ ଶ୍ରୀ ସରସ୍ୱତୀ ଶ୍ରୀମତୀ ଶାରଦା ।
ସହସ୍ର ବଦନ ଶେଷ ପଞ୍ଚମୁଖ ଶିବ
ଚତୁର୍ମୁଖ ପ୍ରଜାପତି ଦେବଙ୍କର ଦେବ ।

ସହସ୍ରଙ୍କର ସ୍ତୁତିପାଠ କରିବା ବିଷୟେ
ଜଡ଼ ପ୍ରାୟ ହୋଇ ରହିଥାନ୍ତି ଅତିଶୟେ ।
ସ୍ଥିର ମନୁଷ୍ୟ ଯେ ମୁହିଁ ଗୋଟିଏ ମୁଖରେ
ସେ ଦେବୀଙ୍କ ସ୍ତୁତି ସ୍ତୋତ୍ର କିବା ଗଢ଼ିପାରେ
ସହସ୍ର ମୁଖରେ କହି ନୁହେଁ ଯାଙ୍କ ଗୁଣ
ଏକମୁଖେ ମୁହିଁ କେହ୍ନେ କରିବି ବଖାଣ ।
ଏହିରୂପେ ଯାଜ୍ଞବାଲ୍କ୍ୟ ବହୁ ସ୍ତୁତି କଲେ
ମସ୍ତକ ନୁଆଇଁ କରଯୋଡ଼ି ଉଭାହେଲେ ।
ନିରାହାରେ କେତେଦିନ ପୁଣି ସେହିପରି
ରୋଦନ କଲେ ଦେବୀଙ୍କ କରୁଣା ସୁମରି ।
ତାହା ଜାଣି ଜ୍ୟୋତିର୍ମୟୀ ଦେବୀ ସରସ୍ୱତୀ
ପ୍ରବେଶ ହୋଇଲେ ତାଙ୍କ ଆଗରେ ଝଟିତି ।
ଅପ୍ରକାଶେ ରହି ସୁଧୀର ବଚନ କହିଲେ
କବିଙ୍କ ମଧ୍ୟରେ ଶ୍ରେଷ୍ଠ ହୁଅ ତୁମ୍ଭେ ଭଲେ ।
ଏରୂପେ କହି ସେ ତହୁଁ ହୋଇ ଅନ୍ତର୍ଦ୍ଧାନ
ବଇକୁଣ୍ଠ ଭୁବନକୁ ଗଲେ ତତକ୍ଷଣ ।
ଏହି ସ୍ତୋତ୍ର ସାବଧାନ ହୋଇ ଯେ ପଢ଼ଇ
କବିଙ୍କର ମଧ୍ୟେ ଶ୍ରେଷ୍ଠ ହୁଅଇଟି ସେହି ।
ବୃହସ୍ପତି ସମାନରେ ତାର ଦିବ୍ୟ ଜ୍ଞାନ
ହୁଅଇ ସନ୍ଦେହ ଏଥି ମନରେ ନ ଘେନ ।
ଯେ ଅଟଇ ମହାମୂର୍ଖ ବର୍ଣ୍ଣଜ୍ଞାନ ହୀନ
ସେ ଯେବେ ସାଦରେ ଏହା କରିବ ପଠନ ।
ପଣ୍ଡିତ ସୁଜ୍ଞାନୀ ଶ୍ରେଷ୍ଠକବି ସେ ହୋଇବ
ସକଳ ଜନରେ ଦିବ୍ୟ ପୂଜାକୁ ପାଇବ ।
ସରସ୍ୱତୀଙ୍କ ଦୟାରୁ ସମସ୍ତ ସମ୍ଭବ
ସେହି ପାଷାଣ ଦେହରେ ଜୀବନ ଖେଳିବ ।
ମରୁଭୂମିରେ ସୁନ୍ଦର ଶସ୍ୟ ଉପୁଜିବ
ଧାର୍ମିକ ଗଣେ ପାତକୀ ଗଣନା ହୋଇବ ।
ବୋଲେ ଦୀନ ସେବକବାସୀ ଆହେ ସାଧୁଜନେ
ସରସ୍ୱତୀଙ୍କୁ ଭଜନ କର ଏକ ମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣଙ୍କ ଦ୍ୱାରା ସରସ୍ୱତୀ
ସ୍ତୋତ୍ର ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।

# ଷଷ୍ଠ ଅଧ୍ୟାୟ

## ନାରାୟଣଙ୍କ ଦ୍ୱାରା ଗଙ୍ଗାସ୍ତୋତ୍ର ବର୍ଣ୍ଣନ

ନାରଦଙ୍କ ଅଗ୍ରତରେ ପୁଣି ନାରାୟଣ
କହନ୍ତି ମଧୁର ବାକ୍ୟେ ହରଷ ଚିତ୍ତେଣ ।
ଶୁଣ ହେ ଧାତାଙ୍କ ସୁତ ସ୍ଥିର କରି ମତ
ବଇକୁଣ୍ଠ ଭୁବନରେ ଦେବୀ ସରସ୍ୱତୀ ।
ନାରାୟଣଙ୍କ ସନ୍ନିଧେ ବାସ କଲେ ଯାଇ
ରୂପେ ଗୁଣେ ତାହାଙ୍କର ମନ ନେଲେ ମୋହି ।
କେତେଦିନ ଅନ୍ତେ ଗଙ୍ଗାଦେବୀଙ୍କ ସହିତ
ତାଙ୍କର ହୋଇଲା ଯହିଁ କଳହ ବହୁତ ।
କ୍ରୋଧଭରେ ଭାଗୀରଥୀ ତାଙ୍କୁ ଶାପ ଦେଲେ
ଭାରତ ଭୂମିରେ ନଦୀ ହୁଅ ତୁ ବୋଇଲେ ।
ସେ ଯେଣୁ ଗୋଟିଏ ନଦୀ ହେଲା ସରସ୍ୱତୀ
ସେ ନଦୀର ନୀରଧାର ସ୍ୱଚ୍ଛ ଅଟେ ଅତି ।
ତା ମଧ୍ୟରେ ଯେଉଁ ଜନ ସ୍ନାନଦାନ କରଇ
ସକଳ ପାପ ବିନାଶି ବୈକୁଣ୍ଠେ ବସଇ ।
ଅତି ପବିତ୍ର କାରିଣୀ ସେହି ନଦୀ ଜାଣ
କଳୁଷ ନାଶିନୀ ପୁଣ୍ୟତୀର୍ଥରେ ପ୍ରମାଣ ।
ତପସ୍ୟା କରଇ ଯେହୁ ସରସ୍ୱତୀ କୂଳେ
ପାପତାପ ନାଶ କରି ବସେ ସ୍ୱର୍ଗଆଳେ ।
ତୃଣରାଶି ଯେଉଁ ପରି ପାବକ ଦହଇ
ସେ ରୂପେ ସେ ନୀର ମଧ୍ୟେ ପାପ ଯାଏ ଧୋଇ ।
ଯେବଣ ଲୋକର ମୃତ୍ୟୁ ହୋଇବା କାଳରେ
ଭସ୍ମ ତାହାର ପଡ଼ଇ ସରସ୍ୱତୀ ନୀରେ ।
ବଇକୁଣ୍ଠପୁରେ ନାରାୟଣଙ୍କ ଭବନେ
ସେ ଲୋକ ବାସ କରଣ ରହେ ସବୁଦିନେ ।
ଆବର ସେ ସପ୍ତଜନ୍ମ ପାତକ ଯୋଗରେ
ଦଗ୍ଧ ହେଉଥାଏ ଘୋର କଳୁଷ ଅଗ୍ନିରେ ।
ଥରେ ମାତ୍ର ସେ ନଦୀରେ କଲେ ଯାଇ ସ୍ନାନ
ତକ୍ଷଣେ ସକଳ ପାପ ହୁଅଇ ଦହନ ।
ଅନ୍ତଃକାଳେ ବିଷ୍ଣୁଲୋକେ ମିଳଇ ଆବାସ
ମହାସୁଖେ ରହି ଦିନ କରଇ ସେ ଶେଷ ।
ଚତୁର୍ଦ୍ଦଶୀ ପୌର୍ଣ୍ଣମାସୀ ଷଷ୍ଠ ଦିବସରେ
ଅଥବା ଅକ୍ଷୟପର୍ବ ଦିନମାନଙ୍କରେ ।
ବ୍ୟତିପାତ ଯୋଗେ ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ
ଆବର ଯେ ପୁଣ୍ୟଦିନ ହୁଅଇ ତହିଁରେ ।
ଜ୍ଞାନରେ ବା ଅଜ୍ଞାନରେ ସ୍ନାନ ଯେ କରଇ
ହରିଙ୍କ ପାଶରେ ଦେହଅନ୍ତେ ସେ ରହଇ ।
ସେ ନଦୀତଟରେ ବସି ମାସେ ପରିଯନ୍ତେ
ସରସ୍ୱତୀ ମନ୍ତ୍ର ଯେହୁ ଜପ କରେ ନିତ୍ୟେ ।
ମହାମୂର୍ଖ ହୋଇଥିଲେ ହେଲେ ସେହି ଲୋକ
କବିତା କେତେ ତାର ହୁଅଇ ଅଧିକ ।
ପ୍ରତିଦିନ ଯେହୁ ତହିଁ କରୁଥିବ ସ୍ନାନ
ଦେହ ଅନ୍ତେ ନ ଆସିବ ସେ ମର୍ତ୍ତ୍ୟଭୁବନ ।
ସରସ୍ୱତୀଙ୍କର ଗୁଣ କିଞ୍ଚିତ ମାତର
କହିଲି ତୁମ୍ଭ ଆଗରେ ଆହେ ମୁନିବର ।
ପୁଣି ଆଉ କେଉଁ କଥା ଶୁଣିବାକୁ ମନ
ଥିଲେ ତା ପଚାର ଆମ୍ଭେ କହିବା ବଚନ ।
ଏହିରୂପେ ନାରାୟଣ କହି ତୁନି ହେଲେ
ନାରଦ ମହର୍ଷି ତାଙ୍କୁ ପୁଣି ପଚାରିଲେ ।
ବୋଇଲେ ହେ ନାରାୟଣ ମୁନିଗଣବର
ଆଉ ଏକ କଥା କହ ମୋହର ଆଗର ।
କିରୂପେ ଗଙ୍ଗାଙ୍କ ଶାପେ ଦେବୀ ସରସ୍ୱତୀ
ଭାରତବର୍ଷରେ ଆସି ହେଲେ ସ୍ରୋତସ୍ୱତୀ ।
କାହିଁକି କଳହ ଅବା ତାଙ୍କର ହୋଇଲା
କାହା ଠାରେ କେବା ଆଗ ଅପରାଧ କଲା ।
ଏ ବିଷୟ ଶୁଣିବାକୁ କୌତୁକ ମୋହର
ହେଉଛି ଏ ଯେଣୁ ତାହା ପରକାଶ କର ।
ଅମୃତ ସମାନ ଅଟେ ଯେଉଁ କଥାରସ
କର୍ଣ୍ଣମୁଖେ ଯେତେ ପାନ କଲେହେଁ ମାନସ ।
ତୃପତ ନୁହଇ ଏହା ଜଗତ ନିୟମ
ମଙ୍ଗଳକାର୍ଯ୍ୟରେ କେବେ ହୁଏ କି ବିଶ୍ରାମ ।
ଗଙ୍ଗାଦେବୀ ତ ଅଟନ୍ତି ଶାନ୍ତଶୀଳ ମୂର୍ତ୍ତି
କିରୂପେ ସେ ହେଲେ ପୁଣି କୋପପୂର୍ଣ୍ଣ ମତି ।
ସକଳ ଲୋକପୂଜିତା ଦେବୀଙ୍କୁ କିପରି
ଶାପ ଦେଲେ ମନେ ମଧ୍ୟେ କିଛି ନ ବିଚାରି ।

ଦୁହେଁ ତ ଅଟନ୍ତି ତେଜ ଓଜରେ ସମାନ
ତାଙ୍କ ବାଦ ଶ୍ରୁତି ସୁଖକର ଅଟେ ଜାଣ ।
ଅନ୍ୟ ପୁରାଣଗଣରେ ଏହାଙ୍କର କଥା
ଆଜ ପର୍ଯ୍ୟନ୍ତେ ଶୁଣା ନ ଥିଲା ସର୍ବଥା ।
ତାହା ଶୁଣି ନାରାୟଣ ବୋଇଲେ ମୁଁ ଏବେ
କହୁଛି ସେ କଥା ଶୁଣ ଇଚ୍ଛା ଅଛି ଯେବେ ।
ଶୁଣିଲେ ନିଶ୍ଚୟ ପାପ ହୋଇଯିବ ଦୂର
ଆହେ ନାରଦ ଏଥିରେ ସନ୍ଦେହ ନ କର ।
ହରଙ୍କ ଭାର୍ଯ୍ୟା ଲକ୍ଷ୍ମୀ ସରସ୍ୱତୀ ଦୁହେଁ
ଅଟନ୍ତି ତ ଏହା ଜାଣି ଅଛନ୍ତି ସଭିଏଁ ।
ବାଞ୍ଛନ୍ତି ଗଙ୍ଗାଦେବୀ ବିଷ୍ଣୁ ନଖକୋଣୁ
ତାହାଙ୍କ ଭାର୍ଯ୍ୟା ମଧ୍ୟ ବୋଲନ୍ତି ସେ ତେଣୁ ।
ପାଶେ ଅବସ୍ଥାନ କରି ତିନି ସପତ୍ନୀ
ସେବା କରୁଥାନ୍ତି ନିତି ପତି ମନ ଜାଣି ।
ଦିନକରେ ବିଷ୍ଣୁଙ୍କର ମୁଖକୁ ଅନାଇ
ନିରୀକ୍ଷଣ କଲେ ଗଙ୍ଗା ପ୍ରୀତିମନ୍ତ ହୋଇ ।
ପୁଣି କେତେଥର ନେତ୍ରକୋଣରେ ଚାହିଁଲେ
ଅଳପ ଅଳପ ହାସ ପ୍ରକାଶ କଲେ ।
ଶ୍ରୀହରି ତାହାଙ୍କ ମନଭାବ ଜାଣିକରି
ସେ ମଧ୍ୟ ହସିଲେ କ୍ଷଣେ ବିଳମ୍ବ ନ କରି ।
ଲକ୍ଷ୍ମୀ ସେ କଥାକୁ ଦେଖି ନ ଜାଣିଲା ପ୍ରାୟେ
ରହିଲେ ତାଙ୍କ ଆଡ଼କୁ ନ ଚାହିଁ ଟିକଏ ।
ମାତ୍ର ସରସ୍ୱତୀ ଦେବୀ ସହି ନ ପାରିଲେ
କ୍ରୋଧରେ ନୟନ ରଙ୍ଗ କରି ଅନାଇଲେ ।
ତାହା ଜାଣି ମହାଲକ୍ଷ୍ମୀ ପ୍ରବୋଧି କହିଲେ
ତଥାପି ତାହାଙ୍କ ମନ ନ ବୁଝିଲା ତିଳେ ।
ବାଳସୂର୍ଯ୍ୟ ପରି ମୁଖମଣ୍ଡଳ ଦିଶିଲା
କ୍ରମେ କ୍ରମେ କ୍ରୋଧ ସହୁଁ ଅଧିକ ହୋଇଲା ।
ପତିଙ୍କୁ ଆଦର ଗଙ୍ଗାଦେବୀଙ୍କୁ ଅନାଇ
କହିଲେ କ୍ରୋଧରେ ବେନି ଓଷ୍ଠକୁ କମ୍ପାଇ ।
ବୋଇଲେ ଉତ୍ତମ ପତି ହୋଇଥାଏ ଯେହି
ସବୁ ଭାର୍ଯ୍ୟାଠାରେ ସମବୁଦ୍ଧି ସେ କରଇ ।
ତାହାକୁ ଧାର୍ମିକ ବୋଲି ବୋଲନ୍ତି ସମସ୍ତେ
କେବେହେଲେ ନିନ୍ଦା ସେହି ନ ପାଏ କାହିଁତେ
ବିପରୀତ ଆଚରଣ କରେ ଯେଉଁ ଲୋକ
ଜାଣିବା ଲୋକେ ତାହାକୁ ବୋଲୁଥାନ୍ତି ଧିକ ।

ଆଜି ଦେଖ ଗଙ୍ଗାଠାରେ ତୁମ୍ଭର ଯେ ପ୍ରେମ
ହୋଇଅଛି ଏବେ ଜଣାଗଲା ତାର ମର୍ମ ।
ଲକ୍ଷ୍ମୀଠାରେ ମଧ୍ୟ ଯେତ୍ପରି ସ୍ନେହ ଅଛି
ଜାଣୁଛି କେବଳ ମୋହଠାରେ ନାହିଁ କିଛି ।
ଲକ୍ଷ୍ମୀ ମଧ୍ୟ ଗଙ୍ଗାଠାରେ କରନ୍ତି ସ୍ନେହ
ସେ ଯେଣୁ ତାହାଙ୍କ କଥା କରିନେଲେ ସହ୍ୟ ।
ମୋହର ଜୀବନ ଥାଇ ଦେଖ ଆଜ କସ
ନିଶ୍ଚୟ ତେଜିବି ଖାଇ କାଳକୂଟ ବିଷ ।
ସପତ୍ନୀ ମଧ୍ୟେ ହୀନ ହୋଇ ରହିବାର
ଜୀଇଁବାଠାରୁ ମରିବା ଅଟେ ଶ୍ରେୟସ୍କର ।
ପତିଙ୍କ ପ୍ରେମରୁ ଯେବେ ବଞ୍ଚିତ ହୋଇଲି
ଜାଣୁଛି ନିଷ୍ଫଳ ପ୍ରାଣ ଥିଲେ ହେଲେ ମଲି ।
ତୁମ୍ଭଙ୍କୁ ଯା ସତ୍ତ୍ୱରୂପ ସମସ୍ତ ପାଳକ
କହନ୍ତି ସେମାନଙ୍କୁ ମୁଁ ବୋଲେ ଅବିବେକ ।
ସେମାନେ ତୁମ୍ଭର ବୁଦ୍ଧି କଳନା ନ କରି ।
ପ୍ରଶଂସା କରୁଛନ୍ତି ତୁମ୍ଭ ବାଇପରି ।
ଏରୂପେ ସରସ୍ୱତୀଙ୍କ ନିଷ୍ଠୁର ବଚନ
ଶୁଣିବାରୁ ତାଙ୍କ କୋପ ଜାଣି ନାରାୟଣ ।
କାହିଁତେ ବିଚାର କରି ମାନସରେ ପୁଣି
କିଛି ନ କହି ସେଠାରୁ ଉଠିଲେ ସେକ୍ଷଣି ।
ପୁରୁ ବାହାର ହୋଇଣ ସଭାରେ ମିଳିଲେ
ଏଥୁ ଅନନ୍ତରେ ଯାହା ହେଲା ଶୁଣ ଭଲେ ।
ନାରାୟଣଙ୍କ ବିକାର ଦେଖି ସରସ୍ୱତୀ
କହିଲେ ଗଙ୍ଗାଦେବୀଙ୍କୁ ହୋଇ କୋପମତି ।
ଆଗୋ ଦୁରାଚାରୀ ତୁମ୍ଭ ଲଜ୍ଜା ଛାଡ଼ିକରି
ବସିଅଛୁ କେତେ ସ୍ୱାମୀଗର୍ବ ମନେ ଧରି ।
ପତି ସଉଭାଗ୍ୟ ଦେଖାଇବାକୁ ଆମ୍ଭଙ୍କୁ
ଆମ୍ଭ ଆଗେ କରୁଅଛୁ ଶୃଙ୍ଗାର ଚେଷ୍ଟାକୁ ।
ଏବେ ପତି ବହୁଁ ଥିବେ ତୋର ଗର୍ବ ମୁହିଁ
ଭାଙ୍ଗିବି ଦେଖିବା ରଖି ପାରିବ ଯେ କେହି ।
ଏହା କହି ଧଡ଼ଫଡ଼ ହୋଇଣ ଉଠିଲେ ।
ଗଙ୍ଗାଙ୍କର କେଶ ଧରିବାକୁ ଧାଇଁଗଲେ ।
ଦୁହିଙ୍କ ମଧ୍ୟରେ ଥାଇ ଲକ୍ଷ୍ମୀ କମଳମା
ନିବାରଣ କଲେ ତାଙ୍କୁ ନାନାକଥା ଭଣି ।
ସେ ସକାଶୁ ସରସ୍ୱତୀ କ୍ରୋଧରେ ଜଳିଲେ
ଲକ୍ଷ୍ମୀଙ୍କ ମୁଖକୁ ଚାହିଁ ବେଗେ ଶାପ ଦେଲେ ।

ଗଙ୍ଗା ପ୍ରତେ ଉକ୍ତି ତୁମ୍ଭେ ନିବାରିଲ ଯେବେ
ଏଣୁ ଯେଣ ଶାପ ଦେଉଅଛୁ କ୍ରୋଧଚିତ୍ତ ।
ମନୁଷ୍ୟ ଲୋକରେ ବୃକ୍ଷ ନଦୀରୂପ ହୋଇ
ରହିବ ଜାଣ ଏଥିରେ ସନ୍ଦେହ ସେ ନାହିଁ ।
ବିପରୀତ ଦେଖି ବୃକ୍ଷ ସହିତ ସମାନ
ରହିଛ ସଭାରେ କିଛି ନ କହି ବଚନ ।
ସେ ସକାଶୁ ମୋର ଶାପ ଫଳିବ ଅବଶ୍ୟ
ଆନକର ନ ପାରିବେ ବ୍ରହ୍ମା ବିଷ୍ଣୁ ଈଶ ।
ଏହିରୂପେ ଶାପଦେଇ ତୁନି ହେଲେ ବାଣୀ
ଲକ୍ଷ୍ମୀଦେବୀ ସେ କଥାକୁ ମନେ ମନେ ଗୁଣି ।
କ୍ରୋଧହେଲେ ନାହିଁ କିବା ଶାପ ଦେଲେ ନାହିଁ
ସେ ରୂପେ ତାହାଙ୍କୁ ଧରି ଉଭା ହେଲେ ତହିଁ ।
ତଥାପି ନିବୃତ୍ତି ନୋହି ସେ ଦେବୀ ଶାରଦା
ଉଦ୍ୟତା ହେଲେ ଗଙ୍ଗାଙ୍କୁ ଦେବାପାଇଁ ବାଧା ।
ତାଙ୍କ ରୀତି ଦେଖି କୋପ ହେଲେ ମନ୍ଦାକିନୀ
ବୋଇଲେ ବାଇକି ତୁମ୍ଭେ ହେଲ କମଳିନୀ ।
ସେ ଦୁଷ୍ଟମତିକୁ କରି ଧରିଅଛ କହ
ତା ଟେକ ଭାଙ୍ଗିବି ଏହିକ୍ଷଣି ଛାଡ଼ିଦିଅ ।
ମୋତେ ଅବା କସକରି ପାରିବଟି ସେହି
ତୁଣ୍ଡ ବଢ଼ାଇଲେ ଛାଡ଼େ ଦେଇଅଛୁ କହି ।
ବାଗଦୋଷୀ ଅଟଇ ସେ କଳପ୍ରିୟବତୀ
ଦୁଷ୍ଟମତେ ତା ସରି କେ ନ ମିଳିବ କ୍ଷିତି ।
ବଚନରେ ଶରୀରରେ ଅବା ଯେତେ ବଳ
ଅଛି ତାର ମୋ ଆଗରେ ଦେଖାଉ ସକଳ ।
ମୋ ବଳ ସହିତେ ନିଜ ବଳ କଷିବାକୁ
ଆସୁଅଛି ପରି ଧାଇଁ ମୋହର ପାଶକୁ ।
ନିର୍ଭୟ ଭାବରେ ତୁମ୍ଭେ ତାକୁ ଛାଡ଼ିଦିଅ
ସବୁରି ସଙ୍ଗରେ ସୁଖେ ବସି ଦେଖୁଥାଅ ।
ଦୁହିଙ୍କର ପରାକ୍ରମ ବଳ ଏହିଠାରେ
ପ୍ରକାଶିତ ହେବ ସର୍ବେ ଦେଖିବେ ନେତ୍ରରେ
ଏତେ ବୋଲି ଶୁଣି ହସ୍ତେ ଜଳକୁ ଧରିଲେ
ମନ୍ତ୍ର ପଢ଼ିଣ ଦାରୁଣ ଶାପ ତହୁଁ ଦେଲେ ।
ବୋଇଲେ ଗୋ ମହାଲକ୍ଷ୍ମୀ ତୁମ୍ଭଙ୍କୁ ଯେ ଶାପ
ଦେଇଛି ବୃଥାରେ ମନେ କରି ମହାକୋପ ।
ମୋ ଶାପରେ ନଦୀରୂପେ ମର୍ତ୍ତ୍ୟକୁ ସେ ଯାଉ
ପାପିଙ୍କ ସଙ୍ଗରେ ମିଶି ଦିନ ନେଉଥାଉ ।
କାଳାନ୍ତରେ ପାପୀଙ୍କର ପାପଅଂଶ ଘେନି
କଳୁଷିତ ହୋଇ ସବୁକାଳେ ରହୁ ପୁଣି ।
ଏହା ଶୁଣି ସରସ୍ୱତୀ ପୁଣି କୋପବନ୍ତ
ଆଉ ଥରେ ତାଙ୍କୁ ଶାପ ଦେଲେକ ତୁହାଇ ।
ବୋଇଲେ ତୁ ମଧ୍ୟ ଯାଇ ମନୁଷ୍ୟ ଲୋକରେ
ରହ ପାପୀଙ୍କର ପାପଅଂଶ ଘେନି ଶିରେ ।
ଏହି ସମୟରେ ଦେବ ନାରାୟଣ ତହିଁ
ଆସିଲେ ପାର୍ଷଦଗଣ ସଙ୍ଗେ ଛନ୍ତି ରହି ।
ସମସ୍ତେ ଅଟନ୍ତି ଚତୁର୍ଭୁଜ ଦିବ୍ୟକାୟ
ଆଦିତ୍ୟ ସମାନ ଦିଶୁଛନ୍ତି ତେଜୋମୟ ।
ନାରାୟଣ ସରସ୍ୱତୀ ଦେବୀଙ୍କୁ ସେକାଳେ
ଆଲିଙ୍ଗନ କରିନେଇ ବସାଇଲେ କୋଳେ ।
ନାନା କଥା କହି ତାଙ୍କୁ କରାଇଲେ ଶାନ୍ତ
ପରବ୍ରହ୍ମ ଜାଣିବାରେ ସେ ତ ଜ୍ଞାନବନ୍ତ ।
ସେ ଦୁହିଙ୍କ ପରସ୍ପର କଳହ ଶୁଣିଲେ
ଏ ବାହାରେ ଦୁହିଙ୍କର ଶାପକୁ ବୁଝିଲେ ।
ଜାଣିଲେ ସବୁରି ମନ ହୋଇଛି ଦୁଃଖିତ
ସେ ଘେନି କହିଲେ ବାକ୍ୟ ସେ ସମୟୋଚିତ ।
ବୋଇଲେ ଗୋ ମହାଲକ୍ଷ୍ମୀ କଳାଘେନି ତୁମ୍ଭେ
ଧର୍ମଧ୍ୱଜ ଗୃହେ ଜାତ ହୁଅ ବୋଲୁଁ ଆମ୍ଭେ ।
ଅଯୋନିସମ୍ଭବା ହୋଇ ଜନମ ହୋଇବ
କେତେ ଦିନଯାଏ ନୃପପଦରେ ରହିବ ।
ସେ ଅନ୍ତରେ ଦୈବଯୋଗ ବୃକ୍ଷରୂପ ଧରି ।
କଟାଇବ କେତେକାଳ କରମ ଆଦରି ।
ପୁଣି ମୋର ଅଂଶେ ଶଙ୍ଖଚୂଡ଼ ନିଶାଚର
ଜନମିବ ସେ କାଳରେ ପୃଥିବୀ ମଧ୍ୟର ।
ତାହାର କାମିନୀ ତୁମ୍ଭେ ହେବ ସେ ଅନ୍ତରେ
ଏରୂପେ ଅଳପଦିନ ଗତହେବା ପରେ ।
ଆଉଥରେ ପୁଣି ଆମ୍ଭ ଭାର୍ଯ୍ୟା ହୋଇବ
ତୁଳସୀ ନାମରେ ଜଗତରେ ଖ୍ୟାତ ହେବ ।
କଳାରେ ସରିତରୂପ ହୋଇଥାଅ ବେଗେ
ବହିବ ଭାରତୀଶାପେ ଭାରତ ଭୂଭାଗେ ।
ପଦ୍ମାବତୀ ବୋଲି ନାମ ପାଇବ ସେଠାରେ
ଏମନ୍ତ କହିଣ ନାରାୟଣ ସେ ଉତ୍ତରେ ।
ଗଙ୍ଗାଙ୍କୁ ବୋଇଲେ ତୁମ୍ଭେ ଅଂଶଅବତାର
ହୁଅ ଭାରତୀଙ୍କ ଶାପେ ଆଗେ ସମାବର ।

ଜଗତପାବନୀ ନଦୀ ସ୍ୱରୂପ ହୋଇବ
ପାପୀଙ୍କର ପାପରାଶି ଧଉତ କରିବ ।
ଦୁଷ୍କର ତପସ୍ୟା କରି ରାଜା ଭଗୀରଥ
ଆଣିବେ ତୁମ୍ଭଙ୍କୁ କାଳେ କଢ଼ାଇଣ ପଥ ।
ଯେତେବେଳେ ଭଗୀରଥି ନାମକୁ ବହିବ
ଜଗତେ ପବିତ୍ର ପୂଣ୍ୟଫଳଦା ହୋଇବ ।
ଆମ୍ଭର ଅଂଶରେ ଜାତ ଯେଉଁ ରତ୍ନାକର
ତାହାଙ୍କ ପତ୍ନୀ ହୋଇବ ଆଜ୍ଞାରେ ଆମ୍ଭର ।
ଏ ବାହାରେ ମୋର କଳା ହେବ ମହୀତଳେ
ଜାତ ହୋଇବେ ଶାନ୍ତନୁ ଜାଣ ଗୋ ଅବଳେ ।
ତାଙ୍କର ଭରିଯା ମଧ୍ୟ ହେବ ସୁରେଶ୍ୱରୀ
ସରସ୍ୱତୀ ଶାପ କେବା ପାରେ ଆନକରି ।
ଏରୂପେ ଗଙ୍ଗାଦେବୀଙ୍କୁ କହି ନାରାୟଣ
କହିଲେ ଅନାଇଁ ସରସ୍ୱତୀଙ୍କ ବଦନ ।
ଆଗୋ ସରସ୍ୱତୀଦେବୀ ଯାଅ ଏବେ ତୁମ୍ଭେ ।
ଗଙ୍ଗାଙ୍କର ଶାପ ଭୋଗକର ବୋଲୁଁ ଆମ୍ଭେ ।
ସପତ୍ନୀଙ୍କ ସହିତରେ କଳହ ଯେ କଲ
ଏବେ ମୋ ବୋଲରେ ଯାଇ ଭୁଞ୍ଜ ତାର ଫଳ
ବ୍ରହ୍ମାଙ୍କର ପତ୍ନୀ ହୋଇ ରହ ତାଙ୍କ ପାଶ
କେ ଅବା ସହିବ ନିଜ କଲା କର୍ମ ଦୋଷ ।
ଶିବଙ୍କ ପାଶକୁ ଗଙ୍ଗା ଯାଆନ୍ତୁ ଏକ୍ଷଣି
ରହନ୍ତୁ କେବଳ ଆମ୍ଭ ପାଶେ କମଳମା ।
ଶାନ୍ତ ସୁନ୍ଦର ଅଟଇ ସ୍ୱଭାବ ତାଙ୍କର
ସର୍ବଦା ଥାଆନ୍ତୁ ମୋର ପାଶେ ଭକ୍ତିକରି ।
ମହାସତୀ ପତିବ୍ରତା ସତ୍ତ୍ୱ ସ୍ୱରୂପିଣୀ
ସୁଶୀଳା କ୍ରୋଧରହିତା ଧର୍ମ ବିଳାସିନୀ ।
ଯେତେ ପତିବ୍ରତା ସ୍ତ୍ରୀ ଜଗତେ ଅଛନ୍ତି
ସମସ୍ତେ ତାଙ୍କ ଅଂଶରେ ଜାତ ହୋଇଛନ୍ତି ।
ତାହାଙ୍କ ସମାନ ଶାନ୍ତ ସ୍ୱଭାବ ମଧୁର
ପ୍ରତ୍ୟେକ ସ୍ଥାନରେ ଦେଖାଯାନ୍ତି ଏହିପରି ।
ତିନଗୋଟି ଭାର୍ଯ୍ୟା ପୁଣି ତିନଗୋଟି ଶଳା
ଆବର ତିନୋଟି ଭୃତ୍ୟ ଥିଲେ ଲୋକ ମଲା ।
ବେଦ ପୁରାଣରେ ଏହି ତିନଙ୍କର କଥା
ନିଷେଧ ହୋଇଣ ଚଳି ଆସୁଛି ସର୍ବଥା ।
ତିନୋଟି ହୋଇ ଏମାନେ ରହିଲେ ଏକତ୍ର
ତାହାଙ୍କ ଯୋଗେ ଅଶାନ୍ତି ହୁଅଇ ସର୍ବତ୍ର ।

ପୁରୁଷଙ୍କ ଅଧିକାର କଲେ ଯେବେ ସ୍ତ୍ରୀଏ
ଅଥବା ପୁରୁଷେ ତାଙ୍କୁ ରହିଥାନ୍ତି ଡରି ।
ସେହି ପୁରୁଷଙ୍କ ଜନ୍ମ ନିଷ୍ଫଳ ଅଟଇ
କେବେହେଲେ ତାହାଙ୍କର ଶୁଭ ନ ହୁଅଇ ।
ଯେଉଁ ଲୋକର ଭାର୍ଯ୍ୟା କଟୁକଥା କହେ
ଅଥବା ଦୁର୍ଭାଗା ହୋଇ ଜନ୍ମକାଳୁ ଥାଏ ।
ଆବର କଳହ କରୁଥାଏ ନିରନ୍ତର
ବନରେ ରହିବାପାଇଁ ହୁଏ ତାର ମତି ।
ନିଜ ଗୃହଠାରେ ବନବାସକୁ ଅଧିକ
ସର୍ବଦା ମନରେ ଭାବୁଥାଏ ସେହି ଲୋକ ।
ଜଳସ୍ଥଳ ଫଳମୂଳ ମିଳଇ ବନରେ
ତା ମଧ୍ୟ ଦୁର୍ଲ୍ଲଭ ହୁଏ ସେପରି ଗୃହରେ ।
ଶ୍ରେୟ ଅଟେ ଝାମ୍ପଦେବା ଅନଳ ମଧ୍ୟର
ନୋହିଲେ ବା ହିଂସ୍ରଜନ୍ତୁ ପାଶେ ରହିବାର ।
କିନ୍ତୁ ଦୁଷ୍ଟ କାମିନୀର ସଙ୍ଗତରେ ବାସ
ଆବର ବିଶ୍ୱାସ କଲେ ନିଶ୍ଚେ ପ୍ରିୟ ନାଶ ।
ବ୍ୟାଧିଠାରୁ ବିଷଠାରୁ ଯେଉଁ ତାପ ହୁଏ
କଣ୍ଠକଣ୍ଠ ହେଲେ ତାହା ସହ୍ୟ ହେଉଥାଏ ।
ଦୁଷ୍ଟମତୀ ସ୍ତ୍ରୀମୁଖୁ ଯେଉଁ କଟୁଭାଷା
ବାହାରେ ତା ସହିବାକୁ ନ ପାଏ ଭରସା ।
ସ୍ତ୍ରୀବଶ ହୁଏ ଯେଉଁ ପୁରୁଷ ଅଧମ
ନିଷ୍ଫଳ ଅଟଇ ଜାଣ ତାହାର ଜନମ ।
ଯେତେ ଧର୍ମ ଆଚରଣ କରଇ ସେ ନିତ୍ୟେ
ତାର ଫଳ ଭୋଗ ହୋଇ ନ ପାରେ କଦାଚିତେ ।
ଜୀବନଦଶାରେ ସେହୁ ନିନ୍ଦା ପାଇଥାଏ
ଦେହ ଅନ୍ତେ ମହାଘୋର ନରକକୁ ଯାଏ ।
ଯଶ ପଉରୁଷ ଆଦି ହୁଏ ତାର ନଷ୍ଟ
ଜୀଇଁଥାଇ ଲଭଇ ସେ ମରଣ ସଙ୍କଟ ।
ବହୁତ ସପତ୍ନୀ ଏକ ସ୍ଥାନରେ ରହିଲେ
ତହିଁରୁ ମଙ୍ଗଳ କେବେ ନ ହୁଅଇ ଭଲେ ।
ଗୋଟିଏ ଭାର୍ଯ୍ୟା ହେବ କରଇ ଯେ ଘର
ମନୁଷ୍ୟ ଲୋକରେ ଭୋଗସୁଖ ହୁଏ ତାର ।
ଏ ସକଳ ତୁଁ ବୋଲୁଅଛି ଆଗୋ ମନ୍ଦାକିନ
ଶିବଙ୍କ ପାଶକୁ ଯାଅ ମୋ ବଚନ ଘେନ ।
ବ୍ରହ୍ମାଙ୍କ ପାଶକୁ ତୁମ୍ଭେ ଯାଅ ସରସ୍ୱତୀ
ଏତିକ ମାତ୍ରକ ତୁମ୍ଭଠାରେ ମୋ ମିନତି

ଏକୋ ହୋଇ ମହାଲକ୍ଷ୍ମୀ ମୋ ପାଶେ ରହନ୍ତୁ
ଅଟନ୍ତି ସେ ମୋର ସୁଖ ସମ୍ପଦର ହେତୁ ।
ଯେଉଁ ସ୍ତ୍ରୀ ପତିବ୍ରତା ସୁଶୀଳା ସୁନ୍ଦରୀ
ତାକୁ ସଙ୍ଗେ ଘେନି ବାସ କରେ ଯେ ନିରନ୍ତର ।
ଇହଲୋକ ସ୍ୱର୍ଗସୁଖ ଭୋଗ କରି ଅନ୍ତେ
ଧର୍ମ ମୋକ୍ଷ ଉଭୟ ସେ ଲଭଇ ନିଶ୍ଚିନ୍ତେ ।
ପତିବ୍ରତା କାମିନୀର ପତି ସୁଖ ପାଏ
ଦୁଷ୍ଟପତ୍ନୀ ସକାଶରୁ ଦୁଃଖ ଜାତ ହୁଏ ।
ଏହିରୂପେ କହି ତୁନି ହେଲେ ନାରାୟଣ
ଗଙ୍ଗା ସରସ୍ୱତୀ ତାହା କରନ୍ତେ ଶ୍ରବଣ ।
ଉଚ୍ଚେ ରୋଦନ କରି ବୁଝି ନିଜ ଦୋଷ
ପଦପଦ୍ମରେ ଆଲିଙ୍ଗନ କଲେ ଛାଡ଼ି ରୋଷ ।
ଆଲୋଚନା କରି କ୍ରମେ ପତିଙ୍କ ଆଗରେ
କହିଲେ ଲୋତକ ଜଳ ରଖି ନୟନରେ ।
ପ୍ରଥମରେ ସରସ୍ୱତୀ ବୋଇଲେ ହେ ନାଥ
ଅନୁଜ୍ଞା ଦିଅ ତେଜିବାପାଇଁ ତୁମ୍ଭ ସାଥ ।
ଯୋଗରେ ଶରୀର ତ୍ୟାଗ କରିବି ମୁଁ ସାଇଁ
ଉତ୍ତମ ସ୍ୱାମୀଙ୍କୁ ଛାଡ଼ି କେ ପାରଇ ରହି ।
ନିଜପତି ସ୍ନେହରୁ ଯେ ହୁଅଇ ବଞ୍ଚିତ
ପଦେ ପଦେ ଦୁଃଖ ତାକୁ କରେ କବଳିତ ।
ଦୃଷ୍ଟିପଣ କରିବାରୁ ଏ ଦୁର୍ଦ୍ଦଶା ଭୋଗ
କରିବାପାଇଁକି ମୋତେ ହେଲା ଏବେ ଯୋଗ ।
ଅତ୍ୟନ୍ତ ଅଧିକ ଯାହା ହୁଏ ମହୀତଳେ
ତାହାର ପତନ ଘଟିଥାଏ କାଳବଳେ ।
ଏବେବୋଲି ସରସ୍ୱତୀ ହୁଅନ୍ତେ ମଉନ
ଶୋକଭରେ ଗଙ୍ଗାଦେବୀ କହିଲେ ବଚନ ।
ଆହେ ପ୍ରିୟପତି ମୋର କେଉଁଦୋଷ ଦେଖି
ଘଉଡ଼ି ଦେଉଛ ମୋତେ ପାଶରେ ନ ରଖି ।
ନର୍ଦ୍ଦୋଷରେ ଦଣ୍ଡ ଯେଣୁ ଦେବା ହେଲେ ମୋତେ
ଦେହ ତ୍ୟାଗ କରିବାକୁ ଭାବୁଅଛି ଚିତ୍ତେ ।
ନର୍ଦ୍ଦୋଷିଣୀ କାମିନୀକୁ ତ୍ୟାଗ କରେ ଯେହୁ
କୃତଘ୍ନ ପୁରୁଷ ତାକୁ ଜଗତରେ କହି ।
କଳପେ ପର୍ଯ୍ୟନ୍ତ ସେହୁ ନରକରେ ବାସ
କରଇ ଏ କଥା ଶ୍ରୁତି ଶାସ୍ତ୍ରରେ ପ୍ରକାଶ ।
ଆପଣ ଜଗତକର୍ତ୍ତା ତ୍ରୈଲୋକ୍ୟ ଈଶ୍ୱର
ଆପଣଙ୍କ ପକ୍ଷେ ଏହା ନୁହେଁ କାର୍ଯ୍ୟକର ।

ଏହିରୂପେ ଦୁହିଁଙ୍କର ବଚନକୁ ଶୁଣି
କହିଲେ ପତିଙ୍କ ମୁଖ ଚାହିଁ କମଳିନୀ ।
ହେ ନାଥ ଆପଣ ସାକ୍ଷାତରେ ସତ୍ତ୍ୱରୂପ
ଆଶ୍ଚର୍ଯ୍ୟ କଥା ଏ ଯାହା କରୁଛନ୍ତି କୋପ ।
ଭାର୍ଯ୍ୟାଙ୍କ ଦୋଷ କ୍ଷମା କର ମହାବାହୁ
ଉତ୍ତମ ପତିର କ୍ଷମାଠାରୁ ବଳି ଆଉ ।
ନାହିଁ କିଛୁ ଜଗତରେ ବୋଲି ମନେ ଘେନ ।
ପ୍ରୀତି କଥା କହି ତୋଷ କର ଆମ୍ଭ ମନ ।
କଳା ଘେନି ଯେବେ ମୁହିଁ ଭାରତବର୍ଷକୁ
ଯିବି ସରସ୍ୱତୀଙ୍କର ଶାପ ଭୋଗିବାକୁ ।
ତେବେ କେତେକାଳ ସେହିସ୍ଥାନେ ବାସକରି
ଦର୍ଶନ କରିବି ଆପଣଙ୍କ ମୁଖପେରି ।
କାରୂପେ ପାତକୀ ଜନେ ମୋର ଜଳେ ସ୍ନାନ
କରି ଛଡ଼ାଇବେ ନିଜ ନିଜ ପାପମାନ ।
ଶାପରୁ ମୁକତି ଲଭି ମୁହିଁ କେଉଁପରି
ଆସିବି ନିଜ ସ୍ଥାନକୁ କହ ଦୟା କରି ।
କଳାରେ ତୁଳସୀ ରୂପେ ଧର୍ମଧ୍ୱଜସୁତା
ହେବି କେଉଁପରି ମୋତେ ଲାଗିଲାଣି ଚିନ୍ତା ।
ଆଉରି ବୃକ୍ଷ ରୂପରେ ପ୍ରକାଶିତ ହେବି
କେମନ୍ତେ ତହିଁରୁ ପୁଣ ମୁକତି ପାଇବି ।
ଉଦ୍ଧାର କରିବେ ପ୍ରଭୁ ମୋତେ କେତେଦିନେ
ସେ କଥା ବିସ୍ତାରି ଏବେ କହ ତୋଷମନେ ।
ଗଙ୍ଗାଦେବୀ ପୁଣି ସରସ୍ୱତୀଙ୍କ ଶାପରେ
ବହିବେ ତ ନଦୀରୂପେ ଭାରତବର୍ଷରେ ।
ସେ ପୁଣି କେତେଦିନରେ ଲଭିଣ ମୁକତି
ଆସିବେ ତୁମ୍ଭ ପାଶକୁ ଆହେ ପ୍ରାଣପତି ।
ସେହିପରି ସରସ୍ୱତୀ ଗଙ୍ଗାଙ୍କର ଶାପେ
ଭାରତବର୍ଷରେ ଜାତ ହୋଇବେ ତ ଆପେ ।
କେତେକାଳ ଅନ୍ତେ ତୁମ୍ଭ ପାଶକୁ ଆସିବେ
କି ଅବା ସର୍ବଦା ସେହି ସ୍ଥାନରେ ରହିବେ ।
ସରସ୍ୱତୀ ଦେବୀଙ୍କୁ ଯା ବ୍ରହ୍ମାଙ୍କ ପାଶକୁ
ଆଉରି ଶିବଙ୍କ ପାଶେ ପେଷୁଛ ଗଙ୍ଗାଙ୍କୁ ।
ଉଚିତ କରିଅଛ ତାହା କ୍ଷମାଗୁଣ ଘେନ
ଏହାବୋଲି ମହାଲକ୍ଷ୍ମୀ ତାଙ୍କ ପାଦ ବନ୍ଦି ।
ଦୁଇ ହସ୍ତ ଧରି ତହିଁ ଶିର ଲଗାଇଲେ
ପୁନଃପୁନଃ କରି କେତେ ରୋଦନ ସେ କଲେ ।

ଏମନ୍ତ ପ୍ରିୟାଙ୍କ ମୁଖୁଁ ମଧୁର ବଚନ
ଶୁଣି ହାସ ପରକାଶି ଦେବ ନାରାୟଣ ।
ବକ୍ଷରେ ଲଗାଇ ତାଙ୍କୁ ଆଲିଙ୍ଗନ କଲେ
ପ୍ରସନ୍ନ ନୟନେ ଚାହିଁ ଏମନ୍ତ କହିଲେ ।
ବୋଇଲେ ଗୋ ପ୍ରାଣପ୍ରିୟେ କହିଲୁ ଯା ତୁହି ।
ପାଳନା କରିବ ସତ୍ୟ କହୁଅଛୁ ମୁହିଁ ।
ସମାନ ଭାବରେ ସବୁ ସପତ୍ନୀଙ୍କଠାରେ
ସ୍ନେହ ଆଚରିବ ନଷ୍ଟେ ଭାବୁଛୁ ମନରେ ।
ସରସ୍ୱତୀ କଳାମାନେ ଭାରତକୁ ଯାଇ
ରହନ୍ତୁ ପୁଣ୍ୟସଲିଳା ନଦୀରୂପ ହୋଇ ।
ଅର୍ଦ୍ଧଅଂଶେ ବ୍ରହ୍ମାଙ୍କର ସଦନକୁ ଯାନ୍ତୁ
ଅନ୍ୟ କଳା ସେହି ମୋର ପାଶେ ରହିଥାନ୍ତୁ ।
ଗଙ୍ଗାଦେବୀ ଭଗୀରଥ ପଥ ଅନୁସରି
ବହନ୍ତୁ ସରିତରୂପେ ଭାରତ ଉପରି ।
ପବିତ୍ର କରିବାପାଇଁ ତ୍ରିଭୁବନ ଲୋକ
ରହିବେ ମୋ ସମୀପରେ ଛାଡ଼ିଦେଇ ଦୁଃଖ ।
କାଳେ ମହାଦେବଙ୍କର ମସ୍ତକରେ ସ୍ଥାନ
ପାଇବେ ସରସ୍ୱତୀଙ୍କ ଶାପ ଯୋଗେ ଜାଣ ।
ସ୍ୱଭାବେ ପବିତ୍ରଦେହା ଅଟନ୍ତି ତ ସେହି
ଅଧିକ ପବିତ୍ର ହେବେ ଶିବସଙ୍ଗ ପାଇ ।
ତୁମ୍ଭେ ମଧ୍ୟ କଳାଅଂଶ ଯୋଗେ ସେହିପରି
ଭ୍ରମଣ କରିବ ଯାଇ ପୁଣ୍ୟ ବସୁନ୍ଧରୀ ।
ପଦ୍ମାବତୀ ନଦୀରୂପେ ପ୍ରକାଶ ପାଇବ
ଆଉର ତୁଳସୀ ରୂପ ଗ୍ରହଣ କରିବ ।
ପଞ୍ଚସହସ୍ର ବର୍ଷ କଳି ଭୋଗ ହେବ ଯେବେ
ମୋକ୍ଷ ଲଭି ମୋ ପାଶକୁ ଆସିବଟି ତେବେ ।
ସେହିପରି ସରସ୍ୱତୀ ଗଙ୍ଗା ଦୁହେଁ ମିଶି
ଆସିବେ ମୋ ସମୀପକୁ ଶାପଦୋଷ ନାଶି ।
ସମ୍ପଦ ଲଭିବା ପାଇଁ ଥାଏ ଯେବେ ଯୋଗ
ପୂର୍ବରୁ ବିପଦ ନଷ୍ଟେ ହୋଇଯାଏ ଭୋଗ ।
ବିପଦ ବିନା ସମ୍ପତ୍ତି କାହାରିକୁ ହେଲେ
ମିଳଇ ନ ଗୋ କମଳା ବିଚାର ତୁ ଭଲେ ।
ଧର୍ମବନ୍ତ ଲୋକ ମୋର ମନ୍ତ୍ର ଉପାସନା
କରୁଥିବେ ଯେତେବେଳେ ହୋଇ ତୋଷମନା ।
ସେ ସମୟେ ତାହାଙ୍କର ସ୍ନାନ ସଙ୍ଗ ପାଇ
ମୁକତି ଲଭିବ ତୁମ୍ଭେମାନେ କହୁଥାଇ ।

ପାତକୀ ଲୋକଙ୍କଠାରେ ଯେତେକ କଲ୍ମଷ
ମିଶିଥିବ ସେହିକ୍ଷଣି ହେବ ସବୁ ଧ୍ୱଂସ ।
ପୃଥିବୀରେ ଯେତେ ପୁଣ୍ୟତୀର୍ଥ ଥନ୍ତି ରହି
ମୋର ଭକ୍ତ ଜନେ ସ୍ନାନ କଲେ ଯାଇଁ ତହିଁ ।
ପବିତ୍ର ହୋଇବେ ଏଥେ ନାହିଁଟି ସନ୍ଦେହ
ସେ ଦେହ ସମାନେ ମୋର ଭକ୍ତଙ୍କର ଦେହ ।
ମନ୍ତ୍ର ଜପକରି ମୋର କେତେ ଭକ୍ତଗଣ
ଭାରତଭୂମିରେ କରୁଅଛନ୍ତି ଭ୍ରମଣ ।
ସେମାନେତ ସହଜରେ ପୁଣ୍ୟାତ୍ମା ଅଟନ୍ତି
ତାଙ୍କ ଯୋଗେ ସୁପବିତ୍ର ହୁଏ ବସୁମତୀ ।
ସେମାନେ ଯେଉଁ ସ୍ଥାନରେ ପଦ ନ୍ୟସ୍ତ କର
କରନ୍ତି ସେ ସ୍ଥାନ ମହାତୀର୍ଥର ସମାନ ।
ପବିତ୍ର ମଙ୍ଗଳମୟ ବୋଲାଏ ଜଗତେ
ସେଠାରେ ରହିଲେ ପାପ ନ ଲାଗେ କଷ୍ଟରେ ।
ସ୍ତ୍ରୀହତ୍ୟା ବ୍ରହ୍ମହତ୍ୟା, ଗୋହତ୍ୟା ପାତକ
ସୁରାପାନ ଆଦି କରିଥାଏ ଯେଉଁଲୋକ ।
ମୋର ଭକ୍ତଙ୍କର ଦରଶନ ସମାଗମେ
ସେ ସମସ୍ତ ପାପ ନାଶ ହୁଅଇ ପ୍ରଥମେ ।
ଆଉର ଯେ ବ୍ରତ ଉପବାସ ନ କରଇ
ସନ୍ଧ୍ୟା ଆଦି ନିତ୍ୟକର୍ମ ବର୍ଜିତ ହୁଅଇ ।
ସାଧୁ ନିନ୍ଦା ପରନିନ୍ଦା କରୁଥାଇ ନିତି
ସେ ମୋର ଭକ୍ତଙ୍କ ଦରଶନେ ଲଭେ ମୁକ୍ତି ।
ଜଳ ଲୁଣ ଲୌହ ବିକ ଜୀବିକା ଯେ ଜନ
କରଇ ଆଉର ଶୂଦ୍ର ଲୋକର ଯାଜନ ।
ବୃଷଭ କାନ୍ଧରେ ହଳ ବାହେ ନ ବିଚାରି
ପାତକୀ ପତିତ ଲୋକ ସଙ୍ଗରେ ସେ ସରି ।
ତେମନ୍ତ ମାଧବ ମୋର ଭକ୍ତଙ୍କ ସହିତ
ଦର୍ଶନ ସ୍ପର୍ଶନ ସଙ୍ଗ କଲେ ଅବିରତ ।
ତହିଁରୁ ମୁକତି ଲାଭ କରଇ ଅବଶ୍ୟ
ଅନ୍ତଃକାଳେ କରେ ପୁଣି ବଇକୁଣ୍ଠେ ବାସ ।
ବିଶ୍ୱାସଘାତକ ମିତ୍ରଦ୍ରୋହୀ ଯେ ଅଟଇ
ଅଥବା ମିଥ୍ୟା କଥାରେ ସାକ୍ଷୀ ହୋଇଥାଇ ।
ଦେଇଥିବା ଦ୍ରବ୍ୟ ପୁଣି କରଇ ହରଣ
ମହାପାତକୀ ମଧ୍ୟରେ ସେହି ଏକଜଣ ।
ସେ ମୋର ଭକ୍ତଙ୍କ ସଙ୍ଗେ ସମ୍ପର୍କ ରଖିଲେ
ପାପରୁ ଉଦ୍ଧାର ହୁଅଇଟି ଜାଣ ଭଲେ

ଯେଉଁ ଲୋକ ଋଣ ନେଇ ଶୁଝି ନ ପାରଇ
ସେ ଅବା କୁସ୍ତିକ କାର୍ଯ୍ୟ ଜୀବିକା କରଇ ।
ବେଶ୍ୟାସ୍ତ୍ରି ସ୍ତ୍ରୀ ଯାହାର ସେବା କରଇଥାଏ ପ୍ରୀତି
ସେ ଲୋକକୁ ମହାପାପୀ ସମସ୍ତେ ବୋଲନ୍ତି ।
ମୋର ଭକ୍ତଙ୍କ ଦର୍ଶନେ ସେ ପାପରୁ ପାର
ହୁଅଇ ନିଶ୍ଚିତ ଜାଣ ଆଗୋ ରମାବର ।
ଶୂଦ୍ରର ରନ୍ଧନ କାର୍ଯ୍ୟ କରେ ଯେ ବ୍ରାହ୍ମଣ
ଗ୍ରାମେ ଗ୍ରାମେ ବୁଲି କର୍ମ କରଇ ଯେ ପୁଣ ।
ଶୂଦ୍ର ଆଦି ଲୋକଙ୍କର ଆଜ୍ଞା ବହି ଶିରେ
ଭ୍ରମଣ କରଇ ଧନ ପାଇବା ଆଶାରେ ।
ସେ ମଧ୍ୟ ମହାପାତକୀ ଅଟଇ ଜଗତେ
ଦୋଷ ଉପୁଜଇ ତାକୁ ସ୍ପର୍ଶ କଲା ମାତ୍ରେ ।
ମୋର ଭକ୍ତଙ୍କର ଦରଶନ ପାଇ ସେହି
ମୁକତ ହୁଅଇ ଏଥେ ସଂଶୟ ଯେ ନାହିଁ ।
ଗୁରୁଠାରୁ ମନ୍ତ୍ର ଉପଦେଶ ଯେ ନ କରେ
ମୋହର ଭକ୍ତଙ୍କୁ ସବୁବେଳେ ନିନ୍ଦା କରେ ।
ଅଶ୍ୱତ୍ଥ ବୃକ୍ଷକୁ ଶସ୍ତ୍ରେ କରେ ଯେ ଛେଦନ
ଦେବତା ପୂଜା ନ କରି ଭୁଞ୍ଜଇ ଯେ ଅନ୍ନ ।
ସେ ମହାପାତକୀ ମୋର ଭକ୍ତକୁ ଦେଖିଲେ
ପବିତ୍ର ହୁଅଇ ମହାପାପ ତେଜି ଭଲେ ।
ମାତା ପିତା ସହୋଦର ଭ୍ରାତୃଯା ତନୟ
ତନୟା ଭଗିନୀ ଗୁରୁବଂଶ ବନ୍ଧୁତ୍ରୟ ।
ଆବର ଶ୍ୱଶୁର ଶାଶୁ ବଂଶହୀନ ଜ୍ଞାତି
ପାଳନା ନ କରି ସେହୁ ବଢ଼ାଏ ସମ୍ପତ୍ତି ।
ସେ ମହାପାତକୀ ମୋର ଭକ୍ତଙ୍କ ଦର୍ଶନେ
ପବିତ୍ର ହୁଅଇ ବୋଲି ଜାଣ ତୁମ୍ଭେ ମନେ ।
ଦେବଦ୍ରବ୍ୟ ବିପ୍ରଦ୍ରବ୍ୟ ଯେ ଜନ ହରଇ
କନ୍ୟାକୁ ବିକ୍ରୟ କରି ଧନ ଆଣେ ସେହି ।
ଅଥବା ଶୂଦ୍ରର ଶବଦାହ କରିବାକୁ
ଅଗ୍ରସର ହୁଏ ସେହୁ ବଳାଇ ମନକୁ ।
ଏମନ୍ତ ଲୋକର ପାପ କଳନା ନୁହଇ
ମୋ ଭକ୍ତଙ୍କ ବିନା ତାର ଅନ୍ୟଗତି ନାହିଁ ।
ଏହିରୂପେ ପତିଙ୍କର ବଚନକୁ ଶୁଣି
ଆଶ୍ଚର୍ଯ୍ୟ ହୋଇଣ ଲକ୍ଷ୍ମୀ ପଚାରିଲେ ପୁଣି ।
ବୋଇଲେ ହେ ପ୍ରଭୁ ତୁମ୍ଭ ଭକ୍ତଙ୍କ ଲକ୍ଷଣ
କହ ଶୁଣିବାକୁ ମୋର ହେଉଅଛି ମନ ।

ଯାହାଙ୍କର ଦରଶନ ସ୍ପରଶ ନ ବଳେ
ମୁକତ ହୁଅନ୍ତି ପାପୀଜନେ ମହୀତଳେ ।
ହରିଭକ୍ତ ବିବର୍ଜିତ ଅହଙ୍କାରମାନ
ଆବର ନିଜର ସ୍ତୁତି କରୁଥାନ୍ତି ଗାନ ।
ସାଧୁଙ୍କର ସୁଚରିତ ଗୁଣନିନ୍ଦା କରି
ବସିଥାନ୍ତି ସବୁବେଳେ ଶଠଭାବ ଧରି ।
ଏମନ୍ତ ପାପିଷ୍ଠଜନେ ଯାହାଙ୍କର ଯୋଗେ
ପାତକ ଛାଡ଼ଇ ସୁଖେ ବିହରନ୍ତି ସ୍ୱର୍ଗେ ।
ଯାହାଙ୍କର ଅଙ୍ଗାଧାର ତୀର୍ଥ ଜଳରାଶି
ପବିତ୍ର ହୁଅଇ ସର୍ବ ପାପ ତାପ ନାଶି ।
ଯେବଣ ଭକତଙ୍କର ପାଦୋଦକ ପାଇ
ପୂତ ହୁଏ ଚରାଚର ପ୍ରାଣୀ ତୁଲେ ମହୀ ।
ଭାରତବର୍ଷରେ ଯାହାଙ୍କର ଦରଶନ
ପାଇବାକୁ ଦେବତାଏ କରୁଥାନ୍ତି ମନ ।
ସକଳ ଲୋକର ବିଷ୍ଣୁଭକ୍ତ ସମାଗମେ
ଅଶେଷ ମଙ୍ଗଳ ଲାଭ ହୋଇଥାଏ କ୍ରମେ ।
ଜଳମୟ ତୀର୍ଥଗଣ ନୁହନ୍ତି ଅଧିକ
ମୃତ୍ତିକା ପାଷାଣମୟ ଦେବମୂର୍ତ୍ତିଯାକ ।
ବହୁତ ଦିନେ ଏମାନେ ଯାହା ନ ଦିଅନ୍ତି
ବିଷ୍ଣୁଙ୍କ ଭକତେ ତାହା ଅଳ୍ପଦିନେ ଦ୍ୟନ୍ତି ।
ଏହି ଭକ୍ତମାନଙ୍କର ଚରିତ ବିଶେଷି
କହିବା ହୁଅନ୍ତୁ ପ୍ରଭୁ ସୁହାସ୍ୟ ପ୍ରକାଶି ।
ଶୌନକ ମୁନିଙ୍କୁ ସୌତି କହନ୍ତି ବୁଝାଇ
ଏମନ୍ତେ ଲକ୍ଷ୍ମୀଙ୍କ ବାକ୍ୟ ଶୁଣି ଯଦୁସାଇଁ ।
ଆନନ୍ଦରେ ମହାହାସ୍ୟ କରି ପରକାଶ
ବୋଇଲେ ମୋହର ବାକ୍ୟ ଶୁଣହେ ଇ ତୋଷ ।
ଭକ୍ତମାନଙ୍କ ଚରିତ୍ର ବେଦ ପୁରାଣରେ
ଲେଖା ହୋଇଅଛି ଅତି ଗୁପତ ଭାବରେ ।
ଖଳଲୋକଙ୍କ ଆଗରେ ନ କହିବା ପାଇଁ
ବାରଣ କରା ହୋଇଛି ଆଗୋ ଚନ୍ଦ୍ରମୁହିଁ ।
ତୁମ୍ଭେ ଯେଣୁ ପତିବ୍ରତା ସତୀ ଶିରୋମଣି
ବିସ୍ତାର କହୁଛି ତୁମ୍ଭ ଅଗ୍ରତେ ସେ ଘେନ ।
ଉତ୍ତମ ଗୁରୁଙ୍କଠାରୁ ମନ୍ତ୍ର ଉପଦେଶ
କରିଥାନ୍ତି ଯେଉଁମାନେ ବଳାଇ ମାନସ ।
ସାଧୁ ବ୍ରାହ୍ମଣ ପଣ୍ଡିତ ଦେବତା ଆବର
ଦେଖିଲେ ସେହିମାନଙ୍କୁ କରନ୍ତି ଆଦର ।

ତାହାଙ୍କ ପୁଣ୍ୟ ବଳରେ ସପତ ପୁରୁଷ
ମୁକତ ଲଭନ୍ତି ଶୁଣ ଆରେ ନାରାୟଣ ।
ସ୍ୱର୍ଗ ବା ନରକେ ଯେତେ ଥାଆନ୍ତି ସେମାନେ
ତଥାପି ସୁକୃତ ଲାଭ କରନ୍ତି ସେଥାନେ ।
ଉଚ୍ଚ ଅବା ନୀଚକୁଳେ ହେଲେ ମଧ୍ୟ ଜାତ
ପୂଜା କରନ୍ତି ତାହାଙ୍କୁ ସକଳ ପଣ୍ଡିତ ।
ତାହାଙ୍କ ଜୀବନ ଜାଣ ଅଟେ ପାପଶୂନ୍ୟ
ଜୀବନାନ୍ତେ ବଇକୁଣ୍ଠେ ଲଭନ୍ତି ଆସନ ।
ମୋହର ଭକତ ଯେଉଁ ନର ହୋଇଥାଏ
ଦିବସ ରଜନୀ ମୋତେ ପୂଜା କରୁଥାଏ ।
ମୋର ଗୁଣମାନ ସଦା ଯେ ଗାନ କରଇ
ନମୋ ନାରାୟଣ ବୋଲି ଧ୍ୟାନରେ ଭଜଇ ।
ଶୁଣିବା ମାତ୍ରେ ମୋ ନାମ ହୁଅଇ ପୁଲକ
ଆନନ୍ଦେ ନର୍ତ୍ତନ କରେ ଉଚ୍ଚେ ଦେଇ ଡାକ ।
ପ୍ରେମ ଗଦଗଦେ ପୁଣି ବସି ଯୁକ୍ତକରେ
ନୟନ ମୁଦ୍ରଣ ଲୟ ରଖେ ମୋ ପୟରେ ।
ଅନ୍ୟମାନେ ତାର ସଙ୍ଗେ ସମ ନ ହୁଅନ୍ତି
ସେହି ଜନ ଏକମାତ୍ର ହୁଅଇ ମୁକତି ।
ମୋହ ପତନେ ସେହି ନିବେଶଇ ମନ
ନ ବାଞ୍ଛେ ସେ ପୁତ୍ର ପୌତ୍ରୀ ଦାରା ଆଦି ଧନ ।
ଇନ୍ଦ୍ର ପଦକୁ ସୁଧା ସେ ତୁଚ୍ଛ ଜ୍ଞାନ କରେ
ବ୍ରହ୍ମତ୍ୱ ଆଦି ଦୁର୍ଲ୍ଲଭ ପଦକୁ ନ ସ୍ମରେ ।
ସ୍ମରଣ ସୁଖକୁ ସେହି ସାମାନ୍ୟ ମଣଇ
ବ୍ରହ୍ମତ୍ୱ ଇନ୍ଦ୍ରତ୍ୱ ଆଦି ପୟରେ ଦଳଇ ।
ସେହି ବ୍ରହ୍ମତ୍ୱ ଇନ୍ଦ୍ରତ୍ୱ ହୋଇଯାଏ ନାଶ
ମୋ ନାମ ଯେ ଭଜେ ସଦା ନହୁଏ ସେ ଶେଷ ।
ଦିଗପାଳଙ୍କ ସହିତେ ସକଳ ଅମର
ସମସ୍ତେ ଆସିଲେ ଧ୍ୱଂସ ହୁଅନ୍ତି ନିକର ।
କିନ୍ତୁ ମୋର ଭକ୍ତମାନେ ମୃତ୍ୟୁକୁ ଜିଣନ୍ତି
ଯୁଗକୁ ଯୁଗ ଜନମ ହୋଇ ଆସୁଥାନ୍ତି ।
ସାରା ଜଗତରେ ଧର୍ମ କରିଣ ପ୍ରଚାର
ଶେଷେ ଆସି ଲୀନ ହୋନ୍ତି ଅଙ୍ଗରେ ମୋହର ।
ତୁମ୍ଭେ ଯେଣୁ ପ୍ରାଣଠାରୁ ଅଟ ମୋର ବେଶି
ତେଣୁ ତୁମ୍ଭ ଆଗେ ସବୁ କହିଲି ଆଶ୍ୱାସି ।
ମନକୁ ତୁମ୍ଭର ଯାହା ଆସୁଅଛି ହିତ
ତାହା ବିଚାର କରିଣ କର ମନେ ଧ୍ୟାଇ ।
ପତିଙ୍କ ବଚନ ଶୁଣି ଦେବୀ କମଳା
ଅନ୍ୟ ନାରୀଙ୍କୁ ନେଇଣ ଚଳିଲେ ତକ୍ଷଣି ।
ସେ ପତି ପତ୍ନୀଙ୍କ ପାଦ ପଦ୍ମେ ରଖି ମନ
ଅଧମ କ୍ଷେତ୍ରମୋହନ କରିଲା ରଚନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣଙ୍କ ଦ୍ୱାରା ଗଙ୍ଗାସ୍ତୋତ୍ର

ବର୍ଣ୍ଣନେ ନାମ ଷଷ୍ଠୋଽଧ୍ୟାୟଃ ।

—ঃ—※—ঃ—

## ସପ୍ତମ ଅଧ୍ୟାୟ

### ନାରାୟଣଙ୍କ ଦ୍ୱାରା କଳୀଶ୍ୱରୀଙ୍କର ଗୁଣ ବର୍ଣ୍ଣନା

ଶୁଣ ୨ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ପ୍ରକୃତି ଖଣ୍ଡ ଚରିତ ଅଟଇ ଏ ବାଣୀ
ଶୌନକଙ୍କ ଆଗେ ସୌତି କହିଲେ ବଖାଣି ।
ମନକର୍ଣ୍ଣ ଦେଇଶୁଣ ଆହେ ତପୋଧନ
ଗଙ୍ଗାଶାପେ ସରସ୍ୱତୀ ହୋଇଣ ଦୁଃଖିତ ।
ପୁଣ୍ୟଭୂମି ଭାରତକୁ ଗଲେ କଳାମାତେ
ଶ୍ରୀହରିଙ୍କ ପାଶରେ ରହିଲେ ଆନନ୍ଦତେ ।
ବ୍ରାହ୍ମଣୀ ନଦୀର ନାମ ଭାରତରେ ବହି
ବ୍ରାହ୍ମଣ ପ୍ରୀତିକାରିଣୀ ହୋଇଲେକ ସେହି ।
ସମସ୍ତ ବାକ୍ୟମାନଙ୍କର ଦେବୀ ସେ ଅଟନ୍ତି
ସେହି ହେତୁ ବାଣୀ ନାମ ଲଭିଲେ ଖ୍ୟାତି
ପୃଥ୍ୱୀ ଭିତରେ ଯେତେ ସରୋବର ଅଛି
ତାଙ୍କର ସ୍ରୋତ ସବୁର ଉପରେ ବହୁଛି ।
ସେହି ଲାଗି ସରସ୍ୱତୀ ନାମଟି ତାଙ୍କର
ପ୍ରଚାରିତ ହୋଇଅଛି ଆହେ ଋଷିବର ।

ପାପୀଜନଙ୍କର ପାପ କରିବାକୁ ଧ୍ୱଂସ
ବିରଜିତ ହୋଇଅଛି ଅନଳ ସଦୃଶ ।
ନମ ପବିତ୍ର ସ୍ରୋତସ୍ୱିନୀ ଭାରତେ ବୋଲନ୍ତି
ତାହାଙ୍କ ବକ୍ଷରେ ସ୍ନାନ କଲେ ହୁଏ ମୁକ୍ତି ।
ଭଗୀରଥ ନାମେ ଏକ ନରପତି ଥିଲେ
ବଂଶ ଉଦ୍ଧାରିବା ଲାଗି ଗଙ୍ଗାକୁ ଖୋଜିଲେ ।
ହିମାଳୟ ପରବତେ ଘୋର ତପ କରି
ଗଙ୍ଗାକୁ ଆଣି ପିତୃଙ୍କୁ ଥିଲେ ସେ ଉଦ୍ଧାରି ।
ତେଣୁ ଭଗୀରଥି ନାମ ଲେଖା ତାହାଙ୍କର
ଆଉ ଏକ ଗାଥା ଶୁଣ ଚିତ୍ତ କରି ସ୍ଥିର ।
ଜଗତ କରତା ଶିବ ମସ୍ତକ ଦେଶରେ
ବହନ କରିଅଛନ୍ତି ତାହାଙ୍କୁ ଶ୍ରଦ୍ଧାରେ ।
ସରସ୍ୱତୀଙ୍କର ଶାପେ କଳାମାତ୍ର ଯେନ
ବହିଲେ ଶିବଙ୍କ ଶିରେ ପତିତ ପାବନୀ ।
ତାହାର ଏକ କାରଣ ଶୁଣ ମନଦେଇ
ଗଙ୍ଗାର ଭରକୁ ମାତ୍ର ବସୁଧା ନ ସହି ।
କାତର ସ୍ୱରେ ପ୍ରାର୍ଥନା କରନ୍ତେ ସେ ଜାଣି
ବହନ କଲେ ତାହାଙ୍କୁ ଶିରେ ଶୂଳପାଣୀ ।
ଏଥିଅନ୍ତେ ମହାଲକ୍ଷ୍ମୀ କଳାମାତ୍ରେ ଯାଇ
ନଦୀରୂପେ ଭାରତ ଭୂମିରେ ଗଲେ ବହି ।
ଏ ବାହାରେ ଆଉ ଏକକଳା ତାହାଙ୍କର
ଧର୍ମଧ୍ୱଜ ପତ୍ନୀଠାରେ ହେଲେ ଅବତାର ।
ଶ୍ରୀହରିଙ୍କ ପାଶେ ପୂର୍ଣ୍ଣମାତ୍ରାରେ ରହିଲେ
ଏ ଅନ୍ତରେ କଥା ଶୁଣ କହୁଥାଇ ଭଲେ ।
ଯେଉଁକଳା ଧର୍ମଧ୍ୱଜ ପୁରେ ହେଲେ ଜାତ
ତୁଳସୀ ବୋଲି ତାଙ୍କର ନାମ ହେଲା ଖ୍ୟାତ ।
ଆଗେ ତ ସରସ୍ୱତୀଙ୍କ ଶାପ ପାଇଥିଲେ
ଶ୍ରୀହରିଙ୍କଠାରୁ ପୁଣି ଅନୁଜ୍ଞା ପାଇଲେ ।
ସେ ସକାଶୁ ବୃକ୍ଷରୂପେ ହେଲେ ଅବତାର
ଅନ୍ୟ କଳା ଯେନ ଆହେ ବ୍ରହ୍ମାଙ୍କ କୁମର ।
କଳିଯୁଗେ ଭାରତରେ ପାଞ୍ଚସହସ୍ର ବର୍ଷ
ଯେତେବେଳେ ତାହାଙ୍କର ହୋଇଲାଟି ଶେଷ ।
ସରିତ ରୂପକୁ ଛାଡ଼ି ବୈକୁଣ୍ଠକୁ ଗଲେ ।
ପୂର୍ବପରି ସ୍ୱାମୀଙ୍କର ପାଶରେ ରହିଲେ ।
ସେହିପରି ଗଙ୍ଗା ପୁଣି ସରସ୍ୱତୀ ଦୁହେଁ
ଶାପ ଅବସାନେ ନିଜରୂପ ଧରି ସ୍ନେହେ ।

ଶ୍ରୀହରିଙ୍କ ସମୀପରେ ପ୍ରବେଶ ହୋଇଲେ
ଏଥୁ ଅନନ୍ତରେ କଥା ଶୁଣ ମୁନି ଭଲେ ।
କାଶୀ ବୃନ୍ଦାବନ ଛାଡ଼ି ଅନ୍ୟ ସବୁ ତୀର୍ଥ
ଶ୍ରୀହରିଙ୍କ ଅନୁଜ୍ଞାକୁ ହୃଦେ କରି ସାଥ ।
ତାଙ୍କ ସହିତରେ ଯାଇ ବୈକୁଣ୍ଠ ଭୁବନେ
ରହିଲେ ମରତଲୋକ ତେଜି ତୋଷମନେ ।
ସେ କାଳକୁ ବଳି ଦଶସହସ୍ର ବର୍ଷ ଭୋଗ
ହୋଇଥିଲା ହେ ନାରଦ ମୁନି ମହାଭାଗ ।
ବିଷ୍ଣୁ ରୂପୀ ଶାଳଗ୍ରାମ ଜଗନ୍ନାଥ ମୂର୍ତ୍ତି
ସମସ୍ତେ ଶ୍ରୀହରିଙ୍କର ପୁରେ କଲେ ଗତି ।
ବିଷ୍ଣୁଭକ୍ତ ପରାୟଣ ବଇଷ୍ଣବଗଣ
ପୁରାଣ ବେଦାନ୍ତ ଦେବ ଶ୍ରାଦ୍ଧ ତରପଣ ।
ବେଦୋକ୍ତ ସକଳ କର୍ମ ଏକତ୍ରିତ ହୋଇ
ସେମାନଙ୍କ ପଛେ ପଛେ ଗଲେଟି ଗୋଡ଼ାଇ ।
ରହିଲା କେବଳ ମାତ୍ର ତାହାଙ୍କର ଛାୟା
ପ୍ରସରିଲା କ୍ରମେ କ୍ରମେ ବଇଷ୍ଣବୀ ମାୟା ।
ଏ ଅନ୍ତରେ କଳିଯୁଗ ଏଣିକ ଯେ ଗତି
ହୋଇବ ତା କହୁଅଛି ଶୁଣ ଦେଇ ମତି ।
ବେଦଶାସ୍ତ୍ର ଅଧ୍ୟୟନ ତେଜି ଦ୍ୱିଜଗଣ
ବାମାଚାର ପୂଜନରେ ପ୍ରବର୍ତ୍ତିବେ ଜାଣ ।
ମନରେ ସର୍ବଦା ମିଥ୍ୟା କପଟ ବହିବେ
ବିଷ୍ଣୁଙ୍କର ଉପାସନା କେବେ ନ କରିବେ ।
ତୁଳସୀ ସେବନ ଏକାଦଶୀ ଉପବାସ
ନ କରିବେ ପୁଣି ବିଷ୍ଣୁମନ୍ତ୍ର ଉପଦେଶ ।
ଶ୍ରୀହରିଙ୍କ ନାମ ଗୁଣ ନ ଧରିବେ ତୁଣ୍ଡେ
ଧର୍ମଭାବ ନ ରହିବ ତାହାଙ୍କର ପିଣ୍ଡେ ।
କେବଳ କପଟୀ ଦୁଷ୍ଟ ନଷ୍ଟ ଆଚରଣ
ହେବ ଅହଙ୍କାର ପୂର୍ଣ୍ଣ ହୋଇବେଟି ଜାଣ ।
ଏ ବାହାରେ ପରଦ୍ରବ୍ୟ ଶ୍ରେଷ୍ଠଭାଇ ଆଣିବେ
ଭାଇବନ୍ଧୁ ଜ୍ଞାତିଙ୍କର ବିନାଶ ପାଞ୍ଚିବେ ।
ବ୍ରାହ୍ମଣ କ୍ଷତ୍ରିୟ ଆଦି ଜାତିଙ୍କ ମଧ୍ୟରେ
ଆବର ପୁତ୍ର ଶିଷ୍ୟ ସ୍ୱାମୀ ଭୃତ୍ୟଙ୍କଠାରେ ।
ଭେଦ ନ ରହିବ ଜାଣ ଆହେ ମହାମନା
ବଡ଼ସାନ ରୂପେ କେହି ନୋହିବେ ଗଣନା ।
ବିବାହ କର୍ମରେ ରାଶି ନକ୍ଷତ୍ର ନିର୍ଣ୍ଣୟ
ନୋହିବ ଧର୍ମକୁ କେହି ନ କରିବେ ଭୟ ।

ଉପବାସ ବ୍ରତଆଦି ପୁଣ୍ୟକାର୍ଯ୍ୟ ଯେତେ
ତୁଚ୍ଛ ଜ୍ଞାନକରି ତାହା ଛାଡ଼ିବେ ସମସ୍ତେ ।
ସ୍ନାନ ଭୋଜନରେ ଶୁଚିମନ୍ତ ନ ହୋଇବେ
ଆପଣା କର୍ତ୍ତବ୍ୟ କର୍ମ ତେଜିଣ ରହିବେ ।
ସଂସାର ବିଷୟ ଭୋଗେ ସବୁରି ମାନସ
ଆସକ୍ତ ହୋଇଣ ଥିବ ରଜନୀ ଦିବସ ।
କାମିନୀଙ୍କ ବଶବର୍ତ୍ତୀ ହୋଇବେ ପୁରୁଷେ
ବେଶ୍ୟା ହେବେ କୁଳସ୍ତ୍ରୀମାନେ ପ୍ରତିବାସେ ।
ତର୍ଜନା ଭର୍ତ୍ସନା କରି ଆପଣା ପତିଙ୍କି
ଡରାଇବେ କାମିନୀଏ ଛାଡ଼ି ଭକତିକି ।
ଗୃହେ ହେବ ଗୃହିଣୀଙ୍କ ସବୁ ଅଧିକାର
ପୁରୁଷେ ରହିବେ ଭୃତ୍ୟ ହୋଇ ତାହାଙ୍କର ।
ବୃଦ୍ଧଶାଶୁ ଶ୍ୱଶୁରଙ୍କୁ ଅମାନନା କରି
ରଖିଥିବେ ବୋହୂମାନେ ଦାସଦାସୀ ପରି ।
କାର୍ଯ୍ୟକ୍ଷମ ହୋଇ ଘରେ ଥିବ ଯେ ପୁରୁଷ
ବଡ଼ସାନ ସମସ୍ତଙ୍କୁ କରିବ ସେ ବଶ୍ୟ ।
ଆପଣାର ବଡ଼ପଣ ଦେଖାଇ ସନ୍ତତେ
କଥା ନ ହୋଇବ ବନ୍ଧୁ ବାନ୍ଧବଙ୍କ ସାଥେ ।
ପଣ୍ଡିତ ବ୍ୟକ୍ତିଙ୍କଠାରେ ଦୃଣତୁଲ୍ୟ ଜ୍ଞାନ
କରିବ ସର୍ବଦା ହୋଇଥିଲେ ହେଲେ ସାନ ।
ସକଳ କର୍ମକୁଶଳ ହେବ ଯେଉଁ ନର
ସ୍ତ୍ରୀଙ୍କ ଅଜ୍ଞାରୁ କେବେ ନୋହିବ ବାହାର ।
ଆପଣା ଶାସ୍ତ୍ରରେ କେହି ନ କରିବେ ଶ୍ରଦ୍ଧା
ସମୟରେ ମାତ୍ର ତହିଁ ଘଟାଇବେ ବାଧା ।
ମ୍ଲେଚ୍ଛବିଦ୍ୟା ପଢ଼ି ନିଜେ ଯୋଗ୍ୟ ବୋଲାଇବେ
ନୀଚ ଆଚରଣେ ଦିନ ଯାପନ କରିବେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରଙ୍କ ସେବକ
ହେବେ କଳିଯୁଗେ ଆହେ ମୁନିଙ୍କ ନାୟକ ।
ଧାବକ ହାଳିକ ଜନେ ସୂପକାର ହେବେ
ସତ୍ୟଧର୍ମ ଛାଡ଼ି ସର୍ବେ ମିଥ୍ୟାକୁ ଭଜିବେ ।
କ୍ରମେ କ୍ରମେ ବସୁମତୀ ହେବ ଶସ୍ୟହୀନ
କାଳ ଅନୁସାରେ ଜଳ ନ ବର୍ଷିବ ଘନ ।
ବୃକ୍ଷ ଲତାମାନେ ଆଉ ନ ଧରିବେ ଫଳ
ଉତ୍ତମ ସନ୍ତାନହୀନା ହେବେ ସ୍ତ୍ରୀକୁଳ ।
ଦୁଗ୍ଧବତୀ ଗାଈଙ୍କର ନ ଫିଟିବ ଥିର
ପଞ୍ଚାମୃତ କରିବାକୁ ନ ମିଳିବ କ୍ଷୀର ।

ଯେତେ ମନ୍ତ୍ର ଥିଲେ ହେଲେ ବଧିରୁ ଲକ୍ଷଣୀ
ବାହାର ନୋହିବ କେବେ ବୋଲି ଥାଅ ଜାଣି
ପତି ପତ୍ନୀ ଦୁହିଙ୍କର ପରସ୍ପରେ ସ୍ନେହ
ନ ରହିବ ଶୁଣ ଆହେ ବ୍ରହ୍ମାଙ୍କ ତନୟ ।
ଗୃହସ୍ଥଙ୍କ ପରିବାରେ ନ ହୋଇବ ସୁଖ
ବେଳକୁବେଳ ପ୍ରବଳ ହେବ ଘୋରଦୁଃଖ ।
ରାଜାମାନେ ହୋଇ ବଳ ପରାକ୍ରମ ହୀନ
ଆନ ସଙ୍ଗେ ସମ ହେବେ ରାଜ୍ୟ ହରାଇଣ ।
ନଦନଦୀ ନିର୍ଝରିଣୀ କୂପ ବାପୀ ଯେତେ
ଜଳହୀନ ହୋଇ ଶୂନ୍ୟ ରହିବେ ସମସ୍ତେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚତୁର୍ବର୍ଣ୍ଣ
ନ ରହି ଏକ ଆସନେ ହୋଇବେ ଆସୀନ ।
ଅଧର୍ମ କାର୍ଯ୍ୟରେ ସର୍ବେ ବଳାଇବେ ଚିତ୍ତ
ନ ଥିବେ ଲକ୍ଷେକ ମଧ୍ୟେ ଏକ ପୁଣ୍ୟବନ୍ତ ।
ସନ୍ତାନ ସନ୍ତତି ଭୁଲେ ନର ନାରୀଗଣ
କୁତ୍ସିତ ବିକୃତାକାର ହୋଇବେଟି ଜାଣ ।
ସବୁଠାରେ ପାପମୟ ବାର୍ତ୍ତା ଶୁଣାଯିବ
ସମସ୍ତଙ୍କ ମୁଖୁଁ ମନ୍ଦଶବ୍ଦ ବାହାରିବ ।
ବିଶୁଦ୍ଧ ସଂସ୍କୃତ ଦିବ୍ୟଭାଷା ପରିହରି
କୁତ୍ସିତ ଭାଷାରେ କଥା ହେବେ ନରନାରୀ ।
କେତେକ ଦେଶରେ ଜନଶୂନ୍ୟ କେତେଗ୍ରାମ
ହୋଇବ ଆବର ବହୁ ଅପଥା ସଂଗ୍ରାମ ।
କେଉଁ ଦେଶେ ପଲ୍ଲୀଗ୍ରାମ ରହିବ ଅଳପ
କାଳକ୍ରମେ ଶୁଣି ତହୁଁ ଜନେ ହେବେ ଲୋପ ।
ଏହିପରି କେତେ ରାଜ୍ୟ ଅରଣ୍ୟ ହୋଇବ
ଅବଶିଷ୍ଟ ହୋଇ ଅବା ଯେତେକ ରହିବ ।
ସେ ସ୍ଥାନରେ ବାସକରି ଯେତେଲୋକ ଥିବେ
ପାପିଷ୍ଠ ରାଜାଙ୍କ ପୀଡ଼ା ସହି ନ ପାରିବେ ।
ଘର ଦ୍ୱାର ଛାଡ଼ି ଯାଇ ପଶିବେ ବନରେ
ଜୀବନ ରଖିବେ ଫଳମୂଳ ପତ୍ର ନୀରେ ।
ଏଥିଅନ୍ତେ ରସବତୀ ଉର୍ବରା ଯେ ମହୀ
ନୀରସ ହୋଇବ କୁଶ ନ ଜନ୍ମିବ ତହିଁ ।
ନଦୀ ତଡ଼ାଗରେ ଶସ୍ୟ ହୋଇବ ଉତ୍ପନ୍ନ
କୋଟୀଶ୍ୱର ଜନେ ହେବେ ଅନ୍ନବସ୍ତ୍ର ଶୂନ୍ୟ ।
ଉଚ୍ଚକୁଳେ ଜାତ ହୋଇଥିବେ ଯେଉଁମାନେ
ଦିନ କଟାଇବେ ନୀଚ ଲୋକଙ୍କ ସମାନେ ।

ସତ୍ୟ ଭକ୍ତବାର ଅଟେ ଯାହାଙ୍କ ସ୍ୱଭାବ
ମାନବ ଅସତ୍ୟ ହିଂସା ତାଙ୍କ ହୃଦେ ଠାବ ।
ପାପାତ୍ମରେ ରତ ହେବେ ପୁଣ୍ୟବନ୍ତ ଜନ
ଆଶ୍ରୟ କରିବେ ସାଧୁ ଅଶିଷ୍ଟ ଆସନ ।
ସତ୍ୟବାଦୀ ହୋଇଥିବ ଯେବଣ ପୁରୁଷ
କରିବେ ନାସ୍ତିକ ଜନେ ତାକୁ ଉପହାସ ।
ତପସ୍ୱୀଙ୍କୁ ପାପୀଜନେ ହସିବେ ଦେଖିଲେ
ଶାସ୍ତ୍ରଦ୍ରଷ୍ଟ ହୋଇବ ସେ ଅବା ଜ୍ଞାନବଳେ ।
ଲମ୍ପଟ ପଣ୍ଡିତ ଲୋକେ ତାକୁ ଦେଖିକରି
ହାସ ପ୍ରକାଶିବେ ନିଜ ମୁଖେ ହସ୍ତଧରି ।
ନେହ୍ନପରି ପତିବ୍ରତା ନାରୀଙ୍କୁ କୁଳଟା
ନ ନା ଦୁଷ୍ଟକଥା କହି କରୁଥିବେ ଥଟ୍ଟା ।
ବିଷ୍ଣୁଭକ୍ତ ଥିବେ ଯେହ୍ନ ତାକୁ ଅବୈଷ୍ଣବେ
ଦମ୍ଭାଳୁ ଲୋକଙ୍କୁ ଶାବଧାରକ ମାନବେ ।
ଭିକ୍ଷୁକ ଜନଙ୍କ ଶଠ ଦୃଷ୍ଟଲୋକେ ବସି
ପରିହାସ କଥା କହୁଥିବେ ହସି ହସି ।
ଯେଉଁ ଲୋକ ଲୋକହିତ କରିଥିବ ସଦା
ମଦମତ୍ତ ଜନେ ତାକୁ କରିବେଟି ନିନ୍ଦା ।
ଚଣ୍ଡାଳ ଅଜ୍ଞାନୀ ନଷ୍ଟ ପରଘର ବୁଡ଼ା
ପୂଜା ପାଇବେ ଏମାନେ ଆଗେ ହୋଇ ଛିଡ଼ା ।
ବାମନ ବଧିର କୁବ୍ଜ ଅନ୍ଧ ଯେତେ ଲୋକ
ସବୁଠାରୁ ତାଙ୍କ ପୂଜା ହୋଇବ ଅଧିକ ।
ଅଳପ ଆୟୁଷ ହେବ ସବୁ ପ୍ରାଣୀଙ୍କର
ଦୁର୍ବଳ ନିସ୍ତେଜ ହୋଇ ପଡ଼ିବ ଶରୀର ।
ଷୋହଳ ବରଷଠାରେ ପାଚିଯିବ ବାଳ
କୋଡ଼ିଏ ବର୍ଷ ନୋହୁଣୁ ହେବ ବୁଢ଼ାକାଳ ।
ଆଠ ବରଷର କନ୍ୟା ହେବ ରଜୋବତୀ
ନବ ବରଷରେ ଗର୍ଭ ହୋଇବ ଉତ୍ପତ୍ତି ।
ଦଶ ବା ଏଗାର ବର୍ଷେ ପ୍ରସବ କରିବ
ଷୋହଳ ବର୍ଷ ହୁଅନ୍ତେ ବୃଦ୍ଧୀ ହୋଇଯିବ ।
କୋଡ଼ିଏ ବରଷ ଯାଏ ଜୀଇଁଥିବ ଯେବେ
ଅତିବୃଦ୍ଧା ବୋଲି ତାକୁ ବୋଲାଇବେଟି ସର୍ବେ ।
ସହସ୍ର ମଧ୍ୟରେ ଜଣେ ହେବେ ଏହିପରି
ବନ୍ଧ୍ୟା ହୋଇଣ ରହିବେ ଆଉ ସବୁ ସ୍ତିରୀ ।
ଗୃହବେଶ୍ମ ମଧ୍ୟରେ ହେଉ କନ୍ୟା ବିକା କଣା
ଚଳିବ କାହାର ମନେ ନ ଥିବ ଘୃଣା ।

ବନମା ଶାଳସା ବଂଶୀ ସୁଲାଙ୍କର ଜନ
ମାହଣ କରିବେ ଜାର ଉପାର୍ଜିତ ଧନ ।
ଶ୍ରୀହରିଙ୍କ ନାମ ପୁଣି ବିକ୍ରୟ କରିବେ
ହୋଇଥିବା ପଦାର୍ଥକୁ ଦାନ ଘେନିଯିବେ ।
ଦେବତା ବ୍ରାହ୍ମଣ ଦ୍ରବ୍ୟ ବଳାଇବେ ଆଶା
ସର୍ବଦା ରଖିବେ ପରଧନରେ ଲାଳସା ।
କେତେମାନେ ଆପଣାର କନ୍ୟାକୁ ସମ୍ଭୋଗ
କରିବେ କେ ନିଜ ଶାଶୁଠାରେ ଅନୁରାଗ ।
କାହାର ବଳିବ ମନ ପୁତ୍ରବଧୂ ଠାରେ
କେ ସ୍ନେହ କରିବେ ପରକାମିନୀ ସଙ୍ଗରେ ।
କେତେଲୋକ ଭଗିନୀଙ୍କ ପ୍ରେମକୁ ଲୋଡ଼ିବେ
ମାତାଙ୍କ ସପତ୍ନୀ ସଙ୍ଗେ ପ୍ରୀତି କେ କରିବେ ।
ଏହିପରି କଳିଯୁଗେ ଅଗମ୍ୟଗମନ
ପ୍ରବର୍ତ୍ତିବ ଘରେ ଘରେ ଆହେ ତପୋଧନ ।
କେବଳ ମାତାଙ୍କୁ ଛାଡ଼ି ଅନ୍ୟ ସବୁ ନାରୀ
ହରିବେ ପୁରୁଷମାନେ ପାପ ନ ବିଚାରି ।
ପତି ପତ୍ନୀଙ୍କ ନିର୍ଣ୍ଣୟ କିଛି ନ ରହିବ
ଯାହାର ଯହିଁକି ମନ ହେବ ତହିଁ ଯିବ ।
କାହାଠାରେ ସ୍ୱାମୀଙ୍କର ନ ରହିବ ଭକ୍ତି
ନ ଥିବ କୁଟୁମ୍ବ ମଧ୍ୟେ ପରସ୍ପର ପ୍ରୀତି ।
ସର୍ବତ୍ର ରହିବ ହିଂସା ମାତ୍ସର୍ଯ୍ୟ କପଟ
ଆଉର ପରସ୍ତ୍ରୀ ହେବ କାମିନୀ ଲମ୍ପଟ ।
ଅନ୍ୟୋନ୍ୟରେ ହିଂସାଭାବ ସମସ୍ତଙ୍କଠାରେ
ଘାତହେବ ନରଙ୍କର ପ୍ରାଣ ନେବେ ନରେ ।
ଜତୁକ ଲବଣ ଲୌହ ବିକ୍ରୟ ସମ୍ବନ୍ଧ
ବ୍ରାହ୍ମଣ କ୍ଷତ୍ରିୟ ପକ୍ଷେ ଅଟେ ଯେ ନିରୁଦ୍ଧ ।
ତାହା ଜାଣିଥିଲେ ହେଲେ ସେହି ଆଚରଣ
ସର୍ବଦା ସେମାନେ କରିବେଟି ମନେ ଘେନ ।
ବ୍ରାହ୍ମଣେ ବୃଷଭ ଯୋଚି ହଳ ବୁଲାଇବେ
ଆଉର ଶୂଦ୍ରଙ୍କ ଶବଦାହ କରିଯିବେ ।
ଶୂଦ୍ରହସ୍ତ ଅନ୍ନ ଖାଇ ପୂରାଇବେ ପେଟ
ଶୂଦ୍ର ସ୍ତ୍ରୀବର୍ଗ ସଙ୍ଗରେ କରିବେ ଲମ୍ପଟ ।
ପୂର୍ବ ଦିନବିନ ବାର ଯୋଗ ନ ଖୋଜିବେ
ଅମାବାସ୍ୟା ରାତିକାଳେ ଭୋଜନ କରିବେ ।
ଯିବାବେଳେ ଛିଣ୍ଡାଇ କଣ୍ଠଦେଶୁ ଯଜ୍ଞସୂତ୍ର
ହେବେ ସନ୍ଧ୍ୟା ତର୍ପଣ ଚକ୍ର ବିବର୍ଜିତ ।

କୁଳଟା ରମଣୀ ରଜସ୍ୱଳା ନତ ସ୍ତ୍ରୀ
ରନ୍ଧୁଣୀ ହୋଇବେ ବିପ୍ରଘରେ ଆସିକରି ।
ନ ରହିବ ଖାଦ୍ୟପେୟ ଦ୍ରବ୍ୟର ନିର୍ଣ୍ଣୟ
କାମିନୀ ସମ୍ଭୋଗ କଥା ତହୁଁ ଅତିଶୟ ।
ବର୍ଣ୍ଣ ଆଶ୍ରମରୁ ଭ୍ରଷ୍ଟ ହୋଇ ସବୁଜନ
ମ୍ଳେଚ୍ଛ ସମାଜରେ ମିଶି କଟାଇବେ ଦିନ ।
ଏହିପରି କଳିଯୁଗେ ଘୋର ବିଡ଼ମ୍ବନା
ହୋଇବ ଆହେ ନାରଦ ମୁନି ମହାମନା ।
କ୍ରମେ କ୍ରମେ ମ୍ଳେଚ୍ଛମୟ ହେବ ଏ ଜଗତ
ନ ରହିବ ଧର୍ମ କର୍ମ ସଦାଚାର ସତ୍ୟ ।
କଳିଯୁଗ ପ୍ରଭାବରେ ବିଚିତ୍ର ଘଟଣା
ଦେଖାଯିବ ପୂର୍ବେ ଯାହା ନ ହୋଇଛି ଶୁଣା ।
ବଡ଼ ବଡ଼ ବୃକ୍ଷମାନେ ହାତେ ପରିମାଣ
ହୋଇବେ କେଣିକି ଆଉ ନ ବଢ଼ିବେ ଜାଣ ।
ବାର ଅଙ୍ଗୁଳି ପର୍ଯ୍ୟନ୍ତ ବଢ଼ିବେ ମାନବେ
ସେହି ଅନୁରୂପେ ହେବେ ପଶୁପକ୍ଷୀ ସର୍ବେ ।
ଏହିପରି ବିଶୃଙ୍ଖଳା ହେବ ଯେତେବେଳେ
ନିଜେ ପ୍ରଭୁ ନାରାୟଣ ଜାଣି ଯୋଗବଳେ ।
ବିଷ୍ଣୁଯଶା ବିପ୍ରଘରେ କଳ୍କୀ ଅବତାର
ହେବେ ନିବାରିବା ପାଇଁ ପୃଥିବୀର ଭାର ।
କଳାମାତ୍ରେ ସେହିସ୍ଥାନେ ପରକାଶ ହୋଇ
ମହାବଳବନ୍ତ ଦୀର୍ଘକାୟ ହେବେ ସେହି ।
ବଳିଷ୍ଠ ଘୋଟକ ପରେ ଆରୋହଣ କରି
କରେ ମହାଦୀର୍ଘ ରୌଦ୍ର କରବାଳ ଧରି ।
ଛନ୍ଦନ ଛନସନି ବୁଲି ଅବିରତ
ମ୍ଳେଚ୍ଛବଂଶ ବିନାଶନ କରିବେ ନିଶ୍ଚିତ ।
ଯେତେବେଳେ ମ୍ଳେଚ୍ଛଶୂନ୍ୟ ହେବ ବସୁମତୀ
ଅନ୍ତର୍ଦ୍ଧାନ ହେବେ ପ୍ରଭୁ ହରି ଜଗତପତି ।
ସେ ଅନ୍ତରେ କେତେଦିନ ମଧ୍ୟରେ ମାନବେ
ହତ ଶେଷ ହୋଇ ଆଉ ଯେତେକ ରହିବେ ।
ରାଜା ନ ଥିବାରୁ ଘୋର ଖଣ୍ଡଙ୍କର ହସ୍ତେ
ପରାଭବ ପାଇ ନାଶଯିବେ ସେ ସମସ୍ତେ ।
ସେହି ସମୟରେ ଶୂନ୍ୟେ ଘୋଟି ମେଘମାଳ
ନିରବଧି ଛଅବର୍ଷ ବରଷିବେ ଜଳ ।
ପୃଥିବୀରେ ନର ପଶୁଆଦି ଜନ୍ତୁ ଯେତେ
ବିନାଶ ହୋଇବେ ବୃକ୍ଷ ଲତାଦି ସହିତେ ।

ଏଥିଅନ୍ତେ କେତେଦିନ ଗଲାପରେ ପୁଣି
ଦ୍ୱାଦଶ ଆଦିତ୍ୟ ଉଦେ ହେବେ କହ ଜାଣି ।
ତାହାଙ୍କ ତେଜରେ ମହୀ ଶୁଷ୍କ ହୋଇଯିବ
ସର୍ବିକ ସୃଷ୍ଟିବେ ନଷ୍ଟ ଶୂନ୍ୟ ଦିଶୁଥିବ ।
ଏଣିକରେ କଳିଯୁଗ ଭୋଗ ହେବ ଶେଷ
ସେ ଅନ୍ତରେ ସତ୍ୟଯୁଗ ହୁଅନ୍ତେ ପ୍ରବେଶ ।
ଚାରିପାଦ ଘେନ ସତ୍ୟ ମୂର୍ତ୍ତିମନ୍ତ ହୋଇ
ରହିବ ଧର୍ମ ଏହିକେ ପୂର୍ଣ୍ଣ କରି ମହୀ ।
ବ୍ରାହ୍ମଣେ ତପସ୍ୟା, ଧର୍ମ କର୍ମ ଆଚରିବେ
ସ୍ତ୍ରୀମାନେ ପତିବ୍ରତା ପୁଣ୍ୟବତୀ ହେବେ ।
ମୁନିଏ ବ୍ରାହ୍ମଣଠାରେ ଭକ୍ତିଭାବ ରଖି
ଧର୍ମରେ ପାଳିବେ ମହୀ ଉତ୍ସୁକ ଉମେଷି ।
ପ୍ରତାପ ବିକ୍ରମ ଶୌର୍ଯ୍ୟ ହୋଇବ ଅପାର
ପ୍ରତ୍ୟେକ ଧୈର୍ଯ୍ୟରେ ନିରତ ହେବେ ନିରନ୍ତର ।
ବୈଶ୍ୟମାନେ ନିଜ କୃଷି ବାଣିଜ୍ୟ ସମ୍ପଦ
ଆଚରିବେ ଆପଣାର ଧର୍ମ କର୍ମ ଆଦି ।
ବ୍ରାହ୍ମଣଙ୍କଠାରେ ଦୃଢ଼ ଭକତି କରିବେ
ଏହିପରି ଶୂଦ୍ରମାନେ ଧାର୍ମିକ ହୋଇବେ ।
ସମସ୍ତଙ୍କର ପାଦସେବା କରୁଥିବେ ନିତି
ଇଷ୍ଟଦେବତାଙ୍କଠାରେ କରିବେ ଭକତି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ବିଷ୍ଣୁସେବା କରି
ଦାନଯଜ୍ଞ କର୍ମମାନ କରିବେ ଏପରି ।
ବଳିଷ୍ଠ ହେବେ ସବୁ ଲୋକେ ବିଷ୍ଣୁ ଉପାସନା
କରିବେ ଆଉ କରି ସ୍ତୋତ୍ର କବଚ ବନ୍ଦନା ।
ସମସ୍ତେ ଜାଣିବେ ଧର୍ମଶାସ୍ତ୍ରର ବିଧାନ
ବେଦ ଅନୁସାରେ କରିବେଟି କର୍ମମାନ ।
ଋତୁମତୀ କାମିନୀଙ୍କ ସହବାସ ବିନା
କାମବେଗେ ନ ରହିବ କାହାରି ଭାବନା ।
ଏହିରୂପେ ସତ୍ୟଯୁଗେ ଧର୍ମ ଦେଖାଯିବ ।
ଅଧର୍ମର ଲେଶ କେଉଁଠାରେ ନ ରହିବ ।
ସେ ଯୁଗରେ ଚାରିପାଦେ ଧର୍ମ ଅବସ୍ଥିତ
ତ୍ରେତାଯୁଗେ ତିନିପାଦେ ହୁଅଇ ବ୍ୟକତ ।
ଦ୍ୱାପର ଯୁଗରେ ଦୁଇପାଦେ ମାତ୍ର ରହେ
କଳିଯୁଗ ଆରମ୍ଭରେ ପାଦକରେ ଥାଏ ।
କ୍ରମେ ପାପମୟ କଳି ହୁଅନ୍ତେ ପ୍ରବଳ
ସମଗ୍ର ଲୋପ ହୁଅଇ ଆହେ ତପଶୀଳ ।

ଯେଉଁରୂପେ ମାସକରେ ତିରିଶଟି ଦିନ
ଦୁଇପକ୍ଷ ପଞ୍ଚଦଶ ତିଥି ହୁଏ ପୁଣ ।
ଏ ବାହାରେ ସପ୍ତବାର ତା ସମ୍ଭୂତ ହୁଏ
ଆଠ ପ୍ରହରରେ ଏକ ଦିବସ ବୋଲାଏ ।
ସେହିପରି ଏକରାତ୍ରି ଆଠପ୍ରହରରେ
ଲୋକକରେ ଦଣ୍ଡ ଘଡ଼ି ଲିତା ସେ ପ୍ରକାରେ ।
ଛଅମାସରେ ହୁଅଇ ଗୋଟିଏ ଅୟନ
ଦୁଇମାସେ ଏକଋତୁ ହୋଇଥାଏ ପୁଣ ।
ବାରମାସେ ବର୍ଷକାଳ ହୁଅଇ ଅଗଣିତ
ଯେରୂପେ ହୋଇଛି କାଳନିୟମ ଯେ କଳ୍ପିତ ।
ସେହିପରି ଚାରିଯୁଗ ପୂର୍ବ ପରାକ୍ରମେ
ଶତଡ଼ି ରଥ ପରିପ୍ରେ ପୁନଃ ପୁନଃ ଭ୍ରମେ ।
ମନୁଷ୍ୟଲୋକରେ ଏକବର୍ଷ ହେଲେ ପୂର୍ଣ୍ଣ
ସମାପ୍ତ ହୁଅଇ ଦେବଙ୍କର ଏକଦିନ ।
ଛଅଶତ ଠିଏ ଯୁଗ ହେଲେ ନରଙ୍କର
ଦେବଙ୍କର ଏକଯୁଗ ହୁଅଇ ଅନ୍ତର ।
ଦିବ୍ୟଯୁଗ ଏକସ୍ତରି ଗତ ହୁଏ ଯେବେ
ଇନ୍ଦ୍ରଙ୍କର ପରମାୟୁ ଶେଷ ହୁଏ ତେବେ ।
ଏହିପରି ଅଷ୍ଟାବିଂଶ ଇନ୍ଦ୍ରକ୍ଷୟ ହେଲେ
ବ୍ରହ୍ମାଙ୍କର ଦିନଟିଏ ଭୋଗ ହୁଏ ଭଲେ ।
ସେଦିନ ସଂଖ୍ୟା ମତରେ ଶହେ ଆଠବର୍ଷ
ଭୋଗ କରନ୍ତି ସେ ବ୍ରହ୍ମା ପ୍ରଜାପତିଈଶ ।
ସେ ଅନ୍ତରେ ତାହାଙ୍କର ଆୟୁ ଶେଷ ହୁଏ
ଶରୀର ତେଜନ୍ତି ହେତୁ ଜାଣ ସେ ସମୟେ ।
ବ୍ରହ୍ମାଙ୍କ ବିନାଶ ହୁଏ ପ୍ରାକୃତ ପ୍ରଳୟ
ଅଦୃଶ୍ୟ ହୁଅଇ ମହୀ କୂର୍ମ ମୁଖ ପ୍ରାୟ ।
ବିଶ୍ୱମଣ୍ଡଳରେ ଜଳ ସମ୍ପୂର୍ଣ୍ଣ ହୁଅଇ
କେଉଁଠାରେ ହେଲେ ସ୍ଥଳଜଗ ନ ଦିଶଇ ।
ମୁନିଋଷିଙ୍କ ସହିତେ ବ୍ରହ୍ମା ବିଷ୍ଣୁ ଶିବ
ଆଦର ମନୁଷ୍ୟ ପଶୁ ଆଦି ଯେତେ ଜୀବ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ଅଙ୍ଗେ ଲୀନ ହୋଇ
ପୁଣି ସୃଷ୍ଟି ହେବାଯାଏ ରହିଥାନ୍ତି ତହିଁ ।
ପ୍ରକୃତି ମଧ୍ୟ ସେଠାରେ ହୁଅନ୍ତି ବିଲୀନ
ସେ ଘେନ ପ୍ରାକୃତ ଲୟ ପ୍ରଳୟର ନାମ ।
ହେଲେ ପ୍ରାକୃତିକ ଲୟ ବ୍ରହ୍ମାଙ୍କର ପାତ
ଶ୍ରୀକୃଷ୍ଣଙ୍କର ନିମେଷ ମାତ୍ର ହୁଏ ଗତ ।

ଏ ରୂପେ ବିଶ୍ୱ ଜଗତ ହୁଅଇ ବିନଷ୍ଟ
ଅକ୍ଷୁର୍ଣ୍ଣ ରହନ୍ତି ମାତ୍ର ଗୋଲୋକ ବୈକୁଣ୍ଠ ।
ପାରିଷଦଗଣ ଘେନି ନିଜେ ଦେବହରି
ବିଜେ ହୁଅନ୍ତି ଗୋଲୋକେ ବିଶ୍ୱରୂପ ଧରି ।
ନିମିତ୍ତ ଅନ୍ତରେ ପୁଣି ସୃଷ୍ଟି ସରଜନା
କରିବାକୁ ତାହାଙ୍କର ହୁଅଇ ଭାବନା ।
ଏ ପ୍ରକାରେ କେତେଥର ସରଜନା ଲୟ
ହୋଇଅଛି ତାହା କରି ପାରିବ କେ ଥୟ ।
ବ୍ରହ୍ମାଣ୍ଡ ମଧ୍ୟରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ସୃଷ୍ଟି ହୋଇଥାନ୍ତି ଯେତେ ପଦାର୍ଥ ଆବର ।
ତାହାଙ୍କ ସଂଖ୍ୟା ଜାଣିବ ଅବା କେଉଁଲୋକ ।
ଶ୍ରୀକୃଷ୍ଣ ଅଟନ୍ତି ପ୍ରତି ବ୍ରହ୍ମାଣ୍ଡରେ ଏକ ।
ସକଳ ଜୀବର ପରମାତ୍ମା ଯେ ଅଟନ୍ତି
ବ୍ରହ୍ମା ବିଷ୍ଣୁ ରୁଦ୍ର ତାଙ୍କଠାରୁ ଉତପତ୍ତି ।
ତାଙ୍କ ଦେହୁ ଜାତ ମହାବିରାଟ ପୁରୁଷ
କ୍ଷୁଦ୍ର ବିରାଟ ପୁରୁଷ ତାହାଙ୍କର ଅଂଶ ।
ସେ କୃଷ୍ଣ ହୋଇଲେ ବେନିଭାଗ ଯେତେବେଳେ
ଚତୁର୍ଭୁଜ ଦୁଇଭୁଜ ରୂପେ ପ୍ରକାଶିଲେ
ଚତୁର୍ଭୁଜ ପୁରୁଷଙ୍କ ନାମ ନାରାୟଣ
ବୈକୁଣ୍ଠ ଭୁବନେ ସେହି କଲେ ଅବସ୍ଥାନ ।
ଦୁଇଭୁଜ ପୁରୁଷ ଯେ ଶ୍ରୀକୃଷ୍ଣ ଅଟନ୍ତି
ରାଧାଙ୍କ ସହିତେ କାଳେ ଗୋଲୋକରେ ସ୍ଥିତି ।
ବ୍ରହ୍ମଠାରୁ ଆଦିକରି ତୃଣ ପରିଯନ୍ତେ
ଯେତେ ଯେତେ ଦ୍ରବ୍ୟଜାତ ହୁଅଇ ଜଗତେ ।
ପ୍ରାକୃତିକ ପଦାର୍ଥ ସେ ସମସ୍ତ ଅଟଇ ।
କାଳକ୍ରମେ ତାହାସବୁ ବିନଷ୍ଟ ହୁଅଇ
କେବଳ ସଂସାର ହେତୁ ନିତ୍ୟ ସନାତନ
ସ୍ୱେଚ୍ଛାମୟ ପରଂବ୍ରହ୍ମ ରୂପ ଗୁଣ ଶୂନ୍ୟ ।
ଉପାଧି ରହିତ ଭକ୍ତ ଅନୁଗ୍ରହକାରୀ
ଜଗତ ଈଶ୍ୱର ପ୍ରଭୁ ସର୍ବମୟ ହରି ।
ନବୀନ ନୀରଦ ତୁଲ୍ୟ ସୁନ୍ଦର ବରନ
ଦ୍ୱିଭୁଜ ମୁରଲୀହସ୍ତ ପ୍ରସନ୍ନବଦନ ।
ଗୋପବେଶେ ବିରାଜିତ ସର୍ବ ଅବୟବ
ସର୍ବଙ୍କ ସକଳ ସେବା ପରମାତ୍ମା ଦେବ ।
ସର୍ବଦା ରହନ୍ତି ସେହି ଅକ୍ଷୁର୍ଣ୍ଣ ଭାବରେ
ସଂସାର ବିଷୟ ଚିନ୍ତା ନାହିଁ ତାଙ୍କଠାରେ ।

ତାଙ୍କ ଆଜ୍ଞା ଘେନି ବ୍ରହ୍ମା କମଳଆସନ
ବ୍ରହ୍ମାଣ୍ଡ ସୃଷ୍ଟି କରନ୍ତି ବୋଲି ମନେ ଘେନ ।
ମୃତ୍ୟୁଞ୍ଜୟ ମହାଦେବ ସର୍ବତତ୍ତ୍ୱଜ୍ଞାନୀ
ସଂହାର କରନ୍ତି ବିଶ୍ୱ ତାଙ୍କ ଆଜ୍ଞା ଘେନି ।
ତାହାଙ୍କର ଜ୍ଞାନ ତପ ଅଂଶରେ ଉତ୍ପନ୍ନ
ସର୍ବେଶ୍ୱର ବିଶ୍ୱମୂର୍ତ୍ତି ଆପଣା ସମାନ ।
ସକଳ ସମ୍ପଦଯୁକ୍ତ ସର୍ବଙ୍କ ପ୍ରଭୁ ସ୍ୱ
ସର୍ବବ୍ୟାପୀ ସର୍ବଭୂତ ହୃଦୟ ନିବାସ ।
ଏମନ୍ତ ଯେ ବିଷ୍ଣୁ ସେହି ଜଗତ ପାଳନ
କରନ୍ତି ତାଙ୍କର ଆଜ୍ଞା କରିଣ ବହନ ।
ଏ ବାହାରେ ସର୍ବଶକ୍ତି ଈଶ୍ୱରୀ ପ୍ରକୃତି
ମହାମାୟା ତାଙ୍କଠାରୁ ହୋଇଲେ ଉତ୍ପତ୍ତି ।
ତାଙ୍କଠାରୁ ଦୃଢ଼ଭକ୍ତି କରି କେତେକାଳେ
ରୂପ ଦରଶନ କରି ପୂଜ୍ୟ ସେ ହୋଇଲେ ।
ବେଦ ଅଧିଷ୍ଠାତ୍ରୀ ଦେବୀ ସାବିତ୍ରୀ ସୁନ୍ଦରୀ
ଦ୍ୱିଜଗଣ ପୂଜ୍ୟ ହେଲେ ତାଙ୍କୁ ସେବାକରି ।
ସକଳ ବିଦ୍ୟାରୂପିଣୀ ବିଦ୍ୟାଜ୍ଞାନମୟୀ
ଯେ ଅଟନ୍ତି ସରସ୍ୱତୀ ଦେବୀ ମହାମାୟୀ ।
ତାଙ୍କ ରୂପ ଦରଶନ କରି ତାଙ୍କୁ ସେବି
ସବୁସ୍ଥାନେ ପୂଜ୍ୟହେଲେ ବୋଲି ଥାଅ ଭାବି ।
ତାହାଙ୍କ ସେବା ଅର୍ଚ୍ଚନା କରି କମଳିନୀ
ମହାଲକ୍ଷ୍ମୀ ବୋଲାଇଲେ ବିଷ୍ଣୁ ପାଟରାଣୀ ।
ଧନଧାନ୍ୟ ସମ୍ପତ୍ତିର ଅଧିକାରୀ ହେଲେ
ସମସ୍ତ ଲୋକରେ ସମ୍ଭାବନା ସେ ପାଇଲେ ।
ଦୁର୍ଗତିନାଶିନୀ ମହାମାୟା ଦୁର୍ଗାଦେବୀ
ତପଜ୍ଞାନ କର୍ମଯୋଗେ ସେ ପ୍ରଭୁଙ୍କୁ ସେବି ।
ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବତା ସ୍ୱରୂପେ
ବିରାଜିତ ହୋଇ ପୂଜା ପାଉଛନ୍ତି ଆପେ ।
ଆବର ପ୍ରଧାନ ପୀଠ ସ୍ଥାନମାନଙ୍କରେ
ଅର୍ଚ୍ଚନା ପାଉଅଛନ୍ତି ବିବିଧ ପ୍ରକାରେ ।
ରୂପ ସଉଭାଗ୍ୟବତୀ ଶ୍ରୀମତୀ ରାଧିକା
ଅଟନ୍ତି ଯେ ପ୍ରଭୁଙ୍କର ପ୍ରାଣରୁ ଅଧିକା ।
ବାମଅଂଶୁ ଜାତ ହୋଇ ଦିବାରୁଚି ସେହି
ତାଙ୍କ ତହୁଁ ପ୍ରିୟବତୀ ହୋଇ ନାହିଁ କେହି ।
ପୂର୍ବରେ ବହୁତ ତପ ଅନୁଷ୍ଠାନ କଲେ
ସେ ଯେଣୁ ଅଧିକ ସମ୍ଭାବନା ସେ ପାଇଲେ ।

ପତ୍ନୀହୋଇ ବକ୍ଷସ୍ଥଳେ କଲେ ଯାଇ ସ୍ଥାନ
ତାଙ୍କ ତପସ୍ୟାର ଏମ ଶୁଣ ତପୋଧନ ।
ଶ୍ୱେତଶଙ୍ଗ ନାମେ ଏକ ସୁନ୍ଦର ପର୍ବତ
ବୃକ୍ଷଲତା ଗୁଳ୍ମେ ଦିଶୁଥିଲ ସେ ଶୋଭିତ ।
ତହିଁରେ ସହସ୍ରେ ଦିବ୍ୟଯୁଗଯାଏ ରହି
ତପ ଆଚରିଲେ ସତୀ କୃଶକରି ଦେହି ।
ଦେଖୁ ଦେଖୁ କୃଷ୍ଣପକ୍ଷ ଚନ୍ଦ୍ରକଳା ପରି
କ୍ଷୀଣ ଅବୟବେ ଦେଖାଗଲେ ସେ ସୁନ୍ଦରୀ ।
ନିରାହାରେ ଦିନଗତି କଟାଇଲେ ଯହୁଁ
ସଞ୍ଚାରଣ କରି ନ ପାଇଲା ପ୍ରାଣବାୟୁ ।
ସେ ସକାଶୁଁ ଜ୍ଞାନଶୂନ୍ୟ ହୋଇଣ ରହିଲେ
ଶ୍ରୀକୃଷ୍ଣ ସେ କଥା ସେ ଗବଳରେ ଜାଣିଲେ ।
ଦୟାରେ ପୂର୍ଣ୍ଣ ହୋଇଲା ହୃଦୟ ତାଙ୍କର
ସେକ୍ଷଣି ମିଳିଲେ ଆସି ସତୀଙ୍କ ପାଶର ।
ତାଙ୍କ କଷ୍ଟ ଦେଖି ନେତ୍ରୁ ବୁହାଇଣ ନୀର
ନିଜ ବକ୍ଷସ୍ଥଳେ ନେଇ ରଖିଲେ ସତ୍ୱର ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ବର ଦେଲେ ସେହିକ୍ଷଣି
ବୋଇଲେ ଆମ୍ଭର ପ୍ରିୟା ହୁଅ ଗୋ ତରୁଣୀ ।
ସବୁବେଳେ ଆମ୍ଭ ବକ୍ଷସ୍ଥଳେ ରହିଥାଅ
ଆମ୍ଭତେ ଭକ୍ତିପୂର୍ଣ୍ଣ କରିଣ ହୃଦୟ ।
ସୌଭାଗ୍ୟ ସମାନ ସ୍ନେହ ଗୌରବରେ କେହି
ତୁମ୍ଭଠାରୁ ବଳି ମୋର ନ ରହିବ କାହିଁ ।
ସକଳ କାମିନୀଠାରୁ ଅଧିକ ଭାବରେ
ପ୍ରକାଶ କରିବ ମୁହିଁ ସ୍ନେହ ତୁମ୍ଭଠାରେ ।
ଆବର ସର୍ବଦା ତୁମ୍ଭ ବଚନ ପାଳିବି
କାଞ୍ଚିତ ଭକତି କଲେ ତେବେ ଦେଉଥିବି ।
ଏହିରୂପେ ବରଦେଇ ଜଗତ ଈଶ୍ୱର
ସଚେତ କଲେ ତାହାଙ୍କୁ ମୁଖେ ସିଞ୍ଚି ନୀର ।
ସଙ୍ଗରେ ଘେନିଣ ନିଜ ଭୁବନକୁ ଗଲେ
ପତ୍ନୀର ହିତକରି ପାଶେ ରଖାଇଲେ ।
ପ୍ରାଣରୁ ଅଧିକା ସେହି ପ୍ରଭୁଙ୍କର ଜାଣ
କହନ୍ତି ନାରଦ ଆଗେ ଋଷି ନାରାୟଣ ।
ଆଜ ଯେତେ ଯେତେ ଦେବୀ ଅଛନ୍ତି ଜଗତେ
ଶ୍ରୀକୃଷ୍ଣଙ୍କୁ ସେବା ପୂଜା କରନ୍ତି ସମସ୍ତେ ।
ଯାହାର ତପସ୍ୟା ହୋଇଥିଲା ଯେଉଁପରି
ସେହି ଅନୁରୂପେ ଫଳ ହୋଇଲା ତାଙ୍କରି ।

ଦିବ୍ୟ ସହସ୍ର ବରଷ କ୍ଷମାକଳ୍ପେ ରହି
ତପ ଧ୍ୟାନକରି ଦୁର୍ଗାଦେବୀ ମହାମାୟୀ ।
ସକଳ ଲୋକରେ ପୂଜା ପାଇଲେ ସର୍ବଦା ।
ସେପରି ଗନ୍ଧମାଦନ ପର୍ବତେ ଶାରଦା ।
ଦିବ୍ୟ ଲକ୍ଷେ ସମ୍ବତ୍ସର ତପ ଆଚରିଲେ
ସର୍ବଠାରେ ପୂଜା ପାଇବାକୁ ଯୋଗ୍ୟ ହେଲେ ।
ଶତେଯୁଗ ପାଏ ଲକ୍ଷ୍ମୀ ପୁଷ୍କର ତୀର୍ଥରେ
ଶ୍ରୀକୃଷ୍ଣଙ୍କୁ ଧ୍ୟାନକରି ଏକାଗ୍ର ଚିତ୍ତରେ ।
ସକଳ ସମ୍ପଦ ଅଧିକାରିଣୀ ହୋଇଲେ
ସର୍ବଠାରୁ ବଳି ଦିବ୍ୟ ସମ୍ମାନ ପାଇଲେ ।
ସାବିତ୍ରୀ ମଳୟାଚଳ ଶିଖର ଦେଶରେ
ତପକରି ପୂଜ୍ୟହେଲେ ବ୍ରାହ୍ମଣଙ୍କ ଘରେ ।
ପ୍ରଭୁପାଦ ଧ୍ୟାଇ ଷାଠି ସହସ୍ର ବରଷ
ହୋଇଯୋଇ ଥିଲ ଜାଣ ତାହାଙ୍କର ଶେଷ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଶତେ ମନ୍ୱନ୍ତର
ତପକରି ହୋଇଲେ ଦେବଙ୍କ ଈଶ୍ୱର ।
କ୍ରମରେ ସୃଷ୍ଟି ପାଳନ ସଂହାର କାର୍ଯ୍ୟରେ
ହେଲେ ନିଯୁକ୍ତ ଜାଣ ତାହାଙ୍କ ଆଜ୍ଞାରେ ।
ତପ ସହୁଁ କଲେ ଧର୍ମ ଶତେ ମନ୍ୱନ୍ତର
ସମଗ୍ର ଲୋକରେ ହେଲେ ସେହୁ ଶ୍ରେଷ୍ଠତର ।
ସେହିଭଳି ଏକ ଏକ ମନ୍ୱନ୍ତର ପାଏ
ଇନ୍ଦ୍ର ନାଗରାଜ ଚନ୍ଦ୍ର ସୂର୍ଯ୍ୟ ଏ ବୃରହେଁ ।

ନିଜ ୨ ଅଧିକାର ମାନ ତପୋବଳେ
ଲଭି କରନ୍ତି ମନେ ଭାବନ୍ତୁ ଶମ୍ଭୁଳେ ।
ଦିବ୍ୟ ଶତେଯୁଗ ପାଏ ସମୀର ଦେବତା
ଆଚରିଲେ ଜପତପ ମନ୍ତ୍ର ଗୂଢ଼ଚନ୍ତ ।
ସର୍ବପାଣ ସର୍ବପୂଜ୍ୟ ସମସ୍ତ ଆଧାର
ହୋଇଅଛନ୍ତି ବୋଲିଣ ମନରେ ବିଚାର ।
ସାତର୍ଷିପଣ୍ଡି ଶତେ ଯୁଗ ତପ କଲେ
ନେଣୁ ଭବେ ରତ୍ନାକର ନାମ ସେ ବହିଲେ ।
ଶତେ ଯୁଗ ତପ କରି ଗିରି ହିମାଚଳ
ପର୍ବତ ମାନଙ୍କ ମଧ୍ୟେ ହୋଇଲେ ପ୍ରବଳ ।
ଏରୂପେ କୃଷ୍ଣଙ୍କୁ ଭକ୍ତି କରିବାରୁ ଦେବେ
ପୂଜ୍ୟ ହୋଇଛନ୍ତି ଜାଣ ଜଗତରେ ସର୍ବେ ।
ଏ ପ୍ରକାରେ ମୁନି ଋଷି ବ୍ରାହ୍ମଣ ସନ୍ତତେ
ମାନବ ଲୋକରେ ପୂଜ୍ୟ ଅଟନ୍ତି ସମସ୍ତେ ।
ସେଙ୍କର ଉପାସନା କରି ଭକ୍ତିଭରେ
ପାଉଛନ୍ତି ବଡ଼ପଣ ବ୍ରହ୍ମାଣ୍ଡ ମଧ୍ୟରେ ।
ଶ୍ରୀଗୁରୁ ମୁଖରୁ ମୁହିଁ ଏମନ୍ତ ପୁରାଣ
ଶୁଣିଥିଲି ଯାହା ତାହା କଲି ବଖାଣ ।
ଆଉ ଅଧିକ ଶୁଣିବା ପାଇଁ ଯେବେ ମନ
ପୁଛାକର ହେ ନାରଦ କହିବି ବଯ୍ୟାନ ।
ଏମନ୍ତ ବୋଲିଣ ପ୍ରଭୁ ମଉନ ହୋଇଲେ ।
ଦୀନହୀନ କ୍ଷେତ୍ରବାସୀ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣଙ୍କ ଦ୍ୱାରା କାଳୀସ୍ତୁତିଙ୍କର
ଗୁଣ ବର୍ଣ୍ଣନେ ନାମ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମ ଅଧ୍ୟାୟ

## ପୃଥିବୀ ଦେବୀଙ୍କ ସମ୍ବନ୍ଧରେ ଦେବର୍ଷିଙ୍କ ଅଗ୍ରତେ ନାରାୟଣଙ୍କର ବର୍ଣ୍ଣନା

ଦେବର୍ଷି ନାରଦ ନାରାୟଣଙ୍କୁ ଅନାଇଁ
ପୁଚ୍ଛିଲେ ଭକତିଭରେ ଆନନ୍ଦିତ ହୋଇ ।
ଆହେ ଜଗତତାରଣ ଯା କହିଲେ ମୋତେ
ନିମିଷେ ପଡ଼ଇ ଯେବେ ଶ୍ରୀହରିଙ୍କ ନେତେ ।
ସେହି ସମୟରେ ହୁଏ ବିଧାତାଙ୍କ ପାତ
ହୁଅଇ ଯେ ପ୍ରାକୃତିକ ପ୍ରଳୟ ସମ୍ଭୃତ ।

ଅଦୃଶ୍ୟ ଭାବରେ ରହେ ଦେବୀ ବସୁମତୀ
ବୁଡ଼ାଇ ରଖଇ ଜଳ ଏ ସାରା ଧରଣୀ ।
ସ୍ଥାବର ଜଙ୍ଗମ ସହ ଯେତେ ପ୍ରାଣୀଗଣ
ଶ୍ରୀବିଷ୍ଣୁଙ୍କ ଅଙ୍ଗେଯାଇ ବିଶ୍ରମନ୍ତି ଜାଣ ।
ସେହିକାଳେ ବସୁମତୀ କେଉଁଠି ରହଇ
ସୃଷ୍ଟି ଆରମ୍ଭରେ ପୁଣି କେମନ୍ତ ଆସଇ ।

ଜାହାଁପାଇଁ ପ୍ରତ୍ୟ ମୋହନ୍ତି ହୁଅଇ ଲୋକରେ
ସବୁର ଆଶ୍ରୟ ତାହା ହୁଏ କ ପ୍ରକାରେ ।
ସେ କଥା ମୋ ହ ଅଗ୍ରତେ କରନ୍ତୁ ବଖାନ
ଶୁଣିବା ପାଇଁକ ପ୍ରଭୁ ବଳଅଛି ମନ ।
ଶ୍ରୀଧର ବୋଇଲେ ଶୁଣ ଋଷୀଙ୍କ ଅଗ୍ରଣୀ
ଯାହା ପୁଚ୍ଛାକଲ ତାହା କହୁବା ବଖାଣି ।
ସବୁ ଜୀବଙ୍କ ଉତ୍ପତ୍ତି ସୃଷ୍ଟି ଆରମ୍ଭରେ
ହୁଅଇ ବିଷ୍ଣୁଙ୍କ ଠାରୁ ଲଖିତ ଚନ୍ଦ୍ରରେ ।
ସେହୁପର ପ୍ରଳୟରେ ତାଙ୍କ ଅଙ୍ଗେ ଯାଇ
ଲୀନ ହୁଅନ୍ତି ସକଳେ ଶୁଣ ମନଦେଇ ।
ଏରୂପେ ଜନ୍ମ ମରଣ ଆବର ବିନାଶ
ଖେଳଘର ପର ହୋଇଅଛି ତପସ୍ୱୀଶ ।
ପୃଥିବୀ ଜନମ ଏବେ କହୁଅଛି ଶୁଣ
ଯାହା ଅଟଇ ଅଶେଷ ମଙ୍ଗଳ କାରଣ ।
ପାପତାପ ନିବାରକ ବନ୍ଧନ ବିନାଶନ
ଆବର ପୁଣ୍ୟ କରଣ ପିଣ୍ଡଶ୍ରୀ ବର୍ଦ୍ଧନ ।
ପୁଣି କେତେକ କହନ୍ତି ଏହୁ ବସୁନ୍ଧରୀ
ମଧୁକୈଟଭ ମେଦରେ ହୋଇଛନ୍ତି ବିସ୍ତାର ।
ତ ହା ଯେ ପ୍ରକୃତ କଥା କଦାପି ନୁହଇଁ
ତାର ବିପରୀତ ମତ ଅଛି ତପିସାଇଁ ।
ସେ ମଧୁକୈଟଭ ବେନ ଦୈତ୍ୟ ବଳବନ୍ତ
ଯୁଝିଲେ ତାହାଙ୍କ ସଙ୍ଗେ ପ୍ରଭୁ ଲକ୍ଷ୍ମୀକାନ୍ତ ।
ତାଙ୍କ ରଣେ ତୁଷ୍ଟହୋଇ ସେ ବେନ ସୋଦର
ବୋଇଲେ ଯେ ଇଚ୍ଛା ଆମ୍ଭଠାରୁ ମାଗ ବର ।
ଶ୍ରୀହରି ତା ଶୁଣିକରି ଆନନ୍ଦିତ ହେଲେ
ସେ ଦୁହିଙ୍କୁ ଅନାଇଣ ଏମନ୍ତ କହିଲେ ।
ପ୍ରୟୋଜନ ନାହିଁ ମୋର ଅନ୍ୟବରେ କିଛି
ମାତ୍ରେବ ତୁମ୍ଭ ଦୁହିଙ୍କୁ ଏହାହିଁ ମାଗୁଛି ।
ଏରୂପେ ବଞ୍ଚିତ ହୋଇ ସେ ଦୁଇ ରାକ୍ଷସେ
ବୋଇଲେ ନ ଥିବ ଜଳ ଯେଉଁ ପ୍ରଦେଶେ ।
ସେଠାରେ ଆମ୍ଭଙ୍କୁ ମାର ଆହେ ଦେବହରି
ତାହା ଶୁଣି ବିଷ୍ଣୁ ସୁମରିଲେ ବସୁନ୍ଧରୀ ।
ସେତିକବେଳରେ ମହୀ ପ୍ରତ୍ୟକ୍ଷ ହୋଇଲେ
ପ୍ରଭୁ ମଧୁକୈଟଭଙ୍କର ପ୍ରାଣ ନେଲେ ।
ସେ ଅନ୍ତରେ ତାଙ୍କ ମେଦ ବ୍ୟାପିଲାଟି ସହୁଁ
ମେଦିନୀ ନାମକୁ ମହୀ ବହୁଛନ୍ତି ତହୁଁ ।

ସେହି ଯାହାଙ୍କ ମତ ହୋଇଛି ପ୍ରକାଶ
ବିସ୍ତାର କହୁବ ତାହା ଶୁଣ ମୁନିଶ ।
ଜଳରେ ଅଧିକ ହୋଇ କ୍ଷୀଣ ହୋଇଥିଲା
ମଧୁକୈଟଭ ମେଦରେ ବୃଦ୍ଧିକୁ ପାଇଲା ।
କହନ୍ତି ସେ ଯେଉଁରୂପେ ଜାତ ହେଲା ପ୍ରଥମରେ
ସେ କଥାର ତତ୍ତ୍ୱ ଏବେ ଶୁଣ ବସି ଧୀରେ ।
ପୁଷ୍କର ତୀର୍ଥରେ ଧର୍ମଦେବ ମୁଖୁ ମୁହିଁ
ଶୁଣିଛି ପୂର୍ବରେ ସେହିଁପରି କହୁଅଛି ।
କେତେକାଳ ଯାଏ ମହାବିରାଟ ପୁରୁଷ
ପ୍ରଳୟ ଜଳ ମଧ୍ୟରେ କରିଥିଲେ ବାସ ।
ତାହାଙ୍କ ଶରୀରେ ମଳ ଆବଦ୍ଧ ହୋଇଲା
ନଖରେ ସକଳ ଅଙ୍ଗ ଆଚ୍ଛରଣ କଲା ।
ଘୋଡ଼ାଇ ରହିଲା ସବୁ ଲୋମ ମୂଳରେହିଁ
ସେ ମୂଳରୁ ଜାତ ହେଲ କେତେହିଁନେ ମହୀ ।
ସେ ସକାଶୁ ପୁନଃପୁନଃ ସେ ଲୋମ ମୂଳରେ
ଲୀନ ହୋଇ ରହୁଥାଏ ପ୍ରଳୟ କାଳରେ ।
ସୃଷ୍ଟି ଆରମ୍ଭରେ ପୁଣି ହୁଅଇ ବାହାର
ଏରୂପେ ଅଟଇ ଜନ୍ମ ଉତ୍ପତ୍ତି ତାହାର ।
ପ୍ରାକୃତିକ ପ୍ରଳୟରେ ଜଳ ମଧ୍ୟେ ଥାଏ
ଧଇ ନା କାଳରେ ଉପରକୁ ଭାସିଥାଏ ।
ପ୍ରତ୍ୟେକ ବର୍ଷରେ ଶୈଳ କାନନ ତହିଁରେ
ଆବର ସପତ ସିନ୍ଧୁ ଦ୍ୱୀପ ସହିତରେ ।
ପ୍ରକାଶ ହୁଅନ୍ତି ପୂର୍ବପ୍ରକାରେ ସମସ୍ତେ
ନକ୍ଷତ୍ର ଆଦିତ୍ୟ ଚନ୍ଦ୍ର ଗ୍ରହଆଦି ଯେତେ ।
ବ୍ରହ୍ମା ବିଷ୍ଣୁ ଶିବ ଆଦି ସୁର କେତେ କଳ
ସକଳେ ଆସି ତହିଁରେ ହୁଅନ୍ତି ସେ ଠୁଳ ।
ପୁଣ୍ୟତୀର୍ଥ ନଦନଦୀ ଜଳାଶୟମାନ
ଯଥାସ୍ଥାନେ ବିରାଜିତ ହୁଅନ୍ତି ବହନ ।
ସୁବର୍ଣ୍ଣ ରଜତ ମହୀ ଦୁର୍ଗ ପୁରଗ୍ରାମ
ଧର୍ମକ୍ଷେତ୍ର ହୁଅଇ ଶୋଭା ଅତି ମନୋରମ ।
ପାତାଳ ସୁତଳ ରସାତଳ ସେ ବିତଳ
ସ୍ୱର୍ଗଲୋକ ବ୍ରହ୍ମଲୋକ ତାରକା ମଣ୍ଡଳ ।
ସକଳ ପ୍ରକାଶ ହୋଇ ସୁନ୍ଦର ଦିଶଇ
ଏମନ୍ତେ ନଖିଳ ବିଶ୍ୱ ସର୍ଜନା ହୁଅଇ ।
ଊର୍ଦ୍ଧ୍ୱଦେଶେ ବଇକୁଣ୍ଠ ଗୋଲୋକ ଉଭୟ
ନିତ୍ୟଶୁଦ୍ଧ ନିଗମୟ ଅନନ୍ତ ଅକ୍ଷୟ ।

ଏଇ ସବୁ ଦ୍ରବ୍ୟମାନ ମଣୁଅଛନ୍ତି ଜାଣ
କେତେକ ସମସ୍ତ ରତ୍ନ ଭୂଷଣ ଯେ ଆଣି ।
ପ୍ରକୃତ ପ୍ରଳୟ ପୁଣି ବ୍ରହ୍ମାଙ୍କର ପାତ
ହେଲା ପରେ ଯେତେବେଳେ ସୃଷ୍ଟି ମେଳଣ
ଆଦ୍ୟରେ ଶ୍ରୀକୃଷ୍ଣ ମହାବୈକୁଣ୍ଠ ଦେବଙ୍କୁ
ଜାତ କଲେ ପରଭାଗି ନିଜ ମହିମାଙ୍କୁ ।
ସେ ସମୟେ ମହାଦେବୀ ନିତ୍ୟ ଅଧିଷ୍ଠାତ୍ରୀ
ଆଶ୍ରୟସ୍ୱରୂପିଣୀ ସର୍ବଭୂତ ଶୁଭଦାତ୍ରୀ ।
ଶ୍ରୀହରି ତାହାଙ୍କୁ ଦେବ ଗନ୍ଧର୍ବ ସହିତେ
ପୂଜା କଲେ ଜାଣ ଅତି ଆନନ୍ଦ ଚିତ୍ତେ ।
ବରାହ ସ୍ୱରୂପ ବିଷ୍ଣୁ ଯଜ୍ଞ ଦେହୀ ହୋଇ
ଥିଲେ ଯେ କାଳରେ ଜାଣ ଆହେ ଋଷିସାଇଁ ।
ତାଙ୍କ ସୁତ ମଙ୍ଗଳ ଯେ ଗ୍ରହ ଅଧୀଶ୍ୱର
ଘଟେଶ ହୋଇବେ ପୁଣି ତାହାଙ୍କ କୁମର ।
ନାରଦ ବୋଇଲେ ଆହେ ନାରାୟଣ ଦେବ
କିରୂପେ ପୂଜିତା ମହୀ ହେଲେ ତା କହିବ ।
ବରାହ ରୂପରେ ପୂଜା କରିବାରୁ ହରି
ବାରାହୀ ନାମରେ ଖ୍ୟାତ ଦେବୀ ବସୁନ୍ଧରୀ ।
ସକଳ ଆଶ୍ରୟଭୂତା ପତିବ୍ରତା ସତୀ
ଦେବ ଦାନବଙ୍କ ପୂଜା ଯୋଗ୍ୟା ସେ ଅଟନ୍ତି ।
ତାହାଙ୍କ ବିଷୟେ ଯେତେ ପୂଜା ବିଧିମାନ
ବତାଇ କହିବା ହେଉ ଆହେ ତପୋଧନ ।
ତାହା ଶୁଣି ନାରାୟଣ ହରଷ ମନରେ
କଥା ଆରମ୍ଭି ବସିଲେ ନାରଦ ଆଗରେ ।
ବୋଇଲେ ଯେ ହିରଣ୍ୟାକ୍ଷ ନାମେ ପୂର୍ବକାଳେ
ଅସୁର ଗୋଟିଏ ଜାତ ହେଲା ମହୀତଳେ ।
ସମସ୍ତଙ୍କୁ ଜିଣି ମହୀ ଆପଣାର କଲା
ଉପୁଡ଼ାଇ ରସାତଳେ ନେଇଣ ରଖିଲା ।
ତାହା ଜାଣି ପ୍ରଜାପତି ମହାଭୟ କଲେ
ବିଷ୍ଣୁଙ୍କୁ ବହୁତ ସ୍ତୁତିକରି ଜଣାଇଲେ ।
ସେ ସକାଶୁ କ୍ରୋଧ ହୋଇ ପ୍ରଭୁ ଭଗବାନ
ବରାହ ରୂପ ଧାରଣ କଲେକ ବଦନ ।
ହିରଣ୍ୟାକ୍ଷ ଅସୁରକୁ ମାରି ରସାତଳୁଁ
ଉଦ୍ଧାର ଆଣିଲେ ମହୀ-ମହିଳାକୁ ଜଳୁଁ ।
ସବେଗରେ ପଦ୍ମପତ୍ର ଭସାଇଲା ପ୍ରାୟେ
ଭସାଇ ରଖିଲେ ଜଳପରେ ଦେବରାୟେ ।

ଯେଉଁଠାରେ ଥାଇ ବ୍ରହ୍ମା ସୃଷ୍ଟି କରିଲେ
ବିବିଧ ପ୍ରକାରେ ଦ୍ରବ୍ୟ ନିର୍ମାଣ ଯେ କଲେ ।
ମହୀ ଅଧିଷ୍ଠାତ୍ରୀ ଦେବୀ ମୂର୍ତ୍ତିମନ୍ତ ହୋଇ
ଅଧୀର ହୋଇଲେ ଶ୍ରୀହରିଙ୍କ ରୂପ ଦେଖି ।
ତାହାଙ୍କର ମନକଥା ପ୍ରଭୁ ତ ଜାଣିଲେ
କୋଳେ ଘେନି ତାଙ୍କୁ ନାନା ରଙ୍ଗେ କ୍ରୀଡ଼ା କଲେ
ଦିବ୍ୟ ଏକବର୍ଷ ଯାଏ ସ୍ୱରୂପେ କେଳି
କରନ୍ତେ ତାହାଙ୍କ ଅଙ୍ଗ ସଙ୍ଗ ପାଇ ବାଳୀ ।
ଅତ୍ୟନ୍ତ ସମ୍ଭୋଗ ସୁଖେ ମୂର୍ଚ୍ଛିତା ହୋଇଲେ
ଶ୍ରୀହରି ମଧ୍ୟ ତାହାଙ୍କ ସଙ୍ଗ ପାଇ ଭଲେ ।
ଦିବାନିଶା ଗଲା କେବେ ନ ପାରିଲେ ଜାଣି
ଏମନ୍ତେ ବରଷେ ଗତ ହେଲାପରେ ପୁଣି ।
ମୋହ ତେଜି କରି ତହୁଁ ଉଠି ତତକ୍ଷଣ
କରିଥିଲେ ଯେଉଁ ଦିବ୍ୟ ରୂପକୁ ଧାରଣ ।
ତାହା ଛାଡ଼ି ପୂର୍ବ ପରି ବରାହ ସ୍ୱରୂପ
ପ୍ରକାଶିତ କରି ଦେବଗଣଙ୍କ ଅଧିପ ।
ମହାସତୀ ଧରଣୀକୁ ମନେ ଧ୍ୟାନକରି
ପୂଜା କଲେ ଭକ୍ତିଭାବେ ଆହେ ତପସ୍ୱୀ ।
ଧୂପଦୀପ ନଇବେଦ୍ୟ ସିନ୍ଦୂର ଲେପନ
ବସ୍ତ୍ର ଅଳଙ୍କାର ପୁଷ୍ପ ଉପଚାରମାନ ।
ସମର୍ପଣ କରି ତାଙ୍କୁ ବୋଇଲେ ଗୋ ଦେବୀ
ଉଦ୍ଧାର ପାଇବେ ଲୋକେ ତୁମ୍ଭପାଦେ ସେବି
ସକଳ ଆଧାର ହୋଇଥାଏ ସବୁବେଳେ
ସେବନ୍ତୁ ମୁନିଏ ତୁମ୍ଭ ଚରଣକମଳେ ।
ଗୃହର ଆରମ୍ଭ ଅବା ପ୍ରବେଶ କାଳରେ
ନୋହିଲେ ବା କୂପ ବାପୀ ତଡ଼ାଗାରମ୍ଭରେ
କୃଷି ଆରମ୍ଭରେ ପୁଣି ତୁମ୍ଭ ପୂଜା ବିଧି
କରିବେ ସର୍ବେ ଲୋକେ ପାଇବାକୁ ସିଦ୍ଧି ।
ଆମ୍ଭ ବରେ ସବୁସ୍ଥାନେ ପୂଜ୍ୟ ତୁମ୍ଭେ ହେବ
ମାନନା କରିବେ ସ୍ୱର୍ଗେ ଇନ୍ଦ୍ର ଆଦି ଦେବ ।
ଯେଉଁ ମୂଢ଼ମାନେ ତାହା ନ କରିବେ ଜାଣ
ନରକରେ ଅନ୍ତଃକାଳେ ପଡ଼ିବେ ସେ ପୁଣ ।
ତାହା ଶୁଣି ବସୁମତୀ ବୋଇଲେ ହେ ଈଶ
ପାଳିବି ଆପଣଙ୍କର ଆଜ୍ଞା ମୁଁ ଅବଶ୍ୟ ।
ଅନାୟାସେ ଚରାଚର ବିଶ୍ୱକୁ ବହିବି
ସମସ୍ତଙ୍କ ଭାର ନିଜ ମସ୍ତକେ ସହିବି ।

ଗ୍ରହଣ କରିବ ପୂଜା ମନ୍ତ୍ର ଲୋକଠାରୁ
ଆଜ ଏକ କଥା ଶୁଣ କହୁଛି ଆଗରୁ ।
ମୁକ୍ତା ଶୁକ୍ତି ବାସ୍ତୁ ପୂଜ ଶାଳଗ୍ରାମ ଶିଳା
ଶିବଲିଙ୍ଗ ଶଙ୍ଖପାପ ରତ୍ନ ପୁଷ୍ପମାଳା ।
ମାଣିକ୍ୟ ହୀରକ ଯଜ୍ଞସୂତ୍ର ଯେ କର୍ପୂର
ସୁବର୍ଣ୍ଣ ଜପାମାଳିକା ଚନ୍ଦନ ଆବର ।
ଗୋରୋଚନା ଶାଳଗ୍ରାମ ଶିଳାଧୌତ ଜଳ
କଦାପି ମୁଁ ବହି ନ ପାରିବ ଏ ସକଳ ।
ତାହା ଶୁଣି ପରମାତ୍ମା ଶ୍ରୀହରି ସେକ୍ଷଣି
ବୋଇଲେ କହିଲ ଯେଉଁ ଦ୍ରବ୍ୟ ତୁମ୍ଭେ ପୁଣି ।
ତାହା ସବୁ ତୁମ୍ଭ ଦେହ ନ ଲଗିବ କେବେ
ତହିଁର କାରଣ କହୁଅଛି ଶୁଣ ଏବେ ।
ଯେ ଅବା ତୁମ୍ଭଙ୍କୁ ତାହା ଅର୍ପଣ କରିବ
ନିଶ୍ଚୟ ସେ କାଳସୂତ୍ରେ ପଡ଼ି ଘାଣ୍ଟି ହେବ ।
ସପତ ଜନମ ଯାଏ ପୁନଃ ପୁନଃ ଯାଇ
ନରକରେ ପଡ଼ିଥିବ ଘୋର ଦୁଃଖ ସହି ।
ଏମନ୍ତ କହିଣ ପ୍ରଭୁ ମାରବ ହୋଇଲେ
ମହାଦେବୀଙ୍କୁ ସେ ଅନ୍ତେ ଛାଡ଼ି ଚଳିଗଲେ ।
ତାହାଙ୍କ ଔରସେ ଯେଉଁ ଗର୍ଭ ମହୀଙ୍କର
ହୋଇଥିଲା ତହୁଁ ଜାତହେଲେ ଯେ କୁମର ।
ସେହିଟି ମଙ୍ଗଳ ଗ୍ରହ ବୋଲନ୍ତି ଜଗତେ
ତାହାଙ୍କୁ କରନ୍ତି ପୂଜା ସର୍ବେ ସମସ୍ତେ ।
ସେହିଦିନୁ ଶ୍ରୀହରିଙ୍କ ଆଜ୍ଞା ପରମାଣେ
କରନ୍ତି ମାନବେ ମହୀପୂଜା ଶୁଭଦିନେ ।
ଦେବତା ଦାନବ ଯକ୍ଷ ଗନ୍ଧର୍ବ କିନ୍ନର
ମୁନି ଋଷି ଆଦି ସର୍ବେ ହୋଇ ତତପର ।
କାଣ୍ୱଶାଖା ଧ୍ୟାନ ମନ୍ତ୍ର ସ୍ତବ ଅନୁସାରେ
ପୂଜନ୍ତି ସେ ପୃଥିବୀଙ୍କୁ ନାନା ଉପଚାରେ ।
ତିନ ଲୋକରେ ପୂଜିତା ଏହିପରି ମହୀ
ହୋଇ ଅଛନ୍ତି ତୁମ୍ଭ ଆଗେ ଦେଲି କହି ।
ନାରାୟଣ ମୁଖୁ ଏହିରୂପେ ମହାମୁନି
ନାରଦ ଶୁଣିଣ ତାଙ୍କୁ ପଚାରିଲେ ପୁଣି ।
ଆହେ ଦେବ ବସୁମତୀ ପୂଜା ସମୟରେ
ଅର୍ପଣ ହୁଅଇ ଉପଚାର କି ପ୍ରକାରେ ।
ଧ୍ୟାନ ସ୍ତବ ମୂଳମନ୍ତ୍ର କବଚ ସହିତେ
ଶୁଣିବାକୁ କୁତୁହଳ ଜନ୍ମୁଛି ମୋ ଚିତ୍ତେ ।

ସେ ସକଳ କଥା ମୋତେ କହନ୍ତୁ ଆପଣ
ତା ଶୁଣି କହନ୍ତି ଧୀରେ ଋଷି ନାରାୟଣ ।
ପ୍ରଥମେ ବରାହରୂପେ ଦେବ ଜଗନ୍ନାଥ
ପୂଜା କଲେ ଯହୁଁ ତାଙ୍କୁ ହୋଇ ତୋଷଚିତ୍ତ
ଲୋକ ପିତାମହ ବ୍ରହ୍ମା ତାଙ୍କଠାରୁ ଦେଖି
ପୂଜିଲେ ସେ ମଧ୍ୟ ହୋଇ ମାନସରେ ସୁଖୀ ।
ଯେ ଅନନ୍ତେ ପୃଥ୍ୱୀରାଜା ପୂଜା ତ କଲେ
ତାହା ଦେଖିଣ ସମସ୍ତେ ସେହିପରି କଲେ ।
ଧ୍ୟାନ ସ୍ତବ ମନ୍ତ୍ର ଯାହା ଅଛି ତାହାଙ୍କର
କହୁଅଛି ଏବେ ସବୁ ଶୁଣ ମୁନିବର ।
ଆଦ୍ୟରେ ଓଁକାର ପରେ ହ୍ରୀଂ ଶ୍ରୀଂ କ୍ଲୀଂ ଏପର
ତିନୋଟି ଅକ୍ଷରେ ବିନ୍ଦୁ ଅନୁସ୍ୱାର ଭର ।
ବସୁଧା ଶବ୍ଦରେ ଦେଇ ଚତୁର୍ଥୀ ବିଭକ୍ତି
ସ୍ୱାହାପଦ ନେଇ ବସାଇବ ତାର କତି ।
ଏଥିରେ ଯେ ମନ୍ତ୍ର ଜାତ ହେବଟି ତହିଁରେ
ପୂଜା କରିବ ନୈବେଦ୍ୟ ଦେଇ ଆନନ୍ଦରେ ।
ଗନ୍ଧ ପୁଷ୍ପ ଧୂପ ଆଦି ଉପଚାରମାନ
ମନ୍ତ୍ର ପଢ଼ି କ୍ରମେ କ୍ରମେ କରୁଥିବ ଦାନ ।
ଶୁକ୍ଳ ଚମ୍ପକବର୍ଣ୍ଣା ଶତଚନ୍ଦ୍ର ପ୍ରଭା
ଚନ୍ଦନ ଚର୍ଚ୍ଚିତ ଦ୍ରବ୍ୟ ଅବୟବ ଶୋଭା ।
ବିବିଧ ରତ୍ନଭୂଷଣ କାନ୍ତି ବିରାଜିତା
ରତ୍ନାଧାର ରତ୍ନଗର୍ଭ ରତ୍ନାକରଯୁତା ।
ଅନଳବିଶୁଦ୍ଧ ଶୁଭ୍ର ଅଂଶୁକଧାରିଣୀ
ନମସ୍ତେ ବସୁଧେ ବାଞ୍ଛାସମ୍ପୂର୍ଣ୍ଣ କାରିଣୀ ।
ପୂର୍ବକାଳେ ଏହିପରି ଧ୍ୟାନକୁ ପଢ଼ିବ
ଆବର କହୁଛି ଶୁଣ ତାହାଙ୍କର ସ୍ତବ ।
ବିଷ୍ଣୁଙ୍କ ମୁଖରୁ ତାହା ହୋଇଅଛି ଜାତ
ସନ୍ତୋଷ ହୁଅନ୍ତି ତହିଁ ପୃଥ୍ୱୀ ଲୋକମାତ ।
ଜୟ ଜୟ ବସୁମତୀ ଜୟ ସର୍ବାଧାରେ
ଯଜ୍ଞ ଶୂକରପତ୍ନୀ ଗୋ ଜୟ ଜୟ ଦାରେ ।
ମଙ୍ଗଳେ ମଙ୍ଗଳମୟେ ମଙ୍ଗଳକାରିଣୀ
ଶୁଭ ଦାନକାରୀ ଦେବୀ ଶୁଭ ସ୍ୱରୂପିଣୀ ।
ସର୍ବବୀଜେ ବସୁମତୀ ସର୍ବ ଶକ୍ତିମୟି
ସର୍ବକାମ ପ୍ରଦାୟିନୀ ଜୟ ମହାମାୟି ।

ବର୍ଣ୍ଣନ୍ତେ ଯେ ନିରନ୍ତର ପୁଣ୍ୟ ସମ୍ପାଦେ ମା
ପୁଣ୍ୟ ଆଶ୍ରୟିଣୀ ପୁଣି ହେତୁ ସନାତନୀ ମା ।
ଧର୍ମବନ୍ତ ଲୋକଙ୍କର ଅଟ ତୋ ଆଶ୍ରୟ
ତୁମ୍ଭ ଦୟାବଳେ ସର୍ବ ପାପ ଯାଏ ଦୂର ।
ରତ୍ନଗର୍ଭେ ରତ୍ନମୟୀ ରତ୍ନାକରଶ୍ରେଷ୍ଠେ
କାମିମାନଙ୍କ ନ ତୁମ୍ଭେ ଅଟ ଉତ୍ତମେ ।
ତୁମ୍ଭ ଦେହେ ସବୁ ଶସ୍ୟ ହୁଅଇ ଉତ୍ପନ୍ନ
ଆଶ୍ରୟ କଲେ ତୁମ୍ଭଙ୍କୁ ପ୍ରାପ୍ତ ହୁଏ ଧନ ।
ନାନା ଜାତି ସର୍ବ ଶସ୍ୟ ଦତ୍ତ ନିତ୍ୟ ତୁମ୍ଭେ
ତୁମ୍ଭର ମହିମା ଅବା କି ବର୍ଣ୍ଣିବୁ ଆମ୍ଭେ ।
ଜୟ ଭୂମିସ୍ୱରୂପିଣୀ ଭୂମିପତି ପ୍ରିୟେ
ସକଳ ଜୀବ ପାଳନ କରୁଛ ସଦୟେ ।
ସଚରାଚର ଜନନୀ ସର୍ବଂସହା ମାତ
ଅବଶେଷରେ ସଂହାର କରନ୍ତି ସମସ୍ତ ।
ଭୂମିପାଳମାନେ କରି ତୁମ୍ଭଙ୍କୁ ଆଶ୍ରିତ
ନିଜ ବଡ଼ପଣ ସେ କରନ୍ତି ପ୍ରକାଶିତ ।
ମୋରେ ସୁଦୟା କରଣେ ଭୂମି ଦାନକର
ପ୍ରାର୍ଥନା କରଇ ମାତ ଯୋଡ଼ି ବେନିକର ।
ଏହିରୂପେ ସ୍ତବପାଠ କରି ଭକ୍ତିଭରେ ।
ଅର୍ଚ୍ଚନା କରଇ ଯେହୁ ପୃଥ୍ୱୀଙ୍କୁ ସାଦରେ ।
କୋଟି ୨ ଜନ୍ମ ସେ ହୁଅଇ ଧନବନ୍ତ
ସନ୍ତୋଷେ ବର ଦିଅଇ ସେ ଧରଣୀ ମାତ ।

ଭୂମି ଦାନ କଲେ ଯେଉଁ ସୁ ପୁଣ୍ୟ ମିଳଇ
ସେହି ପୁଣ୍ୟଫଳ ସେହୁ ଅର୍ଚ୍ଚରେ ଲଭଇ ।
ତାହାର ସକଳ ପାପ ହୁଅଇ ଖଣ୍ଡନ
ଶୁଣ ସାବଧାନେ ଆହେ ବ୍ରହ୍ମାଙ୍କ ନନ୍ଦନ ।
ପୂର୍ବକାଳେ ଭୂମି ଖୋଳିବାର ଯେଉଁ ପାପ
ଏହି ସ୍ତବ ପାଠ କଲା ମାତ୍ରେ ହୁଏ ଲୋପ ।
ପରକୂପକୁ ଗର୍ବରେ ଯେ କରେ ମୋହର
ସେ ପାପ ବିନାଶ ହୁଏ ଜାଣ ଏ ସ୍ତବର ।
ପରଘରେ ସ୍ତବ କଲେ ଯେଉଁ ପାପ ହୁଏ
ଏ ସ୍ତବ ପଠନେ ତାହା ନାଶ ହୋଇଯାଏ ।
ଅଜ୍ଞାନେ ବା ଜ୍ଞାନେ ଭୂମିପରେ ଯେହୁ ରେତ
ସ୍ଖଳନ କରଇ ମୂର୍ଖ କାମୁକ ହରତ ।
ଏହି ସ୍ତବ ଯଦ୍ୟପି ସେ ଭକ୍ତିରେ ପଢ଼ଇ
ତହିଁରୁ ମୁକତ ପାଏ ସନ୍ଦେହ ନ ଥାଇ ।
ଆବର ଦୀପ ସ୍ଥାପନ କଲେ ମହୀପରେ
ହୁଏ ଯେଉଁ ମହାପାପ ଖଣ୍ଡଇ ଏଥିରେ ।
ଏ ସ୍ତବ ପଠନେ ଶତ ଅଶ୍ୱମେଧ ଫଳ
ମିଳଇ ନିଶ୍ଚୟେ ଶୁଣ ହେ ଧାତାଙ୍କବାଳ ।
ଏରୂପେ ପୃଥିବୀ ସ୍ତବ ମହିମା ଅଶେଷ
କହିଲେ ନାରଦଙ୍କର ଆଗେ ହୃଷିକେଶ ।
ଅଧମ କ୍ଷେତ୍ର ମୋହନ ସେହି ପଦ ଧ୍ୟାଇ
ଗୀତଛନ୍ଦେ ବିରଚିଲେ ଶୁଣ ମନଦେଇ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ପୃଥିବୀ ଦେବୀଙ୍କ ସମ୍ବନ୍ଧରେ ଦେବର୍ଷିଙ୍କ ଅଗ୍ରତେ ନାରାୟଣଙ୍କର ବର୍ଣ୍ଣନା ନାମ ଅଷ୍ଟମୋଽଧ୍ୟାୟଃ ।**

## ନବମ ଅଧ୍ୟାୟ

## ନାରାୟଣଙ୍କ କର୍ତ୍ତୃକ ପୃଥିବୀ ମହିମା ବର୍ଣ୍ଣନ

ଭକ୍ତିଭରେ ବେନିକର ଯୋଡ଼ିଣ ନାରଦ
ପଚାରିଲେ ମନମଧ୍ୟେ ହୋଇଣ ଆନନ୍ଦ ।
କୁହ ପ୍ରଭୋ ଭୂମିଦାନେ ହୁଏ କେଉଁ ପୁଣ୍ୟ
ଭୂମି ହରଣରେ ହୁଏ କେଉଁ ପାପମାନ ।
ଆଉର ପର ଭୂମିରେ ଶ୍ରାଦ୍ଧ ଯେ କରଇ
ବୀର୍ଯ୍ୟ ତ୍ୟାଗେ ମହୀପରେ କି ପାପ ହୁଅଇ ।
ପୁନଶ୍ଚ ଭୂମିରେ ଦୀପ କଲେ ସ୍ଥାପନ
ହୁଅଇ କେଉଁଣ ପାପ କୁହ ଭଗବାନ ।

ଶୁଣିବା ପାଇଁକି ମନ ବଳୁଛି ଅପାର
ଦୟା କରି କୁହ ତାର କେଉଁ ପ୍ରତିକାର ।
ଶୁଣି ନାରାୟଣ ମନେ ଆନନ୍ଦିତ ହୋଇ
କହିଲେ ଯାହା ପୁଚ୍ଛିଲ ଶୁଣ ମନ ଦେଇ ।
ମନରେ କପଟ ଭାବ ନ ବହି ଯେ ଜନ
ଦ୍ୱାଦଶ ଅଙ୍ଗୁଳ ଭୂମି ସ୍ନେହେ କରେ ଦାନ ।
ଅପାର ପୁଣ୍ୟ ତାହାର ଅର୍ଜନ ହୁଅଇ
ଅନ୍ତକାଳେ ବଇକୁଣ୍ଠେ ଯାଇଣ ବସଇ ।

ଆବର ହିତୁର ଶସ୍ୟ ଫଳେ ଯେ ଭୂମିରେ
ତାହାକୁ ଯଦ୍ୟପି ଦାନ କରେ ଯେ ଶ୍ରଦ୍ଧାରେ ।
ସେ ଭୂମି ମଧ୍ୟରେ ଯେତେ ରେଣୁ ରହିଥାଏ
ତେତେକାଳ ବସେ ସେହୁ ବୈକୁଣ୍ଠ ଆଳୟେ ।
ଗ୍ରାମ୍ୟଭୂମି ଧାନ୍ୟ ଏହି ତିନୋଟି ଦରବ
ଯେ ଦାନ କରିବ କବା ଆନେ କରାଇବ ।
ତାହାଙ୍କ ସୁପୁଣ୍ୟ ମୁଖେ କହି ନ ହୁଅଇ
ଅନ୍ତକାଳେ ବିଶ୍ରମନ୍ତି ବିଷ୍ଣୁପୁରେ ଯାଇ ।
ପୁଣି ଭୂମି ଦାନକାଳେ ଥାଇ ଯେଉଁ ଜନ
ଦେବା ଲୋକରେ ଉତ୍ସାହ କରଇ ପ୍ରଦାନ ।
ସେ ଲୋକ ଆପଣା ବନ୍ଧୁବାନ୍ଧବ ସଙ୍ଗତେ
ବୈକୁଣ୍ଠପୁରେ ବସନ୍ତି ଯାଇ ମୃତ୍ୟୁ ଅନ୍ତେ ।
ଏମନ୍ତ ଅଟଇ ଜାଣ ଦାନର ମହାତ୍ମ୍ୟ
ଆଉ ଯାହା ଅଛି ଶୁଣ ଆହେ ତପୋବନ୍ତ ।
ନିଜଠାରୁ ଅବା ପରଠାରୁ ଯେ ବ୍ରାହ୍ମଣ
ଦାନ ନେଇଥାଏ ଭୂମିଆଦି ଦ୍ରବ୍ୟମାନ ।
ତାହାକୁ ହରଣ କରେ ମୂର୍ଖ ଯେଣେ ଯେହୁ
କାଳସୂତ୍ରେ ପଡ଼ି ଦୁଃଖ ଭୋଗ କରେ ସେହୁ ।
ପୁତ୍ରପୌତ୍ର କ୍ରମେ ତାର ସପତ ପୁରୁଷ
ଭୂହୀନ ହୋଇ ବୁଲନ୍ତି ନ ପାଇଣ ବାସ ।
ଆବର ଧନ ସମ୍ପଦ ପୁତ୍ରହୀନ ହୋଇ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ କଷ୍ଟେ ଥାନ୍ତି ସେହି ।
ଦେହ ଅବସାନେ ଯାଇ ପଡ଼ନ୍ତି ନରକେ
କାଳ ଯାପନ କରନ୍ତି ମହାଘୋର ଦୁଃଖେ ।
ଗୋଚର ଭୂମିକୁ କୃଷିକରି ଯେଉଁ ଦୁଷ୍ଟ
ଲଗାଏ ବିବିଧ ଶସ୍ୟ ହୋଇଣ ସନ୍ତୁଷ୍ଟ ।
ଦିବ୍ୟ ଶତେବର୍ଷ ଯାଏ କୁମ୍ଭୀପାକେ ତାର
ସମସ୍ତ ଯାପନ ହୁଏ ଆହେ ମୁନିବର ।
ଯେଉଁସ୍ଥାନେ ଗୋରୁମାନେ ଗୋଷ୍ଠ ହେଉଥାନ୍ତି
ଅଥବା ଯେମାନେ ଲୋକେ କରୁଥାନ୍ତି ଗତି ।
ଯେବଣ ଭୂମିରେ ରହିଥାଏ ଅବା ଜଳ
ତାକୁ କୃଷିକରି ଶସ୍ୟ କରେ ଯେ ଚଣ୍ଡାଳ ।
ଚତୁର୍ଦ୍ଦଶ ଚନ୍ଦ୍ରଙ୍କର ଆୟୁକାଳ ଯେତେ
ସେତେଦିନ ନରକରେ ପଡ଼ଇ ସେ ଅନ୍ତେ ।
ପରଲୋକ ଯେଉଁ ପୁଷ୍କରିଣୀ ଖୋଳିଥିବ
ସେ ଯେବେ କାଳବଶରେ ପୋତ ହୋଇଯିବ ।
ତହିଁରୁ ପଙ୍କ ଉଦ୍ଧାର କରି ଯେଉଁ ଜନ
ସର୍ବ ସାଧାରଣ ପାଇଁ ମଣ୍ଡିବ ଖନନ ।
ସେ ପଙ୍କରେ ଯେତେ ରେଣୁ ଥିବେକ ବରଷ
ମହାସୁଖେ ବ୍ରହ୍ମଲୋକ କରେ ଯାଇ ବାସ ।
ପରଗୃହେ ପିତୃପିଣ୍ଡ ଦିଏ ଯେଉଁ ଲୋକ
ନିଷ୍ଟୟେ ତାହାକୁ ଭୋଗ ହୁଅଇ ନରକ ।
ଭୂମିରେ ଉଦକ ଦାନ ଯେ ଜନ କରଇ
ସପ୍ତଜନ୍ମ ଯାଏ ଅନ୍ଧ ହୋଇ ସେ ବୁଲଇ ।
ଯେଉଁ ଲୋକ ମନ୍ଦିରରେ ଆସନ ନ ଥୋଇ
ଶଙ୍ଖ ରଖେ କୁଷ୍ଠରୋଗ ହୁଏ ତାର ଦେହି ।
ମୁକ୍ତା ମଣି ମାଣିକ୍ୟ ଯେ ହୀରକ ସୁବର୍ଣ୍ଣ
ଭୂମିରେ ସ୍ଥାପନ କରେ ଯେଉଁ ମୂର୍ଖ ଜନ ।
ସପ୍ତଜନ୍ମ ଯାଏ ସେହୁ ଦରିଦ୍ର ହୁଅଇ
ଏ କଥା ଶାସ୍ତ୍ରରେ ମୁନି ଋଷି ଛନ୍ତି କହି ।
ଭୂତଳେ ଯେ ପୂଜାମାନ୍ୟ ଶିବଲିଙ୍ଗ ରଖେ
ଶତେ ମନ୍ୱନ୍ତର ସେହୁ ପଡ଼ଇ ନରକେ ।
ଗୃହଆଡ଼ୁ କୃମିଗଣ ବେଢ଼ି ତା ଦେହକୁ
ଭକ୍ଷଣ କରନ୍ତି ଜାତ କରାଇ ବ୍ୟଥାକୁ ।
ମୁକ୍ତାମନ୍ତ୍ର ଶାଳଗ୍ରାମ ଶିଳାଧୌତ ଜଳ
ଆବର ପୁଷ୍ପଚନ୍ଦନ ଯେ ତୁଳସୀଦଳ ।
ଭୂମିରେ ସ୍ଥାପନ କରେ ଯେବଣ ମାନବ
ଏକଯୁଗ ନରକରେ କରଇ ସେ ଠାବ ।
ଜପାମାଳା ପୁଷ୍ପମାଳା କର୍ପୂର ଗୋରଚନା
ଏହାକୁ ଭୂମିରେ ଥୋଇବାକୁ ଅଛି ମନା ।
ଅଜ୍ଞାନେ ବା ଅହଙ୍କାରେ ଯେବା ତାହା କରେ
ପଡ଼ଇ ସେ ଅନ୍ତକାଳେ ରୌରବ ମଧ୍ୟରେ ।
ରୁଦ୍ରାକ୍ଷ ଚନ୍ଦନକାଠ କୁଶ ପଞ୍ଚପୁଷ୍ପ
ତଳେ ଥୁଆହେଲେ ତାହା ହୁଏ ଅପବିତ୍ର ।
ଯେ ଜନ ରଖଇ ଶାସ୍ତ୍ରବିଧି ନ ବିଚାରି
ଦେହାନ୍ତେ ନରକ ଗତି ହୁଅଇ ତାହାରି ।
ପୁସ୍ତକ ଭୂମି ଉପରେ ରଖି ନ ଯୋଗାଇ
ରଖଇ ଯେ ଶିଷ୍ଟାଚାରର୍ଭ୍ରମତ ଗ୍ରନ୍ଥ ଦେଇ ।
ଜନ୍ମାନ୍ତରେ ଜାତିଶ୍ରେଷ୍ଠ ବଂଶରେ ଯେ ଜାତ
ନୁହଇ କଦାପି ଏହା ଅଟେ ଜାଣ ସତ୍ୟ ।
ଇହଲୋକେ ବ୍ରହ୍ମହତ୍ୟା ସମାନ ପାତକ
ପ୍ରାପତ ହୁଅଇ ଆହେ ଋଷିଙ୍କ ନାୟକ ।

ସଙ୍ଗ କଲା ପରେ ଷୀଣ ଅଣି ସେ ସ୍ଥାନରେ
ଚେତନ କରାଇ ସେହୁ ସଂସାର ନ କରେ ।
ଯେତେଥର ଜନ୍ମ ହେଉଥାଏ ସେ ପାଷାଣ
ଅନ୍ତଃକାଳେ ସହ୍ୟ କରେ କଷ୍ଟ ଲୌହଦଣ୍ଡ ।
ଭୂକମ୍ପ ସମୟେ ଅବା ଗ୍ରହଣ କାଳରେ
ଖୋଳଇ ଭୂମିକୁ ଯେହୁ ଅସ୍ତ ହେଳ କରେ ।
ଜନ୍ମାନ୍ତରେ ମହାପାପୀ ହୁଅଇଟି ସେହ୍ନ
ଜନମ ହୁଅଇ ପୁଣି ଅଙ୍ଗହୀନ ହୋଇ ।
ଯେଉଁଠାରେ ଥାଏ ସବୁ ଲୋକଙ୍କର ବାସ
ଭୂମି ବୋଲି ତାର ନାମ ହୁଏ ପରକାଶ ।
ଯେବଣ ସ୍ଥାନରୁ ବସ୍ତୁରତ୍ନ ଲଭ ହୁଏ
ବସୁନ୍ଧର ବୋଲି ତାକୁ ବୋଲନ୍ତି ସଭଏଁ ।
ଶ୍ରୀହରିଙ୍କ ଉରୁଦେଶୁ ଜନମ ଯାହାର
ପ୍ରସିଦ୍ଧ ହୋଇଛି ଉର୍ବୀ ନାମଟି ତାହାର ।
ନିଖିଳ ପଦାର୍ଥ ଯେଣୁ କରିଛି ଧାରଣ
ଧରଣୀ ବୋଲନ୍ତି ତାକୁ ଆହେ ମୁନି ଜାଣ ।
ଯାଗର ବିଧାନ ହେଉଥିବାରୁ ତହିଁରେ
ଲଜ୍ଜା ବୋଲି ନାମ ପାଇଅଛି ସେ ଲୋକରେ ।।

ଷୀଣ ହେଉଅଛି ବୋଲି ପ୍ରଳୟ କାଳରେ
କ୍ଷୌଣୀ ନାମ ପାଇଛି ସେ କହିଲି ତୁମ୍ଭରେ ।
କ୍ଷୟ ହୁଅଇ ତ ସେହୁ ପ୍ରଳୟ ହୋଇଲେ
ଏହି ହେତୁ କ୍ଷମା ନାମ ବହିଲା ସେ କାଳେ ।
ପୁଣି କେତେକାଳ ରହି କଶ୍ୟପ କୁଟିରେ
କାଶ୍ୟପୀ ନାମ ଧାରଣ କରିଛି ବଧିରେ ।
ଯେଣୁ ସ୍ଥିର ଅଟଇ ସେ ସବୁ ଦ୍ରବ୍ୟଠାରୁ
ଅଚଳା ନାମ ଧରିଛି ଜାଣ ସେ ହେତୁରୁ ।
ବିଶ୍ୱ ଜଗତର ଭାର କରନ୍ତେ ବହନ
ବିଶ୍ୱମ୍ଭରା ନାମେ ସେହୁ ହୋଇଲା ପୂଜନ ।
ପୃଥୁରାଜ ଗୃହେ କନ୍ୟାରୂପେ ହେଲେ ଜାତ
ପୃଥିବୀ ବୋଲି ତ୍ରିପୁରେ ନାମ ହେଲା ଖ୍ୟାତ ।
ଏହି ପରକାରେ ଭିନ୍ନ ଭିନ୍ନ କାରଣରେ
ଆନଆନ ନାମ ଧରି ବହିଛି ସଂସାରେ ।
ଏମନ୍ତ ନାରଦେ କହି ହୋଇଲେ ମଉନ
ଗୀତଛନ୍ଦେ ବିରଚିଲା କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣଙ୍କ କର୍ତ୍ତୃକ ପୃଥିବୀ ମହିମା ବର୍ଣ୍ଣନେ ନାମ ନବମୋଽଧ୍ୟାୟଃ ।

---

## ଦ ଶ ମ ଅ ଧ୍ୟା ୟ

## ଗଙ୍ଗାଙ୍କର ମହିମା ବର୍ଣ୍ଣନ

ନାରାୟଣଙ୍କ ଶ୍ରୀମୁଖୁ ମହୀର ଆଖ୍ୟାନ
ଶୁଣି ଆନନ୍ଦିତ ହୋଇ ଧାତାଙ୍କ ନନ୍ଦନ ।
ବୋଇଲେ ଭକତି ଭରେ ଯୋଡ଼ି ବେନିକର
ଆହେ ପ୍ରଭୁ ଶୁଣାଇଲେ ଯେହ୍ନେ ଧାବ ଶିର ।
ସେହିପରି କହ ଗଙ୍ଗାଦେବୀଙ୍କ ଚରିତ
ସକଳ ସଂଶୟ ମନୁଁ କର ମୋ ଦୂରିତ ।
କିରୂପେ ଭାରତୀ ଶାପେ ଭାରତବର୍ଷରେ
ଅବତାର ହେଲେ ପୁଣି କେବଣ ସ୍ଥାନରେ ।
ସେହି ପତିତ ତାରିଣୀ ଜଗତ ଜନନୀ
ବିଷ୍ଣୁପଦୀ ମହାକମା ସତୀ ଶିରୋମଣି ।

କାହାର ପ୍ରାର୍ଥନାରେ ସେ ହେଲେ କେହ୍ନେ ଜାତ
ସେ କଥା ମୋହର ଅଗ୍ରତେ କୁହ ଜଗନ୍ନାଥ ।
ତାହାଙ୍କ ବଚନ ଶୁଣି ପ୍ରଭୁ ନାରାୟଣ
ବୋଇଲେକ ଧୀର ଚିତ୍ତେ କରନ୍ତୁ ଶ୍ରବଣ ।
ପୂର୍ବକାଳେ ଥିଲେ ଜଣେ ପ୍ରତାପୀ ନରେଶ
ତାହାଙ୍କ ନାମ ସଗର ଶୁଣ ତପଈଶ ।
ସେ ସଗର ରାଜାଙ୍କର ଥିଲେ ଦୁଇରାଣୀ
ବୈଦର୍ଭୀ ଶୈବ୍ୟା ଅତ୍ୟନ୍ତ ସୁନ୍ଦର ସିହାଣି ।
ତାହାଙ୍କ ସମାନ ସତୀ ପୁଣି ଗୁଣବତୀ
ନଥିବେ ଏ ମହୀତଳେ ଶୁଣ ଦେଇ ମତି ।

ଅତି ଧର୍ମ ପରାୟଣ ଅଟନ୍ତି ରାଜନ
ପ୍ରଜାମାନେ ପିତା ସମ କରନ୍ତି ସମ୍ମାନ ।
କୁବେର ପରାୟେ ଧନବନ୍ତ ସେ ଅଟନ୍ତି
ଯମନ ସମାନ ତାଙ୍କ ଅଟେ ଦଣ୍ଡନୀତି ।
ଶୈବ୍ୟା ବୋଲି ଯେଉଁ ରାଣୀ ଅଟଇ ତାଙ୍କର
ଜନମ କରିଲା ସେହୁ ସୁନ୍ଦର କୁମର ।
ଅସମଞ୍ଜା ବୋଲି ନାମ ସେ ପୁତ୍ରର ଦେଲେ
ପୁତ୍ରକୁ ଦେଖିଣ ସର୍ବେ ଆନନ୍ଦ ହୋଇଲେ ।
ଆନପତ୍ନୀ ବଇଦର୍ଭୀ ପୁତ୍ର ବାଞ୍ଛା କରି
ଏକାଗ୍ର ଚିତ୍ତେ ଶିବଙ୍କୁ ସେବିଲା ସୁନ୍ଦରୀ ।
ଶିବଙ୍କର ଦୟାବଳେ ଯଥା ସମୟରେ
ଗର୍ଭବତୀ ହୋଇଲେକ ସେ ରାଣୀ ବିଧିରେ ।
ଯେଉଁ ଦିନ ଶତେ ବର୍ଷ ହୋଇଲା ସମ୍ପୂର୍ଣ୍ଣ
ରାଣୀ ଗର୍ଭୁ ମାଂସ ପିଣ୍ଡ ହେଲା ଉତପନ୍ନ ।
ତାହା ଦେଖି ସେ କାମିନୀ ଉଚ୍ଚରେ ରୋଦନ
କଲେ ମହାଦେବଙ୍କୁ ସେ ହୃଦେ କରି ଧ୍ୟାନ ।
ତେଣୁ ଶିବଙ୍କର ମନେ ଜାତ ହେଲା ଖେଦ
ବ୍ରାହ୍ମଣରୂପେ ସେଠାକୁ ଗଲେ କଷ୍ଟ ମୋଦ ।
ସେ ମାଂସ ପିଣ୍ଡକୁ ନେଇ ଭିନ୍ନ ଭିନ୍ନ କଲେ
ଷାଠିଏ ସହସ୍ର ଭାଗ କରି ପକାଇଲେ ।
ସେହିସବୁ ଭାଗେ ଯାକ ପୁତ୍ରରୂପ ହୋଇ
ଦିଶିଲେ ପୌରୁଷ ବଳ ଅଙ୍ଗଦେଶେ ବହି ।
ଗ୍ରୀଷ୍ମକାଳ ସୂର୍ଯ୍ୟଙ୍କର ସମାନ ତାଙ୍କର
କିରଣ ପ୍ରକାଶ ହେଲା ଆହେ ମୁନିବର ।
କେତେକାଳ ଅନ୍ତେ ପୁଣି ସେ ସହସ୍ର ସୁତେ
ଯଜ୍ଞଅଶ୍ୱ ଖୋଜିବାକୁ ଗଲେ କୋପ ଚିତ୍ତେ ।
ସବୁଆଡ଼େ ବୁଲି ବୁଲି ନ ପାଇଲେ କାହିଁ
ପାତାଳେ ପଶିଲେ ତହୁଁ ବିଦାରିଣ ମହୀ ।
ସେଠାରେ କପିଳ ମୁନିଙ୍କର ବାସସ୍ଥାନ
ଯଜ୍ଞଅଶ୍ୱ ଅଛି ତାହାଙ୍କର ସନ୍ନିଧାନ ।
ତା ଦେଖି ସେମାନେ ଉଚ୍ଚେ ରହ ରହ ବୋଲି
ଧାଇଁଲେ ମୁନିଙ୍କଠାକୁ ହୋଇ ପେଲାପେଲି ।
ତାହାଙ୍କର ଦୁଷ୍ଟପଣ ଜାଣି ମୁନିବର
ଭସ୍ମ କଲେ କ୍ରୋଧାଗ୍ନିରେ ତୃଣ ପରକାର ।
ସେ ବାରତା ପାଇବାରୁ ସଗର ନୃପତି
ଶୋକକଲେ ହୃଦୟରେ ବ୍ୟଥା ପାଇ ଅତି ।

ପୁଣି ଅଳ୍ପକାଳ ପରେ ପୁତ୍ରଙ୍କୁ ସ୍ମରି
ଦେହତ୍ୟାଗ କଲା ପରେ ବାମବ ନରେଶ ।
ତାହା ଦେଖି ଅସମଞ୍ଜା ହେତୁ କାନ୍ଦିଲେ
ଗଙ୍ଗାଙ୍କୁ ଆଣିବା ପାଇଁ ଘୋର ତପ କଲେ ।
ଲକ୍ଷେ ବର୍ଷ ପୂର୍ଣ୍ଣ ହେବା ସମୟରେ କାଳ
ଆସି ହେଲାଗଲା ଧରି ତାହାଙ୍କର ବାଳ ।
ସେହିପରି ତାଙ୍କ ପୁତ୍ର ଅଂଶୁମାନ ଗଲେ
ଲକ୍ଷେବର୍ଷ ତପ କରି ମରଣ ଲଭିଲେ ।
ଦିଲୀପ ନାମରେ ଥିଲେ ତାହାଙ୍କର ସୁତ
ସେ ମଧ୍ୟ ଗଙ୍ଗାଙ୍କୁ ଆଣିବାକୁ କଲେ ଚିତ୍ତ ।
ତପକରି ଲକ୍ଷେବର୍ଷ ପରଲୋକେ ଗଲେ
ଏପରି ତାଙ୍କ ବଂଶରେ ଯେତେ ରାଜା ହେଲେ
ଅନେକ ପୁରୁଷ ଏ ତପ ଆଚରିଣ
କରୁଥାନ୍ତି ଆଣିବାକୁ ଗଙ୍ଗାଙ୍କୁ ସେ ଜାଣ ।
କେତେକାଳ ପରେ ତାଙ୍କ ବଂଶ ଭଗୀରଥ
ଜନମିଲେ ଅଟନ୍ତି ସେ ବଡ଼ ସାମରଥ ।
ସୁଶୀଳ ସୁନ୍ଦର ବିଷ୍ଣୁଭକ୍ତ ପରାୟଣ
ଜିତେନ୍ଦ୍ରିୟ ସତ୍ୟବାନ ଜ୍ଞାନୀ ଅଗ୍ରଗଣ୍ୟ ।
ସେ ନୃପ ଗଙ୍ଗାଦେବୀଙ୍କୁ ଆଣିବାର ପାଇଁ
ଲକ୍ଷେବର୍ଷ ତପ କଲେ ହିମାଳୟେ ଯାଇଁ ।
ସେ ତପକେ ଶ୍ରୀକୃଷ୍ଣଙ୍କୁ କଲେ ଦରଶନ
ଦ୍ୱିଭୁଜ ମୁରଲୀ ହସ୍ତ ସସ୍ମିତ ବଦନ ।
କିଶୋର ବୟସ ଗୋପବେଶ ସୁରଞ୍ଜିତ
କୋଟିସୂର୍ଯ୍ୟ ସମ କାନ୍ତି ବେଣୁ ବାଦ୍ୟ ହସ୍ତ ।
ପରମାତ୍ମା ଭକ୍ତହୃଦ ଜ୍ଞାନୀ ସୁଚତୁର
ସ୍ୱେଚ୍ଛାମୟ ପରଂବ୍ରହ୍ମ ପୂର୍ଣ୍ଣକଳେବର
ବ୍ରହ୍ମା ବିଷ୍ଣୁ ଶିବ ଆଦି ସୁର ପୂଜ୍ୟପାଦ
ମୁନିଗଣ ବନ୍ଦିତ ଅତୁଲ୍ୟ ସମ୍ପଦ ।
ନିର୍ଲିପ୍ତ ସକଳକର୍ମ ସାକ୍ଷୀ ଆଦ୍ୟମୂଳ
ନିର୍ଗୁଣ ପ୍ରସନ୍ନ ସୌମ୍ୟ ଶ୍ରୀମୁଖମଣ୍ଡଳ ।
ବହ୍ନିଶୁଦ୍ଧ ବସ୍ତ୍ରଯୁଗ୍ମ ବିରାଜିତ ତନୁ
କିରଣ ନିର୍ଜିତ ମଧ୍ୟ ଅନ୍ତସାକ୍ଷ ଭାନୁ ।
ଏମନ୍ତ ରୂପକୁ ଦେଖି ରାଜା ଭଗୀରଥ
ସ୍ତୁତିକଲେ ମସ୍ତକରେ ଯୋଡ଼ି ବେନିହସ୍ତ ।
ତାହା ଜାଣି ପରମାତ୍ମା ଦେବ ସନାତନ
ପ୍ରସନ୍ନ ହୋଇଣ ତାଙ୍କୁ କଲେ ବର ଦାନ ।

ସେ ଅନ୍ତେ ଗଙ୍ଗାଦେବୀଙ୍କୁ ସୁମରଣା କଲେ
ସେହିକ୍ଷଣି ଗଙ୍ଗା ତାଙ୍କ ପାଶରେ ମିଳିଲେ ।
ପ୍ରଣାମ କରି ଆଗରେ ଛିଡ଼ାହୋଇଲେ ପାଇଁ
ଆଜ୍ଞାଦେଲେ ପ୍ରଭୁ ତାଙ୍କ ମୁଖକୁ ଅନାଇଁ ।
ବୋଇଲେ ଗୋ ମନ୍ଦାକିନୀ ଶୁଣ ମୋ ବଚନ
ଯହିଁପାଇଁ କଲି ମୁହିଁ ତୁମ୍ଭଙ୍କୁ ସ୍ମରଣ ।
ସୂର୍ଯ୍ୟବଂଶ ଅବତଂସ ଭଗୀରଥ ନୃପ
ତୁମ୍ଭଙ୍କୁ ନେବାପାଇଁ ଗୋ କରୁଅଛନ୍ତି ତପ ।
ଏ ସକାଶୁ ଅବିଳମ୍ବେ ଯାଇ ଏବେ ତୁମ୍ଭେ
ଭାରତବର୍ଷରେ ବହିଯାଅ ବୋଲୁଁ ଆମ୍ଭେ ।
ପୂର୍ବରେ ତ ସରସ୍ୱତୀ ଶାପ ଦେଇଛନ୍ତି
ସେ କଥା ପାଳନ ଏବେ କର ମହାସତୀ ।
ଷାଠିଏ ସହସ୍ର ପୁତ୍ର ସଗର ରଜାର
କପିଳ ମୁନିଙ୍କ ଶାପେ ହୋଇଲେ ଭସ୍ମସାର ।
ତାହାଙ୍କ ଉପରେ ତୁମ୍ଭେ ନ ବହିବ ଯେବେ
ଅପବିତ୍ର ହୋଇ ସବୁକାଳେ ସେ ରହିବେ ।
ପର ଉପକାର ଅଟେ ସାଧୁଙ୍କର କାର୍ଯ୍ୟ
ପ୍ରାର୍ଥନା କରନ୍ତି ପୁଣି ଭଗୀରଥ ରାଜ ।
ଏମନ୍ତ ସୁଯୋଗ ଛାଡ଼ି ରହିବା ଉଚିତ
ଅଟଇ କି ଆପଣାର ମନେ ବିଚାର ତ ।
ସେମାନେ ତୁମ୍ଭର ଜଳ ପରଶରେ ଯାଇ
ବସିବେ ବୈକୁଣ୍ଠପୁରେ ଦିବ୍ୟମୂର୍ତ୍ତି ବହି ।
କେତେକାଳ ଅନ୍ତେ ମୋର ପାରିଷଦ ହେବେ
ଜନମ ମରଣ ଦୁଃଖ କେବେ ନ ଜାଣିବେ ।
ଆଜଠାରୁ ଭାରତରେ ଯେତେ ପାପୀଜନ
ସେମାନେ ତୁମ୍ଭ ଜଳରେ କଲେ ଯାଇ ସ୍ନାନ ।
କୋଟି ଜନ୍ମ କୃତ ଯେତେ ପାତକ ତାଙ୍କର
ନଷ୍ଟପ୍ରାୟ ତହିଁରୁ ସେହୁ ହୋଇବେ ଉଦ୍ଧାର ।
ଏରୂପେ ଅଟଇ ବେଦଶାସ୍ତ୍ରର ପ୍ରମାଣ
ଅକସ୍ମାତେ କରିବ ଯେ ଗଙ୍ଗାଜଳେ ସ୍ନାନ ।
ଅଶେଷ ପାପରୁ ମୁକ୍ତ ପାଇବଟି ସେହି
ବଢିବ ତାହାର ପୁଣ୍ୟ ଦଶଗୁଣ ହୋଇ ।
ପର୍ବ ତିଥି ଦିବସରେ ବିଧିମତେ ସ୍ନାନ
କଲେ ଶତକୋଟି ଜନ୍ମ ପାତକ ଖଣ୍ଡନ ।
ହୁଅଇ ଏକଥା ବେଦ ପୁରାଣେ କଥିତ
ଏଥିରେ ସନ୍ଦେହ ମନେ ନ ଘେନ କିଞ୍ଚିତ ।

ଜ୍ଞାନରେ ବା ଅଜ୍ଞାନରେ ଯେବଣ ମାନବ
ବ୍ରହ୍ମହତ୍ୟା ଆଦି ଘୋର ପାପ କରିଥିବ ।
ମୌଷଳ ସ୍ନାନ କରିବ ଯେବେ ସେ ଗଙ୍ଗାରେ
ନ ରହିବ ଲେଶମାତ୍ର ପାପ ତା ଦେହରେ ।
ପୁଣ୍ୟ ଦିବସରେ ସ୍ନାନ କଲେ ଯେଉଁ ଫଳ
କହି ନ ପାରିବେ ତାହା ଦେବତା ସକଳ ।
ବେଦ ପୁରାଣରେ ମଧ୍ୟ ତହିଁର ପ୍ରମାଣ
ନଷ୍ଟପ୍ରାୟ ହୋଇ ଲିଖିତ ହୋଇ ନାହିଁ ଜାଣ ।
ବ୍ରହ୍ମା ବିଷ୍ଣୁ ଶିବ ମଧ୍ୟ ନ ଜାଣନ୍ତି ତାହା
ଅନ୍ୟଲୋକ କଥା କିବା କହିବ ସୁଦେହା ।
ଯେବଣ ଦିନରେ ସ୍ନାନ କରିବାର ବେଳେ
ଯେରୂପେ ସୁକୃତ ହୁଏ ଶୁଣ ତାହା ଭଲେ ।
ମୌଷଳ ସ୍ନାନରେ ଧର୍ମ ହୁଏ ଦଶଗୁଣ
ସାମାନ୍ୟ ଦିବସେ ଅଳ୍ପ ଊଣା ତହୁଁ ଜାଣ ।
ସୂର୍ଯ୍ୟ ସଂକ୍ରମଣେ ତହୁଁ ତିରିଶ ଗୁଣରେ
ବଢିବ ଏକଥା ସତ୍ୟ ଘେନ ମୋ ମନରେ ।
ଅମାବାସ୍ୟାରେ ଯେପରି ହୁଅଇ ସୁକୃତ
ଦକ୍ଷିଣାୟନ କାଳରେ ହୁଏ ଦ୍ୱିଗୁଣିତ ।
ଉତ୍ତରାୟଣରେ ତାହାଠାରୁ ଦଶଗୁଣ
ସ୍ନାନକଲେ ମାନବର ଧର୍ମ ହୁଏ ଜାଣ ।
ଚତୁର୍ମାସ୍ୟା ସମୟରେ ଅବା ପୂର୍ଣ୍ଣିମାରେ
ଅଶେଷ ଫଳ ପ୍ରାପତ ହୁଏ ନିଶ୍ଚୟରେ ।
ଅକ୍ଷୟ ତିଥିରେ ତାର ସମାନ ହୁଅଇ
ମାତ୍ର ଏହା ବେଦପୁରାଣରେ ଲେଖା ନାହିଁ ।
ଏହିକାଳମାନଙ୍କରେ ସ୍ନାନ ଅନ୍ତେ ଦାନ
କଲେ ଲଭ ହୁଏ ଯାଗ କରିବାର ପୁଣ୍ୟ ।
ସାମାନ୍ୟଦିନ ସ୍ନାନରେ ଦାନ ଯେ କରଇ
ଶତଗୁଣ ଫଳଲାଭ ତାହାର ହୁଅଇ ।
ମନ୍ୱନ୍ତର ଯୁଗ ଆରମ୍ଭିଲେ ସ୍ନାନକଲେ
ସହସ୍ରେଗୁଣ ସୁକୃତ ହୁଅଇଟି ଭଲେ ।
ମାଘଶୁକ୍ଳ ସପ୍ତମୀ ଭୀଷ୍ମ ଅଷ୍ଟମୀରେ
ଆଉର ଅଶୋକାଷ୍ଟମୀ ଯେ ଚୈତ୍ରମାସରେ ।
ଏହି ପୁଣ୍ୟଦିନମାନଙ୍କରେ କଲେ ସ୍ନାନ
ଶତଗୁଣେ ପୁଣ୍ୟ ଲାଭ ହୁଏ ନିଶ୍ଚେ ଜାଣ ।
ନନ୍ଦା ତିଥିରେ ତାଠାରୁ ଦୁଇଗୁଣ ହୁଏ
ପୂର୍ଣ୍ଣିମାଦିବସରେ ଚାରିଗୁଣ ବଢିଥାଏ ।

ଦଶହରା ଦଶମୀରେ ସ୍ନାନଦାନ କଲେ
ଯୁଗାଦି ସ୍ନାନଦାନର ଫଳ ହୁଏ ଭଲେ ।
ବାରୁଣୀ ଯୋଗରେ ନଦୀ ତଥିର ସମାନ
ମହାବାରୁଣୀରେ ହୁଏ ଚାର ଗୁଣଗୁଣ ।
ମହା ମହା ବାରୁଣୀରେ ଆଠଗୁଣ ହୁଏ
ଏମନ୍ତ କହନ୍ତି ଶାସ୍ତ୍ରେ ଦେବତାଏ ।
ସାମାନ୍ୟ ଦିନରେ ସ୍ନାନ କଲେ ଯେଉଁ ପୁଣ୍ୟ
ହୁଏ ତହୁଁ ଚନ୍ଦ୍ରଗ୍ରହଣରେ କୋଟିଗୁଣ ।
ତା'ର ଦଶଗୁଣ ହୁଏ ସୂର୍ଯ୍ୟର ପର୍ବରେ
ଶୁଣ ଆଗୋ ମହାକାମଦେବୀ ମହାସ୍ୱରେ ।
ଅନ୍ୟ ଲୋକଙ୍କ ପକ୍ଷରେ ନିୟମ ଯେ ଏହି
ମାତ୍ର ବଇଷ୍ଣବଙ୍କର ବିପରୀତ ହୋଇ ।
ଯେ ସକାଶୁ ବଇଷ୍ଣବେ ଜୀବନ ମୁକତ
କର୍ମଫଳ ଇଚ୍ଛା ନ କରନ୍ତି କଦାଚିତ ।
ସବୁକାଳେ ମୋର ପ୍ରୀତି କରନ୍ତି ସେମାନେ
ସେ ଯେଣ ରଖାଏ ତାଙ୍କୁ ନେଇ ମୋରସ୍ଥାନେ ।
ଗୁରୁମୁଖୁଁ ବିଷ୍ଣୁମନ୍ତ୍ର ଯାହାର କର୍ଣ୍ଣରେ
ପ୍ରବେଶ କରଇ ବେଦ ବିଧି ଅନୁସାରେ ।
ଜୀବନ ମୁକତ ବୋଲି ବେଦର ସମ୍ମତେ
ବୋଲନ୍ତି ତାହାଙ୍କୁ ସବୁ ସ୍ଥାନରେ ସମସ୍ତେ ।
ସେହିଲୋକ ପୂର୍ବାପର ଶତେ ପୁରୁଷଙ୍କୁ
ଆଦିକରି ଯେ ମାତୃକୁଳ ପୁରୁଷମାନଙ୍କୁ ।
ଶ୍ୱଶୁର ଭଗିନୀ ଭ୍ରାତା ଶ୍ୱଶ୍ରୂ ଭଗିନେୟ
ଗୁରୁ ଗୁରୁଙ୍କର ପତ୍ନୀ ଦୁହିତା ତନୟ ।
ଜ୍ଞାନଦାତା ଅନ୍ନଦାତା ମିତ୍ର ସହଚର
ଭୃତ୍ୟ ଶିଷ୍ୟ ଆଦିକରି ଯେତେ ଥାଇ ତାର ।
ଆପଣା ସହିତେ ସମସ୍ତଙ୍କୁ ଉଦ୍ଧରଇ
ମନ୍ତ୍ର ଗ୍ରହଣ ପ୍ରଭାବ ଏମନ୍ତ ଅଟଇ ।
ତାର ଅଙ୍ଗ ପରଶରେ ଯେତେ ପୁଣ୍ୟତୀର୍ଥ ।
ପାପ ନାଶକରି ସର୍ବେ ହୁଅନ୍ତି କୃତାର୍ଥ ।
ତା ପାଦରୁ ଧୂଳିପଡ଼ି ମହୀ କଳେବର
ପବିତ୍ର ହୁଅଇ ଜାଣ ରମଣୀଙ୍କ ବର ।
ଯେଉଁଠାରେ ପଡ଼ଥାଏ ତାର ପାଦଜଳ
ଜାଣିବ ଅଟଇ ସେହି ଦିବ୍ୟ ତୀର୍ଥସ୍ଥଳ ।
ବିଷ୍ଣୁର ଯେ ଅନ୍ନ ନଇବେଦ୍ୟ ନ ହୁଅଇ
ବିଷ୍ଠାର ସମାନ ଜାଣ ସେହିଟି ଅଟଇ ।

ତା ସଙ୍ଗରେ ବ୍ୟବହୃତ ହୁଏ ଯେଉଁ ନୀର
ମୂତ୍ରତୁଲ୍ୟ ଅଟଇ ସେ ବୋଲି ମନେକର ।
ଯେମନ୍ତ ଅନ୍ନଜଳକୁ ବୈଷ୍ଣବେ ଗ୍ରହଣ
ନ କରନ୍ତିକେତେବେଳେ ହେଲେ ବୋଲି ଜାଣ
ଯେଉଁମାନେ ବିଷ୍ଣୁପୂଜା କରି ସେ ଦ୍ରବ୍ୟକୁ
ଭୋଜନ କରନ୍ତି ବହି ମନରେ ତୋଷକୁ ।
ତାହାଙ୍କୁ ଦେଖିଲେ ପୁଣ୍ୟତୀର୍ଥ ସ୍ଥାନ ସବୁ
ପୂତ ହୁଅନ୍ତି ଅଧିକ ଆଉ କି କହିବୁ ।
ଯେଉଁ ଜନେ ପ୍ରତିଦିନ ବିଷ୍ଣୁ ପାଦୋଦକ
ସେବା କରୁଥାନ୍ତି ହୋଇ ମନରେ ଉତ୍ସୁକ ।
ତାହାଙ୍କୁ ଦେଖିଲେ ପାପକରି ମହାଭୟ
ପଳାନ୍ତି ଗରୁଡ଼ ଆଗୁଁ ପନ୍ନଗ ପରାୟ ।
ତିନଲୋକ ତାହାଙ୍କର ଦର୍ଶନରେ ପୂତ
ହୁଅନ୍ତି ନିଶ୍ଚୟ ଏହା ଅଟେ ଜାଣ ସତ୍ୟ ।
ସେମାନଙ୍କୁ ବିଷ୍ଣୁଙ୍କର ଚକ୍ର ସୁଦର୍ଶନ
ପାଳନା କରଇ ପାଶେ ରହି ନିଶିଦିନ ।
ଯେଉଁମାନେ ମୋର ଗୁଣ ଶ୍ରବଣରେ ନିତି
ପୁଲକିତ ହୋଇ ମନେ ଆନନ୍ଦ ଲଭନ୍ତି ।
ନୟନୁ ଲୋତକ ଜଳ ବୁହାଇ ନିରତେ
ଭାବନା କରନ୍ତି ମୋର ରୂପ ଏକଚିତ୍ତେ ।
ସେହିମାନେ ବଇଷ୍ଣବ ଗୁଣରେ ଉତ୍ତମ
ତାହାଙ୍କୁ ଦର୍ଶନ କରି ନ ପାରଇ ଯମ ।
ପୁତ୍ରଠାରୁ ବଳି ସ୍ନେହ ମୋଠାରେ ଯେ ଜନ
କରଇ ସମର୍ପି ଗୃହଦାର ଆଦି ଧନ ।
ବୈଷ୍ଣବ ଉତ୍ତମ ବୋଲି ଜଗତରେ ସେହି
ବୋଲନ୍ତି ତୁମ୍ଭ ଆଗରେ ଦେଲି ଜାଣ କହି ।
ନୀଚ ପତଙ୍ଗରୁ ବ୍ରହ୍ମ ପର୍ଯ୍ୟନ୍ତେ ଯେତେ
ଅଛନ୍ତି ମୋଠାରେ ଲୀନ ହୁଅନ୍ତି ସମସ୍ତେ ।
ଏହି କଥା ଯାହାଙ୍କର ଅଟଇ ବିଦିତ
ସେମାନେ ସର୍ବବୈଷ୍ଣବ ଏ ମୋହର ମତ ।
ବ୍ରହ୍ମା ବିଷ୍ଣୁ ଶିବ ଆଦି ସବୁ ଦେବଗଣ
ମୋଠାରୁ ହୁଅନ୍ତି ଜାତ ବୋଲି ଯେହୁ ପୁଣ ।
ଜାଣନ୍ତି ସେମାନେ ବଇଷ୍ଣବରେ ପ୍ରଧାନ
ଅନ୍ୟ କେହି ନ ହୋଇବେ ତାଙ୍କର ସମାନ ।
ତେଜଃ ସ୍ୱରୂପ ପରମ ଭକ୍ତ ରକ୍ଷାକାରୀ
ସ୍ୱେଚ୍ଛାମୟ ଗୁଣ ଶୂନ୍ୟ ଭବବନ୍ଧହାରୀ ।

ନତ୍ସାହ ଆବର ମୁର୍ତ୍ତି ପ୍ରକୃତିରୁ ପର
ମୋହଠାରୁ ଜାତ ସର୍ବେ ସୁରସୁର ନର ।
ଏ କଥା ଯେ ଜାଣଇ ସେ ବୈଷ୍ଣବ ଉତ୍ତମ
କୁହନ୍ତି ମାନବ ଲୋକେ କେହି ତାହା ସମ ।
ଏହା କହି ତୁନି ହେଲେ ଦେବଙ୍କ ଈଶ୍ୱର
ତା ଶୁଣି ବୋଇଲେ ଗଙ୍ଗା ଯୋଡ଼ି ଦେନି କର
ପୂର୍ବରେ ଭାରତୀ ଶାପ ଦେଇଥିଲେ ଯାହା
ଆଜ୍ଞା ଦେଉଅଛ ପ୍ରଭୁ ପାଳିବାକୁ ତାହା ।
ସେ ଯେଣୁ ଭାରତବର୍ଷେ ଯାଉଅଛି ମୁହିଁ
ଆବର ଭଗୀରଥଙ୍କ କାର୍ଯ୍ୟ ହେବାପାଇଁ ।
କିନ୍ତୁ କଥାଟିଏ ପଚାରୁଛି ଆପଣଙ୍କୁ
କହିବା ହେବେ ସଂଶୟ ଫିଟାଇ ତାହାକୁ ।
ପାପୀଜନେ ଯେତେପାପ ଦେବେ ମୋହଠାରେ
ଛଡ଼ାଇବ ତାହା ମୁହିଁ କେବଣ ପ୍ରକାରେ ।
କେତେକାଳ ଭାରତରେ ଅବସ୍ଥାନ କରି
ଲେଉଟି ଆସିବି ପୁଣି ବିଷ୍ଣୁଙ୍କର ପୁରୀ ।
ଏ କଥା ବିସ୍ତାରି କହ ଆହେ ମହାପ୍ରଭୁ
ଜାଣ ତ ଆପଣ ମୋର ଅନ୍ୟକଥା ସବୁ ।
ଯେଉଁ ଉପାୟରେ ଶାପୁ ପାଇବି ମୁକତି
ବତାଇଣ କହ ତାହା ଆହେ ବିଶ୍ୱପତି ।
ଶ୍ରୀକୃଷ୍ଣ ତା ଶୁଣିକରି ବୋଇଲେ ଗୋ ଦେବୀ
ଶୁଣ ପଦ୍ମରିଲ ଯାହା ସେ କଥା କହିବି ।
ତୁମ୍ଭ ମନଭାବ ସବୁ ମୋତେ ଅଛି ଜଣା
ମର୍ତ୍ତ୍ୟଲୋକ ଯିବାପାଇଁ ନୁହ ବୁଦ୍ଧିବଣା ।
ରୁଦ୍ରରୂପୀ ଜଳନିଧି ଲବଣ ସାଗର
ପ୍ରେମମୟ ଶ୍ରୀପୁପତି ହୋଇଲେ ତୁମ୍ଭର ।
ସେ ସମୁଦ୍ର ମଧ୍ୟ ମୋର ଅଂଶଜ ଅଟନ୍ତି
ତୁମ୍ଭେ ଅଟ ଲକ୍ଷ୍ମୀସ୍ୱରୂପିଣୀ ମହାସତୀ ।
ଗୁଣବନ୍ତଲୋକ ସଙ୍ଗେ ଗୁଣବନ୍ତୀ ସ୍ତ୍ରୀର
ସଙ୍ଗମ ଅଟଇ ରତ୍ନ ସୁବର୍ଣ୍ଣର ପରି ।
ଭାରତୀ ପ୍ରଭୃତି ଯେତେ ଭାରତବର୍ଷରେ
ନଦୀ ରହିଛନ୍ତି ପୁଣ୍ୟତୀର୍ଥ ସ୍ୱରୂପରେ ।
ସମସ୍ତେ ସମୁଦ୍ରଙ୍କର ପତ୍ନୀ ବୋଲାଇବେ
ତାଙ୍କଠାରେ ଆପଣାର ଆତ୍ମା ସମର୍ପିବେ ।
ଆଜଠାରୁ ପାଞ୍ଚସହସ୍ର ବରଷ ପର୍ଯ୍ୟନ୍ତ
କଳିଯୁଗେ ଯାଇ ତୁମ୍ଭେ ହେବ ପ୍ରତିଷ୍ଠିତ ।
ସ୍ତ୍ରୀବେଦନ ଜଳନିଧି ସଙ୍ଗତରେ ରତି
କରୁଥିବ ସବୁବେଳେ ତୋଷକରି ମତି ।
ଶୃଙ୍ଗାର ବିଷୟେ କଥା ଭଲ ତୁମ୍ଭେ ଜାଣ
ସମୁଦ୍ର ଅଟନ୍ତି ତୁମ୍ଭ ପ୍ରତିକ ଦ୍ୱିଗୁଣ ।
ଏ ସକାଶୁଁ କାମକ୍ରୀଡ଼ା ତୁମ୍ଭ ଦୁହିଙ୍କର
ସବୁ ପ୍ରକାରେ ହୋଇବ ଅତି ମନୋହର ।
ଭଗୀରଥ ରାଜା ଯେଉଁ ସ୍ତୋତ୍ର ପଢ଼ିଛନ୍ତି
ପଢ଼ିବେ ତାହାକୁ ନରେ ତୁମ୍ଭ ରୂପ ଚିନ୍ତି ।
ଆବର ବିବିଧ ପୂଜା ବିଧାନ କରିବେ
ସେ ଯେଣୁ ଅଶେଷ ପୁଣ୍ୟଫଳକୁ ପାଇବେ ।
ଋଷି ଛନ୍ଦ ଧ୍ୟାନ ମନ୍ତ୍ର ନ୍ୟାସ ଅନୁସାରେ
ତୁମ୍ଭ ପୂଜାବିଧି ଯେବା କରେ ଆନନ୍ଦରେ ।
ଅଶ୍ୱମେଧ ଯାଗଫଳ ଲଭଇ ସେ ଜାଣ
ଅଟଇ ଏ କଥା ଶ୍ରୁତି ଶାସ୍ତ୍ରର ପ୍ରମାଣ ।
ଶତଯୋଜନ ଅନ୍ତରେ ଥାଇ ଯେ ମାନବ
ଗଙ୍ଗାନାମ ବାରମ୍ବାର ସ୍ମରଣ କରିବ ।
ସକଳ କଲୁଷ ନାଶ କରି ଅନ୍ତଃକାଳେ
ବିଷ୍ଣୁପୁରେ ଯାଇ ବାସକରେ ସେ ନିଶ୍ଚଳେ ।
ସହସ୍ର ପାପୀଙ୍କ ସ୍ନାନ ଯୋଗରେ ତୁମ୍ଭର
ଯେଉଁ ପାପ ଜାତ ହୋଇଥିବ ମନେକର ।
ମୋହର ଭକ୍ତ ଗୋଟିକୁ ଦରଶନ କଲେ
ସେକ୍ଷଣି ସବୁ ଖଣ୍ଡିତ ହେବ ଜାଣ ଭଲେ ।
ସହସ୍ର ପାତକୀଙ୍କର ଶବସ୍ପର୍ଶ ଯେଣୁ
ଯେ ପାପ ହେବ ତୁମ୍ଭର ଆଗୋ ମହାକନ୍ୟା ।
ମୋର ମନ୍ତ୍ର ଉପାସକ ଜଳେ ଯାଇ ସ୍ନାନ
କରିବା ମାତ୍ରକେ ତାହା ହୋଇବ ଦହନ ।
ଯେଉଁ ଯେଉଁ ସ୍ଥାନେ ମୋର ନାମ ସଂକୀର୍ତ୍ତନ
ହେବ ସେଠାରେ ତୁମ୍ଭେ କରି ଅବସ୍ଥାନ ।
ପାତକ ମୋଚନ କରିବଟି ନିଶ୍ଚେ ଜାଣ
ମନେ ହେତୁ କରି ରଖ ଏ ଶାସ୍ତ୍ର ପ୍ରମାଣ ।
ମୋର ନାମ ଉଚ୍ଚାରଣ ହୋଇବା ସ୍ଥାନରେ
ସରସ୍ୱତୀ ଆଦି ନଦୀଗଣ ସନ୍ନିଧିରେ ।
ଅଦୃଶ୍ୟ ଭାବରେ ତୁମ୍ଭେ ରହିଥିବ ଯାଇ
ସକଳ ପୁଣ୍ୟତୀର୍ଥରେ ସ୍ଥଳ ହେବ ସେହି ।
ଯେ ସ୍ଥାନରଧୂଳି ଯେବେ ପଡ଼ଇ ଉପରେ
ମହାପାପ କ୍ଷୟ ହେବ ଜାଣ କାଳାନ୍ତରେ ।

ସେ ଧୂଳିରେ ଯେତେକୋଟି ଅଣୁ ଲଗିଥିବ
ସେତେବର୍ଷ ଯାଏ ବଇକୁଣ୍ଠ ଭୋଗ ହେବ ।
ଯେଉଁମାନେ ସ୍ୱଇଚ୍ଛାରେ ମୋର ନାମ ସ୍ମରି
ପରବେଶ ହୋଇ କୂର୍ମ ପାଶେ ଯାଇକରି ।
କୂର୍ମର ପବିତ୍ର ଜଳେ ହେବେ ଦେହ ନାଶ
ନିଶ୍ଚୟ ହେବ ତାଙ୍କର ବିଷ୍ଣୁଲୋକ ବାସ ।
କାଳାନ୍ତରେ ପୁଣି ବିଷ୍ଣୁ ପାରିଷଦ ହୋଇ
ମହାଆନନ୍ଦରେ ଦିନ କଟାଇବ ସେହି ।
ପ୍ରାକୃତ ପ୍ରଳୟ ସୃଷ୍ଟି ସ୍ଥିତି ବାରମ୍ବାର
ଅଲକ୍ଷ୍ୟେ ଦେଖିବେ ଦେଖ ନୟନ ତାଙ୍କର ।
ଯେଉଁ ଲୋକର ମରଣ ସମୟରେ ଶବ
ଭାଗ୍ୟବଳେ କୂର୍ମ ଜଳେ ନିକ୍ଷିପ୍ତ ହୋଇବ ।
ଯେତେ କାଳଯାଏ ତାର ଅସ୍ଥି କୂର୍ମଠାରେ
ଥିବ ସେ ବସିବ ଯାଇ ବଇକୁଣ୍ଠପୁରେ ।
ତେମନ୍ତ ଲୋକକୁ ତାର ନିଜ କର୍ମଫଳ
ଭୋଗ କରାଏଟି ମୁହିଁ ସମ୍ପଦ ସକଳ ।
କେତେକାଳ ପରେ ପାରିଷଦଗଣ ବୁଲେ
ଏକାଠି କରି ତାହାକୁ ରଖାଏ କୁଶଳେ ।
ଅଜ୍ଞାନରେ ଯେବା କୂର୍ମ ଜଳ ସ୍ପର୍ଶକରି
ପ୍ରାଣତ୍ୟାଗ କରେ ମୋର ନାମକୁ ସୁମରି ।
ଅଥବା କୂର୍ମର ନାମ ଶୁଣି ହୃଦଗତେ
ଜୀବନ ଛାଡ଼ଇ ଭକ୍ତିଭାବ ହୋଇ ଚିତ୍ତେ ।
ତାହାଙ୍କୁ ସାରୂପ୍ୟ ଦେଇଥାଏ ମୁଁ ଅବଶ୍ୟ
ଦେଖଇ ସେ ଚରାଚର ସର୍ଜନ ବିନାଶ ।
ଅନ୍ୟଠାରେ ମୋର ନାମ ସୁମରଣା କରି
ଯେଉଁ ଲୋକ କାଳବଶେ ଯାଏ ପୁଣି ମରି ।
ବ୍ରହ୍ମାଙ୍କ ବୟସ କାଳ ସାରୂପ୍ୟ ପ୍ରଦାନ
କରଇ ତାହାକୁ ଆନେ ସେବା ମନେ ଘେନ ।
ମୋର ମନ୍ତ୍ର ଉପାସନା କରନ୍ତି ଯେ ନିତ୍ୟ
ଆଦର ମୋର ନୈବେଦ୍ୟ ଭୋଜନ କରନ୍ତି ।
ଯେବଣ ସ୍ଥାନରେ ହେଲେ ମରଣ ତାଙ୍କର
ତୀର୍ଥମୃତ୍ୟୁ ଫଳଲାଭ ହୁଅଇ ନିକର ।
ତିନି ଭୁବନକୁ ପୂତ କରିବାକୁ ହେଲେ
ମର୍ତ୍ତେ ଅଟନ୍ତି ସେହି ଜାଣ ଋଷିମାନେ ।
ରତ୍ନ ବିଭୂଷିତ ସାର ଯାନ ଚଢ଼େ ଚଢ଼ି
ଅନ୍ତଃକାଳେ ଗୋଲକକୁ ଯାନ୍ତିହୋଇ ଛେପି

ଯେଉଁଠାରେ ମୃତ୍ୟୁହେଲେ ଜ୍ଞାନେ ବା ଅଜ୍ଞାନେ
ପାଶେରେ ଥାଆନ୍ତି ଯେତେ ମୋର ଭକ୍ତମାନେ
ଅଲକ୍ଷ୍ୟରେ ମୁକ୍ତିପଦ ମିଳଇଟି ଜାଣ
ସକଳ ଶାସ୍ତ୍ରରେ ଅଛି ଏକଥା ପ୍ରମାଣ ।
ଏ ରୂପେ ଗଙ୍ଗାଙ୍କୁ କହି ପ୍ରଭୁ ଭଗବାନ
ଭଗୀରଥଙ୍କୁ ଅନାଇ କହିଲେ ବଚନ ।
ଆହେ ମହାରାଜ ତୁହେ ଭକ୍ତିଭାବ ଘେନ
ସ୍ତୁତିରେ ସନ୍ତୁଷ୍ଟ କର ତ୍ରୈଲୋକ୍ୟପାବନୀ ।
ଯଥାବିଧି ପୂଜାକରି ନିଜ ମନୋରଥ
ପୂର୍ଣ୍ଣକର ଏହିରୂପେ ଶୁଣି ଭଗୀରଥ ।
ଭକ୍ତିଭରେ ପୂଜାବିଧି ବନ୍ଦନା ସେ କଲେ
କୌଥୁମୋକ୍ତ ଧ୍ୟାନ ସ୍ତୋତ୍ର ପାଠ ଆରମ୍ଭିଲେ
ଗଙ୍ଗା ଭଗୀରଥ ଦୁହେ ଶ୍ରୀକୃଷ୍ଣଙ୍କ ପାଦେ
ସେକାଳେ ଦଣ୍ଡ ପ୍ରଣାମ କଲେ ଅପ୍ରମାଦେ ।
ଶ୍ରୀକୃଷ୍ଣ ତାହାଙ୍କ ମନୋବାଞ୍ଛା ପୂର୍ଣ୍ଣକରି
ଅନ୍ତର୍ଦ୍ଧାନ ହେଲେ ନଭେ ବିଦ୍ୟୁଲତା ପରି ।
ନାରାୟଣଙ୍କ ମୁଖରୁ ଏରୂପେ ନାରଦ
ପୁଣି ତାଙ୍କୁ ପଚାରିଲେ ପ୍ରୀତି ବହି ମୋଦ ।
ଭଗୀରଥ ମହାରାଜା କେଉଁ ସ୍ତୋତ୍ରବିଧାନ
କଲେ ଗଙ୍ଗାଙ୍କର ପୂଜାକାଳରେ ପଠନ ।
କି ରୂପରେ ଅବା ପୂଜା ବିଧାନ ସେ କଲେ
ସେକଥା ବିସ୍ତାରି ମୋତେ କହ ଦେବ ଭଲେ ।
ନାରାୟଣ ଶୁଣି ତାହା କରନ୍ତି ଉତ୍ତର
ଶୁଣ ହେ ନାରଦ ମୁନିଗଣଙ୍କର ବର ।
ସର୍ବସାଧାରଣ ପୂଜା ବିଧାନ ଯେମନ୍ତ
ସେହି ପରକାର ପୂଜାକଲେ ଭଗୀରଥ ।
ବିସ୍ତାରି କହୁଛି ଏବେ ସେ ସବୁ ବିଧାନ
କେଉଁ ପରକାରେ ଶାସ୍ତ୍ରେ ଲେଖାଅଛି ଜାଣ ।
ସ୍ନାନପରେ ଧୌତବସ୍ତ୍ର ପରିଧାନ କରି
ସନ୍ଧ୍ୟା ତରପଣ ଆଦି ନିତ୍ୟକର୍ମ ସାରି ।
ଷଡ଼ଦେବଙ୍କ ବନ୍ଦନା କରି ଭକ୍ତିଭରେ
ପ୍ରଣାମ କରିବ ପୁଣି ସନ୍ତୋଷ ମନରେ ।
ସେହି ଷଡ଼ ଦେବଙ୍କର ନାମମାନ ଏବେ
କହୁଛି ସାଦରେ ଶୁଣ ଇଚ୍ଛାହୁଏ ଯେବେ ।
ଗଣେଶ ଆଦିତ୍ୟ ବହ୍ନି ବିଷ୍ଣୁ ମହେଶ୍ୱର
ଦୁର୍ଗା ଏଇପରି ଷଡ଼ଦେବ ମନେକର ।

ଏହାଙ୍କୁ ପ୍ରଥମେ ପୂଜାକଲେ ସେ ଅନ୍ତରେ
ଅଧିକାଂଶ ହୁଏ ଲୋକ ଦେବତା ପୂଜାରେ ।
ବିଘ୍ନ ନାଶ ହେବାପାଇଁ ପୂଜିବ ଗଣେଶ
ସୂର୍ଯ୍ୟଦେବଙ୍କୁ ପୂଜିଲେ ହୁଏ ପାପ ନାଶ ।
ଅଗ୍ନିଙ୍କୁ ପୂଜିବ ଦେହ ଶୁଦ୍ଧହେବା ପାଇଁ
ବିଷ୍ଣୁଙ୍କର ପୂଜା ମୁକ୍ତି ପ୍ରଦାନ କରଇ ।
ଜ୍ଞାନ ପାଇବାକୁ ଶିବଙ୍କର ପୂଜା କରି
ଉତ୍ତମ ବୁଦ୍ଧି ସକାଶେ ପୂଜିବ ଗଉରୀ ।
ଏହି ଦେବତାଙ୍କ ପୂଜା କଲେ ଏ ପ୍ରକାରେ
ଫଳଲଭ ହୁଏ ଜାଣ ମୋର କହିବାରେ ।
ନ କଲେ ହୁଅଇ ନଷ୍ଟେ ବିପରୀତ ଫଳ
ଏମନ୍ତ କହି ଅନ୍ତର୍ଦ୍ଧ ଜ୍ଞମା ତପଃଶୀଳ ।
ଏଥୁଅନ୍ତେ ଭଗୀରଥ ପଢ଼ିଲେ ଯେ ଧ୍ୟାନ
କହୁଅଛୁ ତାହା ଶୁଣ ଦେଇକରି ମନ ।
ନମସ୍ତେ ଜାହ୍ନବୀ ସର୍ବପାପ ବିନାଶିନୀ
ଭବଭୟହାରିଣୀ ଶ୍ୱେତ ଚମ୍ପକ ବରଣୀ ।
ଶ୍ରୀକୃଷ୍ଣଙ୍କ ବିଗ୍ରହରୁ ହୋଇଅଛ ଜାତ
ଶ୍ରୀକୃଷ୍ଣ ସମାନ ତୁମ୍ଭେ ଅଟ ଆଗୋ ମାତ ।
ପରିଧାନ କରିଅଛ ବହ୍ନି ଶୁଦ୍ଧ ବାସ
ରତ୍ନ ଭୂଷଣେ ଶୋଭା ହୁଅଇ ପ୍ରକାଶ
ଶରତ ପୂର୍ଣ୍ଣିମା ଚନ୍ଦ୍ର ଶତ କାନ୍ତି ଜିଣି
ଦିଶଇ ତୁମ୍ଭର ପ୍ରଭା ଦେବ ମନ୍ଦାକିନୀ ।
ନବଯଉବନେ ଅଙ୍ଗ ଇଷ ମନୋହର
ମନ୍ଦହାସେ ମୁଖପଦ୍ମ ଅତ୍ୟନ୍ତ ସୁନ୍ଦର ।
ନାରାୟଣ ପ୍ରିୟପତ୍ନୀ ସଉଭାଗ୍ୟବତୀ
କୋମଳହୃଦୟା ଦୟାଶୀଳ ଶାନ୍ତମତି ।
ଶିରେ ଶୋଭାପାଏ ଚାରୁ ସ୍ନିଗ୍ଧ କେଶପାଶ
ତାହରେ ମାଳତୀମାଳା ସୌନ୍ଦର୍ଯ୍ୟ ପ୍ରକାଶ ।
ଚନ୍ଦନ ବିନ୍ଦୁ ପାଶରେ ସିନ୍ଦୁରର ବିନ୍ଦୁ
ଦିଶଇ କ୍ଷୀରସମୁଦ୍ରେ ଯେସନ୍ତେ ବାଳଇନ୍ଦୁ ।
ଗଣ୍ଡଦେଶେ ନାନାଚିତ୍ର ସମନ୍ୱିତ ହୋଇ
କସ୍ତୁରୀ ତିଳକ ଦିବ୍ୟଶୋଭା ପ୍ରକାଶଇ ।
ପକ୍ୱବିମ୍ବ ତୁଲ୍ୟ ଦେଖି ଓଷ୍ଠ ବିରାଜିତ
ମୁକ୍ତାମାଳା ଜିଣି ଦିଶେ ଶୁଭ୍ରଗୁଚ୍ଛ ଦନ୍ତ ।
ସୁନ୍ଦର ନୟନ ମୁଖକାନ୍ତି ମନୋରମ
କଟାକ୍ଷ ଦର୍ଶନ କାମ ପୁଷ୍ପଶର ସମ ।

କଠିନ ଶ୍ରୀଫଳ ପ୍ରାପ୍ତ ସ୍ତନଯୁଗ ଶୋଭା
ପଦ୍ମାବଳୀ ବିରାଜିତ ଅନୁପମ ପ୍ରଭା ।
ରମ୍ଭାସ୍ତମ୍ଭ ବିନିନ୍ଦିତ ଜଘନ ଯୁଗଳ
ସ୍ଥଳପଦ୍ମ ଶୋଭା ନିନ୍ଦାକରେ ପାଦତଳ ।
ଅଗ୍ନିକନ୍ନ ବିନିର୍ମିତ ନୂପୁର କାଞ୍ଚେଣି
ରଣତ୍କ୍ୱଣ ଶବ୍ଦ ତର୍ଜ୍ଜି କରଇ କଙ୍କଣୀ ।
ଦେବେନ୍ଦ୍ର ମସ୍ତକ ପୁଷ୍ପ ମକରନ୍ଦ ଜାଲେ
ଦିଶଇ ଅରୁଣବର୍ଣ୍ଣ ପୁଣି ସବୁକାଳେ ।
ସୁର ସିଦ୍ଧ ମୁନିଗଣଙ୍କର ଅର୍ଘ୍ୟମାର
ପୂଜିତ କରଇ ନଖ ଅଙ୍ଗୁଳି ନିକର ।
ମୁକତି ଦିଅଇ ସେହି ତପସ୍ୱୀମାନଙ୍କୁ
ସ୍ୱର୍ଗସୁଖ ଦିଏ ଇଚ୍ଛା କରେ ଯେ ତାହାକୁ ।
ତୁମ୍ଭେ ଅଟ ବରଦାତ୍ରୀ ଭକତବତ୍ସଳା
ତୁମ୍ଭ ନାମ ଅଟେ ଭବ ସମୁଦ୍ରର ଭେଳା ।
ନମସ୍ତେ ଶ୍ରୀ ବିଷ୍ଣୁପ୍ରଦା ତ୍ରିପଥଗାମିନୀ
ଅନୁଗ୍ରହ କର ମାତ ଦେନ ମୋ ଦଇନୀ ।
ଏହିରୂପେ ଧ୍ୟାନକରି ଏକାଗ୍ର ଚିତ୍ତରେ
ପୂଜିବ ସେ ଅନ୍ତେ ପୁଣି ନାନା ଉପଚାରେ ।
ସେହି ଉପଚାର ସଂଖ୍ୟା ଅଟଇ ଷୋଡ଼ଶ
କହିବ ତା ଶୁଣ ଆହେ ବ୍ରହ୍ମାଙ୍କର ଶିଷ୍ୟ ।
ଆସନ ଯେ ପାଦ୍ୟ ଅର୍ଘ୍ୟ ସ୍ନାନ ଅନୁଲେପ
ନୈବେଦ୍ୟ ତାମ୍ବୁଳ ଶୀତଜଳ ଧୂପ ଦୀପ ।
ବସନ ଭୂଷଣ ମାଲ୍ୟ ଗନ୍ଧ ଆଚମନ
ମନୋହର ତଳ୍ପ ଏହିପରି ଅଟେ ଜାଣ ।
ସମର୍ପଣ କରି ପୂଜା ସମାପ୍ତ କରିବ
ଭକ୍ତିଭରେ ଶିରେ କରଯୋଡ଼ି ପ୍ରଣମିବ ।
ଏହିରୂପେ ଉପାସନା କଲେ ନିଷ୍ଠପୂରେ
ଅଶ୍ୱମେଧ ଯାଗଫଳ ମିଳଇ ଅନ୍ତରେ ।
କରୁଥିବ ବିଧିମତେ ସ୍ତୋତ୍ରର ପଠନ
ଆବର ବ୍ରହ୍ମାବିଷ୍ଣୁଙ୍କ ସମ୍ବାଦ ଯେ ପୁଣ ।
ସର୍ବପାପ ବିନାଶନ ଅଟଇଟି ତାହା
କହିବି ତୁମ୍ଭଙ୍କୁ ଏବେ ଶୁଣ ମୁନିନାହା ।
ପୂର୍ବକାଳେ ବିନକରେ ଲୋକ ପିତାମହ
ପୁଛିଲେ ନାରାୟଣଙ୍କୁ କରି ଅତି ସ୍ନେହ ।
ବୋଇଲେ ହେ ଦେବ ଗଙ୍ଗାଦେବୀଙ୍କର ସ୍ତୋତ୍ର
ତିନିଲୋକ ମଧ୍ୟରେ ଯେ ଅଟଇ ପବିତ୍ର ।

ତାହା ଶୁଣିବାକୁ ମୋର ହେଉଅଛି ମନ
କହନ୍ତୁ ଆପଣ ଦୟା କରିଣ ବଦନ ।
ତାହା ଶୁଣି ନାରାୟଣ ହରଷିତ ହେଲେ
ବ୍ରହ୍ମାଙ୍କ ମୁଖକୁ ଚାହିଁ କଥା ଆରମ୍ଭିଲେ ।
ବୋଇଲେ ଗଙ୍ଗାଙ୍କ ସ୍ତୋତ୍ର ଅଟଇ ଯେମନ୍ତ
କହିବା ଆମ୍ଭେ ଶୁଣ ଦେଇ ଏବେ ଚିତ୍ତ ।
ସଦାଶିବ ଦେବଙ୍କର ପ୍ରୀତିକାରିଣୀ
ବିଷ୍ଣୁ ଅଙ୍ଗରୁ ସମ୍ଭୁତା ଅଟ ମନ୍ଦାକିନୀ ।
ତୁମ୍ଭପାଦ ପଙ୍କଜରେ ମୋର ନମସ୍କାର
ହେଉ ମାତ ଅଟ ତୁମେ ପବିତ୍ର ଶରୀର ।
ଗୋଲୋକ ମଧ୍ୟରେ ରାସମଣ୍ଡଳରେ ପୁଣି
ଜାତହେଲ ଦେବୀ ସର୍ବ ଜଗତପାବନୀ ।
ତୁମ୍ଭର ନାମ ସ୍ମରଣ କରିବାରୁ ମୁହିଁ
ମୁକତ ଲଭିବ ଏଥେ ସନ୍ଦେହ ଯେ ନାହିଁ ।
ଗୋପାଳ ଗୋପିକାଗଣେ ହୋଇଣ ବେଷ୍ଟିତ
ରାସମଣ୍ଡଳରେ ହୋଇଥିଲ ଯେ ବ୍ୟଥିତ ।
ସେ ଦେବୀଙ୍କ ପାଦେ ମୁହିଁ ପ୍ରଣାମ କରଇ
ଉଦ୍ଧାର କରନ୍ତୁ ମୋତେ ଦେବୀ ମହାମାୟୀ ।
ଷାଠିଏ ଲକ୍ଷ ଯୋଜନ ଯାହାର ବିସ୍ତାର
ଦୀର୍ଘରେ ଅଟନ୍ତି ପୁଣି ଚାରିଗୁଣ ତାର ।
ବୈକୁଣ୍ଠକୁ ଆବରଣ କରି ରହିଛନ୍ତି
ତାଙ୍କ ପାଦତଳେ ମୁହିଁ କରଇ ଭକତି ।
କୋଡ଼ିଏ ଲକ୍ଷ ଯୋଜନ ପୁଣି କେଉଁଠାରେ
ବିସ୍ତାର ଅଟନ୍ତି ଚାରିଗୁଣ ଯେ ଦୀର୍ଘରେ ।
ସେ ଗଙ୍ଗାଙ୍କୁ ସୁମରଣ କରୁଅଛି ମୁହିଁ
ଖଣ୍ଡନ କରନ୍ତୁ ମୋର ଦୁରିତକୁ ସେହି ।
ପୁଣି କେବଣ ସ୍ଥଳରେ ବିଂଶଲକ୍ଷଯୁଣ
ବିସ୍ତାର ଅଟନ୍ତି ଦୀର୍ଘ ତାର ପାଞ୍ଚଗୁଣ ।
ଶିବଲୋକକୁ ଆବୃତ କରିଛନ୍ତି ରହି
ତାଙ୍କ ପାଦେ ନମସ୍କାର କରୁଅଛି ମୁହିଁ ।
କେଉଁସ୍ଥାନେ ଷଡ଼ଯୁଣ ବିସ୍ତାର ସେପରି
ଦୀର୍ଘରେ ତା ଦଶଗୁଣ ଅଟନ୍ତି ଈଶ୍ୱରୀ ।
ତାହାଙ୍କୁ ପ୍ରାର୍ଥନା ମୁହିଁ କରୁଅଛି ନିତ୍ୟେ
ମୋହର ମଙ୍ଗଳବାଞ୍ଛା କରନ୍ତୁ ସେ ଚିତ୍ତେ ।
କେବଣ ସ୍ଥାନରେ ଲକ୍ଷଯୋଜନ ବିସ୍ତୃତ
ଦୀର୍ଘରେ ତାହାର ସାତଗୁଣ ଯେ ଅଟନ୍ତି ।
ଆବରଣ କରି ଧ୍ରୁବଲୋକକୁ ମସ୍ତକେ
ରହିଛନ୍ତି ନମଇଁ ମୁଁ ତାଙ୍କ ପାଦତଳେ ।
ପୁଣ ଲକ୍ଷେମୁଣ ଅନ୍ୟସ୍ଥାନେ ଯାହାଙ୍କର
ବିସ୍ତାର ଦୀର୍ଘକୁ ଅଟେ ଦଶଗୁଣ ତାର ।
ଚନ୍ଦ୍ରଲୋକ ଆବରଣ କରିଛନ୍ତି ହେଳେ
ନମଇଁ ମୁଁ ତାହାଙ୍କର ପାଦପଦ୍ମ ତଳେ ।
ସ୍ଥାନକରେ ପୁଣି ଷଷ୍ଟି ସହସ୍ର ଯୋଜନ
ବିସ୍ତୃତ ଦୀର୍ଘରେ ସେହିପରି ଶତଗୁଣ ।
ସୂର୍ଯ୍ୟଲୋକ ଆବରଣ କରିଛନ୍ତି ରହି
ତାଙ୍କ ଚରଣରେ ମୁହିଁ ଭକତି କରଇ ।
ଅଟନ୍ତି ଲକ୍ଷେଯୋଜନ ବିସ୍ତାର ଯେ ପୁଣ
ଦୀର୍ଘରେ ଅଟନ୍ତି ତାହାଠାରୁ ଛଅଗୁଣ ।
ସେହିଠାରେ ସତ୍ୟଲୋକ ଆବୋରିଅଛନ୍ତି
ତାଙ୍କପାଦେ କରଇ ମୁଁ ନିଶ୍ଚଳ ଭକତି ।
ଲକ୍ଷେ ଯେ ଜନ ବିସ୍ତୃତ ଦୀର୍ଘ ପାଞ୍ଚଗୁଣେ
ତାହ ଠାରୁ ଅଟନ୍ତି ସେ ପୁଣ ଏକସ୍ଥାନେ ।
ତପଲୋକ ଆବରଣ କରି ରହିଛନ୍ତି
କରଯୋଡ଼ି ତାହାଙ୍କୁ ମୁଁ କରୁଅଛି ସ୍ତୁତି ।
ସହସ୍ରେ ପୁଣ ବିସ୍ତାର ଦୀର୍ଘ ସାତଗୁଣ
ତହିଁରୁ ଅଟନ୍ତି ସେହୁ ଏକସ୍ଥାନେ ପୁଣ ।
ସେଠାରେ ଜନଲୋକକୁ ଆବୋରି ଅଛନ୍ତି
ତାଙ୍କପାଦେ କରଇ ମୁଁ ଅଶେଷ ଭକତି ।
ସହସ୍ରେ ଯୋଜନ ଯାଏ ବିସ୍ତୃତ ଅଟନ୍ତି
ଦୀର୍ଘେ ପୁଣି ତାର ସାତଗୁଣ ହୋଇଛନ୍ତି ।
ଆବରଣ କରିଛନ୍ତି କୈଳାସ ପର୍ବତ
ତାହାଙ୍କର ପାଦଯୁଗେ ରହୁ ମୋର ଚିତ୍ତ ।
ଭୋଗବତୀ ଅଟନ୍ତି ଯେ ପାତାଳ ନଗରେ
ବିସ୍ତୀର୍ଣ୍ଣ ଅଟନ୍ତି ଦଶଯୋଜନ ସେଠାରେ ।
ଦୀର୍ଘରେ ତାହାର ଦଶଗୁଣ ଯେ ଅଟନ୍ତି
ସେ ଦେବୀଙ୍କ ପାଦତଳେ କରେ ମୁଁ ଭକତି ।
କେଉଁଠାରେ ହେଲେ ଏକକୋଶକୁ ନିଉନ
ମର୍ତ୍ତ୍ୟପୁରେ ଯାହାଙ୍କର ନୁହେଁ ଆୟତନ ।
ସେ ଗଙ୍ଗାଦେବୀଙ୍କୁ ମୁହିଁ ନଶି ଦିବସରେ
ପ୍ରଣାମ କରୁଛି ଭକ୍ତି ଘେନି ହୃଦୟରେ ।
ସତ୍ୟଯୁଗେ କ୍ଷୀରବର୍ଣ୍ଣ ଯେ ଦେବୀ ଅଟନ୍ତି
ତ୍ରେତାରେ ଶରତଚନ୍ଦ୍ର ପ୍ରାୟେ ଯାର କାନ୍ତି ।

ହାପର ଯୁଗରେ ଶୁଭ୍ର ଚନ୍ଦନବରଣା
ଅଟନ୍ତି ଯେ ଦେବୀ ତାଙ୍କୁ ଭଜେ ମୁଁ ଭାବନା ।
କଳିଯୁଗେ ମାତ୍ର ଜଳସ୍ୱରୂପା ଅଟନ୍ତି
ସ୍ୱର୍ଗରେ ସର୍ବଦା କ୍ଷୀରବର୍ଣ୍ଣ ଦେଖାଯା'ନ୍ତି ।
ଯେ ଦେବୀଙ୍କୁ ଧ୍ୟାନକରି ମୋହର ମାନସ
ସର୍ବଦା ଲୋଡ଼ଇ ତାଙ୍କ କୃପା ସୁଧାରସ ।
ଯାହାଙ୍କ ଅତୁଲ୍ୟ ଦିବ୍ୟ ମହିମା ପୁରାଣେ
ବର୍ଣ୍ଣିତ ହୋଇଛି ପୁଣି ବେଦଶାସ୍ତ୍ର ଗଣେ ।
ପାପବିନାଶିନୀ ଶୁଭଫଳ ବିଧାୟିନୀ
ଯେଉଁ ଗଙ୍ଗାଦେବୀ ତାଙ୍କଠାରେ ମୋ ବଇନୀ ।
ଆହେ ପିତାମହ ଯାହା'ଙ୍କର ଜଳ ଲେଶ
ହରଣ କରଇ ମହାପାତକ ଅଶେଷ ।
ସେହି ମନ୍ଦାକିନୀ ଦେବୀ ଜଗତପାବନୀ
ତାହାଙ୍କୁ ସ୍ତୁତିକରିବ ଭକ୍ତିଭାବ ଘେନି ।
ଜଗତ ଜନ ମଙ୍ଗଳ ଜଳଧାରା ସମ
ଧରାବକ୍ଷେ ନଦୀରୂପେ ଯାହା'ଙ୍କ ଜନମ ।
ସେହି ଗଙ୍ଗାଦେବୀଙ୍କର ସ୍ତୁତିର ଏ ରୂପ
ପଢ଼ିଲେ ଶୁଣିଲେ ନଷ୍ଟେଁ କ୍ଷୟ ହୁଏ ପାପ ।
ପ୍ରତିଦିନ ଯେଉଁଲୋକ ଭକ୍ତିରେ ପଢ଼ଇ
ଆବର ବଧି ପ୍ରକାରେ ପୂଜନ କରଇ ।
ଅଶ୍ୱମେଧ ଯାଗଫଳ ଅବଶ୍ୟ ତାହାର
ହୁଅଇ ଏଥିରେ ମନେ ସନ୍ଦେହ ନ କର ।
ଅପୁତ୍ରିକ ହୋଇଥିଲେ ପୁତ୍ରଲାଭ ହୁଏ
ଭାର୍ଯ୍ୟା ଇଚ୍ଛାଥିଲେ ମିଳେ ଦିବ୍ୟ କନ୍ୟ ଟିଏ ।
ରୋଗୀଲୋକ ମୁକ୍ତ ହୁଏ ସକଳ ରୋଗରୁ
ବନ୍ଧନେ ପଡ଼ିବା ଲୋକ ଫିଟଇ ତହିଁରୁ ।
କୀରତ ଇଚ୍ଛା ଯେ କରେ ହୁଏ ଦିବ୍ୟ ଯଶ
ମୂରୁଖଲୋକ ପଣ୍ଡିତ ହୁଅଇ ଅବଶ୍ୟ ।
ପ୍ରତିଦିନ ପ୍ରାତଃକାଳୁ ଉଠି ଯେଉଁ ଜନ
ଏ ଶୁଭ ସ୍ତୋତ୍ର ଚରିତ କରଇ ପଠନ ।
ଦୁଃସ୍ୱପ୍ନ ଦେଖିଲେ ତାର ଶୁଭଫଳ ହୁଏ
ଗଙ୍ଗାସ୍ନାନ ଫଳ ମଧ୍ୟ ଲଭେ ସେ ନିଶ୍ଚୟେ ।
ଆହେ ଧାତାଙ୍କର ସୁତ ଶୁଣ ମନ ଦେଇ
ଏହିରୂପେ ଭଗୀରଥ ମା ଗଙ୍ଗାଙ୍କୁ ଧ୍ୟାୟୀ ।
ଯେଉଁଠି ସଗର ପୁତ୍ରେ ଦଗ୍ଧ ହୋଇଥିଲେ
ମର୍ତ୍ତ୍ୟପୁରେ ଆଣି ତହିଁ ପହଞ୍ଚାଇ ଦେଲେ ।
ଦହ୍ନକ୍ଷ୍ୟ କରୁଣ ଥିଲ ତାହାଙ୍କୁ ଅନଳ
ପ୍ରବେଶ ହୁଅନ୍ତେ ତହିଁ ଗଙ୍ଗାଙ୍କର ଜଳ ।
ଷାଠିସହସ୍ର ସନ୍ତାନ ମୁକତି ହୋଇଲେ
ବଇକୁଣ୍ଠ ପୁରମଧ୍ୟେ ଯାଇଣ ବସିଲେ ।
ଏହିପରି ଅଟେ ଗଙ୍ଗାଦେବୀଙ୍କ ଚରିତ
ଶୁଣିଲତ ଆଉ ଯାହା ଶୁଣିବା'କୁ ଚିତ୍ତ ।
ଅଛି ତବ ପୃଚ୍ଛାକର ମୁନିଙ୍କ ମଣ୍ଡନ
କହି ଜଗତର ନାଥ ହୋଇଲେ ମଉନ ।
ଶ୍ରୀଧାମ କ୍ଷେତ୍ର ମୋହନ କହେ ଯୋଡ଼କରେ
ଏ ଭବ ସାଗରୁ ମୋତେ କରନ୍ତୁ ଉଦ୍ଧାର ।

———

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଗଙ୍ଗାଙ୍କର ମହିମା ବର୍ଣ୍ଣନେ

ନାମ ଦଶମୋଽଧ୍ୟାୟଃ ।

—ଃ—✳—ଃ—

## ଏ କା ଦ ଶ ଅ ଧ୍ୟା ୟ

## ଗଙ୍ଗାଦେବୀଙ୍କ ଉତ୍ପତ୍ତିର ସବିଶେଷ ବିବରଣୀ

ପ୍ରେମେ ଗଦଗଦ ହୋଇ ଧାତାଙ୍କ ନନ୍ଦନ
ପୃଚ୍ଛନ୍ତି ବ୍ରହ୍ମିଣ ନାରାୟଣଙ୍କ ବଦନ ।
କେଉଁ ଦେବ ସେବଣ କାଳେ ଉମାଙ୍କର ଧବ
ସଙ୍ଗୀତ ଗାୟନ କଲେ ପଢ଼ି ବିଷ୍ଣୁ ସ୍ତବ ।
ସେହିକାଳରେ ଶ୍ରୀକୃଷ୍ଣ ରାଧାଙ୍କ ସହିତ
ଦେବତା ମାନଙ୍କ ଆଗେ ହେଲେ ଦ୍ରବୀଭୂତ ।
ତାହା ଦେଖିଣ ସେଠାରେ ଥିଲେ ଯେଉଁମାନେ
କବା ଆଚରଣ କଲେ ମିଶିଣ ସେମାନେ ।

ସେ ଦ୍ରବ୍ୟ କେଉଁ ସ୍ଥାନରେ ହେଲେ ଅବସ୍ଥିତ
ଅଥବା ହୋଇଲେ ଚହୁଁ ରୂପ ଅନ୍ତରିତ ।
ଏ ସକଳ କଥା ମୋତେ କହନ୍ତୁ ଆପଣ
ଶୁଣିବାକୁ ଶ୍ରଦ୍ଧା ପାଉଅଛୁ ମୋର ମନ ।
ଏହିରୂପେ ପଚାରନ୍ତେ ଋଷି ନାରାୟଣ
କହି ଆରମ୍ଭିଲେ ଗଙ୍ଗାଦେବୀଙ୍କର ଜନ୍ମ ।
କାର୍ତ୍ତିକ ପୂର୍ଣ୍ଣିମାଦିନ ରାସ ମହୋତ୍ସବେ
ଶ୍ରୀକୃଷ୍ଣ ରାଧାଙ୍କୁ ପୂଜାକଲେ ଭକ୍ତିଭାବେ ।
ରାସମଣ୍ଡଳ ମଧ୍ୟରେ ବସିଲେ ଶ୍ରୀହରି
ସକଳ ଦେବତାଗଣ ତାହା ଦେଖିକରି ।
ରାଧିକା ଦେବୀଙ୍କୁ ସର୍ବେ ପୂଜା କଲେ ବସି
ଆଉରି ତାହାଙ୍କ ସ୍ତୋତ୍ର କବଚକୁ ଘୋଷି ।
ଏ ସମୟେ ସରସ୍ୱତୀ ବଚନ ଦେବତା
ବୀଣା ବାଇ ଗାନ କଲେ ଶ୍ରୀକୃଷ୍ଣଙ୍କ କଥା ।
ତାହା ଶୁଣି ଦେବଗଣ ସନ୍ତୁଷ୍ଟ ହୋଇଲେ
ଯେ ଯାହା ଇଚ୍ଛାରେ ଆଭରଣମାନ ଦେଲେ ।
ଲୋକପିତାମହ ବ୍ରହ୍ମା ରତ୍ନସାର ହାର
ପ୍ରଦାନ କଲେ ସେକାଳେ ହୋଇ ତୋଷଭର
ଆଉରି ବ୍ରହ୍ମାଣ୍ଡେ ଯାହା ଦୁର୍ଲ୍ଲଭ ଅଟଇ
ଏମନ୍ତ ମସ୍ତକମଣି ଦେଲେ ପୁଣି ନେଇ ।
ସମସ୍ତ ରତ୍ନଠାରୁ ଯେ ଅଟଇ ଅଧିକ
କଉସ୍ତୁଭ ବୋଲି ଯାର ନାମ ଅଟେ ଟେକ ।
ତେମନ୍ତ ମଣିକୁ କୃଷ୍ଣ ପ୍ରୀତିମନ୍ତ ହୋଇ
ଦେଲେ ସରସ୍ୱତୀଙ୍କର କଣ୍ଠରେ ଲମ୍ବାଇ ।
ତା ଦେଖି ରାଧିକା ଦେବୀ ଅଷ୍ଟରତ୍ନ ହାର
ପ୍ରଦାନ କଲେକ ତୋଷ ହୋଇଣ ଅପାର ।
ନାରାୟଣ ଦେଲେ ଚହୁଁ ଗୁରୁ ବନମାଳ
ଦାନ କଲେ ମହାଲକ୍ଷ୍ମୀ ମକର କୁଣ୍ଡଳ ।
ବିଷ୍ଣୁମାୟା ଭଗବତୀ ଯେ ମୂଳ ପ୍ରକୃତି
ଦେଲେ ସେ ବିଷ୍ଣୁଭକ୍ତିପ୍ରଦ ଅଚଳା ଭକତି ।
ଧର୍ମଦେବ ଧର୍ମବୁଦ୍ଧି ସୁବିପୁଳ ଯଶ
ପ୍ରଦାନ କଲେ ସେକାଳେ ହୋଇଣ ହରଷ ।
ବହ୍ନିଶୁଦ୍ଧ ଦ୍ରବ୍ୟବସ୍ତ୍ର ଅନଳ ଦେବତା
ଦେଲେ ପୁଣି ସ୍ଥଳକଞ୍ଜ ମାନସରୁ ଶନ୍ତା ।
ସମୀରଣ ଚରଣରେ ଉତ୍ତମ ନୂପୁର
ଦେଲେ ଯାହା ମଣିଗଣେ ସୁବର୍ଣ୍ଣର ସାର ।

ଏହିକାଳେ ପ୍ରଜାପତି ଶିବଙ୍କୁ ଅନାଇଁ
ବୋଇଲେ କୃଷ୍ଣ ଚରିତ ଗାନ କର ଯାଇ ।
ସନମତ କରି ତାଙ୍କ କଥାକୁ ଈଶ୍ୱର
ଗାନ କଲେ ଶୃଙ୍ଗାରରସେ ହୋଇ ତୋଷଭର ।
ତାହା ଶୁଣି ସୁରଗଣ ଚିତ୍ରଲେଖା ପରି
ମୂର୍ଚ୍ଛିତ ହୋଇଲେ ବ୍ରହ୍ମା ଶିବଆଦି କରି ।
କ୍ଷଣକ ଅନ୍ତରେ ପୁଣି ଚେତନା ପାଇଲେ
ରାସମଣ୍ଡଳ ଆଡ଼କୁ ଦୃଷ୍ଟି ପକାଇଲେ ।
ଦେଖିଲେ ସମସ୍ତସ୍ଥଳ ଜଳରେ ଆବୃତ
ଆଉରି ହୋଇଛନ୍ତି ରାଧାକୃଷ୍ଣ ଅବର୍ଜିତ ।
ତା ଦେଖି ସମସ୍ତ ଗୋପ ଗୋପିକା ସହିତେ
ରୋଦନ କଲେ ଉଚ୍ଚରେ ବିହ୍ୱଳିତ ଚିତ୍ତେ ।
ଧ୍ୟାନରେ ସେ ସବୁକଥା ଜାଣି ବେଦବଧ
ଆପଣାର ମାନସରେ କହନ୍ତି ଈଶ୍ୱର ।
ରାଧାକୃଷ୍ଣ ଦୁହେଁ ଏବେ ଦ୍ରବୀଭୂତ ହେଲେ
ତାଙ୍କ ଅନୁଗ୍ରହ ବିନା ଗତି ନାହିଁ ଭଲେ ।
ଏମନ୍ତ ବିଚାରି ସବୁ ଦେବଙ୍କୁ ମିଳାଇ
ସ୍ତୁତି କଲେ ଶ୍ରୀକୃଷ୍ଣଙ୍କୁ ମନେ ମନେ ଧ୍ୟାୟି ।
ବୋଇଲେ ହେ ଦେବଦେବ ଜଗତ ଈଶ୍ୱର
ଦେଖାଅ ଆମ୍ଭଙ୍କୁ ନିଜ ସ୍ୱରୂପ ତୁମ୍ଭର ।
ନୋହିଲେ ସକଳେ ଆମ୍ଭେ ହୋଇଲୁ ଅଚକ୍ଷ
ତୁମ୍ଭ ବିନା ଗତି ନାହିଁ ଆହେ ଦେବମୁଖ୍ୟ ।
ଏହିରୂପେ ସ୍ତୁତି କରୁଥିଲେ ଦେବଗଣ
ଆକାଶୁଁ ଶବଦ ଶୁଣାଗଲା ସେହିକ୍ଷଣ ।
ଆହେ ଦେବଗଣ ମୁହିଁ ଅଟେ ସର୍ବମୟ
ଶକ୍ତି ଅଟନ୍ତି ମୋହର ଅର୍ଦ୍ଧରୂପ ଦେହ ।
ଆମ୍ଭ ଦୁହିଙ୍କର ଭେଦ ନାହିଁ କିଛି ହେଲେ
ପାସୋରି ନ ଦେବ ଏହି କଥା କେତେବେଳେ
ମନୁ ଯେ ମାନବ ମୁନି ବଇଷ୍ଣବ ଆଦି
ପବିତ୍ର ଯେ ହୁଅନ୍ତି ମୋର ମନ୍ତ୍ରକୁ ସମାଧି ।
ମୋତେ ଦେଖିବାକୁ ମୋର ସ୍ଥାନକୁ ଆସନ୍ତି
ଅଥଇ ତାହାଙ୍କୁ ମୁହିଁ ସୁଦୁର୍ଲ୍ଲଭ ଗତି
ତୁମ୍ଭେମାନେ ଯେବେ ରୂପ ଦେଖିବାକୁ ମୋର
ସ୍ତୁତି କରୁଅଛ ମନେ ହୋଇଣ ଆତୁର ।
ପାଳନ କରନ୍ତୁ ତେବେ ଶିବ ମୋ ବଚନ
ଆହେ ବ୍ରହ୍ମା ତୁମ୍ଭେ ମଧ୍ୟ ହୋଇ ସାବଧାନ ।

ସୁନ୍ଦର ଦେବାଙ୍ଗଣାସ୍ତ ସଂକଳନ କରି
ନିବେଶିତ କରି ତହିଁ ସର୍ବମନ୍ତ୍ର ସାର ।
ସ୍ତୋତ୍ର କବଚ ଯେ ଧ୍ୟାନ ପୂଜାବିଧି ଯେତେ
ତାହାସବୁ ସେ ଶାସ୍ତ୍ରରେ ରଖିବ ଗୁପତେ ।
ମୋହର କବଚ ମନ୍ତ୍ର ଧ୍ୟାନ ଲେଖି ତହିଁ
ଅତ୍ୟନ୍ତ ଗୁପତ କରିଥିବ ଦେଲ କହି ।
ଯେଉଁରୂପେ ସହସ୍ରେକ ମଧ୍ୟେ ଏକଜଣ
କରିବେ ମୋହର ମନ୍ତ୍ର ଧ୍ୟାନ ଉପାସନ ।
ଏମନ୍ତ ନ କଲେ ସର୍ବେ ସେ ମନ୍ତ୍ରକୁ ପଢ଼ି
ବସିବେ ଗୋଲୋକେ ମୋର ଆସନକୁ ମାଡ଼ି ।
ସେ ଯୋଗେ ନିଷ୍ଫଳ ହେବ ବ୍ରହ୍ମାଙ୍କର ସୃଷ୍ଟି
ନ ରହିବ ସଂସାରିକ କାର୍ଯ୍ୟେ କାହା ଦୃଷ୍ଟି ।
ଜଗତେ ହୋଇବେ ପାଞ୍ଚ ପ୍ରକାରେ ମାନବ
କେହିମାନଙ୍କର ହେବ ପୃଥିବୀରେ ଠାବ ।
କେହିଁମାନେ ସ୍ୱର୍ଗପୁରେ କରିବେ ନିବାସ
ପାତାଳପୁରେ ରହିବେ କେତେକ ମନୁଷ୍ୟ ।
କେତେ ଲୋକ ବ୍ରହ୍ମଲୋକେ ନିବାସ କରିବେ
କେତେକ ଆସିଣ ସୁଖେ ମୋ ପୁରେ ରହିବେ ।
ଏହିରୂପେ ଯେଉଁ ଶାସ୍ତ୍ରେ ଭ୍ରମ ରହିଥିବ
ସେପରି ଗ୍ରନ୍ଥ ରଚନା କରନ୍ତୁ ସେ ଶିବ ।
ଦେବତା ସଭାରେ ତାଙ୍କ ପ୍ରତିଜ୍ଞା ବଚନ
ଶୁଣାଇ କହନ୍ତୁ ଶୁଣୁ ସମସ୍ତଙ୍କ କାନ ।
ତେବେ ଯାଇ ମୋର ରୂପ ଦେଖିବଟି ତୁମ୍ଭେ
ସଂଶୟ ନାହିଁ ଏଥିରେ କହୁଅଛୁଁ ଆମ୍ଭେ ।
ଏହିରୂପେ ଆକାଶରେ ପରମାତ୍ମା ହରି
ଅଦୃଶ୍ୟରେ ରହି ବାଣୀ କହିଲେ ବିସ୍ତାରି ।

ଯେ ଶବଦେ ଦେବଗଣ ସ୍ତବଧ ହୋଇଲେ
ଏକକୁ ଆରେକ ଚାହିଁ ମଉନ ହୋଇଲେ ।
ସେସ୍ଥଳରେ ପିତାମହ ବୋଇଲେ ଶିବଙ୍କୁ
ସନମତ କର ତୁମ୍ଭେ ଶ୍ରୀକୃଷ୍ଣ ବାକ୍ୟକୁ ।
ଶିବ ତାହା ସେହିକ୍ଷଣି ଅଙ୍ଗୀକାର କଲେ
ଗଙ୍ଗାଜଳ ହସ୍ତେ ଧରି ଶପଥ କହିଲେ ।
ଶ୍ରୀକୃଷ୍ଣ କହିଲ ପରି ମନ୍ତ୍ର ସ୍ତୋତ୍ରମୟ
ବେଦସାର ଗ୍ରନ୍ଥ ମୁହିଁ କରିବ ନିଶ୍ଚୟ ।
ଶ୍ରୀକୃଷ୍ଣ ଶିବଙ୍କ ମୁଖୁଁ ଏ ବଚନ ଶୁଣି
ରାଧିକା ସହିତେ ଦୃଶ୍ୟ ହେଲେ ଆସି ପୁଣି ।
ତାଙ୍କୁ ଦେଖି ଦେବଗଣ ସନ୍ତୁଷ୍ଟ ହୋଇଲେ
ନାନା ପରକାରେ ପୂଜା ସ୍ତୁତିପାଠ କଲେ ।
ପରମ ଆନନ୍ଦ ଲଭିକରି ସେ ଅନ୍ତରେ
ଅନେକ ଉତ୍ସବ କଲେ ଗୋଲୋକ ମଧ୍ୟରେ ।
ଶପଥ କରିଥିଲେ ତ ଶିବ ସେହିରୂପେ
ବେଦାନ୍ତ ଗ୍ରନ୍ଥ ରଚନା କଲେ ବସି ଆପେ ।
ଏପରି ରାଧିକା କୃଷ୍ଣ ଦୁହିଙ୍କ ଅଙ୍ଗରୁ
ଜାତ ହେଲେ ମନ୍ଦାକିନୀ ରୂପଗୁଣେ ଗୁରୁ ।
ଶ୍ରୀକୃଷ୍ଣ ତାହାଙ୍କୁ ସ୍ଥାନେ ସ୍ଥାନେ ରଖାଇଲେ
ସବୁଠାରେ ପୁଣ୍ୟତୀର୍ଥ ନାମ ସେ ପାଇଲେ ।
ବିଶେଷ ଭବଦେ ଆଦ୍ୟ ପ୍ରାନ୍ତ ଯାଏ ବସି
ଗଙ୍ଗାଙ୍କ ଚରିତ ଶୁଣିଲ ତ ଆହେ ଋଷି ।
ଅନ୍ୟ କଥା ଶୁଣିବାକୁ ଇଚ୍ଛା ହେଉଥିଲେ
ପଚାର କହିବା ତୁମ୍ଭ ଆଗେ ତାହା ଭଲେ ।
ଏହିରୂପେ କହିଣ ସେ ହୋଇଲେ ମଉନ
ଶ୍ରୀକୃଷ୍ଣ ସୁମରି କହେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଗଙ୍ଗାଦେବୀଙ୍କ ଉତ୍ପତ୍ତିର ସବିଶେଷ ବିବରଣୀ ନାମ ଏକାଦଶୋଽଧ୍ୟାୟଃ ।

## ଦ୍ୱା ଦ ଶ ଅ ଧ୍ୟା ୟ

## ଗଙ୍ଗାଦେବୀଙ୍କର ବୈକୁଣ୍ଠ ଗମନ ବୃତ୍ତାନ୍ତ ବର୍ଣ୍ଣନ

ଶୁଣ ୨ ସୁଜ୍ଞଜନେ ଅପୂର୍ବ ଚରିତ
ନାରାୟଣଙ୍କୁ ପୁଚ୍ଛିଲେ ଧାତାଙ୍କର ସୁତ ।
ହେ ଜଗତନାଥ କଲ ପାଞ୍ଚ ସହସ୍ରବର୍ଷ
ଗଙ୍ଗାଦେବୀଙ୍କର ଯେତେବେଳେ ହେଲା ଶେଷ ।

କେଉଣ ସ୍ଥାନକୁ ସେହୁ କରିଲେ ଗମନ
କହିଣ ବାରେ ସନ୍ତୋଷ କର ମୋର ମନ ।
ତାହାଶୁଣି ନାରାୟଣ ଆନନ୍ଦ ହୋଇଲେ
ନାରଦଙ୍କର ମୁଖକୁ ଅନାଇଁ ବୋଇଲେ ।

ସରସ୍ୱତୀ ପାଶରେ ଗଙ୍ଗା ଭାରତବର୍ଷକୁ
ଆସିଲେ ସ୍ମରଣା କରି ଆପଣା କର୍ମକୁ ।
ଶାପ ଭୋଗକଲା ପରେ ବୈକୁଣ୍ଠକୁ ଗଲେ
ନାରାୟଣଙ୍କ ସମୀପେ ଅବସ୍ଥାନ କଲେ ।
ସରସ୍ୱତୀ ଦେବୀ ସେହିପରି ଶାପ ଅନ୍ତେ
ଗଲେ ବଇକୁଣ୍ଠ ପୁରେ ହରଷିତ ଚିତ୍ତେ ।
ଗଙ୍ଗା ଶାପ ଅବସାନେ ପଦ୍ମାବତୀ ଦେବୀ
ବିଷ୍ଣୁପୁରେ ଗଲେ ପୂର୍ବକଥା ମନେ ଭାବି ।
ଏହିପରି ଗଙ୍ଗା ସରସ୍ୱତୀ କମଳାମା
ନାରାୟଣ ପ୍ରିୟବତୀ ଅଟନ୍ତି ଏ ତିନ ।
ତୁଳସୀ ମଧ୍ୟ ତାହାଙ୍କ ପତ୍ନୀରୂପରେ ଜଣେ
ଏରୂପେ ହୋଇଛୁ ଲେଖା ବେଦର ପୁରାଣେ ।
ନାରଦ ବୋଇଲେ ଗଙ୍ଗା ନାରାୟଣଙ୍କର
କରୂପେ ହୋଇଲେ ପ୍ରିୟା କହ ମୋ ଆଗର ।
ତାହା ଶୁଣି ନାରାୟଣ ପରକାଶି ହାସ
ବୋଇଲେ ତା ଶୁଣ କହୁଅଛୁ ମୁନିଈଶ ।
ପୂର୍ବକାଳେ ଗୋଲୋକରେ ଦ୍ରବ୍ୟରୂପ ଧରି
ରାଧା କୃଷ୍ଣଠାରୁ ଗଙ୍ଗାଦେବୀ ଅବତରି ।
ଦ୍ରବ ଅଧିଷ୍ଠାତ୍ରୀରୂପେ ପୁଣି ସେ ଜଗତେ
ପ୍ରକାଶିତ ହେଲେ ଜାଣ ଆହେ ମହାମତେ ।
ନବ ଯଉବନେ ବିରାଜିତ ଅଙ୍ଗଶୋଭା
ଦ୍ୱିଗୁଣ କରଇ ରତ୍ନ ଆବରଣ ପ୍ରଭା ।
ଶରତ ମଧ୍ୟାହ୍ନ ପଦ୍ମ ମୁଖ ମନୋହର
ତପତ କାଞ୍ଚନ ଜିଣି ଦିଶଇ ଶରୀର ।
ଶରତପୂର୍ଣ୍ଣିମା ଚନ୍ଦ୍ର ସମାନ ବଦନ
ସ୍ନିଗ୍ଧ ସୁବଦନ ପ୍ରଭା ଅତ୍ୟନ୍ତ ଯତନ ।
ପୃଥୁଳ ଉନ୍ନତ ସୁବର୍ତ୍ତୁଳ ସ୍ତନଯୁଗ
ସୁପୀନ କଠିନ ଶ୍ରୋଣୀ ନିତମ୍ବ ବିଭାଗ ।
ଚାରୁ ନୟନ ଯୁଗଳ ବଙ୍କିମ ଚାହାଣୀ
କଟାକ୍ଷ ବୀକ୍ଷଣ ଦିଏ ସ୍ମର-ଶର ଜିଣି ।
ବଙ୍କିମ କବରୀ ପାଶେ ମାଳତୀର ମାଳ
ସୁଗନ୍ଧ ବିସ୍ତାର କରି ଦିଶଇ ମଞ୍ଜୁଳ ।
ସିନ୍ଦୂର ଚନ୍ଦନ ବିନ୍ଦୁ ଶୋହେ ମସ୍ତକରେ
ଆବରି ଗଣ୍ଡଯୁଗଳ କସ୍ତୁରୀ ପତ୍ରରେ ।
ବନ୍ଧୁକ କୁସୁମ ତୁଲ୍ୟ ମନୋହର ଓଷ୍ଠ
ରକ୍ତିମା ଗୁଣରେ ଦିଶେ ଅତ୍ୟନ୍ତ ଉତ୍କୃଷ୍ଟ ।
ପାଚିଲା ଡାଳିମ୍ବଫଳ ବୀଜପରି ଦନ୍ତ
ନିର୍ମଳ ସ୍ୱଚ୍ଛ ଆକାର ଦିଶେ ତେଜୋବନ୍ତ ।
ବହ୍ନି ଶୁଦ୍ଧବସ୍ତ୍ର ଯୁଗ୍ମ ଅଙ୍ଗରେ ବିରାଜେ
ସୁବର୍ଣ୍ଣ ରସନା ଗୁଣ କଟିତଟେ ସାଜେ ।
ଏମନ୍ତ ବେଶରେ ଦେବୀ ଶ୍ରୀକୃଷ୍ଣଙ୍କ ପାଶେ
ବସିଲେ ଆପଣା ମୁଖ ଆଚ୍ଛାଦଣ ବାସେ ।
କାମବଶେ ଶ୍ରୀକୃଷ୍ଣଙ୍କୁ ବେନିନେତ୍ର ତୋଳି
ରହିଲେ ନିମେଷ ତେଜ ଅନାଇଣ ବାଳୀ ।
ନବସଙ୍ଗମ ଇଚ୍ଛା ତ ହୋଇଲା ତାଙ୍କର
କନ୍ଦର୍ପ ଘାୟକେ ହେଲା ହୃଦ ଜରଜର ।
ଶ୍ରୀକୃଷ୍ଣଙ୍କ ରୂପ ଦେଖି ବିହ୍ୱଳିତ ହେଲେ
ମୂର୍ଚ୍ଛା ପାଇ ଚିତ୍ରଲେଖା ପରାୟେ ରହିଲେ ।
ଆସିଲେ ସେକାଳେ ତହିଁ ରାଧିକା ସୁନ୍ଦରୀ
ସହସ୍ର ପୂର୍ଣ୍ଣିମାଚନ୍ଦ୍ର ପ୍ରଭାତେଦେବୀ ପରି ।
ତିରଣକୋଟି ଗୋପିକା ତାହାଙ୍କ ସେବାରେ
ଲଗିଥାନ୍ତି ସେଥିମତେ ଆନନ୍ଦ ଚିତ୍ତରେ ।
ଶରୀର ଦିଶଇ ଶ୍ୱେତ ଚମ୍ପାରୁ ଅଧିକ
ଗତିବୋଲେ ଗଜରାଜ ଗମନକୁ ଧିକ ।
ଅମୂଲ୍ୟ ରତ୍ନ ଭୂଷଣେ ମଣ୍ଡିତ ବିଗ୍ରହ
ଦିଶଇ ଯେରୂପେ ସନ୍ଧ୍ୟା ଆକାଶରେ ଗ୍ରହ ।
ସୁବର୍ଣ୍ଣ ଖଚିତ ବହ୍ନି ଶୁଦ୍ଧବସ୍ତ୍ର ଯେକ
ଅତିଶୋଭା ପ୍ରକାଶିତ କରନ୍ତି ସେ ପୁଣି ।
ସ୍ଥଳପଦ୍ମ ପ୍ରଭା ମୁଷ୍ଟି କୋମଳ ପୟର
ବହୁଛି ତହିଁରୁ କୃଷ୍ଣଦତ୍ତ ଅର୍ଘ୍ୟନୀର ।
ରତ୍ନ ବିନିର୍ମିତ ଦ୍ରବ୍ୟ ବିମାନୁ ଓହ୍ଲାଇ
ଚାଲିଲେ ସଖୀଙ୍କ ସଙ୍ଗେ ଧୀରେ ଧୀରେ ହୋଇ ।
କେଉଁ ସଖୀ ଢାଳୁଅଛୁ ଶୁକଳ ଚାମରୀ
ବାଞ୍ଛୁଅଛି କେ ଆଲଟ ସେବ ବେଳକରି ।
କସ୍ତୁରୀ ବିନ୍ଦୁ ସହିତେ କର୍ପୂର ଚନ୍ଦନ
ବିନ୍ଦୁରେ ଲଲାଟଦେଶ ଦିଶେ ଶୋଭାବନ ।
ଦୀପପ୍ରଭା ପରି ପୁଣି ସିନ୍ଦୂର ତିଳକ
ଉଦୟ ସୂର୍ଯ୍ୟଙ୍କୁ ଜିଣି ଦିଶେ ଝଳଝଳ ।
କୋମଳ ଚିକ୍କଣ କୃଷ୍ଣବର୍ଣ୍ଣ କେଶ ଶୋଭା
ତାହାପରେ ବିରାଜଇ ମାଳତୀର ଗଭା ।
କ୍ରୋଧରେ ନାସିକା ଓଷ୍ଠ ହୁଅଇ କମ୍ପିତ
ଯେରୂପେ ପବନଘାତେ ଚଳଇ ପତ୍ର ।

ଶ୍ରୀକୃଷ୍ଣଙ୍କ ପାର୍ଶ୍ୱରେ ରତ୍ନ ସିଂହାସନେ
ବସିଲେ ଆବୃତ୍ତ ହୋଇକରି ସଖିଗଣେ ।
ବହୁ ସର୍ବବୃନ୍ଦରେ ସେ ସଭା ଶୋଭନ
ଶ୍ରୀକୃଷ୍ଣ ତାହା ମଧ୍ୟରେ ହସନ୍ତ ଶୋଭନ ।
ରାଧାଙ୍କୁ ଦେଖିଣ କୃଷ୍ଣ ଅତି ଭକ୍ତ ହୋଇ
ଆସନରୁ ଉଠି ତାଙ୍କପାଶେ ଗଲେ ଧାଇଁ ।
ବହୁମାନ୍ୟ କରି ପ୍ରେମ ସମ୍ଭାଷଣ କଲେ
ତା ଦେଖି ଗୋପ ଗୋପିକା ଯେତେକ ଥିଲେ
ଭକ୍ତିରେ ନୁଆଇଁ ସର୍ବେ ଆପଣା ମସ୍ତକ
ଆନନ୍ଦେ କଲେକ ସ୍ତୁତି ସେକାଳେ ଅନେକ ।
ଶ୍ରୀକୃଷ୍ଣ ମଧ୍ୟ ଅନେକ ସ୍ତୁତି ତାଙ୍କୁ କରେ
ବିବିଧ ଆଳାପ କରିବାକୁ ଆରମ୍ଭିଲେ ।
ତାହା ଦେଖିକରି ଗଙ୍ଗା ସେହିକ୍ଷଣି ଉଠି
ରାଧିକାଙ୍କ ପାଶେ ଗଲେ ଶିର କର ଯୋଡ଼ି ।
କୁଶଳ ବାରତା ଧୀରେ ପଚ୍ଛରିଲେ ଆଗ
ଭୟଯୋଗ ମନେ ମନେ ହୋଇ ଉଦବେଗ ।
ପୁଣି ତାଙ୍କ ପାଖେ ଯାଇ ବସିଲେ ସତ୍ୱର
ଓଷ୍ଠ କଣ୍ଠ ଶୁଖି ଯାଇଥିଲା ତାହାଙ୍କର ।
ଶ୍ରୀକୃଷ୍ଣ ଚରଣ ତଳେ ମନ ଦେଇକରି
ଧ୍ୟାନରେ ଶରଣାଗତ ହୋଇଲେ ସୁନ୍ଦରୀ ।
ତାହାଙ୍କ ହୃଦୟପଦ୍ମେ ଦେବ ସୁରେଶ୍ୱର
ପ୍ରବେଶ ହୋଇ ଅଭୟ ଦେଲେକ ସତ୍ୱର ।
ଶ୍ରୀକୃଷ୍ଣଙ୍କ ପ୍ରସାଦରେ ତାହାଙ୍କର ଭୀତ
ଦୂର ହୁଅନ୍ତେ ସେକାଳେ ସ୍ଥିରହେଲା ମତ ।
ଏଥୁ ଅନନ୍ତରେ ଗଙ୍ଗା ରାଧାଙ୍କୁ ଅନାଇ
ଦେଖିଲେ ସିଂହାସନରେ ବସିଛନ୍ତି ତହିଁ ।
ଅତି ମନୋହର ରୂପ ଶ୍ରୀମୁଖ ମାଧୁରୀ
ବ୍ରହ୍ମତେଜ ବିରାଜଇ ଅଙ୍ଗଦେଶେ ପୂରି ।
ଆଦ୍ୟସୃଷ୍ଟି ହେତୁ ସେହି ଦେବୀ ସନାତନୀ
ସକଳ ଜ୍ଞାନସ୍ୱରୂପା ତ୍ରୈଲୋକ୍ୟପାବନୀ ।
ଦ୍ୱାଦଶ ବରଷ କନ୍ୟା ପ୍ରାୟେ ସେ ଦିଶନ୍ତି
ନବ ଯଉବନେ ପୂରି ଦିଶେ ନବକାନ୍ତି ।
ରୂପ ଗୁଣେ ବିଶ୍ୱ ଜଗତରେ ତାହାଙ୍କର
ସମାନ ନ ଥିବ ବୋଲି ହୁଅଇ ବିଚାର ।
ଆଦ୍ୟଅନ୍ତ ଶୂନ୍ୟ ପୁଣି ଜଗତଈଶ୍ୱରୀ
ଶାନ୍ତ ମନୋହର ରୂପ ଅଟେ ତାହାଙ୍କର ।
ଶୁଦ୍ଧାସ୍ୱୀ ପଉଭାଗ୍ୟବତୀ ମହାମାୟା
ସ୍ୱାମୀଙ୍କର ସହଚରୀ ଯେହ୍ନେ ଦେବପ୍ରିୟା ।
ସମସ୍ତ ସୁନ୍ଦରୀ ମଧ୍ୟେ ଶ୍ରେଷ୍ଠ ସେ ଅଟନ୍ତି
ଜଗତେ ତାଙ୍କ ସମାନ ନାହିଁ କେ ଯୁବତୀ ।
ତେଜ ବୟସ ଗୁଣରେ କୃଷ୍ଣଙ୍କର ସମ
କୃଷ୍ଣ ଅର୍ଦ୍ଧାଙ୍ଗିନୀ ଏଣୁ ତାହାଙ୍କର ନାମ ।
ଯେ ମହାସଭାକୁ ନିଜ ତେଜ ପ୍ରଭାବରେ
ଆଲୋକିତ କରୁଛନ୍ତି ସୂର୍ଯ୍ୟ ସମାନରେ ।
ସଖୀଙ୍କ ହାତରୁ ନେଇ ଉତ୍ତମ ତାମ୍ବୁଳ
ଭୋଜନ କରନ୍ତି ଯାହା ଅଟଇ ଅତୁଲ୍ୟ ।
ଅଯୋନି ସମ୍ଭବା ପୁଣି ତ୍ରୈଲୋକ୍ୟ ଜନନୀ
ତାହାଙ୍କ ଯୋଗରେ ଧନ୍ୟ ବୋଲାଏ ଧରଣୀ ।
ଶ୍ରୀକୃଷ୍ଣଙ୍କ ସହଚରୀ ପ୍ରାଣ ପ୍ରିୟତମା
ସମାନ ନୁହନ୍ତି ତାଙ୍କୁ ରମା ପୁଣି ଉମା ।
ଏରୂପେ ରାସେଶ୍ୱରୀଙ୍କ ସ୍ୱରୂପକୁ ଦେଖି
ଗଙ୍ଗାଦେବୀ ମନେ ମନେ ହେଲେ ମହାସୁଖୀ ।
ନନିମେଷ ଲୋଚନରେ ତାହାଙ୍କୁ ଅନାଇ
ରହିଲେ ଚିତ୍ରପିତୁଳା ପରାଯେ ସେ ହୋଇ ।
ଏହି ସମୟରେ ରାଧା ଶ୍ରୀକୃଷ୍ଣଙ୍କ ମୁଖ
ଅନାଇ କହିଲେ ହେଲା ପରାଯେ ବିମୁଖ ।
ଆହେ ପ୍ରାଣେଶ୍ୱର ତୁମ୍ଭ ପାର୍ଶ୍ୱରେ କେହି
ନଷ୍ଟଳେ ବସିଛୁ ତୁମ୍ଭ ମୁଖକୁ ଅନାଇ ।
ହୋଇଛୁ ରକ୍ତବର୍ଣ୍ଣ ନୟନ ତାହାର
ଅଙ୍ଗ ସଙ୍ଗ ଇଚ୍ଛା କରି ଅଛୁ ସେ ତୁମ୍ଭର ।
ତୁମ୍ଭ ରୂପ ଦେଖି ମୁଗ୍ଧ ହେଉଅଛୁ କ୍ଷଣେ
ପୁଲକିତ ହୁଏ ତାର ଅଙ୍ଗ ଅନୁକ୍ଷଣେ ।
ବସ୍ତ୍ର ଅଞ୍ଚଳରେ ମୁଖ ଆଚ୍ଛାଦନ କରି
ନିରୀକ୍ଷଣ କରୁଅଛୁ ତୁମ୍ଭ ମୁଖ ହେରି ।
ତୁମ୍ଭେ ମଧ୍ୟ କାମଶରେ ଅଶକ୍ତ ହୋଇ
ତାହାର ମୁଖକୁ ଧୀରେ ରହିଅଛ ଗୁହିଁ ।
ମୁଁ କିନ୍ତୁ ଆଇଥିବାଠାରେ ଗୋଲୋକ ମଧ୍ୟରେ
ଏରୂପେ ଦୁର୍ନୟ ହେଉଅଛୁ କ ହେତୁରେ ।
କେତେଥର ମଧ୍ୟ ତୁମ୍ଭେ ବ୍ୟଭିଚାର କାର୍ଯ୍ୟ
କରିଅଛ କାମଶରେ ହରାଇଣ ଧୈର୍ଯ୍ୟ ।
ସେ କଥା ଉତ୍ତମରୂପେ ଜାଣିଲେ ହେଁ ମୁହିଁ
କ୍ଷମା କରୁଅଛୁ ତୁମ୍ଭ ମୁଖକୁ ଅନାଇଁ ।

ସ୍ୱଭାବେ ନ ସ୍ତ୍ରୀଙ୍କର କୋମଳ ହୃଦୟ
ପୁଣି ତୁମ୍ଭଠାରେ ବଳିଅଛି ମୋର ସ୍ନେହ ।
ଏବେ ବୋଲୁଅଛି ତୁମ୍ଭେ ଜାହ୍ନବୀ ଘେନ
ଗୋଲକରୁ ଯାଅ ବେଗେ ଲମ୍ପଟ ଅଗ୍ରଣୀ ।
ନୋହିଲେ ତୁମ୍ଭର ଶୁଭ ନ ହୋଇବ ଜାଣ
ସତ୍ୟ ବୋଲି ଜାଣ ମୋର କଥା ମନେ ଘେନ ।
ଚନ୍ଦନ କାନନଠାରେ ବିରଜା ସଙ୍ଗରେ
ମାତିଥିଲ ଦିନେ ତୁମ୍ଭେ ନୂତନ ସୁରତେ ।
ସେ କଥା ଦେଖିଲ ମୁହିଁ ପ୍ରତ୍ୟକ୍ଷରେ ଯାଇ
କ୍ଷମାକଲି ସଖୀଙ୍କର ପରାମର୍ଶ ପାଇ ।
ମୋର ସିବା ଶବ୍ଦ ଶୁଣି ସେହିକ୍ଷଣି ତୁମ୍ଭେ
ଅନ୍ତର୍ଦ୍ଧାନ ହେଲ ରହି ନ ପାରିଣ ଦମ୍ଭେ ।
ବିରଜା ଆପଣାରୂପ ଧରି ନ ରହିଲ
ନଦୀ ହୋଇ ସେହିଠାରୁ ବହି ଚାଲିଗଲା ।
ବିସ୍ତାରରେ କୋଟିଏ ଯୋଜନ ତାହାର ଆକୃତି
ତାହାଠାରୁ ଗୁରୁଗୁଣ ଦୈର୍ଘ୍ୟ ଅବସ୍ଥିତି ।
ଏବେ ମଧ୍ୟ ତୁମ୍ଭ ଲାଗି ରୂପରେ ସେ ନଦୀ
ରହିଅଛି ଗାମ୍ଭୀର୍ଯ୍ୟରେ ରତ୍ନାଚଳ ଭେଦି ।
ତାହା ଦେଖି ଗୃହକୁ ମୁଁ ବାହୁଡ଼ି ଆସିଲି
ପୁଣି ଆଉ ଥରେ ଯାଇ ସେଠାରେ ମିଳିଲି ।
ସେ ସମୟେ ତୁମ୍ଭେ ପୁଣି ସୁମରି ତାହାକୁ
ଡାକୁଥିଲ ପୁନଃ ପୁନଃ ଯାଇ ସମୀପକୁ ।
ବିରଜା ବିରଜା ବୋଲି ଦଶ ବାର ଥର
ଡାକନ୍ତେ ସେ ନଦୀ ମଧ୍ୟୁ ହୋଇଲା ବାହାର ।
ନାନାବିଧ ଅଳଙ୍କାରେ ମଣ୍ଡି ନିଜ ଦେହ
ତୁମ୍ଭଙ୍କୁ ଦର୍ଶନ ଦେଲା ଛାଡ଼ି ଲଜ୍ଜା ମୋହ ।
ସେହିକ୍ଷଣି ତୁମ୍ଭେ ତାକୁ ଗାଢ଼େ ଆଲିଙ୍ଗନ
କରନ୍ତେ ହୋଇଲ ଦୁହେଁ ପ୍ରେମରସେ ମଗ୍ନ ।
ତାହାର ଗର୍ଭରେ ପଡ଼ିବାରୁ ତୁମ୍ଭ ରେତ
ସପତ ସାଗର ତହୁଁ ହୋଇଲାଟି ଜାତ ।
ଆଉ ଦିନକରେ ମୁହିଁ ଚମ୍ପକ କାନନେ
ଶୋଭା ଗୋପିକା ସଙ୍ଗରେ ତୁମ୍ଭଙ୍କୁ ସେ ସ୍ଥାନେ
ଦେଖିବା କାଳରେ ମୋର ସିବାର ଶବଦ
ଶୁଣି ତୁମ୍ଭେ ଭୟ ଘେନି କମ୍ପାଇଣ ହୃଦ ।
ଅନ୍ତର୍ଦ୍ଧାନ ହେଲ ଜାହ୍ନବୀ ସଙ୍ଗ ତେଜି
ଶୋଭା ମଧ୍ୟ ତୁମ୍ଭେ ସିବା କାରଣକୁ ହେଜି ।

ଚନ୍ଦ୍ର ମଣ୍ଡଳରେ ଯାଇ ପ୍ରବେଶ ହୋଇଲା
ତେଜରୂପେ ସେହିଠାରେ ଅବସ୍ଥାନ କଲା
ତାହା ଜାଣି ତୁମ୍ଭେ ଅତି ଦୁଃଖିତ ହୋଇଲ
ଶୋଭାକୁ ସକାଳେ ନାନାପ୍ରକାରରେ ବାଣ୍ଟିଲ ।
ରତ୍ନରେ ତହିଁରୁ କିଛି ରଖାଇଲ ନେଇ
ସୁବର୍ଣ୍ଣ ମଣି ଦେହରେ ଦେଲ କେତେ ଥୋଇ ।
କେତେକ ସ୍ତ୍ରୀଙ୍କ ମୁଖେ ନିବେଶିତ କଲ
କଞ୍ଚନ ମାନବରେ ଦନ୍ତଠାରେ ରଖାଇଲ ।
ଉତ୍ତମ କମଳ ଦେହେ ରଖାଇଲ କିଛି
କେତେକ ତହିଁରୁ ରୌପ୍ୟ ଦେହରେ ରହିଛି ।
ଚନ୍ଦନପଙ୍କ ଦେହରେ ରହିଲା କିଞ୍ଚିତ
କେତେ ପୁଣି ହେଲା ଜଳଠାରେ ଅବସ୍ଥିତ ।
ନବପତ୍ର ପୁଷ୍ପଠାରେ କେତେକ ରହିଲା
ପକ୍ୱଫଳ ଶସ୍ୟରେ ସେ କେତେ ସ୍ଥିତ କଲା ।
ନୃପଦେବ ମନ୍ଦିରରେ କେତେକଲା ବାସ
କେତେଗଲା ବେଦଶାସ୍ତ୍ର ସୂକ୍ତଙ୍କ ପାଶ ।
ବୃନ୍ଦାବନେ ବ୍ରଜଗୋପୀ ସଙ୍ଗେ ଆଉ ଦିନେ
କ୍ରୀଡ଼ା କରୁଥିଲ ମୁହିଁ ଦେଖିଲି ନୟନେ ।
ତାହା ଜାଣି ତୁମ୍ଭେ ଅନ୍ତର୍ଦ୍ଧାନ ହୋଇଗଲ
ବ୍ରଜ ଆଗ୍ରେ ଚାଲିଯାଇ ଆଶ୍ଚର୍ଯ୍ୟମଣ୍ଡଳ ।
ତାହାଙ୍କ ଶରୀରେ ତତକ୍ଷଣ ତେଜୋରୂପ ହେଲା
ଦେଖି ତୁମ୍ଭ ମାନସରେ ଖେଦ ଉପୁଜିଲା ।
ସେହିକ୍ଷଣି ଭିନ୍ନ ଭିନ୍ନ ସ୍ଥାନରେ ତାହାକୁ
ରଖାଇଲ ତୁମ୍ଭେ ପୁଣି ପ୍ରକାଶି ଦୟାକୁ ।
ସବୁପ୍ରାଣୀଙ୍କର ଦେଖ ଚକ୍ଷୁରେ କେତେକ
ରଖାଇଲ ମାନସରୁ ଛାଡ଼ିଦେଇ ଦୁଃଖ ।
ଅଗ୍ନିଙ୍କ ଦେହରେ ପୁଣି କେତେ ରଖାଇଲ
ରାଜାଙ୍କ ପାଖରେ କେତେ ନିବେଶିତ କଲ ।
ପୁରୁଷ ଗୋଷ୍ଠିରେ ଯାଇ କେତେ ସ୍ଥିର ହେଲା
ଦେବତାଙ୍କଠାରେ ତହୁଁ ଅଳପ ରହିଲା ।
ଚୌର ପୁଣି ନାଗଙ୍କର ଦେହରେ ତହିଁରୁ
ରହିଲା କେତେକ ଅଂଶ ସେହି ସମୟରୁ ।
ବ୍ରାହ୍ମଣ ତପସ୍ୱୀ ମୁନି ଦେହେ ସେହିପରି
ରହିଲା କେତେକ କେତେ ଅଂଶ ନେଲେ ସ୍ତ୍ରୀଏ
ଏହି ରାସମଣ୍ଡଳରେ ଶାନ୍ତ ଗୋପୀ ତୁଲେ
ଥିଲେ ଆଉଦିନେ ତୁମ୍ଭେ ଦେଖିଛି ମୁଁ ଭଲେ

ବସନ୍ତ କାଳ ତ ହୋଇଥିଲା ସେ ସମୟେ
କୁସୁମ ଶଯ୍ୟାରେ ବସିଥିଲ ତୁମ୍ଭେ ଦୁହେଁ ।
ଉତ୍ତମ କୁସୁମମାଳା ସୁଗନ୍ଧ ଚନ୍ଦନ
ବୋଳାହୋଇଥିଲା ତୁମ୍ଭ ସର୍ବ ଅଙ୍ଗେନ ।
ତୁମ୍ଭର ମୁଖରେ ଦେଉଥିଲା ତାମ୍ବୁଳକୁ
ତୁମ୍ଭେ ମଧ୍ୟ ଖୁଆଇଣ ଦେଉଥିଲ ତାକୁ ।
ମୋହର ଶବଦ ବାଣି ଅନ୍ତର୍ଦ୍ଧାନ ହେଲ
ଶାନ୍ତକୁ ସେଠାରେ ସ୍ଥିରକରି ଯାଇଥିଲ ।
ମାତ୍ର ଶାନ୍ତ ସେ କଥାକୁ ସବୁ ସେହିକ୍ଷଣି
ଦେହ ତ୍ୟାଗ ତୁମ୍ଭ ଆଗରେ ଲୀନହେଲା ପୁଣି ।
ସେ ସମୟେ ତାର ଅଙ୍ଗ ଶ୍ରେଷ୍ଠଗୁଣ ହୋଇ
ପ୍ରକାଶିତ ହେଲ ଜାଣ କହୁଅଛି ମୁହିଁ ।
ତାହାକୁ ତୁମ୍ଭେ ବିଭାଗ କରି ସ୍ନେହଭରେ
ରଖାଇଲ ନେଇ ଯତ୍ନେ ନାନା ପଦାର୍ଥରେ ।
ବିଶ୍ୱଜଗତ ପ୍ରାଣୀଙ୍କ ଦେହରେ କିଞ୍ଚିତେ
ସତ୍ତ୍ୱରୂପ ବିଷ୍ଣୁଙ୍କର ଅଙ୍ଗଦେଶେ କେତେ ।
ରଖାଇଲ ପୁଣି କେତେ ଲକ୍ଷ୍ମୀଙ୍କ ଦେହରେ
କେତେକ ମନ୍ତ୍ରକୁଶଳ ବୈଷ୍ଣବଙ୍କ ଠାରେ ।
ତପସ୍ୱୀ ଧାର୍ମିକ ଲୋକେ କିଞ୍ଚିତ ରଖିଲ
ଧର୍ମଠାରେ ମଧ୍ୟ ଅଳ୍ପ ଅବସ୍ଥିତ କଲ ।
ଏ ବାହାରେ ଆଉଦିନେ କ୍ଷମା ଗୋପୀ ସଙ୍ଗେ
କ୍ରୀଡ଼ା କରୁଥିଲ ତୁମ୍ଭେ କାମରସ ରଙ୍ଗେ ।
ସୁବେଶ ହୋଇଣ ଥିଲ ନାନା ଅଳଙ୍କାରେ
ଲମ୍ବାଇଥିଲ କୁସୁମ ମାଳିକା ଗଳାରେ ।
ବିଲେପିତ କରି ଅଙ୍ଗେ ସୁଗନ୍ଧ ଚନ୍ଦନ
ପରିଧାନ କରିଥିଲ ସୁଚୀନ ବସନ ।
ସେ ମଧ୍ୟ ରତ୍ନ ଭୂଷଣେ ହୋଇଥିଲ ମଣ୍ଡି
ହେଉଥିଲ ଦେବକନ୍ୟା ପ୍ରତିମାକୁ ଭଣ୍ଡି ।
ଉତ୍ତମ କୁସୁମ ଶେଯେ ସୁଗନ୍ଧେ ପବନ
ସେବା କରିବାରୁ କାମେ ହୋଇ ଅଚେତନ ।
ମହାସୁଖେ ନବସଙ୍ଗ ଭୋଗରସେ ମାତି
ବସିଥିଲ ତୁମ୍ଭେ ତାର ହୃଦେ ଦେଇ ଛାତି ।
ଦୁହେଁ ଦୁହିଁଙ୍କର ଅଙ୍ଗ ପରଶ ସୁଖରେ
ଭୋଳ ହୋଇ ରହିଥିଲ ସସ୍ମିତ ମୁଖରେ ।
ମୁହିଁ ଯାଇଁ ଦୁହିଁଙ୍କର ନିଦ୍ରା ଭଙ୍ଗ କରି
ସେ କଥା ସ୍ମରଣ ଥରେ କରି କହିଦେଲ ।
ମୁରଲୀ ଆଦର ପୀତବସ୍ତ୍ର ବନମାଳ
କଉସ୍ତୁଭମଣି ରତ୍ନ ଅମୂଲ୍ୟ କୁଣ୍ଡଳ ।
ଏହା ସବୁ ତୁମ୍ଭଠାରୁ ନେଇଥିଲ ମୁହିଁ
ସଖୀଙ୍କ ବଚନେ ପଛେ ଦେଲି ବାହୁଡ଼ାଇ ।
ଯେଣୁ ଏବେ ତୁମ୍ଭ ଦେହ ଲଜ୍ଜାରେ ଅଧିକ
କୃଷ୍ଣବର୍ଣ୍ଣ ହୋଇ ଅଛୁ ଜାଣ ହେ କାମୁକ ।
କ୍ଷମା ଦେହ ତ୍ୟାଗ କରି ପୃଥିବୀରେ ଯାଇ
ରହିଲା ସେକ୍ଷଣି ମନେ ମହାଲଜ୍ଜା ପାଇ ।
ତାହାର ଶରୀର ଶ୍ରେଷ୍ଠ ଗୁଣରୂପ ହେଲ
ଦେଖିଣ ତୁମ୍ଭ ମନରେ କଷ୍ଟ ଉପୁଜିଲା ।
ଅନ୍ୟ ଜାର ନାରୀଙ୍କର ଅଙ୍ଗକୁ ଯେପରି
ଭାଗ ଭାଗ କରିଥିଲ ତାହାକୁ ସେପରି ।
ବାଣ୍ଟିଦେଲ ଭିନ୍ନ ଭିନ୍ନ ସ୍ଥାନରେ ରଖାଇ
ବିଷ୍ଣୁଙ୍କ ଅଙ୍ଗଦେଶରେ କେତେ ଦେଲ ନେଇ ।
କେତେ ନେଇ ଦେଲ ପୁଣି ବୈଷ୍ଣବଙ୍କଠାରେ
ରଖାଇଲ କେତେ ତପୀ ଜନଙ୍କ ଦେହରେ ।
ଦୁର୍ବଳ ଲୋକଙ୍କ ଦେହେ ରଖିଲ କିଞ୍ଚିତେ
ଦେବତାଙ୍କ ଅଙ୍ଗଦେଶେ ରଖାଇଲ କେତେ ।
ଆଦର ପଣ୍ଡିତ ଜ୍ଞାନୀ ବ୍ୟକ୍ତିଙ୍କ ଦେହରେ
ସ୍ଥାନଦେଲ ନେଇ କେତେ ଅଂଶ ସେକାଳରେ ।
ଏରୂପେ ତୁମ୍ଭର ଗୁଣ କହିଲାତ କେତେ
ଆଉ କିଛି ଶୁଣିବାକୁ ଭାବୁଛ କି ଚିତ୍ତେ ।
ଏ ବାହାରେ ତୁମ୍ଭ ଗୁଣ ଅନେକ ପ୍ରକାର
ଜାଣିଛୁ ଏଥିରେ ତିଳେ ସନ୍ଦେହ ନ କର ।
ଏମନ୍ତ ବୋଲିଣ ରାଧା ନେତ୍ରଭଙ୍ଗ କଲେ
ଗଙ୍ଗାଙ୍କ ମୁଖକୁ ଚାହିଁ କହି ଆରମ୍ଭିଲେ ।
ତାହା ଜାଣି ଯୋଗେଶ୍ୱରୀ ତାହାଙ୍କର ଆଗେ
ନ ରହିଣ ଅନ୍ତର୍ଦ୍ଧାନ ହୋଇଗଲେ ବେଗେ ।
ଆପଣାର ଜଳମଧ୍ୟେ ପ୍ରବେଶ ହୋଇଲେ
ଶ୍ରୀକୃଷ୍ଣ ତା ଦେଖିକରି ଖେଦ ଜାତକଲେ ।
ଯୋଗବଳେ ରାଧାଦେବୀ ଜାଣିଲେ ସେକାଳେ
ଗଙ୍ଗା ରହିଛନ୍ତି ସବୁ ସ୍ଥାନେ ମହୀତଳେ ।
ସେ ସକାଶୁ କ୍ରୋଧଭରେ ହୋଇଣ ଅଧୀର
ପାଇବାକୁ ଆରମ୍ଭିଲେ ତାହାଙ୍କର ନୀର ।
ରାଧିକାଙ୍କ ମନକଥା ଗଙ୍ଗା ସେହିକ୍ଷଣି
ଯୋଗୀ ପ୍ରଭାବରେ ଭଲରୂପେ ଗଲେ ଜାଣି ।

ଅନ୍ୟ ଉପାୟ ନ ଦେଖି ଶ୍ରୀକୃଷ୍ଣ ଚରଣେ
ଶରଣ ପଶିଲେ ମହାଭୟ କରି ମନେ ।
ରାଧିକା ତ କ୍ରୋଧଭରେ ତାଙ୍କୁ ଖୋଜୁଥିଲେ
ଗୋଲୋକ ବୈକୁଣ୍ଠ ବ୍ରହ୍ମଲୋକରେ ବୁଲିଲେ ।
କେଉଁଠାରେ ହେଲେ ଆଉ ନ ପାରିଲେ ଦେଖି
ରହିଲେ ସେ ଘେନ କ୍ରୋଧେ ରଙ୍ଗ କରି ଆଖି
ଅନ୍ତର୍ଦ୍ଧାନ ହୋଇ ଗଙ୍ଗା ଯାଆନ୍ତେ ପଳାଇ
ଜଳଶୂନ୍ୟ ହେଲା ଏକ ମୁହୂର୍ତ୍ତରେ ମହୀ ।
ବ୍ରହ୍ମାଣ୍ଡରେ ଜଳ ଆଉ କାହିଁ ନ ମିଳିଲା
ନଦୀ ପୁଷ୍କରିଣୀ ପଙ୍କ ଶୁଷ୍କ ହୋଇଗଲା ।
ଜୀବ ତେଜି ଚରାଚରେ ଜଳଜନ୍ତୁ କୁଳ
ପଡ଼ିଲେକ ସ୍ଥାନେ ସ୍ଥାନେ ହୋଇ ମାଳ ମାଳ
ତାହା ଦେଖି ବ୍ରହ୍ମା ବିଷ୍ଣୁ ଶିବ ଯେ ଅନନ୍ତ
ଧର୍ମ ଚନ୍ଦ୍ର ସୂର୍ଯ୍ୟ ମନୁ ମାନବ ସମସ୍ତ ।
ଦେବତା ଗନ୍ଧର୍ବ ସିଦ୍ଧ ଗୁହ୍ୟକ ଚାରଣ
ଆଉର ସିଦ୍ଧ ତପସ୍ୱୀ ମୁନି ଋଷିଗଣ ।
ଗୋଲୋକକୁ ସେହିକ୍ଷଣି ଗଲେ ବ୍ୟସ୍ତ ହୋଇ
ଥିଲେ ଯେଉଁଠାରେ ଦେବ ତ୍ରୈଲୋକ୍ୟଗୋସାଇଁ
ବରେଣ୍ୟ ବରଦ ଶିବମୟ ସର୍ବହେତୁ
ଅପାର ସଂସାର ମହା ସାଗରର ସେତୁ ।
ନିରୀହ ନିର୍ମଳ ନିରାକାର ନିରଞ୍ଜନ
ଭକ୍ତ ଅନୁଗ୍ରହକାରୀ ଦେବ ସନାତନ ।
ସ୍ୱେଚ୍ଛାମୟ ନିରୁତ୍ସାହ ସାକାର ଦେବେଶ
ସତ୍ୟରୂପେ ସତ୍ୟଈଶ ତେଜ ଅପ୍ରକାଶ ।
ଏମନ୍ତ ଅଟନ୍ତି ଯେହୁ ଦେବ ସନାତନ
ତାଙ୍କ ପଦ ପଙ୍କଜରେ ଦେଇକରି ମନ ।
ଭକ୍ତିଭରେ ଆପଣାର ମସ୍ତକ ନୁଆଇଁ
ପ୍ରଣାମ କରିଣ ସର୍ବେ ଭକତି ଦେଖାଇ ।
ଗଦ୍‌ଗଦ ବାକ୍ୟରେ ସ୍ତୁତିପାଠ ଆରମ୍ଭିଲେ
ତିନ୍ତାଇଣ ଗଣ୍ଡସ୍ଥଳ ଆନନ୍ଦାଶ୍ରୁ ଜଳେ ।
ସେହିକାଳେ ଦେବହରି ଜ୍ୟୋତି ସ୍ୱରୂପରେ
ପ୍ରକାଶିତ ହେଲେ ଆସି ତାହାଙ୍କ ଆଗରେ ।
ଅମୂଲ୍ୟ ରତ୍ନ ନିର୍ମିତ ରାଜ ସିଂହାସନେ
ବସି କରିଛନ୍ତି ନିଜେ ହରଷିତ ମନେ ।
ହସ୍ତରେ ଶ୍ୱେତଚାମର ଘେନି ଗୋପଗଣ
ସେବା କରୁଛନ୍ତି ତାଙ୍କ ପାଶେ ରହି ପୁଣ ।

ସମ୍ମୁଖରେ ଗୋପୀମାନେ ନୃତ୍ୟ କରୁଛନ୍ତି
ସେ ନୃତ୍ୟ ଗାନରେ ଦୃଷ୍ଟି ଦେଇଛନ୍ତି ମତି ।
ଏ ବାହାରେ ବୃନ୍ଦପାଶେ ବେଢ଼ି ଗୋପସୁତେ
ତାହାଙ୍କ ରୂପକୁ ଚାହିଁଅଛନ୍ତି ଉନମତେ ।
ପଞ୍ଚବିଂଶ କୋଟି ଅଟେ ତାଙ୍କ ପରିମାଣ
ସମସ୍ତେ ଅଟନ୍ତି ନାନାଗୁଣରେ ନିପୁଣ ।
ଚନ୍ଦନରେ ଶ୍ରୀହରିଙ୍କ ଅଙ୍ଗ ଚର୍ଚ୍ଚିତ
ରତ୍ନ ଭୂଷଣରେ ପୁଣି ହୋଇ ଶୋଭିତ ।
ନବୀନ ନୀରଦ ପ୍ରାୟେ ଶ୍ୟାମଳ ବରନ
କରିଛନ୍ତି କ୍ଷୀଣ ପୀତବାସ ପରିଧାନ ।
ଦ୍ୱାଦଶ ବରଷ ଗୋପବାଳକ ସଦୃଶ
ଦେଖାଯାନ୍ତି କାମରୂପୀ ଦେବ ହୃଷୀକେଶ ।
କୋଟି ଚନ୍ଦ୍ରମଣ୍ଡଳକୁ ଜିଣି ଶୋଭାରାଶି
ଈଷତ ବିଜୁଳି ତୁଲ୍ୟ ଯାଉଅଛି ହସି ।
ସୁରମ୍ୟ ଶୀତଳ ତେଜେ ଆବୃତ ଶରୀର
ସୁଦୃଶ୍ୟ ହେବାରୁ ସେ ଦିଶେ ମନୋହର ।
ସୁନ୍ଦର ଯେତେ ରେ କୋଟି କାମ ତାଙ୍କୁ ସରି
ନ ହୋଇବେ ଆନକୁ ବା କି ଉପମା କରି ।
ଗୋପାଳ କାମିନୀଗଣ ସସ୍ମିତ ବଦନେ
କଟାକ୍ଷରେ ନିରୀକ୍ଷଣ କରନ୍ତି ସୁମନେ ।
ନାନାବିଧ ଭୂଷଣରେ ମଣ୍ଡି ନିଜ ଅଙ୍ଗ
ସର୍ବଦା ଇଚ୍ଛା କରନ୍ତି ପ୍ରଭୁଙ୍କର ସଙ୍ଗ ।
ପ୍ରାଣରୁ ଅଧିକ ଯେଉଁ ରାଧିକା ସୁନ୍ଦରୀ
ରହିଛନ୍ତି ଧୀରେ ବକ୍ଷସ୍ଥଳ ଅଙ୍ଗୀକରି ।
ସୁବାସ ତାମ୍ବୂଳ ଆଣି ଭକ୍ଷନ୍ତି ଭୋଜନ
କେ କହି ପାରିବ ତାଙ୍କ ସ୍ନେହ ବିବରଣ ।
ରାସମଣ୍ଡଳ ମଧ୍ୟରେ ଏରୂପେ ଦେବଙ୍କୁ
ଦରଶନ କରି ଦେବେ ଲଭି ଆନନ୍ଦକୁ ।
ସଛତପ ଦେବରୂପ ବ୍ରହ୍ମରୂପ ଭୁଲେ
ଉଭା ହୋଇ ଏକସ୍ୱରେ ସ୍ତୁତି ଆରମ୍ଭିଲେ ।
ସେ ଅନ୍ତରେ ପରମେଶ ଯଥାବାର୍ତ୍ତା ହୋଇ
କହିଲେ ସମସ୍ତ ପିତାମହଙ୍କୁ ଅନାଇଁ ।
ଆହେ ଦେବ ପ୍ରଜାପତି ଜଗତକରତା
ତୁମ୍ଭେ ଅଟ ସବୁ ପ୍ରାଣୀଙ୍କର ପିତାମାତା ।
ଶ୍ରୀହରିଙ୍କୁ ସ୍ତୁତି କରିବାକୁ ଆମ୍ଭେମାନେ
ସମର୍ଥ ନୋହିବୁ ହୋଇ ବୁଝିଅଛୁ ମନେ ।

ଏ ଯେବେ ଆପଣ ଆମ୍ଭ ଦେବଙ୍କୁ ଯେବେ
ବ୍ରହ୍ମଙ୍କୁ କହୁଅଛ ତୋଷ ଆହେ ପଦ୍ମଯୋନ ।
ଏହା ଶୁଣି ବେଦବର ସନମତ କଲେ
ଧୀରେ ଧୀରେ ଶ୍ରୀକୃଷ୍ଣଙ୍କ ସମୀପକୁ ଗଲେ ।
ତାହାଙ୍କର ଦକ୍ଷିଣରେ ଚଳେ ନାରାୟଣ
ବାମଭାଗେ ବାସୁଦେବ କଲେକ ପ୍ରସ୍ଥାଣ ।
ପରମ ଆନନ୍ଦମୟ ପରମ ପୁରୁଷ
ଅଟନ୍ତି ସେ ଜନାର୍ଦ୍ଦନ ପ୍ରଭୁ ହୃଷୀକେଶ ।
ରାସମଣ୍ଡଳ ମଧ୍ୟରେ ବସନ୍ତି ଶୋଭନ
ଦେଖିବାମାତ୍ରକେ ଫେରି ନ ଆସେ ନୟନ ।
ତାଙ୍କ ମାୟା ପ୍ରଭାବରେ ସମସ୍ତେ ସେଠାରେ
ଦେଖାଯାନ୍ତି ଶ୍ରୀକୃଷ୍ଣଙ୍କ ସମାନ ରୂପରେ ।
ଦ୍ୱିଭୁଜ ମୁରଲୀ ହସ୍ତ କଣ୍ଠେ ବନମାଳ
ନବୀନ ନୀରଦ ପ୍ରାୟେ ତେଜ ଅନର୍ଗଳ ।
ମୟୂର ଚନ୍ଦ୍ରିକା ଶିରେ ବସଇ ଶୋଭିତ
ବକ୍ଷସ୍ଥଳେ କଉସ୍ତୁଭ ମଣି ବିରାଜିତ ।
ଅତ୍ୟନ୍ତ ସୁନ୍ଦର ଶାନ୍ତ ନବୀନ ମୂରତି
ସମାନ ଗୁଣ ବୟସ ରୂପ ଦେଖନ୍ତି ।
ବସନ ଭୂଷଣ ଭଙ୍ଗୀ ଚେଷ୍ଟା ସେହିପରି
ସମାନ ହୋଇଛି କିଛି ନ ହୁଅଇ ବାରି ।
ସକଳ ଐଶ୍ୱର୍ଯ୍ୟ ପୂର୍ଣ୍ଣ ସର୍ବୁରି ଶରୀର
କେ ଅଟେ ସେବକ କେବା ଅଟଇ ଈଶ୍ୱର ।
ଏ କଥା ନିର୍ଣ୍ଣୟ କରି ନ ପାରିଣ ଧାତା
ଚିନ୍ତିତ ହୋଇଣ ଚକ୍ଷୁ କଲେ ସୋରିତା ।
ନିରୀକ୍ଷଣ କରି ପୁଣି କ୍ଷଣେ ଅନାଇଲେ
କେତେବେଳେ ଶ୍ରୀକୃଷ୍ଣଙ୍କୁ ଏକାକୀ ଦେଖିଲେ ।
ମୁହୂର୍ତ୍ତେ ଅନ୍ତରେ ପୁଣି ଦେଖିଲେ ସେଠାରେ
ବିହାର କରୁଅଛନ୍ତି ରାଧାଙ୍କ ସଙ୍ଗରେ ।
ପୁଣି କ୍ଷଣକ ଅନ୍ତରେ ତେଜରୂପ ହେଲେ
ପୁରୁଷ ଆକୃତି କ୍ଷଣକରେ ପ୍ରକାଶିଲେ ।
କେତେବେଳେ ନିରାକାର ହୋଇ ଦେଖାଯାନ୍ତି
କେତେବେଳେ ପୂର୍ଣ୍ଣ ଦ୍ରବ୍ୟ ରୂପକୁ ଧରନ୍ତି ।
ଉଭୟ ପ୍ରକାର କେତେବେଳେ ହୋଇଥାନ୍ତି
କ୍ଷଣକରେ ପୁଣି ଅନ୍ତର୍ଦ୍ଧାନ ହୋଇଯାନ୍ତି ।
ତ୍ରିବିଧରୂପ ବିହି କେବେ ହୁଅନ୍ତି ପ୍ରକାଶ
ମୁହୂର୍ତ୍ତକପରେ ହୋଇଥାନ୍ତି ସେ ପୁରୁଷ ।

ଏରୂପେ ଦେଖିଣ ବ୍ରହ୍ମା କାତର ହୋଇଲେ
କାହାକୁ ସ୍ତୁତି କରିବେ ଜାଣି ନ ପାରିଲେ ।
ସେ ପ୍ରକାଶୁ ଆପଣାର ମାନସେ ବିଚାରି
ଜାଣିଲେ ଅନନ୍ତରୂପ ପ୍ରଭୁ ନରହରି ।
ସେ ଅନ୍ତରେ ଯୋଗାସନେ ସ୍ଥିରହୋଇ ବସି
ଚିନ୍ତିଲେ ଧ୍ୟାନ ଯୋଗରେ ଦେବ ବ୍ରହ୍ମଋଷି ।
ନାନା ପରକାରେ ସ୍ତୁତି ପଠନ ସେ କଲେ
ଭକ୍ତିଭରେ ଶ୍ରୀକୃଷ୍ଣଙ୍କ ପାଦେ ଦଣ୍ଡ ହେଲେ ।
ତାହା ଦେଖି ସନ୍ତୋଷରେ ଦେବ ଅଧୀଶ୍ୱର
ବୋଇଲେ ମୋଠାରୁ ଶୁଣ ଆହେ ବେଦବର ।
ତୁମ୍ଭମନ କଥା ସିନା ବଡ଼ୁଥିଲି ମୁହିଁ
ଭକ୍ତିରେ ସନ୍ତୁଷ୍ଟ ଏବେ ହେଲି କହୁଥାଇ ।
ଏମନ୍ତ ଶୁଣି ବିଧାତା ନେତ୍ର ଫିଟାଇଲେ
ଆଗରେ ଶ୍ରୀକୃଷ୍ଣଙ୍କର ମୂରତି ଦେଖିଲେ ।
ପାର୍ଶ୍ୱଦଗଣରେ ହୋଇ ଅଛନ୍ତି ବେଷ୍ଟିତ
ରାଧାଙ୍କର ବକ୍ଷସ୍ଥଳେ ନିଜେ ଅବସ୍ଥିତ ।
ଚାରିପାର୍ଶ୍ୱେ ଗୋପୀଗଣ ବେଢ଼ି ରହିଛନ୍ତି
ଯେ ଯାହା ଇଚ୍ଛାରେ ସେବା କାର୍ଯ୍ୟ ସେ କରନ୍ତି
ସକଳ ଦେବତା ତାଙ୍କୁ ଦେଖି ତୋଷ ହେଲେ
କରଯୋଡ଼ି ପୁଣି ଆଉଥରେ ସ୍ତୁତି କଲେ ।
ତାହାଙ୍କର ମନ କଥା ଜାଣି ସୁରେଶ୍ୱର
ଶ୍ରୀକୃଷ୍ଣ ସେ ସମସ୍ତଙ୍କୁ ଦେଲେକ ଉତ୍ତର ।
ବୋଇଲେ ହେ ପିତାମହ ଆଦିଲୋକପାଳ
ହୋଇଅଛନ୍ତି କି ସବୁ ତୁମ୍ଭର କୁଶଳ ।
ଆହେ ବିଷ୍ଣୁ ପାରିଷଦଗଣ ସହିତରେ
ରହିଅଛନ୍ତି ସୁଖେ ବଇକୁଣ୍ଠ ପୁରେ ।
ଜାଣିଲି ଗଙ୍ଗାଙ୍କୁ ନେବାପାଇଁ ତୁମ୍ଭେମାନେ
ଆସିଅଛ ମୋ ପାଖକୁ ଆଶା ରଖି ମନେ ।
ଭୟରେ ସେ ଗଙ୍ଗାଦେବୀ ମୋହର ଚରଣେ
ଶରଣ ପଶିଅଛନ୍ତି ଆହେ ଦେବଗଣେ ।
ମୋ ପାଖରେ ବସିଥିଲେ ବୋଲକରି ଏହି
ରାଧିକା ଏହାଙ୍କଠାରେ ମହାକ୍ରୋଧବହି ।
ପାନ କରିବାକୁ ଖୋଜୁଛନ୍ତି ନିରନ୍ତରେ ।
ସେ ପ୍ରକାଶୁଁ ଅଛନ୍ତି ଏ ମୋହର ପଦରେ ।
ବାହାରି କରିଣ ମୁହିଁ ଦେବ ଏହିକ୍ଷଣି
ଅଭୟ ଦାନ ଏହାଙ୍କୁ କର ତୁମ୍ଭେ ପୁଣି ।

ଶ୍ରୀକୃଷ୍ଣଙ୍କ ବାକ୍ୟ ଶୁଣି କମଳ ଆସନ
ରାଧିକାଙ୍କୁ ସ୍ତୁତି କଲେ ହୋଇ ଏକମନ ।
ଚାରିବେଦ ଅଧିପତି ଅଟନ୍ତି ଯେ ସେହି
ସ୍ତୁତି କଲେ ଚାରିମୁଖେ ହୃଦେ ଭକ୍ତି ବହି ।
ବୋଇଲେ ନମସ୍ତେ ରାଧା ଶ୍ରୀକୃଷ୍ଣ ରମଣୀ
ତୁମ୍ଭେ ଅଟ ଯୋଗମାୟା ଦେବୀ ସନାତନୀ ।
ରାସ ମଣ୍ଡଳରେ ତୁମ୍ଭେ ପତିଙ୍କର ତୁଲେ
କ୍ରୀଡ଼ା କରିବାରେ ରତ ଥିଲ ଯେତେବେଳେ ।
ସେହି ସମୟରେ ତୁମ୍ଭ ଦୁହିଙ୍କ ଅଙ୍ଗରୁ
ଜାତହେଲେ ଗଙ୍ଗା କହିଁ ହୋଇ ଅତି ଗୁରୁ ।
ସଦାଶିବଙ୍କର ଗାନ ଶୁଣିବାରୁ ତୁମ୍ଭେ
ମୁଗଧ ହୋଇଗଲ ନଜେ ଦେଖିଅଛୁ ଆମ୍ଭେ ।
ସେ ସକାଶୁଁ ଦ୍ରବ୍ୟରୂପେ ବହିଗଲ ତେଣୁ
ଗଙ୍ଗାନଦୀ ସ୍ବରୂପରେ ଜାତହେଲ ଯେଣୁ ।
ତୁମ୍ଭର ଅଂଶରେ ଜନ୍ମ ହୋଇବାରୁ ସେହି
କନ୍ୟା ସମାନ ଅଟନ୍ତି ଆଗୋ ମହାମାୟୀ ।
ଏବେ ତୁମ୍ଭ ମନକୁ ସେ ଗ୍ରହଣ କରନ୍ତୁ
ଆବର ତୁମ୍ଭ ପୂଜାରେ ମାନସ ଦିଅନ୍ତୁ ।
ବୈକୁଣ୍ଠ ଭୁବନେ ପ୍ରଭୁ ଦେବ ନାରାୟଣ
ତାହାଙ୍କର ପ୍ରିୟ ପତ୍ନୀ ହୋଇବେଟି ଜାଣ ।
ମର୍ତ୍ତ୍ୟ ମଣ୍ଡଳରେ ପୁଣି ଲବଣସାଗର
ରମଣୀ ହୋଇବେ ସବୁବେଳେ ମନୋହର ।
ଗୋଲୋକରେ ତୁମ୍ଭେ ରାଧା ନାମରେ ବିଖ୍ୟାତ
ସବୁଠାରେ ଅଟ ଦୁର୍ଗା ତ୍ରିଜଗତ ମାତ ।
ତୁମ୍ଭର କନ୍ୟାସ୍ବରୂପ ଏହି ମନ୍ଦାକିନୀ
ତାଙ୍କଠାରେ ଦୟାକର ଆମ୍ଭ ସ୍ତୁତି ଘେନ ।
ତା ଶୁଣି ରାଧିକା ଦେବୀ ସନ୍ତୁଷ୍ଟ ହୋଇଲେ
ହସିକରି ବିଧାତାଙ୍କୁ ଅନାଇଁ କହିଲେ ।
ଆହେ ପ୍ରଜାପତି ତୁମ୍ଭେ କହିଲ ଯେ କଥା
ସନମତ କଲି ମୁହିଁ ନ କରି ଅନ୍ୟଥା ।
ଏହିରୂପେ ରାଧାଙ୍କର ବଚନକୁ ଶୁଣି
ଶ୍ରୀକୃଷ୍ଣ ନଖକୋଣରୁ ଦେବୀ ମନ୍ଦାକିନୀ ।
ସମସ୍ତଙ୍କ ସମ୍ମୁଖରେ ବାହାର ହୋଇଲେ
ଦେବତାଙ୍କ ମଧ୍ୟେ ଯାଇ ଅବସ୍ଥାନ କଲେ ।
ପ୍ରଥମରେ ଜଳରୂପ ହୋଇଥିଲେ ସେହି
ଅଧିଷ୍ଠାତ୍ରୀ ଦେବୀ ସେ ଜଳରୁ ଜାତହୋଇ ।
ସବୁରି ନୟନ ଆଗେ ହୋଇଲେ ପ୍ରକାଶ
ସନ୍ତୋଷ ହୋଇଲେ ଦେବ ସେକାଳେ ବିଶେଷ ।
ତାହାଙ୍କ ଜଳରୁ ବ୍ରହ୍ମା ଅଳ୍ପମାତ୍ର ନେଇ
ଆପଣା କମଣ୍ଡଳୁରେ ଦେଲେକ ରଖାଇ ।
ଶିବମସ୍ତ ସଦାଶିବ ଜଟାରେ କଞ୍ଚତ
ରଖିଲେ ସେକାଳେ ନେଇ ଆନନ୍ଦ ଚିତ୍ତବନ୍ତ ।
ସେ ଅନ୍ତରେ ପ୍ରଜାପତି ଗଙ୍ଗାଙ୍କ କର୍ଣ୍ଣରେ
କହିଲେ ରାଧାଦେବୀଙ୍କ ମନ୍ତ୍ର ଯତନରେ ।
ଆବର କବଚ ସ୍ତୋତ୍ର ଧ୍ୟାନ ତାହାଙ୍କର
ଶିଖାଇଲେ ମଧ୍ୟ ସେ କାଳରେ ବେଦବର ।
ତାହା ପାଇ ମନ୍ଦାକିନୀ ରାଧିକାଙ୍କୁ ପୂଜା
କଲେ ଆନନ୍ଦରସରେ ମଜ୍ଜ ଇଣ ମଜ୍ଜା ।
ବୈକୁଣ୍ଠ ଭୁବନେ ତହୁଁ ପ୍ରବେଶ ହୋଇଲେ
ନାରାୟଣଙ୍କ ପାଶରେ ଆନନ୍ଦେ ରହିଲେ ।
ଲକ୍ଷ୍ମୀ ସରସ୍ବତୀ ଗଙ୍ଗା ତୁଳସୀ ଏ ଚାରି
ଅଟନ୍ତି ମୂଳ ନାରାୟଣଙ୍କର ମନୋହାରୀ ।
ଏଥିଅନ୍ତେ ମନ୍ଦହାସ ପ୍ରକାଶି ଶ୍ରୀହରି
ବ୍ରହ୍ମାଙ୍କୁ କହିଲେ ଧୀରେ ପ୍ରବୋଧନା କରି ।
ବୋଇଲେ ହେ ପ୍ରଜାପତି ବିଷ୍ଣୁ ରୁଦ୍ର ତୁମ୍ଭେ
ଗଙ୍ଗାଙ୍କୁ ଗ୍ରହଣ କରି ଦେଉଅଛୁଁ ଆମ୍ଭେ ।
ବିଗତ କାଳର ଗାଥା ଶୁଣ ଦେଇମନ
ବିସ୍ତାରି ତୁମ୍ଭ ଆଗରେ କରୁଛୁ ବଖାଣ ।
ତୁମ୍ଭେମାନେ ଅନ୍ୟ ସବୁ ଋଷିଙ୍କ ସହିତ
ଏଠାବରେ ଆସିଣ ହୋଇଛ ଉପସ୍ଥିତ ।
ଯେତେବେଳେ ଏ ଜଗତ ପ୍ରାକୃତ ଲୟରେ
ଅନନ୍ତ ମିଳଇ ବୁଡ଼ି ରହଇ ଜଳରେ ।
କାଳଭୟ ବିବର୍ଜିତ ଅଟେ ଏ ଗୋଲୋକ
ସମସ୍ତେ ରହ ଆନନ୍ଦେ ହୋଇଣ ପୁଲକ ।
ଏବେ ଦେଖ ସବୁଆଡ଼େ ପୂରିଅଛି ଜଳ
ନ ଦିଶଇ ବସୁମତୀ ଗିରି ବନ ସ୍ଥଳ ।
ବିଶ୍ବବାସୀ ଜୀବେ ବିଷ୍ଣୁ ରୁଦ୍ର ସହିତରେ
ଲୀନ ହୋଇଛନ୍ତି ଏହିକ୍ଷଣେ ମୋ ଦେହରେ ।
ବଇକୁଣ୍ଠ ବିନା ସବୁ ସ୍ଥାନ ଜଳମୟ
ହୋଇଅଛି ଭଲରୂପେ ଦେଖ ପିତାମହ ।
ଏ ସକାଶୁ ତୁମ୍ଭେ ମୋର ବୋଲକରି ଯାଅ
ବ୍ରହ୍ମଲୋକ ଆଦି ସୃଷ୍ଟି କାର୍ଯ୍ୟେମନ ଦିଅ ।

ଅଶେଷ ବ୍ରହ୍ମାଣ୍ଡ ତାର କର ଆଗ ତୁମ୍ଭେ
ସେ ଅନ୍ତେ ଗଙ୍ଗା ଦେବୀଙ୍କୁ ପଠାଇବୁ ଆମ୍ଭେ ।
ଏହିମତ କେତେ କେତେ ସୃଷ୍ଟି କରି ମୁହିଁ
ବ୍ରହ୍ମା ଆଦି ଦେବତାଙ୍କୁ ସୃଜିଅଛଇ ।
ମୋର ତଷ୍ଟୁ ନିମିଷକେ ଏକ ଧାତାଙ୍କର
ବିନାଶ ହୁଅନ୍ତେ ନାଶ ପାଏ ଚରାଚର ।
ଦେବତାଙ୍କୁ ଘେନି ତୁମ୍ଭେ ଯାଅ ନିଜପୁର
ବିବିଧ ପ୍ରକାରେ ସୃଷ୍ଟି ପତନେ ଶିଘ୍ରର ।
ଏମନ୍ତ କହି ରାଧିକା ନାଥ ଈଶ୍ୱର
ପ୍ରବେଶ ହୋଇଲେ ଯାଇ ନିଜ ଅନ୍ତଃପୁର ।
ବ୍ରହ୍ମାଙ୍କୁ ଅଗ୍ରତେ ରଖି ସର୍ବ ଦେବଗଣ
କଲେ ଯାଇ ନବସୃଷ୍ଟି କାର୍ଯ୍ୟକୁ ଭିଆଣ ।

ଯେଉଁସ୍ଥାନଠାରୁ ଗଙ୍ଗା ରହିଲେ ଗୋଲୋକେ
ଆବର ସେ ବ୍ରହ୍ମଲୋକ ଶିବଲୋକ ପାଖେ ।
ଯେଉଁ ଯେଉଁ ସ୍ଥାନ ପୂର୍ବୁ ହୋଇଥିଲ ସ୍ଥିର
ପ୍ରକାଶିତ ହୋଇଲେକ ଯାଇ ସେ ସ୍ଥାନର ।
ଶ୍ରୀକୃଷ୍ଣଙ୍କ ଆଦେଶରେ ପାଦପଦ୍ମ ତେଜ
ସ୍ଥାନେ ସ୍ଥାନେ ଚଲେ ନିଜ ଗତିପଥ ନେଇ ।
ଏହିରୂପେ ଗଙ୍ଗାଙ୍କର ଜନମ କଥନ
କହିଲ ସକଳ ତୁମ୍ଭ ଅଗ୍ରତେ ଫେଇଣ ।
ଆଉ କିଛି ଶୁଣିବାକୁ ଯେବେ ଅଛି ଆଶ
ମୋହର ଅଗ୍ରତେ ତାହାକର ପରକାଶ ।
ଏହିରୂପେ ନାରାୟଣ କହିଣ ନାରଦେ
ମଉନ ହୋଇଲେ କ୍ଷେମ ବନ୍ଦେ ସେହି ପଦେ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଗଙ୍ଗାଦେବୀଙ୍କର ବୈକୁଣ୍ଠ ଗମନ ବୃତ୍ତାନ୍ତ ବର୍ଣ୍ଣନେ ନାମ ଦ୍ୱାଦଶୋଽଧ୍ୟାୟଃ ।**

---

## ତ୍ରୟୋଦଶ ଅଧ୍ୟାୟ

## ଗଙ୍ଗାଙ୍କର ବିବାହ ବିଷୟ ବର୍ଣ୍ଣନ

ଏଥୁଅନ୍ତେ ଯାହାହେଲା ଶୁଣ ମନଦେଇ
ହରଷ ହୋଇ ନାରଦ ଋଷି କୁଳସାଇଁ ।
ବୋଇଲେ ନାରାୟଣଙ୍କ ମୁଖ ଚାହିଁ ହସି
ଆହେ ଦେବ ତୁମ୍ଭ କଥା ଶୁଣି ହେଲି ତୋଷୀ ।
ଏବେ ଆଉ କଥାଟିଏ ପଚାରୁଛି ମୁହିଁ
କହିବା ହେଉନ୍ତୁ ତାହା ବାରେ ଦୟା କରି ।
ଲକ୍ଷ୍ମୀ ସରସ୍ୱତୀ ଗଙ୍ଗା ତୁଳସୀ ଏପରି
ଚାରିହେଁ ଅଟନ୍ତି ନାରାୟଣଙ୍କର ସ୍ତ୍ରୀ ।
ଏରୂପେ ଆପଣ ଯାହା କହିବା ହୋଇଲେ
ବିପଦ ଭାବରେ ମୁହିଁ ଶୁଣିନାହିଁ ଭଲେ ।
କେବଳ ତୁଳସୀ ଲକ୍ଷ୍ମୀ ସରସ୍ୱତୀ ଏହି
ତିନିହେଁ ଅଟନ୍ତି ବିଷ୍ଣୁଙ୍କର ମହାଦେଈ ।
ଗଙ୍ଗାଦେବୀ ମାତ୍ର ବଇକୁଣ୍ଠ ପୁରେ ଗଲେ
କିରୂପେ ନାରାୟଣଙ୍କ ପତ୍ନୀ ସେ ହୋଇଲେ ।
ଏକଥା ଉତ୍ତମରୂପେ ଜଣାନାହିଁ ମୋତେ
ବୁଝାଇ କହିବା ହେଉ ଆହେ ମହାମତେ ।

ଶୁଣି ନାରାୟଣ ତାଙ୍କୁ କହିଲେ ବୁଝାଇ
ଯାହା ପୁଚ୍ଛାକଲ ତୁମ୍ଭେ ଶୁଣ ମନ ଦେଇ ।
ଶ୍ରୀକୃଷ୍ଣ ଆଜ୍ଞାରେ ଗଙ୍ଗା ବୈକୁଣ୍ଠକୁ ଗଲେ
ନାରାୟଣଙ୍କ ସମ୍ମୁଖରେ ପ୍ରବେଶ ହୋଇଲେ ।
ତାଙ୍କ ପଛେ ପଛେ ବ୍ରହ୍ମା ଯାଇ ସେହିକ୍ଷଣି
ମିଳିଲେ ଅଛନ୍ତି ଯହିଁ ପ୍ରଭୁ ଚକ୍ରପାଣି ।
ଗଙ୍ଗାଙ୍କ ସହିତେ କରି ତାହାଙ୍କୁ ପ୍ରଣାମ
କହିଲେ ଶୁଣାଇ ଆଗ ଆପଣାର ନାମ ।
ବୋଇଲେ ଭୋ ଦେବ ଶୁଣ ମୋହର ବଚନ
ଯହିଁଲା ଆସିଛି ମୁହିଁ ତୁମ୍ଭ ସନ୍ନିଧାନ ।
ସେ କଥା ଆମୂଳ କରି ଶୁଣ ଦେବଗଣ
ଦ୍ରବରୂପେ ରାଧାକୃଷ୍ଣ ଅଙ୍ଗରୁ ପ୍ରକାଶ ।
ହୋଇଲେ ଯେ ଗଙ୍ଗାଦେବୀ ଜନ୍ମ ତାହାଙ୍କର
ଅଧିଷ୍ଠାତ୍ରୀ ରୂପେ ହୋଇଛନ୍ତି ଏ ନୀରର ।
ନବ ଯଉବନବତୀ ସୁଶୀଳା ସୁନ୍ଦରୀ
ଶୁଦ୍ଧ ସତ୍ତ୍ୱସ୍ୱରୂପିଣୀ ଅଟନ୍ତି ସେପରି ।

ତାହାଙ୍କ ଦେହରୁ ହୋଇଅଛନ୍ତି ଏ ଜାତ
ତାଙ୍କ ବିନା ଆନେ ନାହିଁ ଏହାଙ୍କର ଶକ୍ତ ।
କିନ୍ତୁ ତାହାଙ୍କର ପାଶେ ମାନିନୀ ରାଧିକା
ଅଛନ୍ତି ସେ ଇଚ୍ଛାକରି ଭକ୍ଷିବାକୁ ଏକା ।
ସେଠାରେ ଏହାକୁ ଦେଖି କ୍ରୋଧଭରେ ହୋଇ
ଗୋଡ଼ାଇଲେ ପାନକରି ଶୁଖାଇବା ପାଇଁ ।
ସେ ସମୟେ ବୁଦ୍ଧି କଲେ ଏ ଚତୁରମଣି
ଶରଣ ପଶିଲେ ଶ୍ରୀକୃଷ୍ଣଙ୍କ ପାଦେ ଜାଣି ।
ସେକ୍ଷଣି ସମସ୍ତ ଜଳ ଶୁଷ୍କ ହୋଇଗଲା
ପଙ୍କ ବିନା କେଉଁଠାରେ ଜଳେ ନ ରହିଲା ।
ତାହା ଦେଖିକରି ମୂର୍ତ୍ତି ଗୋଲୋକରେ ଯାଇ
ପ୍ରବେଶ ହେଲି ଦେବଙ୍କୁ ସଙ୍ଗତରେ ନେଇ ।
ସମସ୍ତେ ମିଳିତ ହୋଇ ସ୍ତୁତିକଲୁଁ ବସି
ତହିଁରେ ସନ୍ତୁଷ୍ଟ ହେଲେ ପ୍ରଭୁ ବ୍ରହ୍ମରାଶି ।
ପାଦ ଅଙ୍ଗୁଷ୍ଠି କୋଣରୁ ଗଙ୍ଗାଙ୍କୁ ବାହାର
କଲେ ସେହିକାଳେ ଆହେ ଶଙ୍ଖ ଚକ୍ରଧର ।
ରାଧିକା ଦେବୀଙ୍କୁ ମୂର୍ତ୍ତି କରାଇ ପ୍ରସନ୍ନ
ଗଙ୍ଗାଦେବୀଙ୍କୁ ତାଙ୍କର ମନ୍ତ୍ର କଲି ଦାନ ।
ଗଙ୍ଗାଙ୍କ ହସ୍ତରେ ତହିଁ ପୂଜା କରାଇଲି
ସକଳ ଲୋକଙ୍କୁ ଜଳେ ଆଚ୍ଛାଦିତ କଲି ।
ଏବେ ସେ ଗଙ୍ଗାଙ୍କୁ ଘେନ ଆପଣଙ୍କ ପାଶେ
ଆସିଅଛୁ ଆହେ ଦେବ ସମର୍ପିବା ଆଶେ ।
ଗନ୍ଧର୍ବ ବିଧି ପ୍ରକାରେ ଏହାଙ୍କର ହସ୍ତ
ଗ୍ରହଣ କରିବା ହେଉ ପ୍ରଭୁ ଜଗନ୍ନାଥ ।
ଆପଣ ରସିକ ଗଣଙ୍କର ଅଧିପତି
ରମଣୀଙ୍କ ରସବନ୍ତୀ ଏ ଦେବୀ ଅଟନ୍ତି ।
ସୁର ଗଣଙ୍କର ରତ୍ନ ଅଟନ୍ତି ଆପଣ
ଏହି ଗଙ୍ଗାଦେବୀ ପୁଣି କାମିନୀରତନ ।
ଏ ସକାଶୁ ଆପଣଙ୍କ ସଙ୍ଗେ ଏହାଙ୍କର
ଦାମ୍ପତ୍ୟ ମିଳନ ହେବ ଅତି ମନୋହର ।
ଚତୁର ପୁରୁଷ ତୁଲେ ଚତୁରୀ ଅଙ୍ଗନା
ସଙ୍ଗମରେ ହୁଏ ଅତି ଚମତ୍କାର ସିନା ।
ଉପସ୍ଥିତ ହେବ ପାଶେ ଯେବଣ ନାୟିକା
ତାହାକୁ ସେ ତ୍ୟାଗକରେ ହୁଦେ ବଡ ବୋକା ।
ମହାଲକ୍ଷ୍ମୀ ତା କନ୍ଧରେ ନ ରହେ କିଞ୍ଚିତେ
ଅନ୍ତର ହୁଅନ୍ତି ସେହିକ୍ଷଣି ଇଚ୍ଛାମତେ ।

ମୂର୍ଖରେ ଗଣିତ ହୋଇଥାଏ ସେହିଁ ଜନ
ନ କରେ ସେ ଯୁବତୀଙ୍କୁ କେବେ ସମ୍ମାନ ।
ପ୍ରକୃତି ଦେବୀଙ୍କ ବଶ ସକଳ ପୁରୁଷ
କାମିନୀ ଅଟନ୍ତି ପୁଣି ପ୍ରକୃତିଙ୍କ ଅଂଶ ।
ସେ ଘେନି ପ୍ରକୃତି ଆଜ୍ଞ ପୁରୁଷର ସଙ୍ଗ
କେବଣ ଯୁଗରେ ହେଲେ ନ ହୁଅଇ ଭଙ୍ଗ ।
ପୁରୁଷୋତ୍ତମ ତୁମ୍ଭେ ପ୍ରକୃତିରୁ ପର
ଶ୍ରୀକୃଷ୍ଣଙ୍କ ଅର୍ଦ୍ଧଅଙ୍ଗ ଅଟ ସୁରେଶ୍ୱର ।
ବାମାଂଶରେ ଦ୍ୱିଭୁଜ ହୋଇଲେ ଶ୍ରୀହରି
ଦକ୍ଷିଣାଂଶେ ଚତୁର୍ଭୁଜ ତୁମ୍ଭେ ସେହିପରି ।
ପୁଣି ଶ୍ରୀକୃଷ୍ଣଙ୍କ ବାମ ଭାଗରୁ ରାଧିକା
ଜାତହେଲେ ରୂପ ଗୁଣ ଶୋଭାରେ ଅଧିକା ।
ଦକ୍ଷିଣ ଭାଗରୁ ଗଙ୍ଗା ହେଲେ ଜଗପତି
ସେପରି ଜନମିଥିଲେ ମହାଲକ୍ଷ୍ମୀ ସତୀ ।
ଆପଣ ଦକ୍ଷିଣ ଭାଗୁ ଜନମି ତ ଥିଲ
ଏଣୁ ଏହାଙ୍କର ପତି ହୋଇବାର ଭଲ ।
ପୂର୍ବ ସମ୍ବନ୍ଧରୁ ଏହି ରମଣୀରତନ
ଆପଣଙ୍କୁ ବରିବାକୁ କରିଛନ୍ତି ମନ ।
ପତି ପତ୍ନୀଙ୍କର ଆଗ ଏକ ସେ ଅଟଇ
ସେପରୂପେ ପ୍ରକୃତି ପୁରୁଷର ଭେଦ ନାହିଁ ।
ଏରୂପେ ବୁଝାଇ ତାଙ୍କୁ ଦେବ ଅଧୀଶ୍ୱର
ସମର୍ପିଲେ ତାଙ୍କ ହସ୍ତେ ଗଙ୍ଗାଙ୍କର କର ।
ଗାନ୍ଧର୍ବ-ବିଧି ପ୍ରକାରେ ବିବାହ କରାଇ
ଗଲେ ନିଜ ଭୁବନକୁ ଆନନ୍ଦିତ ହୋଇ ।
ଗଙ୍ଗାଙ୍କ ସୁନ୍ଦର ରୂପ ଦେଖି ନାରାୟଣ
ସହ୍ୟକରି ନ ପାରିଲେ ପଞ୍ଚଶର ବାଣ ।
ସେହିକ୍ଷଣି ଦିବ୍ୟଶଯ୍ୟା ବିରଚନ କଲେ
ସୁବାସ ଚନ୍ଦନ ପୁଷ୍ପ ତହିଁରେ ବିଞ୍ଚିଲେ ।
ନୂତନ ପ୍ରେୟସୀ ଗଙ୍ଗାଦେବୀଙ୍କୁ କୋଳରେ
ଶୁଆଇ ଶୟନ କଲେ ସୁରତ ଭୋଳରେ ।
ଏହିରୂପେ ଗଙ୍ଗାଦେବୀ ପୃଥିବୀକୁ ଯାଇ
ଶାପ ଅନ୍ତେ ନିଜ ସ୍ଥାନ ପାଇଲେକ ତହିଁ ।
ବିଷ୍ଣୁଙ୍କ ପାଦରୁ ଯହିଁ ବାହାର ହୋଇଲେ
ସେହିଠାରୁ ବିଷ୍ଣୁପଦୀ ନାମକୁ ପାଇଲେ ।
ରସିକ ଶେଖର ଦେବ ନାରାୟଣଙ୍କର
ନବସଙ୍ଗମରେ ଗଙ୍ଗା ହୋଇଲେ ଅଧୀର ।

ବଇକୁଣ୍ଠପୁରେ ମହାନନ୍ଦେ ବିହରିଲେ
ବହନ୍ତ ମନସୁ ଖେଳିଗଲ ତନପୁରେ ।
ସରସ୍ୱତୀ ଦେବୀ ବିଷ୍ଣୁଙ୍କର ପ୍ରିୟ ଅତି
ଲକ୍ଷ୍ମୀସହ ନାରାୟଣ ପାଦ ମଣାଇନ୍ତି ।
ଗଙ୍ଗଙ୍କ ପ୍ରତି ତାଙ୍କର ଈର୍ଷା ଜାତହେଲା
ବେଳକୁବେଳ ଅଧିକ ହୋଇ ସେ ବଢ଼ିଲା ।
ମାତ୍ର ଗଙ୍ଗାଦେବୀ କେବେ ତାହାଙ୍କ ବିଷୟେ
ହିଂସା ଦ୍ୱେଷ ନ ବହିଲେ ଆପଣା ହୃଦୟେ ।
ଏରୂପେ ବୈକୁଣ୍ଠ ପତି ଦେବ ଜଗନ୍ନାଥ
ଗଙ୍ଗା ଲକ୍ଷ୍ମୀ ବାଣୀଙ୍କର ହେଲେ ପ୍ରାଣନାଥ ।
ତୁଳସୀ ସଙ୍ଗତେ ପୁଣ ଭାରିଯା ହୋଇଲେ
ଦୀନ ହୀନ କ୍ଷେତ୍ରବାସୀ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଗଙ୍ଗାଙ୍କର ବିବାହ ବିଷୟ
ବର୍ଣ୍ଣନେ ନାମ ତ୍ରୟୋଦଶୋଽଧ୍ୟାୟଃ ।

—*—

# ଚତୁର୍ଦ୍ଦଶ ଅଧ୍ୟାୟ

## ତୁଳସୀଙ୍କ ସମ୍ବନ୍ଧରେ ନାରାୟଣ ଓ ନାରଦଙ୍କର କଥୋପକଥନ

ଶୁଣ ଆହେ ସାଧୁଜନେ ଅପୂର୍ବ କଥନ
ଗଙ୍ଗାଙ୍କ ବିବାହ ଶୁଣି ଧାତାଙ୍କ ନନ୍ଦନ ।
ନାରାୟଣଙ୍କୁ ଅନ୍ତରେ କରିଣ ଭକତି
ପୁଣି ପୃଚ୍ଛାକଲେ ସେହୁ ହୋଇ ତୋଷମତି ।
ବୋଇଲେ ହେ ଭବିଷ୍ୟତ ବକ୍ତା ନାରାୟଣ
ଗଙ୍ଗାଙ୍କ ବିବାହ ଗାଥା କର୍ଣ୍ଣରେ ଶୁଣିଣ ।
ଅପାର ଆନନ୍ଦ ଜାତହୋଇଲା ମନର
ଏବେ ତୁଳସୀ ଚରିତ କୁହନ୍ତୁ ସତ୍ୱର ।
କେବଣ ଠାବରେ ସେହୁ ହୋଇଲେକ ଜାତ
ନାରାୟଣଙ୍କ ବାଲ୍ଲଭୀ ହୋଇଲେ କେମନ୍ତ ।
ପୂର୍ବ ଜନମରେ କେଉଁ ରୂପ ହୋଇଥିଲେ
କେଉଁ ତପ କରି ବିଷ୍ଣୁ ସଙ୍ଗଲାଭ କଲେ
ଯେଉଁ ନାରାୟଣ ନିର୍ବିକଳ୍ପ ନିରାକାର
ସକଳ ଲୋକର ସାକ୍ଷୀ ଭୁବନଈଶ୍ୱର ।
ପରଂବ୍ରହ୍ମ ପରାତ୍ପର ପରମପୁରୁଷ
ସର୍ବାଧାର ସର୍ବଜ୍ଞାନୀ ସର୍ବ ଲୋକଈଶ ।
ତାହାଙ୍କର ପ୍ରିୟବତୀ ଯେବଣ ତୁଳସୀ
ସେ କପରି ବୃକ୍ଷରୂପ ହେଲେ ପୁଣି ଆସି ।
ଅସୁର ତାହାଙ୍କୁ କିମ୍ପା କଲା କବଳିତ
ଏଥିରେ ସନ୍ଦେହ ମୋତେ ଲାଗୁଛି ବହୁତ ।
ଆପଣ ପ୍ରକୃତ ତତ୍ତ୍ୱକଥା କହ ଏବେ
ନିଃଶେଷରେ ତାହା ବୁଝି କରାଇବା ହେବେ ।
ଏମନ୍ତ ବଚନ ଶୁଣି ନାରାୟଣ ମୁନି
କହି ଆରମ୍ଭିଲେ ସେ ତ ସର୍ବତତ୍ତ୍ୱଜ୍ଞାନୀ ।
ବୋଇଲେ ନାରଦ ଶୁଣ ମନ ଦେଇକରି
କହିବି ତୁଳସୀଙ୍କର ଚରିତ ବିସ୍ତାରି ।
ପୂର୍ବକାଳେ ପୁଣ୍ୟବନ୍ତ ବୈଷ୍ଣବଅଗ୍ରଣୀ
ଜାତହେଲେ ମନୁ ନାମେ ସେ ଦକ୍ଷସାବର୍ଣ୍ଣି ।
ପରମାତ୍ମାଙ୍କର ବିଷ୍ଣୁଅଂଶରେ ଉତ୍ପତ୍ତି
ହୋଇଥିଲେ ଅଧିକ ସେ ଯଶଗୁଣେ ଅତି ।
ତାଙ୍କ ସୁତ ନାମ ଧର୍ମ ସାବର୍ଣ୍ଣି ହୋଇଲା
ତାହାଙ୍କ ସମାନ ବଇଷ୍ଣବ କେ ନ ଥିଲା ।
ସେ ଧର୍ମ ସାବର୍ଣ୍ଣିଠାରୁ ହେଲେ ଯେଉଁ ସୁତ
ବିଷ୍ଣୁସାବର୍ଣ୍ଣି ତାଙ୍କର ନାମ ହେଲା ଖ୍ୟାତ ।
ତାହାଙ୍କ ତନୟ ଦେବ ସାବର୍ଣ୍ଣି ହୋଇଲେ
ସକଳ ଗୁଣରେ ସେହୁପରି ପୂର୍ଣ୍ଣ ଥିଲେ ।
ରାଜସାବର୍ଣ୍ଣି ଅଟଇ ତାଙ୍କ ପୁତ୍ର ନାମ
ଯୋଗ୍ୟ ଲୋକଙ୍କ ମଧ୍ୟରେ ସେ ଅତି ଉତ୍ତମ ।
ତାଙ୍କ ସୁତ ବୃଷଧ୍ୱଜ ବୃଷଧ୍ୱଜ ପ୍ରିୟ
ସକଳ ଶାସ୍ତ୍ର ନିପୁଣ ତୈଲୋକ୍ୟ ଅଜୟ ।
ତାହାଙ୍କ ଗୁଣରେ ତୋଷ ହୋଇ ସଦାଶିବ
ତିନିକୋଟି ଦୈବଯୁଗ ପାଶେ କଲେ ଠାବ ।
ପୁତ୍ରରୁ ଅଧିକ ସ୍ନେହକରି ତାଙ୍କଠାରେ
ବଶ ହୋଇଥାନ୍ତି ତାଙ୍କ ସେବା ଭକତିରେ ।

ନାରାୟଣ ମହାଲକ୍ଷ୍ମୀ ସର୍ବସ୍ୱଗ୍ରସ୍ତ ହୁଟଲେ
ଅନ୍ୟ ଦେବତାଙ୍କୁ ମନୁ ଗଣନା ନ କଲେ ।
ଭାଦ୍ରମାସେ ମହାଲକ୍ଷ୍ମୀ ପୂଜା ତ୍ୟାଗକରି
ମାଘେ ହରସ୍ୱଗ୍ରସ୍ତ ପୂଜା ଛାଡ଼ିଲେ ସେପରି ।
ଯାଗ ଶ୍ରାଦ୍ଧଆଦି ସର୍ବକର୍ମ ନିନ୍ଦା କଲେ
ବିଷ୍ଣୁଙ୍କୁ ଦେବତା ବୋଲି ନ ମାନିଲେ ଭଲେ
ଏହିପରି ଆଉ କେଉଁ ଦେବତାଙ୍କୁ ପୂଜା
କରିବାରେ ବଳାଇଲେ ନାହିଁ ନିଜ ମନ୍ସା ।
ମହାଦେବଙ୍କ ଉପରେ କେବଣ ଦେବତା
ଅମାନ୍ୟ କଲେ ସେ ତାଙ୍କୁ ନ କହିଲେ କଥା ।
ମାତ୍ର ଦିବାକର ତାହା ସହି ନ ପାରିଲେ
ଲକ୍ଷ୍ମୀଚ୍ୟୁତ ହୁଅ ତୁମ୍ଭେ ବୋଲି ଶାପ ଦେଲେ
ତାହା ଜାଣି ମହାଦେବ କରେ ଶୂଳଘେନି
ଗଲେ ମାରିବାକୁ ଯହିଁ ଥିଲେ ଦିନମଣି ।
ସୂର୍ଯ୍ୟ ତାହା ଦେଖି ମହାଭୟରେ ପଳାଇ
ଶରଣ ପଶିଲେ ବ୍ରହ୍ମାଙ୍କର ପାଦେ ଯାଇ ।
ତାଙ୍କ ପଛେ ପଛେ ଶିବ ବ୍ରହ୍ମଲୋକେ ଗଲେ
ବିଧାତାଙ୍କ ମାନସରେ ଭୟ ଥୁଆଇଲେ ।
ସୂର୍ଯ୍ୟଙ୍କୁ ଚଳାଇ ଆଗେ ଚତୁର୍ଦ୍ଦ ଦେବବର
ବୈକୁଣ୍ଠେ ପ୍ରବେଶ ହେଲେ ହୋଇ ଚରଚର ।
କଶ୍ୟପ ଅଟନ୍ତି ଯେଣୁ ସୂର୍ଯ୍ୟଙ୍କର ପିତା
ଗଲେ ପୁତ୍ର ସଙ୍ଗତରେ ମନେ କରି ଚିନ୍ତା ।
ଶୂଳହସ୍ତ ହୋଇ ଶିବ ପଛରେ ତାଙ୍କର
ଗୋଡ଼ାଇ ଧାଇଁଲେ ପୁଣି ହୋଇ କ୍ରୋଧଭର ।
ସେ ସକାଶୁ ସେ ତିନିହେଁ ବେଗେ ପଳାଇଲେ
ନାରାୟଣଙ୍କ ଚରଣେ ଶରଣ ପଶିଲେ ।
ଶିରେ କର ଯୋଡ଼ି ନାନା ପ୍ରକାରରେ ସ୍ତୁତି
କଲେ ଯେ ଯାହାର ମନେ ପ୍ରକାଶି ଭକତି ।
ଜଣାଇଲେ ପୁଣି ତାଙ୍କୁ ଭୟର କାରଣ
ବୋଇଲେ ଆମ୍ଭଙ୍କୁ ରକ୍ଷା କର ନାରାୟଣ ।
ସେମାନଙ୍କ ଭୟ ଦେଖି ପ୍ରଭୁ ଚକ୍ରପାଣି
ଅଭୟ ବର ପ୍ରଦାନ କଲେ ସେହିକ୍ଷଣି ।
ବୋଇଲେ ସମସ୍ତେ ଏବେ ବସ ହୋଇ ସ୍ଥିର
ମୁହିଁ ଥାଉଁ ଥାଉଁ ଭୟ କି ଅଛି ତୁମ୍ଭର ।
ବିପଦରେ ପଡ଼ି ଯେହୁ ସୁମରନ୍ତି ମୋତେ
ତାଙ୍କ ବିପଦ ଖଣ୍ଡନ କରେ ମୁଁ ନିଶ୍ଚିତେ ।
ଆମ୍ଭେ ଦେବଗଣ ମୁହିଁ ଜଗତ କରତା
ସକଳ ପ୍ରାଣୀଙ୍କର ହେ ଅଟେ ପିତାମାତା ।
ବ୍ରହ୍ମାରୂପେ ସରଜନା କରେ ତ୍ରିଭୁବନ
ସଂହାର କରଇ ରୁଦ୍ର ରୂପରେଟି ଜାଣ ।
ମୁହିଁ ଅଟେ ଶିବ ବ୍ରହ୍ମା ସୂର୍ଯ୍ୟ ନାରାୟଣ
ମୋ ହାତରେ ଲୀନ ହୋଇ ଅଛଇ ତ୍ରିଗୁଣ ।
ତୁମ୍ଭେମାନେ ରହ ଏବେ ଭୟ ଛାଡ଼ିକରି
ମୁହିଁ ରକ୍ଷା କଲେ କି କରିବେ ତ୍ରିପୁରାରି ।
ଆଜିଠାରୁ ଆମ୍ଭ ବଡେ ଶଙ୍କରଙ୍କଠାରୁ
ବିପଦ ହୋଇବା ଶଙ୍କା ଛାଡ଼ ହେ ମନରୁ ।
ଅଟନ୍ତି ସେ ସଦାଶିବ ଭକତବତ୍ସଳ
ଆବର ସନ୍ତୁଷ୍ଟ ଚିତ୍ତ ଧୀର ଶାନ୍ତଶୀଳ ।
ସୁଦର୍ଶନ ମହାଦେବ ଏ ଦୁଇ ପଦାର୍ଥ
ମୋହର ଅତ୍ୟନ୍ତ ପ୍ରିୟ ଜାଣ ଏ ଯଥାର୍ଥ ।
ଏ ଦୁହିଙ୍କଠାରୁ ବଳି ତେଜୋବନ୍ତ ହୋଇ
ବ୍ରହ୍ମାଣ୍ଡ ମଧ୍ୟରେ ଆଉ ଦ୍ରବ୍ୟ କିଛି ନାହିଁ ।
କୋଟିଏ ବିଧାତା କୋଟି କୋଟି ଦିବାକର
ସରଜି ପାରନ୍ତି କ୍ଷଣମାତ୍ରକରେ ହର ।
ଏ ପ୍ରକାଶୁ ଶିବଙ୍କର ଅସାଧ୍ୟ ଜଗତେ
କିଛି ଥିବା ପରି ଦୃଶ୍ୟ ହେଉ ନାହିଁ ମୋତେ ।
ସର୍ବଦା ମୋହର ନାମ ଧ୍ୟାନ କରୁଥାନ୍ତି
ପଞ୍ଚମୁଖେ ପୁଣି ଗୁଣ କରନ୍ତି ଗାୟନ ।
ଦିନରାତି ବସି ମୁହିଁ ତାଙ୍କର କଲ୍ୟାଣ
ଚିନ୍ତା କରୁଥାଏ ଆମ୍ଭେ ପ୍ରଜାପତି ଜାଣ ।
ସେ ଯେଉଁ ପ୍ରକାରେ ମୋତେ ଭକତି କରଇ
ସେହି ଅନୁରୂପେ ତାକୁ ଫଳ ମୁଁ ଦିଅଇ
ସେ ଦେବ ଅଟନ୍ତି ସର୍ବଦେଳେ ଶିବମୟ
ମଙ୍ଗଳ ହୁଅଇ ତାଙ୍କ ପ୍ରକାଶୁ ଉଦୟ ।
ଏ ହେତୁ ତାହାଙ୍କୁ ଶିବ ବୋଲନ୍ତି ସମସ୍ତେ
ଅସାଧ୍ୟ ସାଧ୍ୟ ହୁଅଇ ତାହାଙ୍କର ହସ୍ତେ ।
ଏରୂପେ ସେମାନେ ତହିଁ କଥା ହେଉଥିଲେ
ଶଙ୍କର ସେଠାରେ ଯାଇ ପ୍ରବେଶ ହୋଇଲେ ।
ବୃଷଭ ପୃଷ୍ଠରେ କରିଅଛନ୍ତି ବିଜୟେ
ଶୂଳହସ୍ତେ ଦେଖାଯାନ୍ତି ଅନ୍ତକ ପରାୟେ ।
ନାରାୟଣଙ୍କୁ ଦେଖିଣ ଶିବ ବୃଷଭରୁ
ଓହ୍ଲାଇ ମସ୍ତକେ କରଯୋଡ଼ି ଖଣ୍ଡେ ଦୂରୁ ।

ନମିଲେ ଭକତ ଭାବେ ଯାଇ ତାଙ୍କ ପାଶେ
ତାହା ଦେଖି ନାରାୟଣ ଅତ୍ୟନ୍ତ ହରଷେ ।
ସସ୍ମିତ ବଦନେ ତାଙ୍କ ମୁଖକୁ ଚାହିଁଲେ
ଶିବ ମଧ୍ୟ ମନେ ମନେ ଆନନ୍ଦିତ ହେଲେ ।
ଦେଖିଲେ ରତ୍ନଆସନେ ବସିଛନ୍ତି ଶ୍ରୀପତି
ନାନାବିଧ ଅଳଙ୍କାରେ ମଣ୍ଡି ହୋଇଛନ୍ତି ।
କଣ୍ଠି କୁଣ୍ଡଳ ବନମାଳା ବିରାଜିତ
ନବୀନ ନୀରଦ କାନ୍ତି ଅତ୍ୟନ୍ତ ଶୋଭିତ ।
ଆଜାନୁଲମ୍ବିତ ଚାରିଭୁଜ ଅତି ଶୋଭା
ଶରୀର ଧରଇ ଜିଣି କୋଟି କାମ ପ୍ରଭା ।
ଚତୁର୍ଭୁଜ ପାରିଷଦଗଣରେ ବେଷ୍ଟିତ
ସକଳ ଅଙ୍ଗରେ ଶ୍ୱେତ ଚନ୍ଦନ ଲେପିତ ।
ସୁନ୍ଦର ପୀତବସନ କଟିଦେଶେ ସାଜେ
ତାମ୍ବୁଳ ରକ୍ତିମା ମୁଖପଙ୍କଜେ ବିରାଜେ ।
ବିଦ୍ୟାଧରୀ ଅପସରୀ ନୃତ୍ୟ ଗୀତ ରସେ
ମନ ଭେଟୁଛନ୍ତି ଅତି ଆନନ୍ଦ ମାନସେ ।
ଏରୂପର ପରମାତ୍ମା ଈଶ୍ୱରଙ୍କୁ ଦେଖି
ନମସ୍କାର କଲେ ଶିବ ହୋଇ ଅତିସୁଖୀ ।
ସୂର୍ଯ୍ୟ ସେ ସମୟେ ଶିବଙ୍କର ପାଦ ଧରି
ନମସ୍କାର କଲେ ଭୟେ ବ୍ୟସ୍ତ ହୋଇକରି ।
କଶ୍ୟପ ସେରୂପେ ଆସି ପ୍ରଣାମ କରିଲେ
ସେ ଅନ୍ତରେ ନାନାସ୍ତୁତି ପଠନ ସେ କଲେ ।
ସ୍ତୁତିକରି ନାରାୟଣ ଦେବଙ୍କୁ ଶଙ୍କର
ବସିଲେ ଦିବ୍ୟଆସନେ ତାହାଙ୍କ ପାଶର ।
ତାହା ଦେଖି ବିଷ୍ଣୁପାରିଷଦଗଣ ଯାଇ
ବଞ୍ଚିଲେ ଶ୍ୱେତ ଚାମର ଆଲଟ ପକାଇ ।
ପ୍ରସନ୍ନ ମନରେ ଦେବ ପାର୍ବତୀବଲ୍ଲଭ
ନାରାୟଣଙ୍କର ସ୍ତୁତି କଲେ ବହୁ ଭାବ ।
ତାହାଙ୍କୁ ଶ୍ରୀନାରାୟଣ କୋମଳ ବଚନେ
ପଚାରିଲେ କଉତୁକ ରସଯୋଗ ମନେ ।
ସେ ବଚନ ସୁଧାରସ ସମାନ ମଧୁର
ହେବାରୁ କର୍ଣ୍ଣପଥରେ ହେଲା ସୁଧାକର ।
ବୋଇଲେ ହେ ମହାଦେବ ଦେବଗଣ ଈଶ
ଆପଣ ଅଟନ୍ତି ଶିବଲୋକର ନିବାସ ।
ସକଳ ମଙ୍ଗଳଦାତା ଅଟ ଦେବବର
ଉପହାସ କଥା ଶୁଭ ପୁଛିଲେ ତୁମ୍ଭର ।

ତପସ୍ୟା ସମ୍ପାଦକର୍ତ୍ତା ହୋଇବାରୁ ତୁମ୍ଭେ
ସମ୍ପଦ ବିଷୟେ କିଛି ନ ପଚାରୁ ଆମ୍ଭେ ।
ସର୍ବଜ୍ଞ ତ ଅଟ ପୁଣି ଜ୍ଞାନ ଅଧୀଶ୍ୱର
ଏଣୁ ଜ୍ଞାନ ପୁଚ୍ଛିବାର ଅଯୁକ୍ତ ବେଭାର ।
ବିପଦ ନାଶକ ଯେଣୁ ଅଟ ତୁମ୍ଭ ବାନା
ସେ ସମ୍ବନ୍ଧେ ପଚାରିବା ହାସ୍ୟକଥା ସିନା ।
କାହିଁକି ଆସିଲ ବୋଲି ପଚାରିବା ବୃଥା
ଯେଣୁ ଏ ତୁମ୍ଭ ଆଶ୍ରମ ଅଟଇ ସର୍ବଥା ।
କିନ୍ତୁ ଦେଖୁଅଛୁ ଯହିଁ ସନ୍ଦେହ ବିଶେଷ
ସେ କଥା ପୁଚ୍ଛିବାପାଇଁ ବଳୁଛି ମାନସ ।
କାହିଁପାଇଁ ଆଜ ଏତେ ଉଦବେଗ ହୋଇ
ଆସିନ୍ତ ଏଠାକୁ ତାହା କହ ତୋଷବନ୍ତି ।
ତାହା ଶୁଣି ମହାଦେବ କରନ୍ତି ଉତ୍ତର
ଶୁଣିବା ହେଉ ଉଦ୍‌ବେଗ କାରଣ ମୋହର ।
ବୃଷଧ୍ୱଜ ଅଟନ୍ତି ମୋ ପରମ ଭକତ
ପ୍ରାଣରୁ ଅଧିକ ତାଙ୍କୁ ମଣେ ମୋର ଚିତ୍ତ ।
ଜାଣି ଜାଣି ସୂର୍ଯ୍ୟ ତାଙ୍କୁ ଦେଲେ ଘୋରଶାପ
ଏ ଯେଣୁ କ୍ରୋଧରେ ମୋର ଜ୍ଞାନ ହେଲା ଲୋପ
ପୁତ୍ରବାତ୍ସଲ୍ୟ ଶୋକରେ ଅଧୀର ମୁଁ ହୋଇ
ସୂର୍ଯ୍ୟଙ୍କୁ ମାରିବାପାଇଁ ଆସିଲି ଗୋଡ଼ାଇ ।
ବ୍ରହ୍ମାଙ୍କ ପାଶରେ ଯାଇ ଶରଣ ପଶିଲେ
ସେହୁ ତାଙ୍କୁ ରଖିବାକୁ ସମର୍ଥ ନୋହିଲେ ।
ସଙ୍ଗତରେ ଧରି ପ୍ରବେଶିଲେ ତୁମ୍ଭ ପାଶେ
ପଶିଲେ ଶରଣ ପ୍ରାଣ ରଖିବାର ଆଶେ ।
ତୁମ୍ଭେ ଅଟ ଦୀନଜନ ଶରଣ ରକ୍ଷଣ
ତୁମ୍ଭ ପଦ ଆଶ୍ରେକଲେ ତରେ ଜନ୍ତୁଗଣ ।
ଅନଳ ଅନିଳ ଜଳ ଆକାଶ ସେ ବାତ
ତୁମ୍ଭ ଆଶ୍ରିତକୁ ଭୟ କରନ୍ତି ସମସ୍ତ ।
ଯେଉଁମାନେ ଧ୍ୟାନରେ ବା ମନ ବଚନରେ
ଶରଣ ପଶନ୍ତି ତୁମ୍ଭ ପଦପଙ୍କଜରେ ।
ନିରାପଦ ହୋଇ ସବୁକାଳେ ସେ ରହନ୍ତି
ଆଉର ଜରା ମରଣ ଶୋକ ନ ପାଆନ୍ତି ।
ସାକ୍ଷାତେ ଶରଣ ସେବା ହେବେ ତାହାଙ୍କର
ମଙ୍ଗଳ ହୋଇବା କଥା କେତେକ ମାତର ।
ତୁମ୍ଭ ସ୍ମରଣରେ ସର୍ବଭୟ ହୁଏ ନାଶ
ଏ କଥା ଜାଣଇ ମୁହିଁ ଆହେ ଦେବଈଶ ।

ଏବେ ବୋଲୁଅଛୁ ମୋର ଭକ୍ତର କି ଗତି
ହୋଇବ ବଚନ ଯୋଗେ କହ ଶିବପତି ।
ବଦଶ୍ରୀ ତୁଅ ଭୁ ବୋଲି ସୂର୍ଯ୍ୟ ଶାପଦେଲେ
ନିବାରଣ ହେବ ତାହା କି ଉପାୟ କଲେ ।
କହ ମୋର ଆଗେ ତାହା ଆହେ ରମାବର
ଶୁଣିଲେ ସଂଶୟ ମନୁ ହୋଇଯିବ ଦୂର ।
ଏହିରୂପେ ଶିବଙ୍କର ବଚନକୁ ଶୁଣି
ହସିଣ କହିଲେ ତାଙ୍କୁ ଶଙ୍ଖ ଚକ୍ରପାଣି ।
ବୋଇଲେ ହେ ମହାଦେବ ଶୁଣ ମୋ ବଚନ
ବୈକୁଣ୍ଠରେ ତତ୍ତ୍ୱେ ତୁମ୍ଭେ କର ଅବସ୍ଥାନ ।
ଏହି ସମୟରେ ଲୋକେ ଏକବିଂଶ ଯୁଗ
କାଳଗତି ଅନୁସାରେ ହୋଇଲେଣି ଭୋଗ ।
କାଳବଶେ ବୃଷଧ୍ୱଜ ଦେହତ୍ୟାଗ କଲେ
ହଂସଧ୍ୱଜ ନାମେ ତାଙ୍କ ପୁତ୍ର ହୋଇଥିଲେ ।
ସେ ମଧ୍ୟ ପିତାଙ୍କ ପର ହତଲକ୍ଷ୍ମୀ ହୋଇ
ମରଣ ପାଇଲେ କାଳ ଅଧୀନରେ ରହି ।
ତାହାଙ୍କର ଦୁଇପୁତ୍ର ପରମ ବୈଷ୍ଣବ
ରଖି ଅଛନ୍ତି ସେ ବିଷ୍ଣୁ ପାଦେ ଭକ୍ତିଭାବ ।
ଧର୍ମଧ୍ୱଜ କୁଶଧ୍ୱଜ ସେ ଦୁହିଙ୍କ ନାମ
ଦୟା କ୍ଷମାଗୁଣେ ତାଙ୍କ କେହି ନାହିଁ ସମ ।
ସୂର୍ଯ୍ୟଙ୍କର ଶାପଯୋଗେ ରାଜ୍ୟ ଧନ ଭ୍ରଷ୍ଟ
ହେବାରୁ ସେ ବନେ ରହି ପାଉଛନ୍ତି କଷ୍ଟ ।

ଲକ୍ଷ୍ମୀଙ୍କର ଆରାଧନା କରି ପ୍ରତିଦିନ
କଠୋର ତପରେ ସେହୁ ଦେଇଛନ୍ତି ମନ ।
ଅନନ୍ତରେ ପ୍ରବଳ ଅନ୍ତରେ ବେନି ଭାଇଙ୍କର
ଭାର୍ଯ୍ୟାଙ୍କ ଗର୍ଭେ ମହାଲକ୍ଷ୍ମୀ ଯେ ସତ୍ୱର ।
କଳାଂଶେ କନ୍ୟାରୂପେ ଜନମ ହୋଇବେ
ଏଥିରେ ସଂଶୟ ଆଉ ନାହିଁ ଜାଣ ଲବେ ।
ସେତେବେଳେ ଦୁହିଙ୍କର ଅଚଳ ସମ୍ପତ୍ତି
ହୋଇବ ଆବର ସେହୁ ହେବେ ନରପତି ।
ଏ ମହାତ୍ମ୍ୟ ବୋଲୁଅଛୁ ଯାଅ ନିଜ ସ୍ଥାନେ
ଭକ୍ତ ସମ୍ବନ୍ଧରେ କିଛି ନ ଭାବର ମନେ ।
ଯେତେ ଦୁଃଖକଷ୍ଟ ଭୋଗ ଭାଗ୍ୟ ତାଙ୍କ ଥିଲା
ଏତେକାଳ ମଧ୍ୟ ତାହା ପୂରଣ ହୋଇଲା ।
ଆହେ ସୁରଗଣ ତୁମ୍ଭେମାନେ ମଧ୍ୟ ଯାଅ
ମୋହର କହିବା କଥା ମନେ ରଖିଥାଅ ।
ଏହିଭାବେ କହି ବିଷ୍ଣୁ ଅନ୍ତଃପୁରେ ଗଲେ
ବ୍ରହ୍ମାଶିବଆଦି ଯେତେ ଆସ୍ଥାନେ ଫେରିଲେ ।
ସେ ଅନ୍ତରେ ମହାଦେବ ଘୋରବନେ ଗଲେ
ଯୋଗାରୂଢ଼ ହୋଇ ସୁଖେ ତପ ଆଚରିଲେ ।
ସ୍ନେହମୋହନ ତାହାଙ୍କ ପାଦେ ଦେଇ ମନ
ଗୀତରେ ଲେଖଇ ବ୍ରହ୍ମବୈବର୍ତ୍ତ ପୁରାଣ ।
ଶୁଣି ଏହି ଗ୍ରନ୍ଥ ସର୍ବେ ପାପ କର ଦୂର
ଶୋକ ଦୁଃଖ ବିନାଶନ ହୋଇବ ସତ୍ୱର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ତୁଳସୀଙ୍କ ସମ୍ବନ୍ଧରେ ନାରାୟଣ ଓ
ନାରଦଙ୍କର କଥୋପକଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

—— * ——

## ପଞ୍ଚଦଶ ଅଧ୍ୟାୟ

## ବେଦବତୀ ଓ ସୀତା ପ୍ରଭୃତିଙ୍କର ବୃତ୍ତାନ୍ତ ବର୍ଣ୍ଣନ

ଏଥୁଅନ୍ତେ ଯାହାହେଲା ଶୁଣ ଦେଇ ମତି
ନାରଦ ଅଗ୍ରତେ ନାରାୟଣ ବଖାଣନ୍ତି ।
ଧର୍ମଧ୍ୱଜ କୁଶଧ୍ୱଜ ଦୁହେଁ ଏକମନେ
କମଳାଙ୍କୁ ଆରାଧନା କଲେ ତପୋବନେ ।
କେତେକାଳ ଅନ୍ତେ ଲକ୍ଷ୍ମୀ ହୋଇ ପରସନ୍ନ
ଇଚ୍ଛା ଅନୁରୂପେ ତାଙ୍କୁ କଲେ ବରଦାନ ।

ତହୁଁ ସେ ହୋଇଲେ ଲୋକ ଶ୍ରେଷ୍ଠ ନରପତି
ଭୋଗ କଲେ ବସି ସୁଖେ ଅଚଳ ସମ୍ପତ୍ତି ।
ଯଥାକାଳେ ପୁତ୍ରବନ୍ତ ଯଶୋବନ୍ତ ହେଲେ
ଅନ୍ୟ ରାଜାମାନେ ତାଙ୍କ ପାଦେ ପୂଜା କଲେ ।
ଏଥୁଅନ୍ତେ କୁଶଧ୍ୱଜ ପତ୍ନୀ ମାଳାବତୀ
କେତେଦିନ ପରେ ଗର୍ଭବତୀ ହେଲେ ସତୀ ।

ତାହାଙ୍କ ଗର୍ଭରେ ଲକ୍ଷ୍ମୀ କଳାମାନେ ଆସି
ପ୍ରବେଶ ହୋଇଲେ କନ୍ୟାରୂପ ପରକାଶି ।
ଯଥା ସମୟରେ ମୋକ୍ଷ କରନ୍ତେ ପ୍ରସୂତ
ଜନ୍ମିଲେ କନ୍ୟକା ତାହାଙ୍କର ନାମ ଧୃତ ।
ଭୂମିରେ ପଡ଼ିବା ମାତ୍ରେ ଦିବ୍ୟଜ୍ଞାନ ପାଇ
ପୂର୍ବଜନ୍ମ କଥା ସ୍ମରିଲେ ତହିଁ ଥାଇ ।
ଜାତ ସ୍ୱର ହୋଇ ସେ ତ ଜନ୍ମ ହୋଇଥିଲେ
ପ୍ରାକୃତ ବାଳିକା ପରି କ୍ରନ୍ଦନ ନ କଲେ ।
ବେଦପାଠ ଉଚ୍ଚାରଣ କଲେ ପୁନଃ ପୁନଃ
ତାହା ଦେଖି ସ୍ତମ୍ଭୀଭୂତ ହେଲେ ସର୍ବଜନ ।
ସୂତିକା ଗୃହରେ ଯହିଁ ବେଦଧ୍ୱନି କଲେ
ବେଦବତୀ ବୋଲି ପିତା ତାଙ୍କୁ ନାମ ଦେଲେ ।
ଜନ୍ମହେବା ସମୟର ଏକକ୍ଷଣ ପରେ
ସ୍ନାନ କଲେ ଯାଇ ସ୍ୱଚ୍ଛ ପବିତ୍ର ଜଳରେ ।
ପିତା ମାତାଙ୍କୁ ଜଣାଇ ତପ କରିବାକୁ
ଗଲେ ସଂସାରିକ ସୁଖ ତେଜି ସେ ବନକୁ ।
ନାରାୟଣ ଶ୍ରୀଚରଣେ ରଖି ନିଜ ମନ
ପୁଷ୍କର ତୀର୍ଥରେ ବସି କଲେ ଯୋଗଧ୍ୟାନ ।
କଠୋର ତପସ୍ୟା କରି ଏକ ମନ୍ୱନ୍ତର
ଏକ ଲୟରେ ଭଜିଲେ ପ୍ରଭୁଙ୍କ ପୟର ।
ତଥାପି ତାହାଙ୍କ ଅଙ୍ଗ କ୍ଷୀଣ ନ ହୋଇଲା
ବେଳକୁ ବେଳ ଅଧିକ ପୁଷ୍ଟ ଦେଖାଗଲା ।
ନବ ଯୌବନେ ପୂର୍ଣ୍ଣ ସକଳ ଶରୀର
ଫୁଟିଥିବା ଫୁଲପରି ଦିଶିଲା ସୁନ୍ଦର ।
ସେ ସମୟେ ଆକାଶରୁ ଶୁଭିଲା ଏ ବାଣୀ
ଶୁଣ ଆଗୋ ବେଦବତୀ ରମଣୀଙ୍କ ମଣି ।
ଅପର ଜନ୍ମରେ ନିଜେ ପ୍ରଭୁ ନାରାୟଣ
ତୁମ୍ଭର ହୋଇବେ ପତି ଏ କଥା ପ୍ରମାଣ ।
ବ୍ରହ୍ମା ଇନ୍ଦ୍ର ଆଦି ଦେବ ପୂଜିବେ ତାହାଙ୍କୁ ।
ଉଶ୍ୱାସ କରିବେ ସେହି ପୃଥିବୀ ସବୁକୁ ।
ଏରୂପେ ଆକାଶ ବାଣୀ ଶୁଣି ବେଦବତୀ
ବିଷ୍ଣୁଙ୍କୁ ନ ପାଇବାରୁ କ୍ରୋଧଯେନ ଅତି ।
ପୁଣି ତପ କରିବାରେ ବଳାଇଣ ମନ
ଆଶ୍ରୟ କଲେ ପର୍ବତ ସେ ଗନ୍ଧମାଦନ ।
ସେଠାରେ ବହୁତକାଳ ରହି ସେ ସୁନ୍ଦରୀ
ତପସ୍ୟାରେ କଟାଇଲେ ଦିବସ ଶର୍ବରୀ ।

ଦିନେ ତହିଁ ନିଶାଚର ରାବଣ ଦୁର୍ମତି
ପ୍ରବେଶ ହୁଅନ୍ତେ ତାକୁ ଦେଖି ବେଦମତୀ ।
ପାଦ୍ୟ ଅର୍ଘ୍ୟ ଫଳମୂଳ ଦେଲେ ବେଗେ ଆଣି
ଏ ବାହାରେ ପାନଯୋଗ୍ୟ ସୁଶୀତଳ ପାଣି ।
ଅତିଥି ସତ୍କାର ପାଇ ପାପିଷ୍ଠ ରାବଣ
ବସିଲା ତାହାଙ୍କ ପାଶେ ଯାଇ ସେହିକ୍ଷଣ ।
ବହୁତ କୁଶଳ ପ୍ରଶ୍ନ ପଚାରିଲା ତାଙ୍କୁ
ନିରୀକ୍ଷଣ କଲା ପୁଣି ତାହାଙ୍କ ରୂପକୁ ।
ଦେଖିଲା ସେ ତପସ୍ୱିନୀ ନବଯଉବନା ।
ଶରଦଚନ୍ଦ୍ରମାମୁଖୀ ପଙ୍କଜ ଲୋଚନା ।
ଉନ୍ନତ ପୃଥୁଳ ପୀନ ପୟୋଧରବତୀ
ସାକ୍ଷାତରେ ଦେବକନ୍ୟା ସମାନ ଦିଶନ୍ତି ।
ତାହା ଦେଖି ସେ ରାକ୍ଷସ କାମଶରେ ପୀଡ଼ା
ପାଇ ନିଜ ମାନସରୁ ଛାଡ଼ିଦେଇ ବ୍ରୀଡ଼ା ।
ଧୀରେ ଧୀରେ ବୁଝିନେଲା ତାଙ୍କ ପରିଚୟ
କହିଲେ ସେ ବେଦମତୀ ଅଟେ ଯା ନିର୍ଣ୍ଣୟ ।
ତାପରେ ତାହାଙ୍କ ପ୍ରେମ ଇଚ୍ଛି ଦଶାସୁର
ବୋଇଲା ସୁନ୍ଦରୀ ପତ୍ନୀ ହୁଅ ତୁ ମୋହର ।
ତାହା ଶୁଣି ବେଦମତୀ କରନ୍ତେ ଧିକ୍କାର
ବଳାତ୍କାରେ ଧରିଲା ତାଙ୍କୁ ନିଶାଚର ।
ସେ ସକାଶୁଁ ମହାକ୍ରୋଧେ ସତୀଶିରୋମଣି
ଚାହିଁଲେ କର୍କଶ ନେତ୍ରେ ସେ ରୂପେ ସର୍ପିଣୀ ।
ସେ ଦୃଷ୍ଟିରେ ସ୍ତମ୍ଭୀଭୂତ ହେଲା ବିଂଶବାହୁ
ବାକ୍ୟ ନ ସ୍ଫୁରିଲା ପାଦ ନ ଚଳିଲା ଆଉ ।
ପଥର ପ୍ରତିମା ପ୍ରାୟେ କ୍ଷଣେ ଉଭାହେଲା
ଭୟରେ ବେଦମତୀଙ୍କୁ ହୃଦରେ ଶମ୍ଭିଲା ।
ଏ ବାହାରେ ମନେ ମନେ କଲା କେତେ ସ୍ତୁତି
ପ୍ରସନ୍ନ ହୋଇଲେ ତାହା ଜାଣି ବେଦମତୀ ।
ସଚେତ କରାଇ ତାକୁ ବୋଇଲେ ରେ ଦୁଷ୍ଟ
ମୋ ପାଶକୁ ଆସି ବୃଥା କଲୁ ଯା ଅନିଷ୍ଟ ।
ଏ ସକାଶୁ ତୋତେ ଶାପ ଦେଉଅଛି ମୁହିଁ
ମୋ ହେତୁ ମରିବୁ କାମଶରେ ହୋଇ ବାଇ ।
ବନ୍ଧୁ ବାନ୍ଧବ ସଙ୍ଗତେ ଯେତେ ଥିବେ ତୋର
ସମସ୍ତେ ଦେଖିବେ ଯାଇ ଯମଙ୍କ ନଗର ।
ତୁ ପାପିଷ୍ଠ ନିଶାଚର ସ୍ପର୍ଶ କଲୁ ମୋତେ
ତେଜିବି ଶରୀର ଦେଖ ତୋହର ଅଗ୍ରତେ ।

ଏତେ ବୋଲି ତପସ୍ୱିନୀ ବେଦବତୀ ବାଳା
ଦେହତ୍ୟାଗ କଲେ ଯୋଗେ ନ କରଣ ହେଳା ।
ତା ଦେଖି ରାବଣ ଅତି ଚିନ୍ତିତ ହୋଇଲା
ତାଙ୍କ ଶବ ନେଇ ଗଙ୍ଗାଜଳେ ପକାଇଲା ।
କି ନିଷ୍ଠୁର କର୍ମ କଲି ବୋଲି ମନେ ଭାଳି
ଘରରେ ଯାଏ ସେଠାରୁ ନ ପାରିଲା ଚଳି ।
ସେ ଅନ୍ତରେ କଷ୍ଟେ କଷ୍ଟେ ଉଠି ଶୋକଭରେ
ମିଳିଲା ସେଠାରୁ ଯାଇ ଆପଣ ର ପୁରେ ।
ପତିବ୍ରତା ସତୀ ସେହି ବେଦବତୀ ସ୍ତ୍ରୀ
କାଳାନ୍ତରେ ହେଲେ ପୁଣି ଜନକକୁମାରୀ ।
ସୀତାଦେବୀ ବୋଲି ତାଙ୍କ ନାମ ଖ୍ୟାତହେଲା
ତାଙ୍କପରି ସତୀ କେହି ଜଗତେ ନ ଥିଲା ।
ପୂର୍ବଜନ୍ମ ତପବଳେ ସେ କାମିନୀବର
ଭାର୍ଯ୍ୟା ହେଲେ ରାମରୂପୀ ନାରାୟଣଙ୍କର ।
ଅଯୋଧ୍ୟା ନଗରେ ରାଜା ଦଶରଥ ଘରେ
ଜାତ ହୋଇଥିଲେ ହରି ମନୁଷ୍ୟ ରୂପରେ ।
ସ୍ୱାମୀ ଭାବରେ ତାହାଙ୍କୁ ଲଭିକରି ସୀତା
ଆରାଧନା କଲେ ମନୁ ଗୁଡ଼ଦେଇ ଚିନ୍ତା ।
ବହୁତକାଳ ତାହାଙ୍କ ସଙ୍ଗେ କ୍ରୀଡ଼ାକରି
ସାରିଲେ ଉତ୍ସବ ଅତି ଜନକକୁମାରୀ ।
ଜାତିସ୍ମର ହୋଇ ଜନ୍ମ ପାଇ ତ ସେ ଥିଲେ
ପୂର୍ବଜନ୍ମ ତପଶ୍ରମ ସୁମରଣା କଲେ ।
ସୁଖ ଦୁଃଖ କଥା କିଛି ନ କରି ଭାବନା
ପତିଙ୍କ ସେବାରେ ରତା ହେଲେ ସେ ଅଙ୍ଗନା ।
ନାନା ପ୍ରକାର ସମ୍ପଦ କଲେ ଉପଭୋଗ
ଗୁଣବାନ ପତିଙ୍କର ସଙ୍ଗେ ହେଇ ଯୋଗ
ସ୍ୱଭାବେ ତ ରାମଚନ୍ଦ୍ର ସୁଶୀଳ ସୁନ୍ଦର
ପୁଣି ଯଉବନ ହୋଇଥିଲା ତାହାଙ୍କର ।
ପତିବ୍ରତା ସୀତାଙ୍କର ମାନସରଞ୍ଜନ
କରାଇବା ପାଇଁ ସଦା ହେଲେ ସାବଧାନ ।
କାଳକ୍ରମେ କେତେଦିନ ଅନ୍ତେ ରଘୁନାଥ
ବନବାସ କଲେ ପାଳିବାକୁ ପିତା ସତ୍ୟ ।
ଭାଇ ଭାର୍ଯ୍ୟାଙ୍କୁ ସଙ୍ଗେ ଘେନି ଯାଇଥିଲେ
ସମୁଦ୍ର ତଟରେ ଯାଇ ଅବସ୍ଥାନ କଲେ ।
ସେହିଠାରେ ବିପ୍ରରୂପେ ଦେବ ହୁତାଶନ
ଶ୍ରୀରାମଚନ୍ଦ୍ରଙ୍କୁ ଆସି ଦେଲେ ଦରଶନ ।

ତାହାଙ୍କ ଅବସ୍ଥା ଦେଖି ଦୁଃଖିତ ହୋଇଲେ
ସେ ଅନ୍ତରେ ସତ୍ୟପ୍ରିୟ ବଚନ କହିଲେ ।
ବୋଇଲେ ମୋହର ବାକ୍ୟ ଶୁଣ ରଘୁନାଥ
କାଳ ମହିମାରେ ବାଧା ହେଲା ଉପସ୍ଥିତ ।
ପ୍ରାପ୍ତ ହେଲାଣି ସୀତାହରଣ ସମୟ
ମୋ କହିବା କଥା କର ଆହେ ମହାଶୟ ।
ଆପଣ ତ ଜାଣ ଏହି ସଂସାର ମଧ୍ୟରେ
ଦଇବକୁ ବଳ କେହି ନାହିଁ କେଉଁଠାରେ ।
ମୋହଠାରୁ ସୀତା ଜନ୍ମ ପାଇ ତ ଅନନ୍ତ
ତାହାଙ୍କୁ ମୋ ପାଖେ ରଖ ହୁଅନ୍ତୁ ନିଶ୍ଚିନ୍ତ ।
ମାୟା ସୀତା ଟିଏ ସଙ୍ଗେ ଘେନି ରହିଥା ।
ବିକଳ୍ପ କରିବା ପାଇଁ ନାହିଁ କି ସମୟ ।
ରାବଣର ବଧ ଅନ୍ତେ ପରୀକ୍ଷା କାଳରେ
ଦେବି ପୁଣି ଜାନକୀଙ୍କି ମୁଁ ତୁମ୍ଭ କୋଳରେ ।
ବ୍ରାହ୍ମଣ ନୁହଇ ମୁହିଁ ଅଟଇ ହୁତାଶନ
ପଠିଆଇଛନ୍ତି ମୋତେ ସ୍ୱର୍ଗ ଦେବଗଣ ।
ଶ୍ରୀରାମ ସେ କଥା ଶୁଣି ସନ୍ମତ କଲେ
ଲକ୍ଷ୍ମଣଙ୍କ ଆଗେ ମଧ୍ୟ ତାହା ନ କହିଲେ ।
ଆଜ୍ଞାପାଇ ହୁତାଶନ ଯାଇ ସେହିକ୍ଷଣି
ମାୟା ସୀତା ଗୋଟିଏ ସେ କରିଦେଲେ ଆଣି ।
ପ୍ରକୃତ ସୀତାଙ୍କ ରୂପଗୁଣରେ ସମାନ
ଦିଶିଲା ସେ ଲେଶେହେଲେ ନ ହୋଇଲା ଭିନ୍ନ ।
ଶ୍ରୀରାମଙ୍କ ପାଶେ ତାକୁ ସମର୍ପଣ କରି
ଅନ୍ତର୍ଦ୍ଧାନ ହେଲେ ଘେନି ଜନକକୁମାରୀ ।
ଲକ୍ଷ୍ମଣ ମଧ୍ୟ ସେ କଥା ନ ଜାଣିଲେ କିଛି
ଆଉ କେ ବା ଜାଣିବାକୁ ଶକ୍ତ ଅଛି ।
ଏଥିଅନ୍ତେ ରାମଚନ୍ଦ୍ର ଏକ ସ୍ୱର୍ଣ୍ଣ ମୃଗ
ଦେଖିଲେ ସେ ଆସି ଚରୁଥିଲା ତାଙ୍କ ଆଗ ।
ମାୟାସୀତା ଦେଖି ତାକୁ ଆଣିଦେବାପାଇଁ
ପଠାଇଲେ ଶ୍ରୀରାମଙ୍କୁ ସ୍ନେହଭାବେ କହି ।
ରାମଚନ୍ଦ୍ର ମଧ୍ୟ ମନେ କିଛି ନ ବିଚାରି
ବାହାର ହୋଇଲେ କରେ ଧନୁଶର ଧରି ।
ସୀତାଙ୍କୁ ରଖିବା ପାଇଁ ଲକ୍ଷ୍ମଣଙ୍କୁ ଦ୍ୱାରେ
କରାଇ ଧାଇଁଲେ ସ୍ୱର୍ଣ୍ଣ ହରିଣ ପଛରେ ।
କୋଦଣ୍ଡରୁ ଗଳାପରେ ବିନ୍ଧି ଏକ ଶର
ପକାଇଲେ ତଳେ ତାକୁ ରଘୁକୁଳବୀର ।

ସେକାଳେ ସେ ମାୟାମୃଗ ଡାକ ଦା ଲକ୍ଷ୍ମଣ
ଶ୍ରୀରାମଙ୍କ ମୁଖ ବର୍ଣ୍ଣି ଛାଡ଼ିଲ ପରାଣ ।
ସେହିକ୍ଷଣି ତାର ମୃଗରୂପ କେଣେ ଗଲା
ବଡ଼ ବଡ଼ ଦିବ୍ୟରୂପ ଧାରଣ ସେ କଲା ।
ରତ୍ନବିମାନରେ ବସି ବଇକୁଣ୍ଠ ପୁରେ
ଗଲା ଶୂନ୍ୟମାର୍ଗେ ବିଷ୍ଣୁ ଦୂତଙ୍କ ସଙ୍ଗରେ ।
ସେଠାରେ ଦ୍ୱାରପାଳଙ୍କ କିଙ୍କର ହୋଇଲା
ଶ୍ରୀହରିଙ୍କ ନାମ ଗାନକରି ଦିନ ନେଲା ।
ସେ ପୁରର ଦ୍ୱାରପାଳ ଜୟ ଯେ ବିଜୟ
ଶାପରେ ରାକ୍ଷସ ହୋଇଥିଲେ ସେ ଉଭୟ ।
ଜନ୍ତୁନାମେ ତାହାଙ୍କର କିଙ୍କର ଯେ ଏହି
ସନକ ଆଦି ଋଷିଙ୍କଠାରୁ ଶାପ ପାଇ ।
ରାକ୍ଷସ ହୋଇଣ ମର୍ତ୍ତ୍ୟଲୋକେ ବୁଲୁଥିଲା
ରାମଶରେ ମରି ଏବେ ମୁକତି ପାଇଲା ।
ଏଥିଅନ୍ତେ ମାୟାମୃଗ ଶବଦକୁ ଶୁଣି
ଚକିତ ହୋଇଣ ମାୟା ସୀତା ଠାକୁରାଣୀ ।
ଲକ୍ଷ୍ମଣଙ୍କୁ ଶ୍ରୀରାମଙ୍କ ପାଶେ ପଠାଇଲେ
ଯେ ଅନ୍ତରେ ଯାହା ହେଲା ଶୁଣ ଏବେ ଭଲେ ।
ରାବଣ ସେକଥା ସବୁ ଲୁଚି ଦେଖୁଥିଲା
ଲକ୍ଷ୍ମଣ ପଳାନ୍ତେ ସୀତା ପାଶକୁ ଆସିଲା ।
ନାନା ଉପାୟରେ ତାଙ୍କୁ ବସାଇଣ ରଥେ
ଲଙ୍କା ଅଭିମୁଖେ ଚାଲିଗଲା ଶୂନ୍ୟପଥେ ।
ଏକାଳେ ଲକ୍ଷ୍ମଣ ଯାଇ ରାମଙ୍କୁ ଭେଟିଲେ
ତାଙ୍କୁ ଦେଖି ରାମଚନ୍ଦ୍ର ବିଷାଦ ପାଇଲେ ।
ଚଞ୍ଚଳରେ ନିଜ ପର୍ଣ୍ଣ କୁଟୀରକୁ ଆସି
ଦେଖିଲେ ନାହାନ୍ତି ତହିଁ ସୀତା ଚାରୁକେଶୀ ।
ସେ ସକାଶୁ ମହାଶୋକେ ବାଉଳ ପରାୟେ
ବୁଲିଲେ ରାଇଙ୍କୁ ଘେନି ରଘୁ କୁଳ ରାୟେ ।
ବୁଲି ବୁଲି ଜଟାୟୁକୁ ଖଣ୍ଡେଦୂରେ ଦେଖି
ତ ଠାରୁ ବାରତା ପାଇ ହୋଇ ଅତି ଦୁଃଖୀ ।
ସୁଗ୍ରୀବ ବାନର ସଙ୍ଗେ ମିତ୍ରପଣ କଲେ
କପିଙ୍କ ହସ୍ତରେ ମହାସାଗର ବାନ୍ଧିଲେ ।
ସେତୁ ଉପରେ କରି ଲଙ୍କା ଆକ୍ରମଣ
ବଂଶକୁଳେ ରାବଣର ଘେନିଲେ ପରାଣ ।
ରାବଣ ତ ମାୟାସୀତା ରଖିଥିଲା ନେଇ
ଶ୍ରୀରାମ ତାହାଙ୍କୁ ପାଶେ ଆଣିଲେ ଉଦ୍ଧାଇ ।

ଅନଳେ ପରୀକ୍ଷା କରାଇଲେ ଯେତେବେଳେ
ସେ ଛାୟାକୁ ହୁତାଶନ ଘେନି ସେହିକାଳେ ।
ପ୍ରକୃତ ସୀତାଙ୍କୁ ଆଣି ସମର୍ପଣ କଲେ
ପୂର୍ବକଥା ରାମଙ୍କର ମନେ ପକାଇଲେ ।
ସେ ସମୟେ ଛାୟା ମାୟା ସୀତା-ସ୍ୱରୂପିଣୀ
କହିଲା ରାମଙ୍କୁ ଅଗ୍ନି ଦେବତାଙ୍କୁ ପୁଣି ।
ବୋଇଲା କହ ହେ ଦେବ ମୁହିଁ କେବଣ ଉପାୟ
କରିବି ସେ କଥା ମୋତେ କହ ଦୟାମୟ ।
ତା ଶୁଣି ବୋଇଲେ ଅଗ୍ନି ଆଗୋ ଛାୟାଦେବୀ
କହୁଅଛୁ ଶୁଣ ତୁମ୍ଭ ଉପାୟ ମୁଁ ଭାବି ।
ପୁଷ୍କର ତୀର୍ଥକୁ ତୁମ୍ଭେ ବେଗହୋଇ ଯାଅ
ତପ ଆଚରଣ କରି କେତେକାଳ ରହ ।
ଅଳ୍ପଦିନ ଅବସାନେ ସ୍ୱର୍ଗଲକ୍ଷ୍ମୀ ହେବ
ସନ୍ଦେହ ଏଥିରେ କିଛି ନାହିଁ ଜାଣିଥିବ ।
ଏହିରୂପେ ଶୁଣି ଛାୟା ବେଗେ ଚାଲିଗଲେ
ପୁଷ୍କର ତୀର୍ଥରେ ଯାଇ ପ୍ରବେଶ ହୋଇଲେ ।
ଦିବ୍ୟ ତିନିଲକ୍ଷ ବର୍ଷ ତପ କରି ତହିଁ
ସ୍ୱର୍ଗଲକ୍ଷ୍ମୀ ହେଲେ ନିଜ କର୍ମବଳେ ପାଇ ।
ପୁଣ କେତେକାଳ ଅନ୍ତେ ସେହି ତପସ୍ୱିନୀ
ଦ୍ୱାପର ଯୁଗରେ ହେଲେ ଦ୍ରୁପଦନନ୍ଦିନୀ ।
ଯଜ୍ଞ ହୋମ ଅନଳରୁ ବାହାର ହୋଇଲେ
ସେ ସକାଶୁ ଯାଜ୍ଞସେନୀ ନାମକୁ ପାଇଲେ ।
ପାଞ୍ଚ ପାଣ୍ଡବଙ୍କ ପତ୍ନୀ ଅଟନ୍ତି ସେ ଜାଣ
ଗୋଟିଏ ପତ୍ନୀର ପତି ଥିଲେ ପାଞ୍ଚଜଣ ।
ସତ୍ୟଯୁଗେ ବେଦବତୀ କୁଶଧ୍ୱଜ ସୁତା
ତ୍ରେତୟା ଯୁଗରେ ହେଲେ ଜନକ ଦୁହିତା ।
ଦ୍ୱାପର ଯୁଗରେ ତାଙ୍କ ଛାୟା ସେ ଦ୍ରୌପଦୀ
ଏହିପରି ତିନିଯୁଗେ ଜନ୍ମକୁ ସମ୍ପାଦି ।
ତ୍ରିହାୟଣୀ ବୋଲିକରି ନାମ ସେ ପାଇଲେ
ପ୍ରତ୍ୟେକ ଜନ୍ମରେ ଲୋକ ହିତ ସମ୍ପାଦିଲେ ।
ନାରଦ ତା ଶୁଣିକରି ବୋଇଲେ ହେ ମୁନି
କିରୂପେ ପାଞ୍ଚ ପୁରୁଷ ଗୋଟିଏ କାମିନୀ ।
ଭରିଯା ହୋଇଲେ କହ କାରଣ ଏଥିରେ
ଥିଲେ ତା କହିବା ହେଉ ଦୟାକରି ବାରେ ।
ନାରାୟଣ ବୋଇଲେ ସେ କଥା ଏବେ ଶୁଣ
ଲଙ୍କାରେ ପ୍ରକୃତ ସୀତା ଘେନ ରଘୁରାଣ ।

ଯିବାବେଳେ ସ୍ୱୟଂ ମାୟା ସୀତା ଚନ୍ଦ୍ରାନନା
ଶ୍ରୀରାମ ଅଗ୍ନି ଦୁହିଁଙ୍କ ଆଜ୍ଞା ଶିରେ ଧରି ।
ଶଙ୍କରଙ୍କୁ ଆରାଧନା କଲେ ତହୁଁ ଯାଇ
କେତେବେଳେ ପରସନ୍ନ ହେଲେ ଉମାସାଇଁ ।
ତାହାଙ୍କ ପାଶରେ ଯାଇ ପରବେଶ ହେଲେ
କି ବର ମାଗିବ ମାଗି ଘେନ ଗୋ ବୋଇଲେ ।
ତାହା ଶୁଣି କାମାତୁରା ହୋଇ ସେହି ବାଳା
ପତି ଦିଅ ପତି ଦିଅ ବୋଲି ଡାକଦେଲା ।
କ୍ରମେ କ୍ରମେ ପାଞ୍ଚବାର ମାଗିଲା ସେପରି
ଶୁଣିଣ ଉତ୍ତରେ ହସି ଦେବ ତ୍ରିପୁରାରି ।
ବୋଇଲେ ଗୋ ତପସ୍ୱିନୀ ତୋହରଙ୍କ ପାଇଁ
ତୁମ୍ଭର ମାନସ କାମେ ହୋଇଅଛୁ ବାଇ ।
ଏ ସକାଶୁ ପାଞ୍ଚପତି ହୋଇବେ ତୁମ୍ଭର
ସନ୍ତୋଷ ଚିତ୍ତରେ ଆମ୍ଭେ ଦେଉଅଛୁଁ ବର ।
ଏହା କହି ମହାଦେବ ଗଲେ ନିଜସ୍ଥାନ
ତେଣୁ ତାହାଙ୍କର ପତି ହେଲେ ପାଞ୍ଚଜଣ ।
ବାସ୍ତବ ଚରିତ ଏବେ ଶୁଣ ତପେଶ୍ୱରି
ଅଗ୍ନିଠାରୁ ଘେନି ରାମ ଜନକକୁମାରୀ ।
ଲଙ୍କାରେ ବିଭୀଷଣଙ୍କୁ ରାଜା କରାଇଲେ
ପୁଷ୍ପକ ବିମାନେ ବସି ଅଯୋଧ୍ୟାକୁ ଗଲେ ।
ରାଜା ହୋଇ ଏକାଦଶ ସହସ୍ର ବରଷ
ପୃଥିବୀ ପାଳନା କଲେ ରଘୁକୁଳେଶ ।
ଲବ କୁଶ ଦୁଇସୁତ ହୋଇଲେ ତାଙ୍କର
ଅନ୍ତିମେ ଦେଲେ ସେ ତାଙ୍କ ହସ୍ତେ ରାଜ୍ୟଭାର ।
ଆପଣା ଲୋକଙ୍କ ସଙ୍ଗେ ମର୍ତ୍ତ୍ୟ ଛାଡ଼ିଗଲେ
ପ୍ରବେଶ ହୋଇଲେ ଯାଇ ବଇକୁଣ୍ଠ ପୁରେ ।
କମଳାଅଂଶରେ ଜାତ ବେଦବତୀ ନାରୀ
ମନ୍ୱନ୍ତର ଚାରିଗଣେ ଥିଲେ ଅବତରି ।
ସେ ସକାଶୁ କମଳାଙ୍କ ଅଙ୍ଗରେ ସେ ଯାଇ
ପ୍ରବେଶ ହୋଇଲେ ମର୍ତ୍ତ୍ୟଲୋକ ଛାଡ଼ିଦେଇ ।
ପୁଣ୍ୟମୟ ଅଟେ ଏହି ପବିତ୍ର ଆଖ୍ୟାନ
ଶୁଣିଲେ ଅଶେଷ ପାପ ହୁଅଇ ଖଣ୍ଡନ ।
ମୂର୍ତ୍ତିମନ୍ତ ହୋଇ ଚାରିବେଦ ତାହାଙ୍କର
କଣ୍ଠାଗ୍ରରେ ଆସି ସର୍ବେ କରଥାନ୍ତି ଘର ।
ବେଦବତୀ ବୋଲି ନାମ ପାଇଥିଲେ ସେହି
କହିଲି ତାଙ୍କ ଚରିତ ସଂକ୍ଷେପରେ ମୁହିଁ ।
ଧର୍ମଧ୍ୱଜସୁତାଙ୍କର ଆଖ୍ୟାନକୁ ଏବେ
କହିବି ମାନସ ଯଦି ଇଚ୍ଛା ଅଛି ଯେବେ ।
ବୋଲେ ଦାସ କ୍ଷେତ୍ରବାସୀ ଆହେ ସାଧୁଜନେ
ଅପୂର୍ବ ଚରିତ ଶୁଣ ହରଷିତ ମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ବେଦବତୀ ଓ ସୀତା ପ୍ରଭୃତିଙ୍କର ଜନ୍ମ ବୃତ୍ତାନ୍ତ କଥନେ ନାମ ପଞ୍ଚଦଶୋଽଧ୍ୟାୟଃ ।

---

## ଷୋଡ଼ଶ ଅଧ୍ୟାୟ

## ନାରାୟଣଙ୍କ ଦ୍ୱାରା ତୁଳସୀ ଜନ୍ମ ବୃତ୍ତାନ୍ତ ଓ ବରଦାନ କଥନ

ଏଥୁଅନ୍ତେ ଯାହା ହେଲା ଶୁଣ ଦେଇ ଚିତ୍ତ
ପ୍ରକାଶିଲେ ନାରାୟଣ ନାରଦ ଅଗ୍ରତ ।
ଶୁଣ ତୁମ୍ଭେ ମନଦେଇ ବ୍ରହ୍ମାଙ୍କ କୁମର
ମାଧବୀ ନାମରେ ପତ୍ନୀ ଧର୍ମଧ୍ୱଜଙ୍କର ।
ଅତି ପତି ପରାୟଣା ତ୍ରିପୁର ସୁନ୍ଦରୀ
ସଦା ପତିପାଦେ ମନ ଡଳ ଥାଏ ଗୋରୀ ।
ଦିନେ ତାଙ୍କୁ ସଙ୍ଗେ ଘେନି ଗନ୍ଧମାଦନରେ
ପ୍ରବେଶିଲେ ରାଜା କ୍ରୀଡ଼ା କରିବା ଆଶାରେ ।
ଅତି ସୁଖକର ଶଯ୍ୟା ବିରଚନ କଲେ
ସୁବାସ ଚନ୍ଦନ ପୁଷ୍ପ ତହିଁରେ ବିଞ୍ଚିଲେ ।
ନାନାବିଧ ଅଳଙ୍କାରେ ମାଧବୀ ସୁନ୍ଦରୀ
ମଣ୍ଡିଲେ ଆପଣା ଅଙ୍ଗ ଅତିଯତ୍ନ କରି ।
ଏ ବାହାରେ ଦିବ୍ୟପୁଷ୍ପ ଚନ୍ଦନ ଅଣାଇ
ଘେନିଲେ ପତିଙ୍କ ଚିତ୍ତ ଭୋଳିବାର ପାଇଁ ।
କାମୁକୀ ମଧ୍ୟରେ ସେ ତ ଅଟନ୍ତି ଉତ୍ତମ
ସୁନ୍ଦରୀଗଣରେ କେହି ନୁହେ ତାଙ୍କ ସମ ।

କନ୍ଦର୍ପ ସୁନ୍ଦର ଯୁବା ରସିକଶେଖର
ହୋଇଥିଲେ ପୁଣି ଧର୍ମଧ୍ୱଜ ନୃପବର ।
ସେ ସକାଶୁ ବୃଦ୍ଧଙ୍କର ଅତ୍ୟନ୍ତ ପୀରତି
କରିବାର ଦେଖି କାମ କଲା ମନେ ଯୁକ୍ତି ।
ସେ ନବଦମ୍ପତ୍ତି କ୍ଷଣେ ବିଶ୍ରାମ ନ କରି
ମାତିଲେ ସୁରତରସେ ମତ୍ତ ହୋଇକରି ।
ଏହିପରି ଗତହେଲା ଶତେ ସମ୍ବତ୍ସର
ମୁହୂର୍ତ୍ତେକ ପରି ତାଙ୍କୁ ହୋଇଲା ଗୋଚର ।
ଏଥୁଅନ୍ତେ ଧର୍ମଧ୍ୱଜ ଧର୍ମେ ହୋଇ ମତି
ସୁରତ କାର୍ଯ୍ୟରୁ ତହୁଁ ପାଇଲେ ନିବୃତ୍ତି ।
କନ୍ଦର୍ପ ତ ମାଧବୀଙ୍କୁ ପୀଡ଼ା ଦେଉଥିଲା
ତେଣୁ ତାଙ୍କ ମନ ଆଉ ତୃପତ ନୋହିଲା ।
ମାତ୍ର ସେ ସମୟେ ଧନୀ ଗର୍ଭବତୀ ହେଲେ
ଦିନକୁଦିନ ପୃଥୁଳ ଶରୀର ଦିଶିଲେ ।
ଶତେ ଦେବ ସମ୍ବତ୍ସର ଗତହେବା ପରେ
ଶୁଭତିଥି ବାର ଶୁଭଯୋଗ ମୁହୂର୍ତ୍ତରେ ।
କାର୍ତ୍ତିକ ପୂର୍ଣ୍ଣିମା ପୁଣି ଭୃଗୁପୁତ୍ର ବାର
ସେଦିନ ପ୍ରସବ କଲେ ରମଣୀଙ୍କ ବର ।
ସୁନ୍ଦରୀ କନ୍ୟାଟିଏ ତାଙ୍କଠାରୁ ଜାତ
ହେଲେ ଲକ୍ଷ୍ମୀଅଂଶ ଯେଣୁ ଆହେ ଋଷିସୁତ ।
ତାହାଙ୍କର ପାଦଦେଶେ ପଦ୍ମଚିହ୍ନ ଥାଇ
ସୁଲକ୍ଷଣୀ ଭାବକୁ ସେ ଦେଉଥିଲା କହି ।
ରାଜଲକ୍ଷ୍ମୀ ଲକ୍ଷଣରେ ପୂର୍ଣ୍ଣହୋଇ ଅଙ୍ଗ
ସୌନ୍ଦର୍ଯ୍ୟ ଦେବୀଙ୍କ ଶୋଭା କରିଥିଲା ସଙ୍ଗ ।
ଶରତକାଳରେ ପୂର୍ଣ୍ଣଚନ୍ଦ୍ରମା ପରାୟେ
ଦିଶୁଥିଲା ତାହାଙ୍କର ମୁଖ ସେ ସମୟେ ।
ବିକଶିତ ପଦ୍ମଫୁଲ ପରପରି ନେତ୍ର
ବିରାଜିତ ହେଉଥିଲା ଆହେ ଋଷିପୁତ୍ର ।
ପାଚିଥିବା ବିମ୍ବଫଳ ସମାନ ଅଧର
ରକ୍ତିମା ଗୁଣରେ ହୋଇଥିଲା ମନୋହର ।
ଆରକ୍ତ ବରନ ହସ୍ତ ପାଦତଳ ଦେଶ
ନିମ୍ନହୋଇ କରେ ନାଭି ଲକ୍ଷଣ ପ୍ରକାଶ ।
ତାର ତଳେ ପଞ୍ଚବାଣ ସୋପାନକୁ ଜିଣି
ଦିଶଇ ତ୍ରିବଳି ରେଖା ଦିବ୍ୟଶୋଭା ଯେନି ।
ସୁକେଶୀ ସୁନ୍ଦର ମୂର୍ତ୍ତି ଶ୍ୟାମଳବରନା
ତାହାଙ୍କ ସମାନ କେହି ନ ଥିଲେ ଲଳନା ।

ଶ୍ୱେତ ଚମ୍ପାପୁଷ୍ପ ପରି ତାଙ୍କ ଅଙ୍ଗ ଶୋଭା
ସୁନ୍ଦରୀପଣରେ ଆନ୍ୟ କି ଉପମା ଦେବା ।
ଯେତେ ନରନାରୀ ତାଙ୍କୁ ଦେଖିବାକୁ ଗଲେ
ସ୍ୱର୍ଗର ଦେବତା ବୋଲି ମନେ ବିଚାରିଲେ ।
ତୁଳନା କାହାକୁ କିଛି ନ ପାଇଲେ ଯେଣୁ
ତୁଳସୀ ବୋଲି ତାଙ୍କର ନାମ ହେଲେ ତେଣୁ ।
ଭୂମିରେ ପଡ଼ିବା ମାତ୍ରେ ଉଠି ତତକ୍ଷଣ
ତପ କରିବାକୁ ଯେହି ବଳାଇଲେ ମନ ।
ତା ଦେଖି ସମସ୍ତ ଲୋକେ ନିଷେଧ କରିଲେ
କାହାର କଥାକୁ ସେ ତ କର୍ଣ୍ଣେ ନ ଶୁଣିଲେ ।
ସେକ୍ଷଣି ମିଳିଲେ ଯାଇ ବଦରିକା ବନେ
କଠୋର ତପସ୍ୟା କଲେ ରହି ସେହି ସ୍ଥାନେ ।
ନାରାୟଣ ଦେବଙ୍କୁ ସେ ପତି ସ୍ୱରୂପରେ
ପାଇବାକୁ ସ୍ଥିରକରି ମାନସ ମଧ୍ୟରେ ।
ଏକଲକ୍ଷ ଦେବ ବର୍ଷ ତପକରି ତହିଁ
କଟାଇଲେ ଅତିଶୟ ଆନନ୍ଦିତ ହୋଇ ।
ଗ୍ରୀଷ୍ମକାଳେ ପଞ୍ଚଅଗ୍ନି ମଧ୍ୟରେ ବସନ୍ତି
ଶୀତଋତୁରେ ଶୀତଳ ଜଳେ ବୁଡ଼ିଥାନ୍ତି ।
ବରଷାକାଳରେ ପୁଣି ଶୂନ୍ୟ ନ ଭୂମିରେ
ଉଷ୍ଣହୋଇ ଜଳଧାରା ସହନ୍ତି ଶରୀରେ ।
ଫଳ ତୋୟ ଆହାରରେ କୋଡ଼ିଏ ସହସ୍ର
ବରଷ ନିମେଷ ପ୍ରାୟେ କରିଦେଲେ ଶେଷ ।
ସେ ଅନ୍ତରେ ପର୍ଣ୍ଣପତ୍ର କରିଣ ଆହାର
ତିରିଶ ସହସ୍ର ବରଷ ଯାପିଲେ ସତ୍ୱର ।
ତାପରେ ପବନ ଭକ୍ଷି ବାଇଶ ସହସ୍ର
ସମ୍ବତ୍ସର କଲେ ତପ ପ୍ରଭାବରେ ଶେଷ ।
ତହୁଁ ପୁଣି ଦଶ ସହସ୍ର ବର୍ଷ କାଳ ଯାଏ
ନିରାହାରେ ରହି ତପକଲେ ଅତିଶୟେ ।
ଏକ ପାଦେ ଉଭାହୋଇ ନ ଚାହିଁ କାହାକୁ
ଚିନ୍ତିଲେ କେବଳ ଧ୍ୟାନେ ନିବେଶି ମନକୁ ।
ତାହା ଦେଖି ପ୍ରଜାପତି ବର ଦେବା ପାଇଁ
ବଦରିକା ଆଶ୍ରମକୁ ଗଲେ ବେଗ ହୋଇ ।
ତୁଳସୀ ପାଶରେ ଯାଇ ପ୍ରବେଶ ହୋଇଲେ
କି ବର ମାଗୁଛ ମାଗ ବୋଲିଣ ବୋଇଲେ ।
ବ୍ରହ୍ମାଙ୍କୁ ଆଗରେ ଦେଖି ତୁଳସୀ ସୁନ୍ଦରୀ
ନମସ୍କାର କଲେ ତାଙ୍କ ବେନିପଦ ଧରି ।

ପ୍ରଶଂସା କରଣ ବ୍ରହ୍ମା ସେ କାଳେ ତାହାଙ୍କୁ
କହିଲେ କୋମଳତର ମଧୁର ବାକ୍ୟକୁ ।
ବୋଇଲେ ହେ ତପସ୍ୱିନୀ ମସ୍ତକମଣ୍ଡନା
ବର ଦେବାପାଇଁ ମୁହିଁ ଆସିଅଛି ମିନା ।
ତୁମ୍ଭଇଚ୍ଛା ଅଛି ମାଗିବାକୁ ଯେଉଁ ବର
ମାଗ ତାହା ଦେବ ଏବେ ବିଳମ୍ବ ନ କର ।
ଶ୍ରୀହରିଙ୍କଠାରେ ଭକ୍ତି ଅଥବା ମୁକତି
କି ଅବା ଅଜରାମର ସ୍ୱର୍ଗର ସମ୍ପତ୍ତି ।
ଯାହା ମାଗିବ ଏକ୍ଷଣି ଦେବ ମୁଁ ନିଶ୍ଚୟ
ସନ୍ତୁଷ୍ଟ ହୋଇଛି ତୁମ୍ଭ ତପେ ଅତିଶୟ ।
ତା ଶୁଣି ତୁଳସୀ ବାଳା ବିନୟ ଭାବରେ
କହିଲେ ବ୍ରହ୍ମାଙ୍କ ଆଗେ କର ଯୋଡ଼ି ଶିରେ ।
ଅହେ ତାତ ମନରେ ମୁଁ ଭାବିଅଛି ଯାହା
କହୁଅଛି ତୁମ୍ଭ ଆଗେ ଶୁଣ ଏବେ ତାହା ।
ସକଳ ଲୋକଙ୍କର ତ ଅଟ ତୁମ୍ଭେ ତାତ
ଇଚ୍ଛା କରିବାର ତୁମ୍ଭ ଆଗେ ଅନୁଚିତ ।
ପୂର୍ବକାଳେ ଗୋଲୋକରେ ରହିଥିଲି ମୁହିଁ
ତୁଳସୀ ଗୋପିକା ବୋଲି ନାମ ଥିଲି ପାଇ ।
କୃଷ୍ଣଙ୍କ ପ୍ରିୟସୀ ରାଧା ପରମାସୁନ୍ଦରୀ
ତାହାଙ୍କ ପାଶରେ ହୋଇଥିଲି ମୁଁ କିଙ୍କରୀ ।
ଏକଦିନେ ଶ୍ରୀକୃଷ୍ଣଙ୍କ ସଙ୍ଗତରେ ତହିଁ
ମହାସୁଖେ କାମକ୍ରୀଡ଼ା କରୁଥିଲି ରହି ।
ତାଙ୍କ ଅଙ୍ଗ ସଙ୍ଗ ପାଇ ମୂର୍ଚ୍ଛିତା ହୋଇଲି
ଆସିଲେ ରାଧିକା ତହିଁ ଜାଣି ନ ପାରିଲି ।
ତା ଦେଖି ସେ ରାସେଶ୍ୱରୀ ମହାକୋପ କଲେ
ଶ୍ରୀକୃଷ୍ଣଙ୍କୁ ନାନାମତେ ଭର୍ତ୍ସନା କରିଲେ ।
ମେ ତେ ଅନାଇଣ ତହୁଁ ଶାପଦେଲେ ଚଳି
ବୋଇଲେ ମୋଠାରେ ଦ୍ରୋହକଲୁଲୋ ପୁଂଶ୍ଚଳି
ଏ ସକାଶୁଁ ମର୍ତ୍ତ୍ୟଲୋକେ ନରଦେହ ଘେନି
ରହିଥାଅ ହୋଇ ଆଲୋ ଦୁର୍ବୁଦ୍ଧି କାମିନୀ ।
ତାହାଶୁଣି ଶ୍ରୀକୃଷ୍ଣଙ୍କୁ ଜଣାଇଲି ମୁହିଁ
ସେକାଳେ କହିଲେ ମୋତେ ଜଗତଗୋସାଇଁ
ବଇକୁଣ୍ଠେ ଚତୁର୍ଭୁଜ ବିଷ୍ଣୁଙ୍କର ତୁମ୍ଭେ
ଭାର୍ଯ୍ୟା ହୋଇବ ବର ଦେଉଅଛୁ ଆମ୍ଭେ ।
ମାତ୍ର ଏବେ ମର୍ତ୍ତ୍ୟଲୋକେ ତପ କରୁଥିବ
ବ୍ରହ୍ମାଙ୍କ ବଚନେ କାଳେ ବୈକୁଣ୍ଠକୁ ଯିବ ।

ସେହିବଚନରୁ ମୁହିଁ ମାନବଲୋକରେ
ଜନ୍ମହୋଇ ତପ କରୁଅଛି ଏଥିଠାରେ ।
ପତିରୂପେ ନାରାୟଣ ଦେବଙ୍କୁ ପାଇବି
ଏହିକଥା ମାନସରେ ଅଛି ଜାଣ ଭାବି ।
ଯେବେ ଆସିଅଛ ବର ଦେବାପାଇଁ ମୋତେ
ଦୟାକରି ଏହି ବର ଦିଅ ମହାମତେ ।
ବିଧାତା ବୋଇଲେ ଶୁଣ ତୁଳସୀ ସୁନ୍ଦରୀ
ଗୋଲୋକରେ ଶ୍ରୀକୃଷ୍ଣଙ୍କ ଅଂଶ ଯେହିଜନ ।
ସୁଦାମା ନାମରେ ଗୋପେ ଜାତ ହୋଇଥିଲେ
ରାଧାପାଶେ ମର୍ତ୍ତ୍ୟରେ ସେ ଜନମ ପାଇଲେ ।
ଦନୁ ନରପତିଙ୍କର ବଂଶରେ ଜନମ
ପାଇଛନ୍ତି ଶଙ୍ଖଚୂଡ଼ ଅଟେ ତାଙ୍କ ନାମ ।
ତାଙ୍କପରି ତେଜୋବନ୍ତ ଯଶୋବନ୍ତ କେହି
ଜଗତରେ ଥିଲାପରି ଦୃଶ୍ୟ ହେଉନାହିଁ ।
ପୂର୍ବକାଳେ ଗୋଲୋକରେ ତୁମ୍ଭଙ୍କୁ ସେ ଦେଖି
କାମଶରେ ପୀଡ଼ା ପାଇ ହେଲେ ମହାଦୁଃଖୀ ।
ରାଧାଙ୍କ ଭୟରେ ଭୋଗ କରି ନ ପାରିଲେ
ତହୁଁ ବନମଧ୍ୟେ ରହି ଘୋର ତପ କଲେ ।
କେତେକାଳ ଅନ୍ତେ ବର ପାଇ ଶିବଙ୍କର
ଜାତିସ୍ମର ହୋଇ ଜନମିଲେ ମର୍ତ୍ତ୍ୟପୁର ।
ତୁମ୍ଭେ ମଧ୍ୟ ଜାତିସ୍ମର ହୋଇଅଛ ଯେଣୁ
ଜାଣି ପାରୁଥିବ ସବୁ ପୂର୍ବକଥା ତେଣୁ ।
ଏବେ ମୋର ବୋଲେ ଯାଇ ଶଙ୍ଖଚୂଡ଼ଙ୍କର
ପତ୍ନୀହୋଇ କେତେଦିନ ରହ ସୁନାବର ।
ସେ ଅନ୍ତରେ ନାରାୟଣ ତୁମ୍ଭ ପତି ହେବେ
ତୁମ୍ଭର କାମନା ସିଦ୍ଧି ହେବ ଯାଇ ତେବେ ।
ନାରାୟଣଙ୍କ ବଚନେ କଳାମାତ୍ରେ ତୁମ୍ଭେ
ବୃକ୍ଷ ରୂପ ହେବ ଏହା ଜାଣୁଅଛୁଁ ଆମ୍ଭେ ।
ସକଳ କୁସୁମ ବୃକ୍ଷେ ହୋଇବ ପ୍ରଧାନ
ଆଦର କରିବେ ପ୍ରଭୁ ଜଗତ କାରଣ ।
ପ୍ରାଣରୁ ଅଧିକ ତୁମ୍ଭେ ହେବ ବିଷ୍ଣୁଙ୍କର
ପୂଜିବେ ତୁମ୍ଭଙ୍କୁ ନରେ ହୋଇ ଭୋଗଭର ।
ତୁମ୍ଭ ପୁଷ୍ପବିନା ଦେବପୂଜା ଆଦି ଯେତେ
ନିଷ୍ଫଳ ହୋଇବେ ଜଗତରେ ସେ ସମସ୍ତେ ।
ବୃନ୍ଦାବନେ ବୃନ୍ଦାବତୀ ତୁମ୍ଭ ନାମ ହେବ
ତୁମ୍ଭପଣ ତୋଳି ନେଇ ଗୋପ ଗୋପୀ ସର୍ବ ।

ଶ୍ରୀକୃଷ୍ଣଙ୍କ ପୂଜାବିଧି କରିବେ ତାହାଂର
ଥିବ ତୁମ୍ଭେ ବୃକ୍ଷ ଅଧିଦେବତା ରୂପର ।
ଗୁପତରେ ଶ୍ରୀକୃଷ୍ଣଙ୍କ ସଙ୍ଗତେ ତାହାର
କରିବ ସେଠାରେ ମୁହିଁ ଦେଉଅଛି ବର ।
ଦର୍ପଣରେ ତୁମ୍ଭଙ୍କୁ ସେ ଶିରରେ ଧାରଣ
କରୁଥିବେ ପ୍ରତିଦିନ ଦେବ ନାରାୟଣ ।
ଏହିରୂପେ ଶୁଣି ଅଳ୍ପ ହସିଣ ତୁଳସୀ
ବ୍ରହ୍ମାଙ୍କ ଚରଣ ତଳେ ପ୍ରଣମିଲେ ଆସି ।
ଆଉରି ବୋଇଲେ ଶୁଣ ଆହେ ପିତାମହ
ଯେଉଁରୂପେ ଶ୍ରୀକୃଷ୍ଣଠାରେ ଅଛି ମୋର ସ୍ନେହ ।
ଚତୁର୍ଭୁଜ ବିଷ୍ଣୁଙ୍କର ଠାରେ ସେହିପରି
ନାହିଁ ସତ୍ୟ କହୁଅଛି ଆଗରେ ତୁମ୍ଭର ।
ଗୋବିନ୍ଦଙ୍କଠାରେ ଆଶା ରଖିଅଛି ମୁହିଁ
ପ୍ରଥମ ଶୃଙ୍ଗାର ଭଙ୍ଗ ହୋଇବାରୁ ତହିଁ ।
କେବଳ ତାହାଙ୍କ କଥା ମାନଙ୍କର ଆସି
ନାରାୟଣଙ୍କୁ ପ୍ରାର୍ଥନା କରୁଅଛି ବସି ।
ତୁମ୍ଭ ପ୍ରସାଦରେ ସେହି ଶ୍ରୀକୃଷ୍ଣଙ୍କୁ ମୁହିଁ
ନିଶ୍ଚୟ କରୁଛି ମନେ ପାଇବାର ପାଇଁ ।
ରାଧାଠାରୁ ଯେଉଁ ଭୟ ହେଉଅଛି ମୋର
ପ୍ରସନ୍ନ ହୋଇଣ ତୁମ୍ଭେ ତାହାକୁ ନିବାର ।
ଏହିରୂପେ ତୁଳସୀଙ୍କ ବଚନକୁ ଶୁଣି
କହିଲେ ତାହାଙ୍କୁ ବ୍ରହ୍ମା ମନେ ମନେ ଗୁଣି ।
ବୋଇଲେ ଗୋ ତପସ୍ୱିନୀ କହିଲୁ ତୁ ଯାହା
ସେ ବିଷୟେ ଯା ଉଚିତ ଶୁଣ ଏବେ ତାହା ।
ରାଧାଦେବୀଙ୍କର ମନ୍ତ୍ର ଷୋଡ଼ଶ ଅକ୍ଷର
କହୁଅଛି ସାବଧାନେ ଗ୍ରହଣ ତୁ କର ।
ତାହାର ପ୍ରଭାବେ ରାଧାଙ୍କର ପ୍ରିୟସଖି
ହୋଇବ ନିଶ୍ଚେ ଏ କଥା ମନେ ଥାଅ ରଖି ।
ଶ୍ରୀକୃଷ୍ଣ ଯେ ତୁମ୍ଭେ ସ୍ନେହ କରନ୍ତି ରାଧାଙ୍କୁ
ସେପରି କରିବେ ମଧ୍ୟ ଜାଣ ସେ ତୁମ୍ଭଙ୍କୁ ।
ଏରୂପେ କହିଣ ବ୍ରହ୍ମା ମନ୍ତ୍ର ଦାନ କଲେ
ପୂଜାବିଧି ସ୍ତୋତ୍ର ମନ୍ତ୍ର କବଚର ତୁଲେ ।
ଶୁଭ ଆଶୀର୍ବାଦ ପ୍ରଦାନ କରି ସେ ଅନ୍ତରେ
ଅନ୍ତର୍ଦ୍ଧାନ ହୋଇଗଲେ ଆପଣାର ପୁରେ ।
ବ୍ରହ୍ମାଙ୍କ ଆଦେଶ ପାଇ ତୁଳସୀ ସୁନ୍ଦରୀ
ବଦରୀ ଆଶ୍ରମେ ବାସ କଲେ ପୂର୍ବପରି ।
ବିଧାତା ଯେ ମନ୍ତ୍ର ତାଙ୍କୁ ଦେଇ ଯାଇଥିଲେ
ସର୍ବଦା ବସିଣ ତାକୁ ହୃଦରେ ଜପିଲେ ।
ଭୋଜନ ଶୟନ ସୁଖ ଉପଭୋଗ ଯେତେ
ସବୁ ତେଜ୍ୟା କରି ତପ ଧାରିଲେ ନିଇତେ ।
ଦିବ୍ୟ ବାରବର୍ଷ କାଳ ଅତୀତ ହୋଇଲା
ସେତେବେଳେ ତାହାଙ୍କର ତପ ସିଦ୍ଧ ହେଲା ।
ଏହିରୂପେ ବର ପାଇ ତପସିଦ୍ଧ କଲେ
ସେ ଅନ୍ତେ ଦୁର୍ଲ୍ଲଭ ଭୋଗେ ମନ ବଳାଇଲେ
ବିବିଧ ପଦାର୍ଥ ଆଣି କଲେ ଉପଭୋଗ
ପାସୋରିଲେ ଯେତେ ଦୁଃଖ ପାଇଥିଲେ ଆଗ
ଯେଉଁ ଲୋକ କଷ୍ଟ ସହି କାର୍ଯ୍ୟ କରୁଥାଏ
ଫଳଲାଭ ହେଲେ ଦୁଃଖ ତା ମନରୁ ଯାଏ
ଦିବ୍ୟପାନ ଭୋଜନରେ ସେ ତୁଳସୀ ନାରୀ
ବସିଲେ ପୂର୍ଣ୍ଣିମା ରାତ୍ରି ଚନ୍ଦ୍ରବିମ୍ବ ପରି ।
ଏହିଠାରେ ତୁଳସୀଙ୍କ ବରଦାନ ଗାଥା
ଶେଷ କଲେ ଷେହ ପ୍ରଭୁ ପାଦ କରି ଶିରା ।
ଏ ପବିତ୍ର ଉପାଖ୍ୟାନ ଜଗତର ସାର ।
ଶୁଣିଣ ଶୁଣାଏ ଯେଉଁ ଭାଗ୍ୟବନ୍ତ ନର ।
ଇହଲୋକେ ସର୍ବସୁଖ ପ୍ରାପ୍ତ ହୁଏ ସେହି
ପରଲୋକେ ବିଷ୍ଣୁ ପାଦପଦ୍ମରେ ମଜ୍ଜଇ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ତୁଳସୀ ଜନ୍ମ ଓ ବରଦାନ
କଥନେ ନାମ ଷୋଡ଼ଶୋଽଧ୍ୟାୟଃ ।

# ସପ୍ତଦଶ ଅଧ୍ୟାୟ

## ତୁଳସୀ ସହିତ ଶଙ୍ଖଚୂଡ଼ର ମିଳନ

ନାରାୟଣ ବୋଲନ୍ତି ହେ ନାରଦ ମହର୍ଷି
ଏହିରୂପେ ସୁଖଭୋଗ କରଇ ତୁଳସୀ ।
ହୃଷ୍ଟପୁଷ୍ଟ ଅବୟବେ ଦିଶିଲେ ସୁନ୍ଦର
ଯେରୂପେ ସାକ୍ଷାତେ ରମାପତି ଗଦାଧର ।
ନବ ଯଉବନେ ତାହାଙ୍କର ପ୍ରତିଅଙ୍ଗ
ଅଧିକାର କଲାବେଳେ ପ୍ରତାପୀ ଅନଙ୍ଗ ।
ପୁଷ୍ପଧନୁ ଟାଣି ପଞ୍ଚ ସାୟକ ବିନ୍ଧିଲା
ତାହାଙ୍କର ମୁଖ ନାସା କର୍ଣ୍ଣକୁ ରୁନ୍ଧିଲା ।
ସେ ହେତୁ ଅଧୀର ହୋଇ ସେ ରମଣୀମଣି
ଭଲ ମନ୍ଦ କଥା କହି ନ ପାରିଲେ ଜାଣି ।
କାମରେ ପୀଡ଼ିତା ହୋଇ ବାତୁଳୀ ପରାୟେ
ଅସ୍ତବ୍ୟସ୍ତ ହେଲେ ସେହିଦିନୁ ଅତିଶୟେ ।
କେତେବେଳେ କଣ୍ଠତାଳୁ ଶୁଖେ ତାହାଙ୍କର
କେବେ ମୂର୍ଚ୍ଛା ଆକ୍ରମଣ କରଇ ଶରୀର ।
ଉଦ୍‌ବେଗ ହୁଅନ୍ତି କେତେବେଳେ କ୍ଷଣେଯାଏ
କେଉଁ ସମୟରେ କ୍ଷଣେ ତନ୍ଦ୍ରା ଜାତ ହୁଏ ।
ଦାହ ମୋହ ପରିତାପ କେଉଁ ସମୟରେ
ପାଉଥାନ୍ତି ପୁଣି ଜ୍ଞାନ କ୍ଷଣକ ଅନ୍ତରେ ।
ଶଯ୍ୟାରୁ ଉଠନ୍ତି କେବେ ବ୍ୟସ୍ତ ହୋଇକରି
ଚାଲିଯାନ୍ତି କେତେବେଳେ ପାଦ ଦୁଇଚାରି ।
କେତେବେଳେ ପୁନଃପୁନଃ କରନ୍ତି ଭ୍ରମଣ
କେଉଁ ସମୟେ ବିଳାପ କରୁଥାନ୍ତି ପୁଣ ।
ଉଦ୍‌ବେଗ ହୋଇଣ କେବେ ଶୁଅନ୍ତି ମୁହୂର୍ତ୍ତେ
ଉଠନ୍ତି ବା କେତେବେଳେ ବୋଧ କରି ଚିତ୍ତେ ।
କୁସୁମ ଚନ୍ଦନ ଶଯ୍ୟା କଣ୍ଟାଲଠା ପର
ଲାଗେ ତାଙ୍କ ଶରୀରକୁ ଆହେ ତପେଶ୍ୱର ।
ସୁସ୍ୱାଦୁ ଭୋଜନ ଦିବ୍ୟଫଳ ମୂଳ ଜଳ
ସୁଚୀନ ବସନ ଅଙ୍ଗରାଗ ଯେ ସକଳ ।
ଅନଳ ସମାନ ତାଙ୍କୁ ପ୍ରତୀତ ହୁଅଇ
କେଉଁଥିରେ ହେଲେ ମନ ସନ୍ତୁଷ୍ଟ ନୁହଇ ।
ପ୍ରିୟବାକ୍ୟ ତାଙ୍କ ଆଗେ କହେ ଯେବେ କେହି
ବିଷପରି ବିଚାରନ୍ତି ତାହାକୁହିଁ ସେହି ।

ତନ୍ଦ୍ରାଯୋଗେ କେତେବେଳେ ନେତ୍ରପଥେ ଆସି
ଦିବ୍ୟସୁନ୍ଦର ପୁରୁଷ ରୂପ ଯାଏ ଦିଶି ।
ବିବିଧ ରତ୍ନ ଭୂଷଣେ ଭୂଷିତ ସୁନ୍ଦର
ଚନ୍ଦନ ଲେପିତ ଅଙ୍ଗ ଅତି ମନୋହର ।
ଏମନ୍ତ ବେଶରେ ଜଣେ ରସିକ ପୁରୁଷ
ଲାଗଇ ଉଦୟ ହୋଇଲା ପ୍ରାୟେ ତାଙ୍କ ପାଶ ।
କେତେବେଳେ ରତିକଥା କହିଲା ପରାୟେ
ଆଉର ଗଣ୍ଡସ୍ଥଳରେ ଚୁମ୍ବ ଦେଲା ପ୍ରାୟେ ।
ସମ୍ଭୋଗ କରିବ ପରି ତଳପ ଉପରେ
ଆଲିଙ୍ଗନ କରି ଆଣେ ଭିଡ଼ିବା ପ୍ରକାରେ ।
ପୁଣି ତ୍ୟାଗକରି ଚଳାଇଲା ଦୂରେ ଚାଲି
ଏ ଘରେ ବାହାରେ ପୁଣି ଗଲା ପ୍ରାୟ ହେଲା ।
ଏହିରୂପେ ନାନାଭାବେ ଦେଖି ସେ ଅଙ୍ଗନା
କ୍ଷଣେ ରହି ନ ପାରନ୍ତି ହୋଇ ସ୍ଥିରମନା ।
ବସନ୍ତକାଳେ ଆସିବା ପ୍ରାୟେ କେତେବେଳେ
ଲାଗଇ ତାହାଙ୍କୁ ନିଜ ମତିଭ୍ରମ ବଳେ ।
କାହିଁ ଯାଉଅଛ କାନ୍ତ ମୋତେ ଛାଡ଼ିକରି
କ୍ଷଣେମାତ୍ର ମୋ ପାଶରେ ବିଳମ୍ବ ନ କରି ।
ଏମନ୍ତ ପ୍ରଳାପ ବାକ୍ୟ କହି ଜ୍ଞାନ ତେଜ
ଶୁଅନ୍ତି ବା କେତେବେଳେ ଚକ୍ଷୁ ବେଢ଼ି ଭୁଜ ।
ଚେତା ପାଇ ପୁଣି ଉଚ୍ଚେ କରନ୍ତି ରୋଦନ
ତଟସ୍ଥ ହୁଅନ୍ତି ତାହା ଶୁଣି ସର୍ବଜନ ।
ଏହିରୂପେ ବଦରିକା ଆଶ୍ରମରେ ରହି
କଷ୍ଟେ କଷ୍ଟେ କେତେକାଳ କଟାଇଲେ ସେହି ।
ମହାଯୋଗୀ ଶଙ୍ଖଚୂଡ଼ ସେହି ସମୟରେ
କୃଷ୍ଣମନ୍ତ୍ର ସିଦ୍ଧକରି ପୁଷ୍କର ତୀର୍ଥରେ ।
ସକଳ ମଙ୍ଗଳମୟ କବଚକୁ ଗଳେ
ଗ୍ରହଣ କରି ସେ ନିଜ ତପ ମନ୍ତ୍ରବଳେ ।
ବ୍ରହ୍ମା ଶିବ ଦୁହିଙ୍କର ଠାରୁ ପାଇ ବର
ବ୍ରହ୍ମାଙ୍କ ବଚନେ ତହୁଁ ଆସିଣ ସତ୍ୱର ।
ବଦରିକା ଆଶ୍ରମରେ ପ୍ରବେଶ ହୋଇଲେ
ତୁଳସୀ କନ୍ୟା ତ ଯେଉଁ ସ୍ଥାନେ ରହିଥିଲେ ।

ଶଙ୍ଖଚୂଡ଼ ଜଙ୍ଘ ଉରୁକୁ ପାଦରେ ଅନାଇଁ
ଦେଖିଲେ କନ୍ଦର୍ପ ତୁଲ୍ୟ ହୋଇଛନ୍ତି ସେହୁ ।
ପ୍ରବେଶ କରନ୍ତି ସେତେବେ ନବ ପଲ୍ଲବ
ବର୍ଣ୍ଣ ଦିଶୁଅଛି ଶ୍ୱେତ ଚମ୍ପକ ସମାନ ।
ମଣ୍ଡିତ ସମଗ୍ର ଅଙ୍ଗ ରତ୍ନ ଅଳଙ୍କାରେ
ମୁକ୍ତା ଦିଶେ ଶରଦଚନ୍ଦ୍ର ବିମ୍ବ ପରକାରେ ।
ଶ୍ୱେତପଦ୍ମ ପତ୍ରର ସୁନ୍ଦର ଲୋଚନ
ପରିଧାନ କରିଛନ୍ତି ଅମୂଲ୍ୟ ବସନ ।
ରତ୍ନ କୁଣ୍ଡଳରେ ଗଣ୍ଡସ୍ଥଳ ବିରାଜିତ
ସୁରଙ୍ଗ ଅଧର ମୁଖକମଳ ସସ୍ମିତ ।
ଝୁଲୁଅଛି ବକ୍ଷସ୍ଥଳେ ପାରିଜାତ ମାଳା
କସ୍ତୁରୀ କୁଙ୍କୁମ ଅଙ୍ଗେ ହୋଇଅଛି ବୋଳା ।
ଆରୋହଣ କରିଛନ୍ତି ବ୍ରହ୍ମମୟ ରଥେ
ପ୍ରବେଶ ହୋଇଲେ ଯାଇଁ ଆସି ରାଜପଥେ ।
ଦେଖି ଦେଖି ନିକଟରେ ହେଲେ ତହୁଁ ଆସି
ତାଙ୍କ ମୁଖ ଦେଖି ଅଳ୍ପ ଲଜ୍ଜାରେ ତୁଳସୀ ।
ବସ୍ତ୍ରାଞ୍ଚଳେ ଆପଣାର ମୁଖ ଆଚ୍ଛାଦିଲେ
କଟାକ୍ଷ ଦୃଷ୍ଟିରେ ତାଙ୍କୁ ନିରୀକ୍ଷଣ କଲେ ।
କନ୍ଦର୍ପ ବାଣରେ ପୀଡ଼ାପାଇ ମୂର୍ଚ୍ଛିତ ହେଲେ
ପୁରୁଷଙ୍କୁ ଦେଖି ପାଶେ ଲଜ୍ଜିତା ହୋଇଲେ
ପୁନଃ ପୁନଃ ଦୃଷ୍ଟିକାମ ଦେଲା ଯହୁଁ ପୀଡ଼ା
ଅନାଇଁ ରହିଲେ ତାଙ୍କୁ ଛାଡ଼ିଦେଇ ବ୍ରୀଡ଼ା ।
ତାହା ଦେଖି ଶଙ୍ଖଚୂଡ଼ ବିଚାରିଲେ ମନେ
ଏ ଯୁବତୀ ଏକାକିନୀ ଅଛି ତପୋବନେ ।
କୁସୁମ ଚନ୍ଦନ ତଳ୍ପ କରିଛି ଶୟନ
ଦେବସ୍ତ୍ରୀ ପ୍ରାୟେ ଦିଶୁଅଛି ଶୋଭାଜନ ।
ଏମନ୍ତ ବିଚାରି ତାଙ୍କୁ ଉପୁକର ଦୃଷ୍ଟି
ଦେଖିଲେ ସୁନ୍ଦର ରୂପ ବହିଛନ୍ତି ସେହୁ ।
ଜାନୁଯୁଗ ଅଟେ ରମ୍ଭାସ୍ତମ୍ଭର ସମାନ
ସୁପୀନ କଠିନ ଉଚ୍ଚ ହୋଇଅଛି ସ୍ତନ ।
ମୁକ୍ତାମାଳା ପରି ଶୁଭ୍ର ଦେଖ ଦନ୍ତପନ୍ତି ।
ଦିଶୁଅଛି ଜିଣି କୁନ୍ଦ ମଲ୍ଲୀପୁଷ୍ପ କାନ୍ତି ।
ଅଧରଯୁଗ ଦିଶଇ ପକ୍ୱବିମ୍ବ ପରି
ତିଳପୁଷ୍ପ ପ୍ରାୟ ନାସା ବହିଛି ସୁନ୍ଦରୀ ।
ତପତ କାଞ୍ଚନ ତୁଲ୍ୟ ତାର ଅଙ୍ଗ ପ୍ରଭା
ଶରଦ ଚନ୍ଦ୍ରମା ପ୍ରାୟେ ପାଉଅଛି ଶୋଭା ।

ସ୍ୱର୍ଗୀୟ ତେଜରେ ରୂପ ଦିଶେ ମନୋହର
ବହନ୍ତି ସିନ୍ଦୂର ବିନ୍ଦୁ ଲଲାଟ ଉପର ।
ସୀମନ୍ତ ରୁଚିର ଦିବ୍ୟବନ୍ଧ କେଶପାଶ
ଉଦର ବର୍ତ୍ତୁଳ ସୁକୋମଳ ନାଭିଦେଶ ।
ନାଭି ତଳେ ତ୍ରିବଳୀରେଖା କନ୍ଦର୍ପ ସୋପାନ
ସମାନ ଦିଶଇ ପୁଣି ଅତି ଶୋଭାବନ ।
ସ୍ଥଳପଦ୍ମ କାନ୍ତି ଜିଣି ଦିଶେ କରତଳ
ଚନ୍ଦ୍ରମଣ୍ଡଳକୁ ନଖ କରଇ କବଳ ।
ସେହିପରି ପାଦତଳ ଆରକ୍ତବରନ
ଅଳକ୍ତକ ପ୍ରଭା କରୁଅଛଇ ହରଣ ।
ତାପରେ ଅମୂଲ୍ୟ ରତ୍ନ ନିର୍ମିତ ନୂପୁର ।
ସୁବର୍ଣ୍ଣ କିଙ୍କିଣୀ ଯୋଗେ ଦିଶଇ ସୁନ୍ଦର ।
କବରୀ ଭାର ଉପରେ ମାଳତୀର ଗଭା
ନକ୍ଷତ୍ରମାଳା ପରାୟେ ପାଉଅଛି ଶୋଭା ।
ବେନି କର୍ଣ୍ଣରେ ଶୋଭିତ ସୁବର୍ଣ୍ଣ କୁଣ୍ଡଳ
ମଣ୍ଡିତ କରଇ କାରଣରେ ଗଣ୍ଡସ୍ଥଳ ।
ସ୍ତନ ମଧ୍ୟେ ଲମ୍ବମାନ ରତ୍ନମୟ ହାର
ହସ୍ତେ ବାହୁମୂଳେ ଶୋଭେ କଙ୍କଣ କେୟୂର ।
ପ୍ରତ୍ୟେକ ଅଙ୍ଗୁଳି ମୂଳେ ଦିବ୍ୟରତ୍ନ ମୁଦି
ଝଟକ ଦିଶଇ କର ଶୋଭାକୁ ସମ୍ପାଦି ।
ଏରୂପେ ସେ ବୃନ୍ଦାବାସୀ ସୁନ୍ଦରୀର ରୂପେ
ମୋହିତ ହୋଇଣ ଶଙ୍ଖଚୂଡ଼ ତ ସମୀପେ ।
ବସି ସେହିକ୍ଷଣି ଲଜ୍ଜା ଭୟ ଛାଡ଼ିଦେଇ
କହିଲେ ପୁଣି ତାହାଙ୍କ ମୁଖକୁ ଅନାଇଁ ।
ବୋଇଲେ କିଏ ସେ ତୁମ୍ଭେ ଅଟ ଗୋ ଯୁବତୀ
କାହାର କନ୍ୟକା କାର ଅବା ପ୍ରିୟବତୀ ।
କାହିଁପାଇଁ ଏକାହୋଇ ରହିଛ ଏଠାରେ
ଲାବଣ୍ୟ ସାଗର ପୂରିଅଛି ତୁମ୍ଭଠାରେ ।
ସୁନ୍ଦରୀ ପଣରେ ତୁମ୍ଭେ ଅଟ ମନୋରମା
ଜଗତେ ନ ଥିବେ କେହି ତୁମ୍ଭର ଉପମା ।
ଉର୍ବଶୀ ମେନକା ଆଦି ଯେତେ ପରସ୍ତ୍ରୀସ
କେଉଁଗୁଣେ ତୁମ୍ଭଙ୍କୁ ସେ ନ ହୋଇଲେ ସରି ।
ବାର ସତ ମାୟାମୟ ଅସାର ସଂସାରେ
ସାରଭାବ ବିଷ୍ଣୁ ରଖିଅଛି ତୁମ୍ଭଠାରେ ।
ତପସ୍ୱୀ ବୈଷ୍ଣବ ତ୍ୟାଗୀ ମୁନି ଋଷିଗଣ
ତୁମ୍ଭର ରୂପକୁ ଯେବେ କରିବେ ବର୍ଣ୍ଣନ ।

ମୋହିତ ହୋଇବେ ଏଥି ସନ୍ଦେହ ଯେ ନାହିଁ
ଏକଥା ଉତ୍ତମ ରୂପେ ଜାଣୁଅଛୁ ମୁହିଁ ।
ତୁମ୍ଭ ଦାସ ହେବାପାଇଁ ଇଚ୍ଛା ହୁଏ ମୋର
ମନ୍ଦନେ ନ ରଖ ମୋତେ ଦିଅ ଗୋ ଉତ୍ତର ।
ଏରୂପେ ଶଙ୍ଖଚୂଡ଼ଙ୍କ ମଧୁର ବଚନ
ଶୁଣିଣ ତୁଳସୀ ଦେବୀ ତୋଷକର ମନ ।
ମନ୍ଦହାସ ପରକାଶି ନମ୍ର କରି ମୁଖ
ବୋଇଲେ ଶୁଣିମା ହେଉ ଆହେ ନରଶିଖ ।
ଧର୍ମଧ୍ୱଜସୁତା ମୁହିଁ ମୋ ନାମ ତୁଳସୀ
ତପ କରୁଅଛୁ ଏହି ଆଶ୍ରମକୁ ଆସି ।
ତୁମ୍ଭେ କଏ କେଉଁଠାରୁ ହୋଇଲ ଆଗତ
ଯାଅ ନିଜ ସ୍ଥାନେ ମୋର କଥା ବୁଝିଲ ତ ।
ପତିବ୍ରତା ତପସ୍ୱିନୀ ଏକାକିନୀ ନାରୀ
ଥିବ ଯେବେ ଆପଣାର ଧର୍ମ ଆଶ୍ରେ କରି ।
କୁଳୀନ ପୁରୁଷ ତାର ପାଖକୁ ନ ଯିବ
ଆଉର ଏକାନ୍ତେ ତାକୁ କଥା ନ କହିବ ।
ଏହିପରି ବେଦଶାସ୍ତ୍ର ନିୟମ ଅଟଇ
ଯେଉଁଲୋକ ନୀଚକୁଳେ ଜନମକୁ ପାଇ ।
ଶାସ୍ତ୍ରଅର୍ଥ ତତ୍ତ୍ୱ ଜାଣି ନ ଥିବ କଷ୍ଟରେ
ସେ ଲୋକ ଭାବଇ ତାର କାମିନୀକୁ ଶରେ ।
ପ୍ରକୃତରେ ଦରଶନ ମାତ୍ରେ ସୁଧାମୟ
ହେଲେ କାମିନୀ ଅନ୍ତେ ମୃତ୍ୟୁ ଦେବାପ୍ରାୟ ।
ଯେଉଁରୂପେ ବିଷକୁମ୍ଭ ମୁଖରେ ଅମୃତ
ଥିଲେ ସେ ସମସ୍ତେ ନଷ୍ଟ କରଇ ଜୀବତ ।
ସେହିପରି ସ୍ତ୍ରୀ ଶ୍ରୀକାନ୍ତ ଆଳାପ ମଧୁର
ହୃଦୟ ଅଟଇ ଯେହ୍ନେ ତୀକ୍ଷ୍ଣ କ୍ଷୁରଧାର ।
ଆପଣାର କାର୍ଯ୍ୟସିଦ୍ଧି କରିବା ପାଇଁକି
କାମିନୀଏ ସବୁବେଳେ ରହିଥାନ୍ତି ଠାକି ।
କାର୍ଯ୍ୟହେଲେ ପତିସଙ୍ଗେ ପ୍ରୀତି କରିଥାଏ
ସେ ଅନ୍ତରେ କଟୁକଥା କହି ଗାଳିଦିଅ ।
ଯାହାଙ୍କ ଚରିତ ଗୁଣ ବେଦ ପୁରାଣରେ
ନିରୂପିତ ହୋଇନାହିଁ କେବଣ ପ୍ରକାରେ ।
ତାଙ୍କଠାରେ କେଉଁ ବିଜ୍ଞ ପୁରୁଷ ପ୍ରଧାନ
ବିଶ୍ୱାସ କରିବ ମନେ କରନ୍ତୁ ଭାବନ ।
ତାହାଙ୍କ ହୃଦରେ ନାହିଁ ପରାପର ଜ୍ଞାନ
କରନ୍ତି ସେ ନବ ନବ ପୁରୁଷଙ୍କୁ ମନ ।

ସୁନ୍ଦର ସୁବେଶ ଲୋକ ଦେଖିଲେ ନେତ୍ରରେ
ଅଭିଳାଷ ରଖିଥାନ୍ତି ତାହା ସଙ୍ଗମରେ ।
ବାହାରେ ଆପଣା ସତୀପତିବ୍ରତା ପଣ
ପ୍ରକାଶ କରନ୍ତି ପର ନିକଟରେ ଜାଣ ।
କାନ୍ତକୁ ରହସ୍ୟକାଳେ ଗ୍ରାମ କରିଥାନ୍ତି
ଲୋକେ ଜାଣିବାକୁ ଦାଣ୍ଡେ ଲଜ୍ଜା ତା ଦିଶନ୍ତି ।
ମୈଥୁନ ଅଭାବ ହେଲେ ଅଭିମାନ କରି
କମ୍ପିଥାନ୍ତି ପୁରୁଷଙ୍କୁ ଦୂରେ ପରହରି ।
ବହୁତ ସମ୍ଭୋଗକଲେ କରନ୍ତି ସେ ଭୟ
ଅଳପେ ତାହାଙ୍କ ମନ ହୁଏ ଦୁଃଖମୟ ।
ସବୁବେଳେ ଗୁଣବନ୍ତ ରସିକ ସୁନ୍ଦର
ଯୁବକ କୋମଳାଙ୍ଗ ଅଟେ ଯେଉଁ ନର ।
ସୁସ୍ୱାଦୁ ଭୋଜନ ଦ୍ରବ୍ୟ ଜଳଠାରୁ ତାକୁ
ଅଧିକ ମଣନ୍ତି ପୁଣି ଭୋଗ କରିବାକୁ ।
ଉତ୍ତକାର୍ଯ୍ୟେ ସୁଚତୁର ହେଲେ ପରଲୋକ
ପୁତ୍ରଠାରୁ ବରିରନ୍ତି ତାହାକୁ ଅଧିକ ।
ପ୍ରାଣତୁଲ୍ୟ ସୁଖ ଦୁଃଖ ଭୋଗ ସହଚର
ଅଟଇ ଯେ ପତି ବୃଦ୍ଧାବସ୍ଥା ହେଲେ ତାର ।
ଏ ବାହାରେ ରତିରସେ ବଳ ଊଣା ହେଲେ
ବିଷପ୍ରାୟ ତାକୁ ଜ୍ଞାନ କରନ୍ତି ଭଲେ ।
କ୍ରୋଧଭରେ ସବୁବେଳେ ତାହାସଙ୍ଗେ କଳି
କରିଣ ଦିଅନ୍ତି ନାନା ପରକାରେ ଗାଳି ।
ଚୋରୁଟ ନାଶ କରଇ ଯେହ୍ନେ ପାପରାଶି
ବସନ୍ତ ସେ ରୂପେ ତାକୁ ଦେବାପାଇଁ ଗ୍ରାସି ।
ଦୁଃସାହସ କରମରେ ସର୍ବଦା ପ୍ରବୃତ୍ତି
ଆଉର କପଟ ଭାବେ ରହେ ତାଙ୍କ ମତି ।
ତପସ୍ୟା ମାର୍ଗରେ ସେହି ଅଟନ୍ତି ଅର୍ଗଳା
ତାଙ୍କ ଯୋଗେ ମୁକ୍ତି ଦ୍ୱାର ହୋଇଯାଏ କଳା ।
ଶ୍ରୀହରି ଭକତି ଆଦି ଯେତେ ପୁଣ୍ୟ କାର୍ଯ୍ୟ
ତହିଁର ପ୍ରତିବନ୍ଧକ ଅଟନ୍ତି ସେ ତେଜ ।
ସଂସାର ସ୍ୱରୂପ ବନ୍ଦିଗୃହେ ପ୍ରବେଶକ
ଅଟନ୍ତି ସାକ୍ଷାତ ଲୌହ ନିଗଡ଼ ସମାନ ।
ଇନ୍ଦ୍ରଜାଲ ପ୍ରାୟ ଅଟେ ତାହାଙ୍କର ଖତ
ରଚନ କରନ୍ତି ସେହି ମିଥ୍ୟାମୟ ଭିତ୍ତି ।
ବାହାରେ ସୌନ୍ଦର୍ଯ୍ୟ ପୂର୍ଣ୍ଣ ଅଟେ ତାଙ୍କ ଅଙ୍ଗ
ଲୁକ୍କାୟିତ କପଟ ... ଥା ... ।

ମଳମୂତ୍ର ପୂରିତ ପୂର୍ଣ୍ଣ କଳେବରେ
କେଉଁ ସୁଖ ମିଳଇ ଅବା କାମିନୀ ସଙ୍ଗରେ ।
ମାୟାରେ ଲୋକଙ୍କ ମନ ମୋହିବାର ପାଇଁ
ପୂର୍ବରେ ତାହାଙ୍କୁ ସୃଷ୍ଟି କଲେ ଜାଣ ବହି ।
ପରମ ଆନନ୍ଦରୂପ ମୁକ୍ତିର କାରଣ
ଅଟନ୍ତି ଯେ ନିରାମୟ ଦେବ ପରଂବ୍ରହ୍ମ ।
ତାହାଙ୍କର ଜପ ଧ୍ୟାନ କାର୍ଯ୍ୟ କରିବାରେ
ବାଧାଜନକ ଅଟନ୍ତି ଯେ ସକଳ ପ୍ରକାରେ ।
ଏରୂପେ କହି ତୁଳସୀ ନୀରବ ହୋଇଲେ
ତାହା ଶୁଣି ଶଙ୍ଖଚୂଡ଼ ହସିଣ କହିଲେ ।
କେ କହିଲେ ଯା କହିଲ ଗୋ ତୁଳସୀ ସୁନ୍ଦରୀ
ସମସ୍ତ ବଚନ ମିଥ୍ୟା ନୁହଇ ତୁମ୍ଭର ।
କିନ୍ତୁ କେତେ କଥା ସତ୍ୟ ଅଛି ଯା ତହିଁରେ
କହୁଅଛି ଏବେ ମୋହଠାରୁ ଶୁଣ ବାରେ ।
ଜଗତକରତା ବ୍ରହ୍ମା ସୃଷ୍ଟି କଲା କାଳେ
ସ୍ତ୍ରୀଙ୍କୁ ଦୁଇ ପ୍ରକାରେ ସରଜନା କଲେ ।
ପ୍ରାକୃତ ଯେ ଅପ୍ରାକୃତ ବୋଲାଇଲେ ସେହି
ପ୍ରାକୃତେ ପ୍ରଶଂସା ଯୋଗ୍ୟ ହେଲେ ଜାଣ ତହିଁ ।
ସେମାନେ ବାସ୍ତବ ବୋଲାଇଲେ ଜଗତରେ
ଆଉ ଯେ ରହିଲେ କୃତ୍ୟା ସ୍ୱରୂପ ନାମରେ ।
ଖ୍ୟାତ ହେଲେ ଏବେ ତାହାଙ୍କର କଥା ଶୁଣ
ଲକ୍ଷ୍ମୀ ସରସ୍ୱତୀ ଦୁର୍ଗା ପାର୍ବତୀ ଯେ ପୁଣ ।
ରାଧିକା ଆଦି ଯେ ଦେବଗଣ ହେଲେ ଜାତ
ଧାତାଙ୍କ ସୃଷ୍ଟିରୁ ଅଟନ୍ତି ସେ ବହିର୍ଭୂତ ।
ଯେତେବେଳେ ଶ୍ରୀକୃଷ୍ଣଙ୍କ ଅଙ୍ଗରୁ ସକଳ
ବ୍ରହ୍ମା ବିଷ୍ଣୁ ଶିବ ଆଦି ଉତ୍ପନ୍ନ ହୋଇଲେ ।
ସେ ସମୟେ ଏହି ଦେବୀଙ୍କର ଉତ୍ପତ୍ତି
ହୋଇଥିଲା ବୋଲି ଜାଣ ଆଗୋ ରସବତୀ ।
ଏହାଙ୍କ ଅଂଶରେ ଯେତେ ହୋଇଛନ୍ତି ସ୍ତ୍ରୀ
ବାସବ କାମିନୀ ବୋଲି ନାମଟି ତାଙ୍କର ।
ସେମାନେ ପ୍ରଶଂସାଯୋଗ୍ୟ ଅଟନ୍ତି ନିଶ୍ଚୟ
ଆଉର ମଙ୍ଗଳଦାୟୀ ସର୍ବ ଶୁଭମୟ ।
ଶତରୂପା ଦକ୍ଷିଣା ଯେ ସ୍ୱାହା ଦେବହୂତି
ରୋହିଣୀ ବରୁଣପତ୍ନୀ ସ୍ୱଧା ସୁପ୍ତାବତୀ ।।
କୁବେରକାମିନୀ ଶଚୀ ବାୟୁପତ୍ନୀ ଦିତି
ଲୋପାମୁଦ୍ରା ଅନୁସୂୟା କୈଟଭୀ ଅଦିତି ।

ତୁଳସୀ ଅହଲ୍ୟା ମେନା ତାରା ଅରୁନ୍ଧତୀ
ବେଦବତୀ ଦମୟନ୍ତୀ ମନ୍ଦୋଦରୀ ସତୀ ।
ଗଙ୍ଗା ଯେ ମନସା ମେଧା ସ୍ମୃତି ତୁଷ୍ଟି ପୁଷ୍ଟି
ମଙ୍ଗଳଚଣ୍ଡୀ କାଳିକା ବସୁନ୍ଧରା ଷଷ୍ଠୀ ।
ମୂର୍ତ୍ତି ଧର୍ମ ପ୍ରିୟବ୍ରତୀ ସ୍ୱସ୍ତି ଶ୍ରଦ୍ଧା କାନ୍ତି
ନିଦ୍ରା ତନ୍ଦ୍ରା କ୍ଷୁଧା ତୃଷା ସନ୍ଧ୍ୟା ଦିବାରାତ୍ରି ।
ସମ୍ପତ୍ତି ଧାରଣ ଶୋଭା ପ୍ରଭା ନିୟାବୃତ୍ତି
ଏମନ୍ତେ ଯେତେକ ସ୍ତ୍ରୀ ସ୍ୱରୂପ ବହିଛନ୍ତି ।
ଏମାନେ ବାସ୍ତବ ଅଂଶ ସମ୍ଭୂତଟି ଜାଣ
ଉତ୍ତମ କାମିନୀ ଅଟେ ଏହାଙ୍କର ନାମ ।
ପ୍ରତ୍ୟେକ ଯୁଗରେ ଧନ୍ୟବାଦ ଯୋଗ୍ୟ ଏହି
ମନଦେଇ ଶୁଣ ଆଗୋ ସୁରୁଚନ୍ଦ୍ରମୁହିଁ ।
ରମ୍ଭା ମେନକାଦି ଯେତେ ସ୍ୱର୍ଗ ବେଶ୍ୟାଗଣ
ତାଙ୍କ ଅଂଶେ ଜାତ ଯେହୁ ଅଟନ୍ତି ସେ ପୁଣ ।
କୃତ୍ୟ ରୂପ ବୋଲି କରି ତାଙ୍କୁ ମନେକର
ଜଗତରେ ବେଶ୍ୟା ନାମ ଅଟଇ ତାଙ୍କର ।
ପ୍ରଶଂସାଯୋଗ୍ୟା ସେ କେବେ ହୋଇ ନପାରନ୍ତି
ଆଗୋ ପଙ୍କଜବଦନ ସୁରୁ କୁନ୍ଦଦନ୍ତୀ ।
ସତ୍ତ୍ୱଗୁଣ ଯେନ ଜାତ ହୋଇଥାଏ ଯେହି
ପ୍ରକୃତ ସ୍ୱଭାବ ଶୁଦ୍ଧ ଅଟନ୍ତି ସେହି ।
ଉତ୍ତମ ନାମରେ ଲୋକେ ଖ୍ୟାତ ତାହାଙ୍କର
ପତିବ୍ରତା ସତୀଗଣେ ଅଟନ୍ତି ସେ ବର ।
ପଣ୍ଡିତେ ତାହାଙ୍କୁ ସଦା ବାସ୍ତବ ଶ୍ରେଣୀରେ
ଗଣନା କରନ୍ତି ମଧ୍ୟ ଶାସ୍ତ୍ର ଅନୁସାରେ ।
କୃତ୍ୟାରୂପେ ସ୍ତ୍ରୀଙ୍କଠାରେ ରଜ ତମ ଗୁଣ
ଥିବାରୁ ଦୁଇ ପ୍ରକାର ଅଟନ୍ତି ସେ ଜାଣ ।
ଏକାନ୍ତ ପ୍ରଦେଶ ପୁଣି ସ୍ୱଚ୍ଛନ୍ଦ ସମୟ
ଏ ବାହାରେ ଲୋକ ଗୋଷ୍ଠୀ ଶଙ୍କା ରାଜଭୟ ।
ନୋହିଲେ ବା ରୋଗ ଶୋକେ ଶରୀର ଦୁର୍ବଳ
ଅଥବା ଉତ୍ତମ ସାଧୁଜନଙ୍କର ମେଳ ।
ଏହି କାରଣରୁ ଯେଉଁ କାମିନୀଙ୍କଠାରେ
ସତୀତ୍ୱ ପ୍ରକାଶ ହୋଇଥାଏ ଜଗତରେ ।
ତାଙ୍କଠାରେ ରଜୋଗୁଣ କରିଥାଏ ବାସ
ମଧ୍ୟମ ବୋଲନ୍ତି ତାଙ୍କୁ ବିବେକୀ ପୁରୁଷ ।
ଯେଉଁମାନେ ଲଜ୍ଜା ନିନ୍ଦା ଭୟ ତ୍ୟାଗକରି
ଇଚ୍ଛା ଅନୁସାରେ ଯାନ୍ତି ବଗୁର ନ କରି ।

ତମେ ଗୁଣବନ୍ତୀ ବୋଲି ଜାଣ ସେମାନଙ୍କୁ
ଅଧମରୂପେ ଗଣନା କରଇ ପାଏ ତାଙ୍କୁ ।
କୁଳୀନ ପଣ୍ଡିତ ଲୋକ ପଡନ୍ତି ସେ ଭୁଲେ
କଥାବାର୍ତ୍ତା ନ ହୁଅଇ କେଉଁସ୍ଥାନେ ହେଲେ ।
ମୁହିଁ ଏବେ ବ୍ରହ୍ମାଙ୍କର ଆଜ୍ଞା ଶିରେ ବହି
ଆସିଛି ତୁମ୍ଭ ପାଶକୁ ଆଗୋ ଚନ୍ଦ୍ରମୁହିଁ ।
ଗନ୍ଧର୍ବ ବିଧାନେ ହେବ ତୁମ୍ଭଙ୍କ ବିବାହ
ଏ କଥାରେ କିଛି ନୋଲେ ନାହିଁ ସେ ସନ୍ଦେହ
ଶଙ୍ଖଚୂଡ଼ ନାମ ମୋର ଅଟେ ମହାବଳୀ ।
ପାଇଇ ମୁଁ ଦେବ ନିଶାଚର ଦର୍ପ ଦଳି ।
ପ୍ରସିଦ୍ଧ ମନୁବଂଶରେ ହୋଇଅଛି ଜାତ
ଜାତିସ୍ମର ହୋଇ ଜାଣେ ପୂର୍ବର ବୃତ୍ତାନ୍ତ ।
ସୁଦାମା ନାମରେ ମୁହିଁ ଶ୍ରୀହରିଙ୍କ ପୁରେ
ହୋଇଥିଲି ଜଣେ ଅଷ୍ଟ ଗୋପଙ୍କ ମଧ୍ୟରେ ।
ରାଧିକା ଶାପରେ ଏବେ ଦାନବ ଈଶ୍ୱର
ହୋଇଅଛି ଆଗୋ ନବବାଳା ମନୋହର ।
ତୁମ୍ଭେ ହୋଇଥିଲ ପୂର୍ବେ କୃଷ୍ଣଙ୍କ ଭୋଗିନୀ
ଏକଥା ସ୍ପଷ୍ଟରେ ମୁହିଁ ପାରୁଅଛି ଜାଣି ।
ସେହି ରାଧାଙ୍କର ଶାପେ ତୁମ୍ଭେ ମଧ୍ୟ ଆସି
ମର୍ତ୍ତ୍ୟପୁରେ ଜାତ ହୋଇଅଛ ସୁରୁକେଶୀ ।
ଜାତିସ୍ମର ହୋଇବାରୁ ନିଜେ ସବୁକଥା
ଜାଣି ପାରୁଥିବ ମୁହିଁ କହିବାର ବୃଥା ।
ଗୋଲୋକରେ ତୁମ୍ଭ ସଙ୍ଗେ କ୍ରୀଡ଼ା କରିବାକୁ
ଏକଦିନେ ପ୍ରବର୍ତ୍ତାଇ ଥିଲି ମୁଁ ମନକୁ ।
ରାଧାଦେବୀଙ୍କ ଭୟରୁ ସେ କଥା ନୋହିଲା
ସେହିଦିନଠାରୁ ମୋର କାମନା ରହିଲା ।
ଏହା କହି ଶଙ୍ଖଚୂଡ଼ ବିରତ ହୋଇଲେ
ଶୁଣିଣ ତୁଳସୀ ମନେ ଆନନ୍ଦ ପାଇଲେ ।
ହସି ଶଙ୍ଖଚୂଡ଼ଙ୍କର ମୁଖକୁ ଅନାଇ
କେଇଲେ ତୁମ୍ଭ କଥାକୁ ମାନୁଅଛି ମୁହିଁ ।
ଏମନ୍ତ କାମିନୀ ନିଜ ଅନୁରୂପ ପତି
ବରଣ କରିବାପାଇଁ ବଳବନ୍ତୀ ଅତି ।
ବୁଦ୍ଧିରେ ବିଶ୍ୱରେ ମୁହିଁ ହେଲି ପରାଜିତ
ଏ କଥା ତୁମ୍ଭ ଆଗରେ କହୁଅଛି ସତ୍ୟ ।
କାମିନୀ ବୁଦ୍ଧିରେ ଜିତ ହେବ ସେ ପୁରୁଷ
ପ୍ରସନ୍ତି ନିନ୍ଦିତ ମିତ ହୀନ କୁପୁରୁଷ ।
ଦେବତା ପିତୃ ଆବର ଆପଣା ବାନ୍ଧବେ
ସ୍ତ୍ରୀଜିତ ଲୋକକୁ ନିନ୍ଦା କରନ୍ତି ସରବେ ।
ଜନମ ମରଣ ଯୋଗେ ଅଶୌଚ ହୋଇଲେ
ବ୍ରାହ୍ମଣେ ଶୁଦ୍ଧ ହୁଅନ୍ତି ଦଶଦିନ ଗଲେ ।
ବାରଦିନ ଗଲେ ଶୁଦ୍ଧ ହୁଏ ନରପତି
ପଞ୍ଚଦଶ ଦିନ ଗତ ହେଲେ ବୈଶ୍ୟ ଜାତି ।
ମାସକ ଅନ୍ତରେ ଶୂଦ୍ର ଶୁଦ୍ଧି ଲାଭ କରେ
ବର୍ଣ୍ଣଙ୍କର ଯେ ଦ୍ୱାଦଶ ଦିନ ପରେ
ମାତ୍ର ଯେଉଁ ଲୋକ ସ୍ତ୍ରୀ ଶାସିତ ହୋଇଥାଏ
ଚିତାଦାହ ହେଲା ପରେ ତାର ଶୁଦ୍ଧ ହୁଏ ।
ତାହାଠାରୁ ପିତୃମାନେ ପିଣ୍ଡ ତରପଣ
ଗ୍ରହଣ କରିବାପାଇଁ ନ କରନ୍ତି ମନ ।
ସେ ଲୋକ ଯଦ୍ୟପି ଜଳ ପୁଷ୍ପ ଆଦି କରି
ଦେବତାଙ୍କୁ ଦିଏ ହୃଦେ ଭକ୍ତିଭାବ ଧରି ।
ବିଷତୁଲ୍ୟ ମଣି ତ୍ୟାଗ କରନ୍ତି ସେ ତାକୁ
ଆବର ଶାପ ଦିଅନ୍ତି ସେ ମୂର୍ଖ ଲୋକକୁ ।
ଜପ ତପ ହୋମ ଯଜ୍ଞ ପୂଜାଆଦି ଯେତେ
ଉତ୍ତମ କର୍ମ ବୋଲାଏ ନିଖିଳ ଜଗତେ ।
ନିଷ୍ଫଳ ଅଟଇ ତାର ସେ ସକଳ ଜାଣ
ଯାହାର ମନକୁ ସ୍ତ୍ରୀ ସେ କରନ୍ତି ହରଣ ।
ତମ୍ଭର କିରୂପେ ଶାସ୍ତ୍ର ଜ୍ଞାନ ଅଛି ବୋଲି
ତାହା ମୁଁ ଆଗ ପରୀକ୍ଷା କରି ବୁଝିଥିଲି ।
ଗୁଣହୀନ ହୋଇଥାଏ ଯେବଣ ପୁରୁଷ
ଅଥବା ଯାହାକୁ ରୋଗ କରିଥାଏ ଗ୍ରାସ ।
ହୋଇଥିଲେ ବା ଅତିବୃଦ୍ଧ ମୂର୍ଖ ହୋଇଥାଏ
କୁତ୍ସିତ କାର୍ଯ୍ୟରେ ଯେବା ମନକୁ ବଳାଏ ।
ଅଳପ କଥାରେ ହୋଇ ହୁଏ ପରଚଣ୍ଡ
ଦୋଷ ଦୋଷ ନ ବିଚାରି ଦେଇଥାଏ ଦଣ୍ଡ ।
ଅନ୍ଧ ଖଞ୍ଜ ଅଙ୍ଗହୀନ ବଧିର ଯେ ମୂକ
ଚଣ୍ଡ ପାପକର୍ମରତ ନିଷ୍ଠୁର ନପୁଂସକ ।
ଏମନ୍ତ ଲୋକକୁ କନ୍ୟା କରଇ ଯେ ଦାନ
ଭୋଗ କରେ ବ୍ରହ୍ମହତ୍ୟା ପାପଫଳମାନ ।
ଯେଉଁ ଲୋକ ଶାନ୍ତଶୀଳ ଗୁଣବନ୍ତ ଯୁବା
କରୁଥାଏ ସବୁବେଳେ ବିଷ୍ଣୁଙ୍କର ସେବା ।
ପଣ୍ଡିତ ଚତୁରଙ୍କର ମସ୍ତକମଣ୍ଡନ
ଏମନ୍ତ ଲୋକକୁ କନ୍ୟା କଲେ ସମ୍ପ୍ରଦାନ ।

ଶତଗୋଟି ଅଶ୍ୱମେଧ ଯାଗ ଫଳ ହୁଏ
ଏରୂପେ ଶାସ୍ତ୍ରରେ ଲେଖି ଅଛନ୍ତି ମୁନିଏ ।
ଲାଳନ ପାଳନ କରି ବଢ଼ାଇ କନ୍ୟାକୁ
ଧନ ଲୋଭେ ବିକ୍ରୟ ଯେ କରନ୍ତି ତାକୁ ।
କୁମ୍ଭୀପାକ ନରକରେ କରଇ ସେ ବାସ
ଏଥିରେ ସନ୍ଦେହ ହୋଇ ନାହିଁ ଜାଣ ଲେଶ ।
ସେ ମହାପାତକୀ କୁମ୍ଭୀପାକେ ପଡ଼ିଥାଇ
କନ୍ୟାର ମୂତ୍ର ପୁରୀଷ ଭକ୍ଷଣ କରଇ ।
କୃମିଗଣ ଘୋରପାଶେ ବେଢ଼ି କରି ତାକୁ
ଯେବାନ୍ତି ଜାତ କରାଇ ଉତ୍କଟ ବ୍ୟଥାକୁ ।
ଏହାପରି ଚତୁର୍ଦ୍ଦଶ ଇନ୍ଦ୍ର ହେବାଯାଏ
ସେ ଲୋକ ନରକେ ପଡ଼ି ରହଇ କଷ୍ଟରେ ।
ସେ ଅନ୍ତରେ ବ୍ୟାଧିକୁଳେ ଜନମ ଲଭଇ
ନାନାରୂପ ମାଂସ ବିକ ଦିନ ହରୁଥାଇ ।
ଏମନ୍ତ କହୁ ତୁଳସୀ ତୁନି ହେବା କାଳେ
ବ୍ରହ୍ମା ଆସି ସେ ଦୁହିଙ୍କ ପାଶରେ ମିଳିଲେ ।
ତାଙ୍କୁ ଦେଖି ଶଙ୍ଖଚୂଡ଼ ତୁଳସୀ ସହିତ
ପ୍ରଣାମ କଲେ ମସ୍ତକେ ଯୋଡ଼ି ବେନିହସ୍ତ ।
ପ୍ରଶଂସା କରନ୍ତି ଧାତା ତାଙ୍କ ନିକଟରେ
କ୍ଷଣେ ମାତ୍ର ବସି କହି ଆରମ୍ଭିଲେ ଧୀରେ ।
ବୋଇଲେ ହେ ଶଙ୍ଖଚୂଡ଼ ଏତେ ବେଳଯାଏ
କି କଥା ହେଉଛି ଏଠାରେ ବସି ଦୁହେଁ ।
ଗାନ୍ଧର୍ବ ବିଧିରେ ତୁମ୍ଭେ ତୁଳସୀଙ୍କ ହସ୍ତ
ଗ୍ରହଣ କର ଏ କଥା ଆମ୍ଭର ସମ୍ମତ ।
ସକଳ ଗୁଣରେ ତୁମ୍ଭେ ଅଟ ରତ୍ନ ସମ
ତୁଳସୀ ସ୍ତ୍ରୀରତ୍ନରେ ଅଟନ୍ତି ଉତ୍ତମ ।
ଚତୁର ପୁରୁଷ ସଙ୍ଗେ ଚତୁର କାମିନୀ
ବିବାହ କଲେ ଅତ୍ୟନ୍ତ ଶୋଭା ହୁଏ ପୁଣି ।
ଉତ୍ତମ ସୁଖକୁ ତ୍ୟାଗ କରେ ଯେଉଁ ଜନ
ସାକ୍ଷାତରେ ଅଟଇ ସେ ପଶୁର ସମାନ ।
ଆଗୋ ତୁଳସୀ ସୁନ୍ଦରୀ ଶୁଣ ମୋ ବଚନ
ଗୁଣବନ୍ତ ନାହିଁ ଶଙ୍ଖଚୂଡ଼ଙ୍କ ସମାନ ।
ଦେବତା ଦାନବ ଯକ୍ଷ ରକ୍ଷଙ୍କର ଗର୍ବ
କିଞ୍ଚିତ ମାତ୍ରକେ କରି ପାରନ୍ତି ଏ ଖର୍ବ ।
ଏହାଙ୍କୁ ପରୀକ୍ଷା କିସ କରୁଅଛ ତୁମ୍ଭେ
ସଂଶୟ ଛାଡ଼, ନତୁ କହୁଅଛୁଁ ଆମ୍ଭେ ।

ରାଧିକା ଅଟନ୍ତି ଯଥା ଶ୍ରୀକୃଷ୍ଣ ରମଣୀ
ନାରାୟଣଙ୍କ ପାଶରେ ଯେସନ୍ତେ କମଳିନୀ ।
ଦାମୋଦର ପାଶେ ଅଟନ୍ତି ଯେରୂପେ ସାବିତ୍ରୀ
ମହାଦେବଙ୍କ ପାରୁଶେ ଯେସନେ ପାର୍ବତୀ ।
କପିଳଙ୍କ ନିକଟରେ ଯେସନ୍ତେ ବସୁନ୍ଧରା
ହିମାଳୟଙ୍କର ପାଶେ ମେନକା ସୁନ୍ଦରୀ ।
ଅତ୍ରି ମୁନିଙ୍କର ଯଥା ଅନସୂୟା ସତୀ
ନଳ ରାଜାଙ୍କର ପତ୍ନୀ ଯେସନ୍ତେ ଦମୟନ୍ତୀ ।
ରୋହିଣୀ ଅଟନ୍ତି ଯେସନ୍ତେ ଚନ୍ଦ୍ରଙ୍କ ବନିତା
ଯେଉଁରୂପେ ରତିଦେବୀ କାମଦେବ କାନ୍ତା ।
କଶ୍ୟପଙ୍କ ସମୀପରେ ଯେଉଁରୂପେ ଦିତି
ବଶିଷ୍ଠ ମୁନିଙ୍କ ପାଶେ ଯେସନ୍ତେ ଅରୁନ୍ଧତୀ ।
ଯେରୂପେ ଗୌତମ ଭାର୍ଯ୍ୟା ଅହଲ୍ୟା ସୁନ୍ଦରୀ
ଦେବହୂତି ଯେସନ୍ତେ କର୍ଦ୍ଦମଙ୍କ ସହଚରୀ ।
ବୃହସ୍ପତିଙ୍କ କାମିନୀ ଯେଉଁରୂପେ ତାରା
ଶତରୂପା ହୋଇଛନ୍ତି ମନୁଙ୍କର ଦାରା ।
ଦକ୍ଷିଣା ଯେରୂପେ ଯଜ୍ଞ କାମିନୀ ବୋଲନ୍ତି
ହୁତାଶନଙ୍କର ସ୍ୱାହା ଯେସନ୍ତେ ପ୍ରିୟବତୀ ।
ଇନ୍ଦ୍ରଙ୍କ ରମଣୀ ଯଥା ପୁଲୋମଜା ସତୀ
ଅଟନ୍ତି ଯେରୂପେ ପୁଷ୍ଟି ଗଣେଶ ଯୁବତୀ ।
ସେହିପରି ତୁମ୍ଭେ ହୁଅ ଶଙ୍ଖଚୂଡ଼ କାନ୍ତା
ଏଥି ସମ୍ବନ୍ଧରେ କିଛି ନ କର ଗୋ ଚିନ୍ତା ।
ଏହାଙ୍କ ସହିତେ କାମ ଭୋଗ ଅଭିଳାଷେ
କ୍ରୀଡ଼ାକର ନାନାସ୍ଥାନେ ସନ୍ତୁଷ୍ଟ ମାନସେ ।
ସେ ଅନ୍ତରେ କେତେକାଳ ଗୋଲୋକରେ ଯାଇ
ରହିବ ଶ୍ରୀକୃଷ୍ଣ ପାଶେ ମହାସୁଖ ପାଇ ।
ଦେହ ଛାଡ଼ି ଶଙ୍ଖଚୂଡ଼ ବୈକୁଣ୍ଠକୁ ଯିବେ
ନାରାୟଣଙ୍କ ପାଶରେ ଆନନ୍ଦେ ରହିବେ ।
ଏରୂପେ କହିଣ ଧାତା ଆଶୀର୍ବାଦ କରି
ସେକ୍ଷଣି ବ୍ରହ୍ମଲୋକକୁ ଯାଆନ୍ତେ ବାହାରି ।
ହରଷରେ ଶଙ୍ଖଚୂଡ଼ ତୁଳସୀଙ୍କ କର
ଗ୍ରହଣ କଲେ ଗାନ୍ଧର୍ବ ବିଧାନେ ସତ୍ୱର ।
ତାହା ଦେଖି ଦେବଗଣ ଦୁନ୍ଦୁଭି ବଜାଇ
ପୁଷ୍ପବୃଷ୍ଟି କଲେ ସେ ଦୁହିଙ୍କ ଶିରେ ନେଇ ।
ନବଯଉବନବତୀ ତୁଳସୀଙ୍କ ସଙ୍ଗେ
କ୍ରୀଡ଼ାକଲେ ଶଙ୍ଖଚୂଡ଼ ନାନା ରତିରଙ୍ଗେ ।

ତାହାଙ୍କର ଅଙ୍ଗସଙ୍ଗ ପାଇ ନବବାଳା
ମୂର୍ଚ୍ଛିତା ହୋଇଲେ କାମବେଗେ ହୋଇ ଭୋଳ
ସମ୍ଭୋଗ-ସୁଖ-ସାଗରେ ମଗ୍ନ ହୋଇ କରି
ନ ଜାଣିଲେ ଦିନରାତି ତୁଳସୀ ସୁନ୍ଦରୀ ।
କାମଶାସ୍ତ୍ର ଜ୍ଞାନରେ ତ କୁଶଳ ସେ ଯୁବା
ନୂତନ ଯୁବତୀ ପାଇ ହେଲେ ଅତି ଲୋଭା ।
ଚଉଷଠି କନ୍ଧେ ରତିକଲେ ଅନୁକ୍ଷଣ
ଯେରୂପେ ଅଛଇ କାମଶାସ୍ତ୍ରର ବିଧାନ ।
ରମଣୀଙ୍କ ସୁଖକର ପ୍ରତ୍ୟଙ୍ଗ ପରଶ
କରନ୍ତେ ତୁଳସୀଦେବୀ ହେଲେ ମହାତୋଷ ।
ନିର୍ଜନ ସୁନ୍ଦର ଉପବର୍ଜିତ ସ୍ଥାନରେ
ଚନ୍ଦନ କୁସୁମ ପୂର୍ଣ୍ଣ ତଳପ ଉପରେ ।
ସୁଗନ୍ଧ ଶୀତଳ-ବାୟୁ କରିଣ ସେବନ
ପ୍ରିୟାକୁ କୋଳରେ ଘେନି କରନ୍ତି ଶୟନ ।
ନାନାବିଧ ଅଳଙ୍କାରେ ଦୁହିଙ୍କ ଶରୀର
କାମକ୍ରୀଡ଼ା ସ୍ଥଳ ପରି ଦିଶେ ମନୋହର ।
ରସିକା ମସ୍ତକମଣି ସୁରସୁକୁନ୍ତଳା
ରତିପତି କୈତପୂର୍ଣ୍ଣୀ ସେ ତୁଳସୀ ବାଳା ।
ନାନାବିଧ ରତିରସେ ପତିଙ୍କର ଚିତ୍ତ
ହରଣ କଲେ ସେକାଳେ ଆନନ୍ଦ ତପୋବନ୍ତ ।
ସୁନ୍ଦରର କ୍ଷଣ ମାତ୍ର ବିରତି ନୋହିଲା
ପରସ୍ପର ପ୍ରେମଭାବ ଉଚ୍ଛୁଳ ପଡ଼ିଲା ।
ପତିଙ୍କର ବକ୍ଷସ୍ଥଳ ବାହୁର ଚନ୍ଦନ
ନଡ଼ାଇ ନେଲେ ତୁଳସୀ କାମିନୀରତନ ।
ଶଙ୍ଖଚୂଡ଼ ତ ଅଟନ୍ତି ରସିକଶେଖର
ହରିଲେ ସିନ୍ଦୂରବିନ୍ଦୁ ପତ୍ର ତାହାଙ୍କର ।
ଆବର ଯେ ବକ୍ଷସ୍ଥଳେ ନଖଚିହ୍ନ ଦେଲେ
ତା ଜାଣି ତୁଳସୀ ଅଳ୍ପ ହସି ସେହିକାଳେ ।
ତାଙ୍କ ବାମ ପାର୍ଶ୍ୱରେ କଙ୍କଣ ଚିହ୍ନକୁ
ଦେବାରୁ ଆନନ୍ଦେ ଯୁବା ଧରିଣ ତାହାଙ୍କୁ ।
ସୁନ୍ଦର ଅଧର ଦେଶେ ଦଶନ ଲଗାଇ
ଚୁମ୍ବନ ଦିଅନ୍ତେ ଚିହ୍ନ ଉଜ୍ଜ୍ୱଳତ ହୋଇ ।
ତୁଳସୀ ସେରୂପେ ତାଙ୍କ ମୁଖେ ଚୁମ୍ବ ଦେଇ
ସ୍ତବ୍ଧଗୁଣ ଦନ୍ତ ଚିହ୍ନ କଲେ ପୁଣି ତହିଁ
କେତେକ ସମୟ ପରେ ରତିରସ ପ୍ରିୟ
ଶଯ୍ୟାରୁ ଉଠିଣ ଦୁହେଁ ହେଲେ ଖଡ଼ାଖଡ଼ ।

ସେ ଅନ୍ତରେ ଶଙ୍ଖଚୂଡ଼ ସେ ଯାହା ଶରୀର
ମଣ୍ଡିଲେ ଲଗାଇ ନାନାବିଧ ଅଳଙ୍କାର ।
କୁଙ୍କୁମ ଚନ୍ଦନ ଦ୍ରବ୍ୟ ଘେନି ନିଜ କରେ
ଅର୍ପିଲେ ତୁଳସୀ ପ୍ରିୟ ପତିଙ୍କ ଦେହରେ ।
ସୁବାସ କର୍ପୂର ମିଶା ତାମ୍ବୁଳକୁ ଆଣି
ଖୁଆଇ ଦେଲେ ଆନନ୍ଦେ ସେ ରମଣୀମଣି ।
ଦିବ୍ୟ ବସ୍ତ୍ର ପରିଧାନ କରାଇଣ ତେବେ
ମନୋହର ପୁଷ୍ପମାଳା ଗଳେ ଲମ୍ବାଇଲେ ।
ସ୍ୱର୍ଣ୍ଣ ମୁଦ୍ରିକା ଗୋଟି ଅଙ୍ଗୁଳି ଦେଶରେ
ଖଞ୍ଜିଲେ ସେକ୍ଷଣି ହେଇ ଅତି ଯତନରେ ।
ମୁଁ ତୁମ୍ଭର ଦାସୀ ବୋଲି କହି ପୁନଃ ପୁନଃ
ପ୍ରଣମିଲେ ହସ୍ତେ ଧରି ତାହାଙ୍କ ଚରଣ ।
ସେ ଅନ୍ତରେ ଉଠି ପୁଣି ମୁଖକୁ ଅନାଇଁ
ଅଳପ ହସିଲେ କାମେ ମାନସ ବଳାଇ ।
ଘୋଡ଼ାଇ ଆପଣା ମୁଖ ବସ୍ତ୍ର ଅଞ୍ଚଳରେ
ଅନାଇଲେ ବାରମ୍ବାର କଟାକ୍ଷ ଦୃଷ୍ଟିରେ ।
ଏହିରୂପେ ପ୍ରିୟାଙ୍କର ପୀରତିକି ଦେଖି
ଶଙ୍ଖଚୂଡ଼ ମନେ ମନେ ହୋଇ ମହାସୁଖୀ ।
ଗାଢ଼େ ଆଲିଙ୍ଗନ କରି କୋଳେ ବସାଇଲେ
ସମ୍ପ୍ରୀତେ ମୁଖକୁ ବସ୍ତ୍ର ଓଟାରି ଦେଖିଲେ ।
ପୁନଃ ପୁନଃ ଗଣ୍ଡସ୍ଥଳେ ଦେଲେକ ଚୁମ୍ବନ
ଆନନ୍ଦ ସାଗରେ ମଗ୍ନ କରି ନିଜ ମନ ।
ବରୁଣଙ୍କଠାରୁ ଆଣିଥିବାର ବସନ
ପିନ୍ଧାଇଦେଲେ ତାହାଙ୍କ କରିଣ ଯତନ ।
ପବନ ନୂପୁର ସ୍ୱାହା ଦେବୀଠାରୁ ହରି
ଆଣିଥିଲେ ତାହା ନେଇ ଦେଲେ ସ୍ନେହକରି ।
ଛାୟା ରୋହିଣୀଙ୍କଠାରୁ କେୟୂର କୁଣ୍ଡଳ
ହରି ଆଣିଥିଲେ ପୂର୍ବେ ଦେଖାଇଣ ବଳ ।
ଆବର ରତିଙ୍କଠାରୁ ମୁଦ୍ରିକା ଭୂଷଣ
ବଳାତ୍କାରେ ଆଣିଥିଲେ କରିଣ ହରଣ ।
ତାହା ସବୁ ଆଣିକରି ଦେଲେ ସେ କାଳରେ
ଆବର ଭୂଷଣମାନ ବିବିଧ ପ୍ରକାରେ ।
ନିକଟେ ବସି କେଶପାଶ ଯତନରେ ବାନ୍ଧି
ସୁଗନ୍ଧି କୁସୁମମାଳା ଦେଲେ ତହିଁ ଛନ୍ଦି ।
ଗଣ୍ଡଦେଶେ ସୁରୁଚିର ଚିତ୍ର ଲେଖାମାନ
କୁଙ୍କୁମ କସ୍ତୁରୀ ଘେନି କଲେ ବିରଚନ ।

ସୁଗନ୍ଧ ଚନ୍ଦନ ଆଣି ଚନ୍ଦ୍ରଲେଖା ସହ
ଲେପିଲେ ସନ୍ତୋଷ ମନେ ବକ୍ଷ ଅତିଶୟ ।
ଏ ବାହାରେ ନାନାବିଧ ଚିତ୍ରମାନ ଲେଖି
ସିନ୍ଦୂର ତିଳକ ଦେଲେ ଲଲାଟରେ ଯୋଖି ।
ଚାରୁରଙ୍ଗ ଅଳକ୍ତକ ସେହିକ୍ଷଣି ଆଣି
ଲଗାଇଦେଲେ ତାଙ୍କର ପାଦଯୁଗେ ପୁଣି ।
ସେ ଦେବ ପାବକୁ ନିଜ ବକ୍ଷସ୍ଥଳେ ନେଇ
ଲଗାଇଲେ ମହାଆନନ୍ଦରେ ମଗ୍ନହୋଇ ।
ବୋଇଲେ ହେ ଦେବୀ ମୁହିଁ ଅଟେ ତୁମ୍ଭ ଦାସ
କ୍ଷଣେ ତେଜି ରହି ନ ପାରଇ ତୁମ୍ଭ ପାଶ ।
ଏମନ୍ତ ବୋଲିଣ ରତ୍ନ ବିମାନ ଅଣାଇ
ବସିଲେ ପ୍ରିୟାଙ୍କୁ ନିଜେ କୋଳେ ଘେନି ତହିଁ
ତପୋବନ ଛାଡ଼ି ଅନ୍ୟ ସ୍ଥାନେ ଚଳିଗଲେ
ନିର୍ଜନ କାନନ ମଧ୍ୟେ ପ୍ରବେଶ ହୋଇଲେ ।
ସେହିଠାରେ କ୍ରୀଡ଼ାକରି ଅଳ୍ପକ୍ଷଣ ଯାଏ
ପୁଣି ତହୁଁ ବେଗେ ଚଳିଗଲେ ଅନ୍ୟଠାଏ ।
ଏହିପରି କେତେ ବନ ପର୍ବତ କନ୍ଦରେ
ସୁନ୍ଦର ପୁଷ୍ପ-ଉଦ୍ୟାନେ ନିର୍ଝରଣୀ ତୀରେ ।
ସିନ୍ଧୁତଟେ ପୁଣି ରମ୍ୟ ଗିରିଶୃଙ୍ଗେ ମିଳି
ସଂକ୍ରାନ୍ତ ଚାଳିରେ ଜଳେ ନାନାରଙ୍ଗେ କେଳି
ମନୋହର ପୁଷ୍ପଭଦ୍ରା ନଦୀ ତଟଦେଶେ ।
ସୁବାସିତ ବାତ ପୁଷ୍ପ ସୁଗନ୍ଧ ପ୍ରଦେଶେ ।
ଇଚ୍ଛାମତେ କ୍ରୀଡ଼ାକରି ନାନା ସୁଖଭୋଗ
କରନ୍ତେ ନ ରହିଲା ତାଙ୍କୁ କନ୍ଦର୍ପ-ଆଶୁଗ ।
ବସନ୍ତ କାଳରେ ଗନ୍ଧମାଦନ ପର୍ବତେ
ମଧୁପ ଝଙ୍କାର ପୂର୍ଣ୍ଣ ସୁବାସିତ ବାତେ ।
ଏ ବାହାରେ ଚୈତ୍ରରଥ ନନ୍ଦନ କାନନେ
ଚମ୍ପକ କେତକୀ ଚୂତ ସୁଶୋଭିତ ବନେ ।
ମାଧବୀ କୁନ୍ଦ ମାଳତୀ ଲତା ଗହଳରେ
ବସନ୍ତ ଆବର ଗ୍ରୀଷ୍ମ ମଧ୍ୟ ସମୟରେ ।
କେତେବେଳେ ମନୋହର ବୃକ୍ଷଙ୍କର ମୂଳେ
କେବେ କେବେ ପାରିଜାତ ଅଶୋକର ତଳେ
ସ୍ୱର୍ଣ୍ଣମୟ କାଞ୍ଚନକ ପର୍ବତ ଗହ୍ୱରେ
ନିର୍ଜନ କାଞ୍ଚୀ ନାମକ ବନର ମଧ୍ୟରେ ।
ଏହିପରି ନାନାସ୍ଥାନେ ସେ କାମୁକ ବର
ଭ୍ରମଣ କଲେ ହସ୍ତେ ଧରି ପ୍ରିୟା କର ।

ତଥାପି ଦୁହିଙ୍କ ମନ ସନ୍ତୁଷ୍ଟ ନୋହିଲା
ପରସ୍ପର ଉପଭୋଗ କାମନା ବଢ଼ିଲା ।
ଯେଉଁରୂପେ ଘୃତଧାର ପାଇ ହୁତାଶନ
ପ୍ରଚଣ୍ଡ ହୁଅନ୍ତି ତେଜେ ଅଧିକ ହୋଇଣ ।
ସେ ରୂପେ କାମଭୋଗରେ ସେ ଦୁହିଙ୍କ ମନ
ଅତିଶୟ ଉତ୍କଣ୍ଠିତ ହେଲା ପୁନଃପୁନଃ ।
ସେ ସକାଶୁ ଆପଣାର ଆଶ୍ରମକୁ ପୁଣି
ବାହୁଡ଼ିଲେ ଶଙ୍ଖଚୂଡ଼ ପ୍ରିୟା ସଙ୍ଗେ ଘେନି ।
ସେହିଠାରେ ମନୋହର କ୍ରୀଡ଼ାଗୃହ କଲେ
ଇଚ୍ଛାସୁଖେ କାମଭୋଗ କରି ଦିନନେଲେ ।
ସେହିପରି ଏକ ମନ୍ୱନ୍ତର ଶେଷଯାଏ
ରାଜ୍ୟଭୋଗ କଲେ ଶଙ୍ଖଚୂଡ଼ ନରବର୍ଯ୍ୟେ ।
ଜଗତ ମଧ୍ୟରେ ରାଜରାଜେଶ୍ୱର ହୋଇ
ସମୁଦ୍ର ପର୍ଯ୍ୟନ୍ତ ନିଜେ ଅରଜିଲେ ମହୀ ।
ଦେବତା ଅସୁର ଯକ୍ଷ ଦାନବ କିନ୍ନର
ସବୁରି ଗରବ କଲେ ବଳେ ଯାଇ ଚୂର ।
ସେମାନଙ୍କ ଅଧିକାର ହରିଲେ କଷ୍ଟେତେ
ପୂଜା ହୋମ ଯାଗ ଯଜ୍ଞଆଦି କର୍ମ ଯେତେ ।
ଆବର ଧନସମ୍ପଦ ଶସ୍ତ୍ର ଅସ୍ତ୍ର ଆଦି
ଛଡ଼ାଇ ଘେନିଲେ .ବଳେ ହୋଇଣ ବିବାଦୀ ।
ହୃତଅଧିକାର ଯହୁଁ ହେଲେ ସେ ସମସ୍ତେ
ବୁଲିଲେ ଭିକ୍ଷୁକ ପ୍ରାୟେ ଅସନ୍ତୁଷ୍ଟଚିତ୍ତେ ।
ଦିନକରେ ସର୍ବେ ଏକ ଜଗ୍ରର ହୋଇଲେ
ବ୍ରହ୍ମାଙ୍କ ପାଶରେ ସବୁ ବୃତ୍ତାନ୍ତ କହିଲେ ।
ଆବର ପାଦରେ ପଡ଼ି କଲେକ ରୋଦନ
ତା ଦେଖି ବିଧାତା ତାଙ୍କୁ ଉଠାଇ ବହନ ।
ସଙ୍ଗେ ଘେନି ଶିବଙ୍କର ସମୀପକୁ ଗଲେ
ନିଜେ ବିଧାତା ସକଳ କଥା ଜଣାଇଲେ ।
ବିଚର୍ତ୍ତି ହୋଇଲେ ରୁଦ୍ର ସେ ସକଳ ଶୁଣି
ବ୍ରହ୍ମା ଆଦି ସମସ୍ତଙ୍କୁ ଘେନି ତହୁଁ ପୁଣି ।
ବଇକୁଣ୍ଠ ଭୁବନକୁ ଗଲେ ବେଗେ ଧାଇଁ
ଯେଉଁଠାରେ ଥିଲେ ପ୍ରଭୁ ଲକ୍ଷ୍ମୀଦେବୀ ସାଇଁ ।
ଦୁଆରେ ପ୍ରବେଶ ହୋଇ ଦେଖିଲେ ସେଠାରେ
ଦୁଆରୀ ଏ ବସିଛନ୍ତି ରତ୍ନ ଆସନରେ ।
ପୀତବସ୍ତ୍ର ପରିଧାନ କରି ସେ ଅନନ୍ତ
ନାନାବିଧ ଅଳଙ୍କାରେ ଶୋଭା ପ୍ରକାଶନ୍ତି ।

ସବୁଜ ଶରୀର ଦିଶେ ଶ୍ୟାମଳ ବରନ
କଣ୍ଠଦେଶେ ବନମାଳ ଅତି ଶୋଭବନ ।
ଚତୁର୍ଭୁଜେ ଶଙ୍ଖଚକ୍ର ଗଦ ପଦ୍ମ ଥାଇ
ବିଷ୍ଣୁଙ୍କ ସମାନ ଦିଶୁଛନ୍ତି ସର୍ବେ ତହିଁ ।
ସସ୍ମିତ ପଦ୍ମବଦନ ପଦ୍ମପତ୍ର ନେତ୍ର
ସଜଳ ଜଳଦ ପ୍ରାୟେ ଦିଶୁଅଛି ଗାତ୍ର ।
ତାଙ୍କୁ ଦେଖି ପ୍ରଜାପତି ଆସିବା କାରଣ
କହିଲେ ଅମ୍ଭେ କରି ତାଙ୍କ ଆଗେ ଜାଣ ।
ତାହା ଶୁଣିକରି ସର୍ବେ ହେଲେ ଅନୁମତି
ଦ୍ୱାର ଡେଇଁଗଲେ ତହୁଁ ପାର୍ବତୀଙ୍କ ପତି ।
ଦେବତାଙ୍କୁ ସଙ୍ଗେ ଘେନି ଏହି ପ୍ରକାରେ
ଷୋଡ଼ଶ ଦୁଆର ଡେଇଁଗଲେ ହରଷରେ ।
ନାରାୟଣଙ୍କ ସଭାରେ ହୋଇଲେ ପ୍ରବେଶ
ଦେଖିଲେ ବସିଅଛନ୍ତି ଦେବ ଲକ୍ଷ୍ମୀଈଶ ।
ଚାରିପାଶେ ଚତୁର୍ଭୁଜ ପାର୍ଷଦଗଣ
ବେଢ଼ି ରହିଛନ୍ତି ଦିବ୍ୟ ଶୋଭା ପ୍ରକାଶିଣ ।
ଦେବଋଷିମାନେ ନିଜ ନିଜ ଆସନରେ
ବସିଛନ୍ତି ସେସ୍ଥାନରେ ମହାଆନନ୍ଦରେ ।
ଚତୁରସ୍ର ହୋଇ ସଭା ଦିଶଇ ସୁନ୍ଦର
ବିତାନ ମଣ୍ଡଳ ଊର୍ଦ୍ଧ୍ୱେ ଅତି ମନୋହର ।
ନାନାବିଧ ରତ୍ନ ସ୍ୱର୍ଣ୍ଣରେ ହୋଇଣ ନିର୍ମିତ
ଗୋପୁର ତୋରଣ ସ୍ତମ୍ଭରାଜି ବିରାଜିତ ।
ସ୍ଥାନେ ସ୍ଥାନେ ସ୍ୱର୍ଣ୍ଣମୟ ଆଶ୍ରୟ ପୀଠିକା
ସମସ୍ତଙ୍କଠାରୁ ଦିଶୁଅଛନ୍ତି ସେ ଠିକା ।
ଲମ୍ବମାନ ହୋଇ ରତ୍ନମାଳା କୋଟି କୋଟି
ହରି ନେଉଅଛି ସନ୍ଧ୍ୟା ଆକାଶ ଶୋଭାଟି ।
ସବୁଆଡ଼େ ବଡ଼ ବଡ଼ ରତ୍ନ ଦରପଣ
ବସିବାରୁ ସୌନ୍ଦର୍ଯ୍ୟକୁ କରଇ ଦ୍ୱିଗୁଣ ।
ମଣ୍ଡଳ ଆକାରେ ନାନା ଚିତ୍ରପଟ ଲକ୍ଷ
ସଭାସଦ୍‌ମାନଙ୍କର ନୁହଇ ପ୍ରତ୍ୟକ୍ଷ ।
ପଦ୍ମ ରାଗ ବିରଚିତ କୃତ୍ରିମ ପଙ୍କଜ
ପ୍ରକୃତ ପଦ୍ମପ୍ରାୟେ ପ୍ରକାଶଇ ତେଜ ।
ମଣ୍ଡପକୁ ସିଁବାପାଇଁ ବିଚିତ୍ର ସେ ପାନ
ଶ୍ରେଣୀ ଆକାରରେ ହୋଇଅଛି ସଙ୍କଳନ ।
ପଞ୍ଚସୂତ୍ରେ ବନ୍ଧାହୋଇ ନବଚୂଡ଼ଦଳ
ଚନ୍ଦନ ପଲ୍ଲବ ସଙ୍ଗେ କରିଅଛି ମେଳ ।

ସଭାମଣ୍ଡପରେ ଚନ୍ଦ୍ରକାନ୍ତମଣି ସ୍ତମ୍ଭ
ରହିଅଛି ସୁଗନ୍ଧେ ହୋଇ ଅତି ରମ୍ୟ ।
ତହିଁରେ ନିର୍ମିତ ପୁଷ୍ପକୁମ୍ଭ ମାଳ ମାଳ
ମୁକ୍ତ ହୋଇ ନୂତନ ନାରିକେଳ ଫଳ ।
ଶୁଭ୍ର ସୂଚନା ଦିଶଇ ସ୍ଥାନେ ସ୍ଥାନେ ରଞ୍ଜି
ହରିଦ୍ରାଚନ୍ଦନ ସ୍ପର୍ଶେ ଅଳଂକୃତ ହୋଇ ।
ପାରିଜାତ ଫୁଲମାଳ କେତେକ ସ୍ଥାନରେ
ଝୁଲୁଅଛି ବନ୍ଧାହୋଇ ଅତି ଯତନରେ ।
କସ୍ତୁରୀ କୁଙ୍କୁମ ଗନ୍ଧ ଚନ୍ଦନର ଜଳ
ସିଞ୍ଚା ହୋଇବାରୁ ତଳ ହୋଇଛି ଶୀତଳ ।
ତାହାପରେ ଗନ୍ଧବହ ମନ୍ଦ ମନ୍ଦ ହୋଇ
ବହିଆସି ସୁଗନ୍ଧରେ ମନହଏ ମୋହ ।
ସଙ୍ଗୀତ ଗାନ କରନ୍ତି ବିଦ୍ୟାଧରୀଗଣ
କାନ୍ତରେ ବୀଣା ବଜାଇ ଦେଉଛନ୍ତି ତାନ ।
ସହସ୍ରଯୋଜନଯାଏ କିଙ୍କରଗଣରେ
ପୂର୍ଣ୍ଣ ହୋଇଅଛି ସେହି ସ୍ଥାନ ନିରନ୍ତରେ ।
ଏମନ୍ତ ସେ ସଭା ତହିଁ ବ୍ରହ୍ମ ଶିବ ଦୁଇ
ଦେବତାଙ୍କ ସଙ୍ଗତରେ ଉଭାହେଲେ ଯାଇ ।
ନାରାୟଣଙ୍କୁ ସେଠାରେ ଅନନ୍ତ ଦେଖିଲେ
ତାରାଗଣେ ଚନ୍ଦ୍ରପରି ଦିଶନ୍ତି ସେ ଭଲେ ।
ଅମୂଲ୍ୟ ରତନମୟ ଚିତ୍ର ସିଂହାସନେ
ବସିଛନ୍ତି ଅତି ହରଷିତ ମନେ ।
କିରୀଟ କୁଣ୍ଡଳ ବନମାଳ ଅଙ୍ଗଦେଶେ
ଥିବାରୁ ଦୁରନ୍ତ ଶୋଭା ଦିଶଇ ବିଶେଷେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚାରିହସ୍ତେ ସାଜେ
ନବୀନ ନୀରଦ ଦିବ୍ୟକାନ୍ତ ସେ ବିରାଜେ ।
ଏ ବାହାରେ ଅଷ୍ଟରତ୍ନମୟ ଅଳଙ୍କାର
ସର୍ବାଙ୍ଗେ ମଣ୍ଡିତ ହୋଇ ଦିଶନ୍ତି ସୁନ୍ଦର ।
ଚନ୍ଦନ କର୍ପୂର ବୋଳା ହୋଇଣ ଦେହରେ
ଉତ୍ତମ ସୁବାସେ ଚାରିଦିଗ ପୂର୍ଣ୍ଣ କରେ ।
ହସ୍ତେ ଧରିଥିବା ଲୀଳାପଦ୍ମ ପୁନଃ ପୁନଃ
କଉତୁକେ ନେତ୍ରପଥେ କରନ୍ତି ଭ୍ରମଣ ।
ସମ୍ମୁଖରେ ନୃତ୍ୟଗୀତ ଦରଶନ କରି
ସସ୍ମିତ ବଦନେ ରହିଛନ୍ତି କର୍ଣ୍ଣଡେରି ।
ଲକ୍ଷ୍ମୀ ସରସ୍ୱତୀ ଦୁହେଁ ବେନିପାଦ ଧରି
ମରଦନ କରୁଛନ୍ତି ପାଶେ ବସିକରି ।

ଭକତ ହସ୍ତରୁ ପୁଣି ସୁବାସ ତାମ୍ବୁଳ
ଭୋଜନ କରନ୍ତି ଆନନ୍ଦରେ ହୋଇ ଭୋଳ ।
ଶୁକଳ ଚାମର ଧରି ଗଙ୍ଗାଦେବୀ ଥାଇ
ଢାଳୁଛନ୍ତି ଧୀରେ ଧୀରେ ଭକ୍ତିଭାବେ ବହି ।
ସମସ୍ତେ ଭକତଗଣେ ନୁଆଇଁଣ ଶିର
ସ୍ତୁତି ସ୍ତବମାନ କରୁଛନ୍ତି ବାରମ୍ବାର ।
ସେକାଳ ବ୍ରହ୍ମା ଶଙ୍କର ଦେବତାଙ୍କ କୁଳେ
କୃତାଞ୍ଜଳି ହୋଇ ତାଙ୍କ ଆଗେ ଛିଡ଼ାହେଲେ ।
ଭକ୍ତିଭରେ ନୟନରୁ ଲୋତକ ବୁହାଇ
ଗଦ୍‌ଗଦ ବାକ୍ୟରେ ସ୍ତୁତି କଲେକ ଗୁହାଇ ।
ଜଗତ କରତା ବ୍ରହ୍ମା ହୋଇ ଅଗ୍ରସର
ଜଣାଇଲେ ମସ୍ତକରେ ଯୋଡ଼ି ବେନିକର ।
ବୋଇଲେ ହେ ଦେବ ଶଙ୍ଖଚୂଡ଼ ମହାବଳୀ
ଦେବତା ଦାନବ ଆଦି ସମସ୍ତଙ୍କୁ ଦଳି ।
ତିନି ଭୁବନରେ ଅଧିକାରୀ ହୋଇଅଛି
କେହି ତାକୁ ବଳେ କରି ନ ପାରନ୍ତି କିଛି ।
ଏହା ଶୁଣି ନାରାୟଣ ହସି ବିଧାତାଙ୍କୁ
କହି ଆରମ୍ଭିଲେ ପୂର୍ବ ରହସ୍ୟ କଥାକୁ ।
ବୋଇଲେ ହେ ପ୍ରଜାପତି ଏବେ ମୋଠାରୁ
ଶୁଣ ବୃଥା କମ୍ପା ତୁମ୍ଭେ ହେଉଅଛ ଯାରୁ ।
ଶଙ୍ଖଚୂଡ଼ର ସକଳ ବୃତ୍ତାନ୍ତକୁ ମୁହିଁ
ଜାଣିଅଛି ଏବେ ତାହା କହିବି ବତାଇ ।
ଗୋଲୋକ ଚରିତ ଏହି ପାପବିନାଶନ
ମନଦେଇ ଶୁଣ ଆହେ ସର୍ବ ସୁରଗଣ ।
ଗୋଲୋକରେ ପୂର୍ବେ ହୋଇଥିଲା ସେ ଗୋପାଳ
ରାଧାଙ୍କ ଶାପରେ ମର୍ତ୍ତ୍ୟେ ହେଲା ନରପାଳ ।
ଏକଦିନେ ପରମାତ୍ମା ଶ୍ରୀକୃଷ୍ଣ ରାଧାଙ୍କୁ
ଛାଡ଼ିକରି ଯାଇଥିଲେ ରାସ ମଣ୍ଡଳକୁ ।
ବିରଜା ଗୋପିକା ସଙ୍ଗେ କ୍ରୀଡ଼ା କରୁଥିଲେ
ସେ କଥା ରାଧିକା ସଖୀଠାରୁ ଶୁଣିଲେ ।
କ୍ରୋଧଭରେ ଶ୍ରୀକୃଷ୍ଣଙ୍କ ସମୀପକୁ ଯାଇ
ଦେଖିଲେ ବିରଜା ସଙ୍ଗେ ଅଛନ୍ତି ସେ ରହିଁ ।
ତାହାଙ୍କ ଆସିବା ଦେଖି ସେ ବିରଜା ବାଳା
ନଦୀରୂପେ ସେ ସ୍ଥାନରୁ ବେଗେ ପଳାଇଲା ।
ଶ୍ରୀକୃଷ୍ଣ ମଧ୍ୟ ସେକ୍ଷଣି ହେଲେ ଅନ୍ତର୍ଦ୍ଧାନ
ତା ଜାଣି ରାଧିକା କୋପେ ହୋଇଣ ଅଜ୍ଞାନ ।

ସଖୀଙ୍କୁ ଘେନି ଆପଣା ମନ୍ଦିରକୁ ଗଲେ
ସୁଦାମା ସହିତେ କୃଷ୍ଣ ଅଛନ୍ତି ଦେଖିଲେ ।
ବହୁତ ଭର୍ତ୍ସନା କରି ଦେଲେ ତାଙ୍କୁ ଗାଳି
ମଳିନ ହୋଇ ଶ୍ରୀକୃଷ୍ଣ ରହିଲେ ସମ୍ଭାଳି ।
ସୁଦାମା ତାହାଙ୍କ କଥା ସହି ନ ପାରିଲେ
କୃଷ୍ଣ ରହିଁଥିଲେ ରାଧିକାଙ୍କୁ ଗାଳିଦେଲେ ।
ସେ ସକାଶୁ ସେ ମାନିନୀ ରାଧିକା ସୁନ୍ଦରୀ
କ୍ରୋଧେ ବେନି ନୟନକୁ ରକ୍ତବର୍ଣ୍ଣ କରି ।
ପାଶରୁ ଘଉଡ଼ି ଦେବାପାଇଁ ସେ ଦୁଷ୍ଟକୁ
କହିଲେ ଅନାଇ ନିଜ ପତିଙ୍କ ମୁଖକୁ ।
ଶ୍ରୀକୃଷ୍ଣ ତାହାଙ୍କୁ କିଛି ନ ଦେଲେ ଉତ୍ତର
ସୁଦାମା ପୁଣି ଭର୍ତ୍ସନା କଲା ବାରମ୍ବାର ।
ତା ଶୁଣି କ୍ରୋଧରେ ଦେବୀ ଅଧୀର ହୋଇଲେ
ସେହିକ୍ଷଣି ସୁଦାମାଙ୍କୁ ରହିଁ ଶାପ ଦେଲେ ।
ବୋଇଲେ ରେ ଦୁଷ୍ଟ ତୁହି ମାନବ ଶରୀର
ଗ୍ରହଣ କରିବୁ ଆଜଠାରୁ ଶାପେ ମୋର ।
ତାହାଙ୍କର ବଚନ ତ ଅମୋଘ ଅଟଇ
ସେ ଯେଣୁ ସୁଦାମା ରହି ନ ପାରିଣ ତହିଁ ।
କୃଷ୍ଣଙ୍କ ପାଦେ ପ୍ରଣାମ କରି ଶୋକଭରେ
ଯିବା ପାଇଁ ଅନୁକୂଳ କରିବା କାଳରେ ।
ଦୟାକରି ରାଧା ତାକୁ ନିବାରଣ କଲେ
ନ ଯାଅ ବୋଲିଣ ତାର ପଛେ ଗୋଡ଼ାଇଲେ
ଗୋପିକାଏ ଶ୍ରୀକୃଷ୍ଣଙ୍କ ପାଶେ ଥିଲେ ଯେତେ
ସେମାନେ ମଧ୍ୟ ଶୋକରେ ଧାଇଁଲେ ସମସ୍ତେ ।
ତା ଦେଖି ଶ୍ରୀକୃଷ୍ଣ ଗୋପୀ ସହିତେ ରାଧାଙ୍କୁ
ବାହୁଡ଼ାଇ ଦେଲେ କହି କୋମଳ କଥାକୁ ।
ବୋଇଲେ ଆଗୋ କାମିନୀଗଣ ଏବେ ଶୁଣ
ସୁଦାମାକୁ ଆଉ କେହି ନ କର ବାରଣ ।
ଶାପକୁ ପାଳନ କରି ଅର୍ଦ୍ଧକ୍ଷଣକରେ
ଫେରିବେ ସୁଦାମା ପୁଣି ଆପଣା ପୁରେ ।
ଗୋଲୋକରେ ଅର୍ଦ୍ଧକ୍ଷଣ ଭୋଗହେବ ଯେବେ
ଏକ ମନ୍ୱନ୍ତର ଲୋକେ ହୋଇବଟି ତେବେ ।
ଏରୂପେ କହି ଶ୍ରୀକୃଷ୍ଣ ନିବାରିଲେ ତାଙ୍କୁ
ସୁଦାମା ଚଳିଲେ ତହୁଁ ମନୁଷ୍ୟ ଲୋକକୁ ।
ସେହି ଏବେ ଶଙ୍ଖଚୂଡ଼ ନାମ ବହିଛନ୍ତି
ତିନି ଭୁବନରେ ତାଙ୍କଠାରେ କେ ନ ହାନ୍ତି ।

ତୁମ୍ଭେମାନେ ଏବେ ମୋର ବୋଲକର ଯାଅ
ଏ ମହାଶୂଳକୁ ମୁହିଁ ଦେଉଅଛି ନିଅ ।
ଶିବଙ୍କ ହସ୍ତରେ ତାହା କର ସମର୍ପଣ
ନାଶ କରନ୍ତୁ ସେ ଶଙ୍ଖଚୂଡ଼କୁ ବହନ ।
ସର୍ବମଙ୍ଗଳ କାରଣ ଏ କବଚ ମୋର
କଣ୍ଠରେ ଧାରଣ କରିଥିଲେ ଦିଗମ୍ବର ।
ଏ କବଚ ଥିଲେ ତ୍ରିଭୁବନରେ କେହି
ଆପଦ ଦେବାକୁ ସମରଥ ହେବେ ନାହିଁ ।
ତାହାର ଭାରଯା ମହାସତୀ ପତିବ୍ରତା
ସେ ବଳେ ଦାନବ ହୋଇଅଛି ଜଗଜ୍ଜେତା ।
ବ୍ରାହ୍ମଣ ରୂପରେ ମୁହିଁ ମାଗି ଯତନରେ
ଭଗ୍ନ କରିବି ଏ କଥା ଅଟଇ ପ୍ରମାଣ ।
ତେବେ ଯାଇ ଶଙ୍ଖଚୂଡ଼ ଲଭିବ ମରଣ
ନୋହିଲେ କଦାପି ସେହି ନ ମରିବ ଜାଣ ।
ତା ଭାର୍ଯ୍ୟା ଗର୍ଭରେ ମୁହିଁ ବୀର୍ଯ୍ୟ ଦାନକଲେ
ମରିବ ଦାନବ ନିଶ୍ଚେ ଜାଣିଥାଅ ଭଲେ ।
ସେ ଅନ୍ତରେ ସେ କାମିନୀ ଦେହ ତ୍ୟାଗ କରି
ବୈକୁଣ୍ଠକୁ ଆସି ମୋର ହେବ ମନୋହାରୀ ।
ଏହିରୂପେ ନାରାୟଣ କହି ଦେବତାଙ୍କୁ
ତାହାଙ୍କ ହସ୍ତରେ ଦେଲେ ଅମୋଘ ଶୂଳକୁ ।
ନିଜ ଅନ୍ତଃପୁରେ ତହୁଁ ପ୍ରବେଶ ହୋଇଲେ
ଦେବତାଏ ଶୂଳ ନେଇ ଶଙ୍କରକୁ ଗଲେ ।
ଅଧମ କ୍ଷେତ୍ରମୋହନ କହେ ଯୋଡ଼ିକର
ମୋତେ ଉଦ୍ଧାର କରନ୍ତୁ କମଳାର ବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ତୁଳସୀ ସହିତ ଶଙ୍ଖଚୂଡ଼ ମିଳନ ନାମ ସପ୍ତଦଶୋଽଧ୍ୟାୟଃ ।

---

## ଅ ଷ୍ଟା ଦ ଶ ଅ ଧ୍ୟା ୟ

## ଶଙ୍ଖଚୂଡ଼ ପାଶକୁ ଶିବଙ୍କର ଦୂତପ୍ରେରଣ

ନାରାୟଣ ବୋଇଲେ ହେ ନାରଦ ମହର୍ଷି
ବ୍ରହ୍ମା ଆଦି ଦେବଗଣ ବୈକୁଣ୍ଠକୁ ଆସି ।
ଶିବଙ୍କ ହସ୍ତରେ ଶୂଳ ସମର୍ପଣ କଲେ
ସମସ୍ତ ବିଷୟ କହି ନିଜପୁରେ ଗଲେ ।
ମହା ପରାକ୍ରମଶାଳୀ ଦେବ ତ୍ରିଲୋଚନ
ଚନ୍ଦ୍ରଭାଗା ନଦୀତଟରେ ପ୍ରବେଶ ହୋଇଣ ।
ସେହିସ୍ଥାନେ ଏକ ବଟବୃକ୍ଷର ମୂଳରେ
ରହିଲେ ଦେବଙ୍କ କାର୍ଯ୍ୟ ବିଷୟ ମନରେ ।
ପୁଷ୍ପଦନ୍ତ ଗନ୍ଧର୍ବଙ୍କୁ ଡ଼କାଇ ଆଣିଲେ
ଦୂତରୂପେ ଶଙ୍ଖଚୂଡ଼ ପାଶେ ପଠାଇଲେ ।
ଈଶ୍ୱରଙ୍କ ଆଜ୍ଞାପାଇ ସେ ଗନ୍ଧର୍ବବର
ଶଙ୍ଖଚୂଡ଼ ସମୀପକୁ ଚଳିଲା ସତ୍ୱର ।
ନଗର ଦୁଆରେ ଯାଇ ଉପସ୍ଥିତ ହେଲା
ପୁର ଆଡ଼େ ଦୃଷ୍ଟି ଦେଇ ନିରୀକ୍ଷଣ କଲା ।
ଦେଖିଲା ସେ ପୁର ପାଞ୍ଚ ଯୋଜନ ବିସ୍ତୀର୍ଣ୍ଣ
ଦୀର୍ଘରେ ଅଟଇ ପୁଣି ତହିଁର ଦ୍ୱିଗୁଣ ।
ବେଢ଼ିଆଇ ରହିଅଛି ପାଚେରୀ ଉଚ୍ଚଳୀ
ଶତ୍ରୁଙ୍କ ଦୁର୍ଗମ ସ୍ଥାନ ନ ଥିବ ତା ଭଳି ।
ନୃପବନ୍ତ ଅନଳ ତୁଲ୍ୟ ରତ୍ନ କୋଟି କୋଟି
ସେ ପୁର ମଧ୍ୟରେ ରହିଛନ୍ତି ହୋଇଗୋଟି ।
ସ୍ଥାନେ ସ୍ଥାନେ ରତ୍ନମୟ ସୋପାନ ନିକର
ମଣି ବଇଦୂର୍ଯ୍ୟ ମିଶି ଦିଶନ୍ତି ସୁନ୍ଦର ।
ରତ୍ନରେ ନିର୍ମିତ ବେଦୀ ବହୁତ ସେଠାରେ
ଦେଖିବା ମାତ୍ରକେ ନେତ୍ର ମାନସକୁ ହରେ ।
ବଣିକବରମାନେ ପଣ୍ୟଦ୍ରବ୍ୟ କିଣାକିଣା
କରୁଛନ୍ତି କେତେ ତାହା ନୁହଇ କଳନା ।
ମଣିମୟ ବିଚିତ୍ରିତ ଆଶ୍ରମଙ୍କ ଶୋଭା
ଦେଖିଲେ ଦର୍ଶକଙ୍କର ମନ ହୁଏ ଲୋଭା ।
ଏହିରୂପେ ସେ ସୁନ୍ଦର ସୌନ୍ଦର୍ଯ୍ୟକୁ ଦେଖି
ପୁଷ୍ପଦନ୍ତ ମନେ ମନେ ହୋଇ ମହାସୁଖୀ ।
ଦ୍ୱାରୀଙ୍କୁ ରାଜା ପାଖେ କହି ପଠାଇଲା
ଅନୁମତି ପାଇ ଦ୍ୱାର ଡେଇଁ ଚାଲିଗଲା ।
ଦେଖିଲା ମଧ୍ୟରେ ଶଙ୍ଖଚୂଡ଼ ରାଜଗୃହ
ବିଜୟ ଆକୃତି ହୋଇଅଛି ତାର ଦେହ ।

ବେଢ଼ି ଆଉ ଅଛି ତାକୁ ଭଲେ ଟି ପରିଖା
ପୂର୍ଣ୍ଣ ହୋଇଅଛି ନର୍କ ଅନଳରେ ଶିଖା ।
ଶତ୍ରୁଙ୍କ ପକ୍ଷରେ ଅତି ଦୁର୍ଗମ ଅଟଇ
ଅନ୍ୟପକ୍ଷେ ସୁଖସାଧ୍ୟ ହୋଇ ସେ ଅଛଇ ।
ନାନାରତ୍ନ ବିଭୂଷିତ ସୁବର୍ଣ୍ଣ ପ୍ରାକାର
ଆକାଶ ମଧ୍ୟକୁ ବୋଲି ଛୁଇଁଅଛି ଶିର ।
ଲକ୍ଷଦ୍ଧବେ ବାରଗୋଟି ଦ୍ୱାର ହୋଇଛି
ଦ୍ୱାରପାଳଗଣରେ ସେ ପୂର୍ଣ୍ଣ ହୋଇଅଛି ।
କୃତ୍ରିମ ରତନ ପଦ୍ମ ଦର୍ପଣ ବହୁତ
ଗୃହମାନଙ୍କରେ ଥାଇ ଦିଶନ୍ତି ଶୋଭିତ ।
ଶତକୋଟି ଦାନବରେ ଅଟେ ସେ ରକ୍ଷିତ
ଅନ୍ୟଙ୍କ ହେଲେହେଁ ତହିଁ ହେବ ପରାଜିତ ।
ମହାବଳ ପରାକ୍ରମ ଅଙ୍ଗଦେଶେ ସେନ
ସମସ୍ତେ ଅଟନ୍ତି ବୀର ଶୌର୍ଯ୍ୟ ଅଭିମାନୀ ।
ବିବିଧ ଆୟୁଧମାନ ଧରିଛନ୍ତି କରେ
କାହାରିକୁ ଶଙ୍କାନାହିଁ ତାଙ୍କର ମନରେ ।
ନାନା ଅଳଙ୍କାର ଗନ୍ଧ ଚନ୍ଦନ ଲଗାଇ
ରହିଛନ୍ତି ଆନନ୍ଦରେ ଦେହକୁ ଫୁଲାଇ ।
ଏକକୁ ଆରେକ ବଳ ଅଟନ୍ତି ସୁନ୍ଦର
ଖୋଜିବା ପାଇଁକ କଥା ନାହିଁ ତାଙ୍କଠାର ।
ତାଙ୍କୁ ଦେଖି ପୁଷ୍ପଦନ୍ତ ତହୁଁ ଚଳିଗଲା
ପ୍ରଧାନ ଦୁଆରେ ଯାଇ ପ୍ରବେଶ ହୋଇଲା ।
ଦେଖିଲା ସେଠାରେ ଅଛି ଗୋଟିଏ ପୁରୁଷ
ସର୍ବଦା ବିରାଜେ ତାର ମୁଖେ ମନ୍ଦହାସ ।
ପିଙ୍ଗଳ ବଦନ ତାମ୍ରବର୍ଣ୍ଣ ବିକଟାଳ
ଧରିଛି ବେନି ହସ୍ତରେ ମହତ ତ୍ରିଶୂଳ ।
ତା ପାଶରେ ଉପସ୍ଥିତ ହୋଇ ପୁଷ୍ପଦନ୍ତ
ଜଣାଇଲା ଶିବ କହିଥିବାର ବୃତ୍ତାନ୍ତ ।
ତାହା ଶୁଣି ଦ୍ୱାରପାଳ ଦ୍ୟନ୍ତେ ଅନୁମତି
ଭିତରକୁ ଗଲା ମନୁ ଗୁଢ଼ ଦେଇ ଶ୍ରାନ୍ତ ।
ଏହିପରି କ୍ରମେ ନବଦୁଆର ଡେଇଁଲା
ଦଶମ ଦୁଆରେ ଯାଇ ଉପସ୍ଥିତ ହେଲା ।
ଯୁଦ୍ଧବାର୍ତ୍ତା କହିବାକୁ ଦୂତ ଆସିଥିଲେ
ନିରୋଧିବା ନାହିଁ ତାକୁ ଦୁଆରେ କେ ହେଲେ ।
ଏହିରୂପେ ଶଙ୍ଖଚୂଡ଼ ରାଜାର ଆଦେଶ
ହେତୁ ପୁଷ୍ପଦନ୍ତ ତହିଁ ନ ପାଇଲା କ୍ଳେଶ ।

ଦଶମ ଦୁଆରେ ଯେଉଁ ଦ୍ୱାରପାଳ ଥିଲା
ସକଳ ସମ୍ବାଦ ତାର ଆଗରେ କହିଲା ।
ବୋଇଲା ଯୁଦ୍ଧ ବାରତା କହିବାକୁ ମୁହିଁ
ଆସିଛି ରାଜାଙ୍କ ଆଗେ ଜଣାକର ଯାଇ ।
ଦୁଆରୀ ସେ କଥା ଶୁଣି ବେଗ ହୋଇ ଗଲା ।
ଶଙ୍ଖଚୂଡ଼ ଆଗେ ସବୁ ଜଣା କରାଇଲା ।
ଅନୁଜ୍ଞା ପାଇଣ ତହୁଁ ପୁଣି ଫେରିଆସି
ଦୂତଙ୍କୁ ରାଜାଙ୍କ ପାଶେ ନେଲା ବେଗେ ପେଶି ।
ଯେହିଠଣି ପୁଷ୍ପଦନ୍ତ ରାଜା ଅନ୍ତଃପୁରେ
ମିଳିଲା ଯାଇ ସମ୍ବାଦ କହିବା ଇଚ୍ଛାରେ ।
ଦେଖିଲା ଦାନବବୀର ଶଙ୍ଖଚୂଡ଼ ରାଜ
ବସିଛନ୍ତି ସଭାମଧ୍ୟେ ପରକାଶି ତେଜ ।
ବିବିଧ ରତନ ସ୍ୱର୍ଣ୍ଣ ସିଂହାସନ ପରେ
ଦିଶନ୍ତି ଯେରୂପେ ସିଂହ ସୁମେରୁ ଶୃଙ୍ଗରେ ।
ରତ୍ନଦଣ୍ଡ ମଣିମୟ ଛତ୍ର ତାଙ୍କ ଶିରେ
ଟେକା ହୋଇ ଦିଶେ ପୂର୍ଣ୍ଣଚନ୍ଦ୍ର ପରକାରେ ।
ଶୁକଳ ଚାମର ସେନ ପାରିଷଦଗଣ
ବେନିପାଶେ ରହି ଧୀରେ କରନ୍ତି ଚାଳନ ।
ସୁବେଶ ସୁନ୍ଦର ରମ୍ୟ ରତନ ଭୂଷିତ
ମାଲ୍ୟଗନ୍ଧ ସୂକ୍ଷ୍ମବସ୍ତ୍ରେ ଦିଶନ୍ତି ଶୋଭିତ ।
ମହାବଳ ତିନିକୋଟି ଦାନବ ପାଶରେ
ରହିଛନ୍ତି ଶସ୍ତ୍ରମାନ ଧରି ନିଜକରେ ।
ଶତକୋଟି ସୈନ୍ୟସବୁ ସଙ୍ଗରେ ଅଛନ୍ତି
ବୀର ଶୂର ଗୁଣରେ ସେ ଉତ୍ତମ ଅଟନ୍ତି ।
ଏହିପରି ଶଙ୍ଖଚୂଡ଼ ରାଜାର ସମ୍ପତ୍ତି
ଦେଖି ପୁଷ୍ପଦନ୍ତ ସେ ବିସ୍ମୟ ପାଇ ଅତି ।
ବୋଲଇ ହେ ମହାରାଜ ଶୁଣ ମୋ ବଚନ
ପଠାଇ ଅଛନ୍ତି ମୋତେ ଦେବ ତ୍ରିଲୋଚନ ।
ଯାହା ସେ କହି ଅଛନ୍ତି ଶୁଣ ମନ ଦେଇ
ବିଷଦ ଭାବରେ ସବୁ କହୁଅଛି ମୁହିଁ ।
ଦେବତାଙ୍କ ରାଜ୍ୟଧନ ହରିଅଛ ତୁମ୍ଭେ
ଏ କଥା ଉଚିତ ନୁହେଁ ବୋଲୁଅଛୁଁ ଆମ୍ଭେ ।
ତୁମ୍ଭଠାରୁ ପୀଡ଼ା ପାଇ ସକଳ ଦେବତା
ଅବଶ ହୋଇଣ ମନେ କରି ଘୋରଚିନ୍ତା ।
ବ୍ରହ୍ମାଙ୍କ ସହିତେ ମୋତେ ସଙ୍ଗେ ଘେନିଗଲେ
ବିଷ୍ଣୁଙ୍କର ପାଦତଳେ ଶରଣ ପଶିଲେ ।

ତାହାଦେଖି ତପୋମୟ ପ୍ରଭୁ ନାରାୟଣ
ପ୍ରବୋଧିଲେ ତାଙ୍କୁ କହି ସାନ୍ତ୍ୱନା ବଚନ ।
ଏ ବାହାରେ ଆପଣାର ଶଙ୍ଖ ଆଣି ଦେଲେ
ଶିବଙ୍କୁ ଏ ଶଙ୍ଖ ଦେଇ ପଠାଅ ବୋଇଲେ ।
ତାହା ଆଣି ଦେବଗଣ ଦେଇଛନ୍ତି ମୋତେ
ତୁମ୍ଭ ସଙ୍ଗତରେ ଯୁଦ୍ଧ କରିବା ନିମନ୍ତେ ।
ଏବେ ତୁମ୍ଭେ ମୋର ବୋଲେ ତାଙ୍କ ରାଜ୍ୟଧନ
ବିଳମ୍ବ ନ କରି ନେଇ କର ସମର୍ପଣ ।
ନୋହିଲେ ସଇନ୍ୟ ଧରି ଯୁଦ୍ଧକୁ ବାହାର
କହିଲୁ ଯଥାର୍ଥ କଥା ଆମ୍ଭେ ନୃପବର ।
ଚନ୍ଦ୍ରଭାଗା ନଦୀତୀରେ ବଟବୃକ୍ଷ ମୂଳେ
ରହିଅଛୁଁ ଆସ ବେଗେ ଯୁଦ୍ଧ ଇଚ୍ଛା ଥିଲେ ।
ଯେବେ ଏହା ନ କରିବ ବଳାତ୍କାରେ ଯାଇ
ମାରିବୁ ତୁମ୍ଭଙ୍କୁ ରଖି ନ ପାରିବେ କେହି ।
ଏମନ୍ତ ଅନୁଜ୍ଞା ଦେଇଛନ୍ତି ସଦାଶିବ
ଲେଉଟି କହିବ ମୁହିଁ ତୁମ୍ଭେ ଯା କହିବ ।
ଏତେ ବୋଲି ପୁଷ୍ପଦନ୍ତ ରହିଲା ମଉନେ
ତାହା ଶୁଣି ଶଙ୍ଖଚୂଡ଼ ଭାବି ନିଜମନେ ।
ବୋଇଲେ ରେ ଦୂତ ମୁହିଁ କାଲି ପ୍ରଭାତରେ
ଯୁଦ୍ଧ କରିବାକୁ ଯିବି ଶସ୍ତ୍ର ଘେନି କରେ ।
ତୁ ଏବେ ଶିବଙ୍କୁ ଯାଇଁ କହ ଏହି କଥା
ଅଧିକ ଉତ୍ତର ଦେବା ଅଟଇ ସିନା ବୃଥା ।
ତାହା ଶୁଣି ପୁଷ୍ପଦନ୍ତ ବେଗେ ଚଳିଗଲା
ମହାଦେବଙ୍କ ପାଶରେ ପ୍ରବେଶ ହୋଇଲା ।
ଶଙ୍ଖଚୂଡ଼ କହିବାର ସବୁ କଥାଯାକ
ନିବେଦନ କଲା ମନୁ ଛାଡ଼ିଦେଇ ବକ ।
ଏହିକାଳେ ସେନାପତି କାର୍ତ୍ତିକେୟ ବୀର
ବୀରଭଦ୍ର ନନ୍ଦୀ ମହାକାଳ ଯେ ଆବର ।
ବିକମ୍ପନ ପିଙ୍ଗଳାକ୍ଷ ବାଣ ବିଶାଳାକ୍ଷ
ବିରୂପ ବିକୃତ ମଣିଭଦ୍ର କପିଳାକ୍ଷ ।
ବାଷ୍କଳ ତାମ୍ରଲୋଚନ ଦୁର୍ଦ୍ଧର୍ଷ ବିକଟ
ଦୀର୍ଘଦଂଷ୍ଟ୍ର ବଳଭଦ୍ର ଖର କାଳକଣ୍ଠ ।
ତାଳଜଙ୍ଘା କୁଟୀଚର ବଳୋନ୍ମତ୍ତ ବଳୀ
ରଣଶ୍ଳାଘୀ ପାରେ ଯେହୁ ଶତ୍ରୁବଳ ଦଳି ।
ଏକାଦଶ ରୁଦ୍ର ଅଷ୍ଟ ଭଇରବ ତୁଲେ
ଶିବଙ୍କ ପାଖରେ ଆସି ପ୍ରବେଶ ହୋଇଲେ ।

ଏ ବାହାରେ ଅଷ୍ଟବସୁ ଶଚୀଦେବୀଙ୍କର
ଦ୍ୱାଦଶ ଆଦିତ୍ୟ ଅଗ୍ନି ଅଶ୍ୱିନୀ କୁମାର ।
ବିଶ୍ୱକର୍ମା ଧନପତି ଯମ ନିଶାକର
ଜୟନ୍ତ ମରୁତ ବୁଧ ଯେ ନଳ କୁବେର ।
ବରୁଣ ମଙ୍ଗଳ ଗ୍ରହ ଧର୍ମ କାମଦେବ
ବୀର୍ଯ୍ୟବନ୍ତ ଶନିଗ୍ରହ ଈଶାନ ଦାନବ ।
କୋଟବୀ କୈଟଭୀ ଉଗ୍ରଦଂଷ୍ଟ୍ରା ଉଗ୍ରଚଣ୍ଡୀ
ଆସିଲେ ସମସ୍ତେ ଘେନି ଧନୁଶର ଖଣ୍ଡା ।
ତାଙ୍କ ପଛେ ଶତଭୁଜା କାଳୀ ଭୟଙ୍କରୀ
ଉପସ୍ଥିତ ହେଲେ ଆସି ମୃତ ଦେବୀ ପରି ।
ରକ୍ତବସ୍ତ୍ର ରକ୍ତମାଲ୍ୟ ରକତ ଚନ୍ଦନ
ରକତ କୁସୁମେ ପୂର୍ଣ୍ଣ ତାଙ୍କ ଅପଘନ ।
ନୃତ୍ୟ କରୁଛନ୍ତି ପୁଣି ହସୁଛନ୍ତି ଘୋରେ
ସୁସ୍ୱରେ ଗାୟନ କରୁଛନ୍ତି କେତେବେଳେ ।
ଯୋଜନ ଆୟତ ଲୋଳ ବିକଟାଳ ହୋଇ
ଅନଳ ଶିଖା ପରାୟେ ଜିହ୍ୱା ବିରାଜଇ ।
ହସ୍ତରେ ବର୍ତ୍ତୁଳାକାର ଖର୍ପର ଗୋଟିଏ
ରହିଛି ବିସ୍ତୃତ ହୋଇ ଏକଯୁଣ ଯାଏ ।
ଗଗନ ପରଶେ ମହା ତ୍ରିଶୂଳ ଆବର
ଶକତି ମୁଷଳ ଖଡ୍ଗ ପଟ୍ଟିଶ ତୋମର ।
ଶଙ୍ଖଚକ୍ର ଗଦା ପଦ୍ମ ବାଣ ଶରାସନ
ମୁଦ୍ଗର ଫଳା କବଚ ଆଦି ଶସ୍ତ୍ରମାନ ।
ଏ ବାହାରେ ବୈଷ୍ଣବ ବାରୁଣ ଆଗ୍ନେୟ
ନାରାୟଣ ଅସ୍ତ୍ର ନାଗପାଶ ବୈନତେୟ ।
ବ୍ରହ୍ମାସ୍ତ୍ର ଗାନ୍ଧର୍ବ ପଶୁପତ ଯେ ପାର୍ଜନ୍ୟ
ପାର୍ବତ୍ୟ ଜୃମ୍ଭଣ ମାହେଶ୍ୱର ସମ୍ମୋହନ ।
ଏମାନଙ୍କୁ ଆଦି ଏକଶତ ଦିବ୍ୟଅସ୍ତ୍ର
ପୁଣି ତାହାଙ୍କର ପ୍ରତି ଆକର୍ଷଣ ମନ୍ତ୍ର ।
ସଙ୍ଗତରେ ଘେନି ମହାମାୟା ସେହିଠାରେ
ମିଳିଲେ ଆସି ଯୋଗିନୀଗଣ ସହିତରେ ।
ସେମାନଙ୍କ ପରିମାଣ ଅଟଇ ତିନିକୋଟି
ରହିଛନ୍ତି ଦିଗକୁଳେ ଆକାଶକୁ ଘୋଟି ।
ତାଙ୍କ ପଛେ ତିନିକୋଟି ଡାକିନୀ ଅଛନ୍ତି
ବଳୁଆଙ୍କ ପରି ଆଣ୍ଠେ ଦୋହାଳ ଛାଡ଼ନ୍ତି ।
କୁଷ୍ମାଣ୍ଡ ବ୍ରହ୍ମରାକ୍ଷସ ପିଶାଚ ବେତାଳ
ଭୂତ ପ୍ରେତ ନିଶାଚର ଯକ୍ଷ ମାଳ ମାଳ ।

ଆବର କନ୍ଦର ବାଗ୍‌ମୁଖ ଶବ୍ଦକେ ନି
ଏମାନଙ୍କୁ ଜାଣିଲେଷ୍ଟ ମଙ୍ଗଳରେ ଜେନି ।
ପିତାଙ୍କ ସ୍ଥାନରେ ଆମି ବେଖା କରଲେ
ସମସ୍ତେ ଶିବ ଆଜ୍ଞାରେ ସଙ୍ଗରେ ବଟିଲେ ।
ଏଥିଅନ୍ତରରେ ଶୁଣ ହେ ମୁନ ନାରଦ
ଫେରଗଲ ପରେ ଦୂତ ଯେବଣ ସମ୍ବାଦ ।
ମହାବୀର ଶଙ୍ଖଚୂଡ଼ ଅନ୍ତଃପୁରେ ଯାଇ
ପ୍ରବେଶ ହୋଇଲେ ଯହିଁ ଥିଲେ ମହାଦେଈ ।
ତୁଳସୀ ଦେବୀ ତାହାଙ୍କୁ ଦେଖି ଉଠିଲେ
କୁଶଳ ପଚାରି ନିଜ ପାଶେ ବସାଇଲେ ।
ସକଳ ବୃତ୍ତାନ୍ତ କହି ଦାନବଈଶ୍ୱର
ବୋଇଲେ ମୋଠାରୁ ଶୁଣ ଆହେ ସୁନ୍ଦର ।
ଯୁଦ୍ଧପାଇଁ ମହାଦେବ ମୋ ପାଖକୁ ଦୂତ
ପେଷିଥିଲେ କହିଲ ଯେ ସକଳ ବୃତ୍ତାନ୍ତ ।
ଏ ସକାଶୁଁ କାଲି ମୁହିଁ ଯୁଦ୍ଧ କରିବାକୁ
ଯିବି ତାଙ୍କ ସମୀପକୁ ଘେନିଣ ସୈନ୍ୟଙ୍କୁ ।
ତା ଶୁଣି ତୁଳସୀଦେବୀ ବିମନା ହୋଇଲେ
ଦୁଃଖିତମନେ ପତିଙ୍କୁ ଏମନ୍ତ କହିଲେ ।
ବୋଇଲେ ହେ ପ୍ରାଣନାଥ ମୋର ବୋଲକର
ନ ଯାଅ ଶିବଙ୍କ ପାଶେ ଅନିଷ୍ଟ ଆଚର ।
ତୁମ୍ଭ ବିନା ଜୀବ ଧରି ରହି ନ ପାରିବ
କଷ୍ଟସ୍ଥ ଯମଙ୍କ ପୁରେ ଯାଇଣ ବହିବ ।
ମୋ ପାଶରେ ରହି ସୁଖେ ଦିନ ଶେଷକର
ଦେବତାଙ୍କୁ ଦିଅ ତାଙ୍କ ରାଜ୍ୟ ଧନ ଘର ।
ଦରଶନ କରି ମୁହିଁ ତୁମ୍ଭର ଶ୍ରୀମୁଖ
ପାସୋରିଛି ଆଜନ୍ମରୁ ପାଇଥିବା ଦୁଃଖ ।
ଇଚ୍ଛା ଅନୁସାରେ ପାନ ଭୋଜନ ବିହାର
କର ମୋର ସଙ୍ଗେ ଆହେ ରହି ପ୍ରାଣେଶ୍ୱର ।
କାଲି ରଜନୀ ଶେଷରେ ଦୁଃସ୍ୱପ୍ନ ବହୁତ
ଦେଖିବାରୁ ସାନ୍ତି ହେଉଥିଲା ମୋର ଚିତ୍ତ ।
ଏବେ ତୁମ୍ଭ କଥା ଶୁଣି ବଜ୍ର ଆସି ମୁଣ୍ଡେ
ପଡ଼ିଲା ବଚନ ଆଉ ନ ଆସଇ ତୁଣ୍ଡେ ।
ମୋ ବିନୟ ଘେନ ଏବେ ଛାଡ଼ ଯୁଦ୍ଧକଥା
ଅନାଥା ନ କର ମୋତେ ଆହେ ମହାରଥା ।
ଏହିରୂପେ ପ୍ରିୟାମୁଖୁ ପ୍ରିୟତମ ଗିର
ଶୁଣିକରି ମହାମତି ଶଙ୍ଖଚୂଡ଼ ବୀର ।
ଯେତେକ ଭୋଜନ ପାନ କର୍ମ ଶେଷକଲେ
ସତ୍ୟପ୍ରିୟ ବାକ୍ୟ କହି ପ୍ରିୟାଙ୍କୁ ବୋଧିଲେ ।
ବୋଇଲେ ମୋହର ବାକ୍ୟ ଶୁଣ ପ୍ରିୟବତୀ
କାଳଚକ୍ରେ ପଡ଼ି ପ୍ରାଣୀ ଭ୍ରମୁ ସେ ଅଛନ୍ତି ।
ଆପଣାର ଶୁଭାଶୁଭ କର୍ମ ଭୋଗକରି
କହୁଛି ହୁଅନ୍ତି ପୂର୍ବ ଭାଗ୍ୟ ଅନୁସରି ।
ଶୁଭ୍ର ହର୍ଷ ସୁଖଦୁଃଖ ଭୟ ଶୋକ ଆଦି
ବାନ୍ଧି ଦେଇଅଛି କାଳ ସକଳ ସମ୍ପାଦି ।
କାଳବଶେ ପୃଥିବୀରେ ବୃକ୍ଷ ହୁଏ ଜାତ
କ୍ରମେ କ୍ରମେ ଶାଖା ଘେନି ହୁଏ ପଲ୍ଲବିତ ।
ପୁଣି କାଳଯୋଗେ ପୁଷ୍ପଫଳ ତହିଁ ହୁଏ
ସମସ୍ତ ଶେଷରେ ମୃତ୍ୟୁ ତାକୁ ହରିନିଏ ।
କାଳବଶେ ଜନ୍ମ ହୋଇ ଚରାଚର ପ୍ରାଣୀ
ଏହିରୂପେ ନାଶଯାନ୍ତି ବୋଲି ଥାଅ ଜାଣି ।
ବିଧାତା କାଳରେ ସୃଷ୍ଟି ସର୍ଜନା କରନ୍ତି
ଅଭି ସତନରେ ପୁଣି ତାକୁ ପାଳୁଥାନ୍ତି ।
ସେ ଅନ୍ତେ ସଂହାର କରିଥାନ୍ତି କାଳବଶେ
ଏମନ୍ତ ଅଟଇ କାଳଧର୍ମ ପ୍ରତି ବର୍ଷେ ।
ସତ୍ୟରୂପ ପରଂବ୍ରହ୍ମ ସଧାଦେବୀ ଜାଣ
କେହି ନ ଜାଣନ୍ତି ଯାହାଙ୍କର ଆଦିଅନ୍ତ ।
ଯାହାଙ୍କ ମାୟାରେ ସୃଷ୍ଟି ହୁଏ ଆତଜାତ
ତାହାଙ୍କ ପାଦପଦ୍ମରେ ଦିଅ ତୁମ୍ଭେ ଚିତ୍ତ ।
ସମସ୍ତରେ ପ୍ରକୃତିଙ୍କୁ କରି ଯେ ନିର୍ମାଣ
କୃତ୍ରିମ ଜଗତ କରିଥାନ୍ତି ସରଜନ ।
ପୁଣି କାଳକ୍ରମେ ତାହା ବିନାଶ କରନ୍ତି
ତାଙ୍କଠାରୁ ବଡ଼ ହୋଇ କେହିଟି ନାହାନ୍ତି ।
ବ୍ରହ୍ମଲୋକ ପର୍ଯ୍ୟନ୍ତେ ସର୍ବ ଚରାଚର
ଅନିତ୍ୟ ଅଟଇ ଜାଣ ରମଣୀଙ୍କ ବର ।
ଜାତ ହୋଇ ପୁଣି ନାଶ ହୁଅଇ ଯେ କାଳେ
ଏହିପରି କ୍ରମ ଦେଖାଯାଏ ସବୁବେଳେ ।
ଏ ସକାଶୁ ବ୍ରହ୍ମମୟ ନିର୍ଗୁଣ ଅଜିତ
ଶ୍ରୀକୃଷ୍ଣଙ୍କୁ ଭଜ ତୁମ୍ଭେ ସ୍ଥିରକରି ଚିତ୍ତ ।
ସେ ପ୍ରଭୁ ସର୍ବ ଈଶ୍ୱର ସର୍ବ ଅନ୍ତର୍ଯ୍ୟାମୀ
ତାହାଙ୍କ ମାୟାରେ ଜୀବ ହେଉଥାଏ ଭ୍ରମି ।
ଜଳକୁ ଜଳରେ ସେହି ସରଜନା କରି
ପାଳନା କରି ତା ପୁଣି ନେଇଥାନ୍ତି ହରି ।

ତାଙ୍କବିନା ଆନ ଭଜନରେ ନାହିଁ କାର୍ଯ୍ୟ
ଏ କଥା ଯଥାର୍ଥ ବୋଲି ମାନସରେ ହେଜ ।
ଯାହାଙ୍କ ଆଜ୍ଞାରେ ବାୟୁ ବହେ ଅବିରତ
ଯାହା ଆଜ୍ଞା ଘେନି ତପେ ଦୁରନ୍ତ ଆଦିତ୍ୟ ।
ସନ୍ତାପ ଦିଅନ୍ତି ପୁଣି ତେଜ ପରକାଶି
ସେ କୃଷ୍ଣଙ୍କୁ ଚିନ୍ତା କର ଆଗୋ ଗୃହକେଶି ।
ଯାହାଙ୍କ ଆଦେଶ ମାନି ଦେବ ସୁନାସୀର
ଯଥା ସମୟରେ ବୃଷ୍ଟି କରୁଥାନ୍ତି ନୀର ।
ଯାହା ବୋଲେ ମୃତ୍ୟୁ ଆସି ଜନ୍ତୁଙ୍କର ପ୍ରାଣ
ନିମେଷ ମାତ୍ରକେ ହରି ନିଅନ୍ତି ଜାଣ ।
ଆବର ଆକାଶେ ଚନ୍ଦ୍ର ଭ୍ରମଣ କରଇ
ଦହନ କରେ ଅନଳ ଯାହା ଆଜ୍ଞା ବହି ।
ସେ ଦେବଙ୍କୁ ଉପାସନା କର ମହାସତି
ଅବଶ୍ୟ ଫେଡ଼ିବେ ସେହି ତୁମ୍ଭର ଦୁର୍ଗତି ।
ମୃତ୍ୟୁର ମୃତ୍ୟୁ ସେ ଯମରାଜର ଅନ୍ତକ
ବିଧାତାର ଧାତା ଦିକପାଳଙ୍କ ରକ୍ଷକ ।
ସଂହାର କର୍ତ୍ତାର ପୁଣି ସଂହାର କରତା
ତାଙ୍କଠାରେ ମନ ଦିଅ ଛାଡ଼ି ଦୁଶ୍ଚିନ୍ତା ।
ସଂସାର ମଧ୍ୟରେ କେହି ନୁହେ କାହା ବନ୍ଧୁ
କର୍ତ୍ତା ହର୍ତ୍ତା ମାତ୍ର ସେହି ପ୍ରଭୁ କୃପାସିନ୍ଧୁ ।
ଏ ସକାଶୁ ଶ୍ରୀକୃଷ୍ଣଙ୍କୁ ଭଜ ପ୍ରାଣସହି
ଅନ୍ୟ ଭାବନାରେ ଆଉ କିଛି କାର୍ଯ୍ୟ ନାହିଁ ।
ତୁମ୍ଭ ସଙ୍ଗେ ସମ୍ବନ୍ଧ ଯା ହୋଇଛି ମୋହର
ଘଟାଇ ଅଛନ୍ତି ତାହା ଜଗତ ଈଶ୍ୱର ।
ସଂସାର କର୍ମ ବନ୍ଧନେ ପଡ଼ି ଆମ୍ଭେମାନେ
ଭ୍ରମୁଥାଇ ମାତ୍ର ରଥଚକ୍ରର ସମାନେ ।
ବିପଦ କାଳରେ ମୂର୍ଖ ହୁଅଇ କାତର
ପଣ୍ଡିତ ଲୋକର ମନେ ନ ଥାଏ ଖାତର ।
ନିଜ କର୍ମ ଅନୁସାରେ ଦୁଃଖ ସୁଖମାନ
ଭୋଗ ହେଉଥାଏ କ୍ରମେ କ୍ରମେ ଆସି ଜାଣ ।
ଜନ୍ମାନ୍ତରେ ନାରାୟଣ ହେବେ ତୁମ୍ଭ ପତି
ଜୀବ ଥିବାଯାକେ କର ତାଙ୍କ ପାଦେ ଭକ୍ତି ।
ପୂର୍ବେ ତୁମ୍ଭେ ବଦରିକା ଆଶ୍ରମରେ ରହି
ତପ କରୁଥିଲେ ତାଙ୍କୁ ପାଇବାର ପାଇଁ ।
ବିଧାତାଙ୍କ ବୋଲେ ମୁହିଁ ସେଠାକୁ ଗଲି
ପତ୍ନୀ ସ୍ୱରୂପେ ତୁମ୍ଭଙ୍କୁ ଗ୍ରହଣ କରିଲି ।

ଏବେ କାଳ ଅବଧାନ ହୋଇଲା ଆମ୍ଭର
ହଟଙ୍କୁ ପରଭବ ତୁମ୍ଭେ ସନ୍ଦେହ ନ କର ।
ମୁଁ ମଧ୍ୟ ଶରୀର ତେଜି ବୈକୁଣ୍ଠକୁ ମିଶି
ନାରାୟଣଙ୍କ ପାଶରେ ଆନନ୍ଦେ ରହିବି ।
ସେହିଠାରେ ଆମ୍ଭେ ଦୁହେଁ ହେବା ଦେଖାଦେଖି
ଅଧିକ ସନ୍ତାପ ଆଉ ନ କର ଗୋ ସଖି ।
ରାଧିକା ଶାପରେ ମୁହିଁ ମର୍ତ୍ତ୍ୟ ଭୁବନରେ
ଜାତ ହୋଇଅଛି ମିନା ଦାନବ ବୀର୍ଯ୍ୟରେ ।
ସେ କାଳ ସମସ୍ତ ଏବେ ହୋଇବାରୁ କ୍ଷୀଣ
ପୁନରପି ବୈକୁଣ୍ଠକୁ କରିବି ଗମନ ।
ଏ ଦେହକୁ ଛାଡ଼ି ତୁମ୍ଭେ ଦିବ୍ୟରୂପ ଘେନି
ନାରାୟଣଙ୍କ ଭାରିଯା ହେବ ଗୋ କାମିନୀ ।
କହିଲି ତ ସବୁ କଥା ଫିଟାଇ ତୁମ୍ଭଙ୍କୁ
ଶୋକ ଦୁଃଖ ତ୍ୟାଗକରି ଭଜ ଶ୍ରୀକୃଷ୍ଣଙ୍କୁ ।
ଏମନ୍ତ କହିଣ ରାଜା ଦିନ ଅବସାନେ
ଶୟନ କଲେ ପ୍ରିୟାକୁ ଘେନି ତୋଷମନେ ।
ପୁଷ୍ପ ଚନ୍ଦନ ଚର୍ଚ୍ଚିତ ତଳପ ଉପରେ
ନାନା ପ୍ରକାର ଉତ୍ସବ କରାଇ ମନରେ ।
ସ୍ଥାନେ ସ୍ଥାନେ ରତ୍ନଦୀପଶ୍ରେଣୀ ଜଳାଇଲେ
ତୁଳସୀ ସହିତେ କାମକ୍ରୀଡ଼ା ଆରମ୍ଭିଲେ ।
ଆପଣାର ବକ୍ଷସ୍ଥଳେ ଲଗାଇ ତାହାଙ୍କୁ
କହିଲେ ବୁଝାଇ କେତେ ମଧୁର କଥାକୁ ।
ସ୍ୱଭାବରେ ସ୍ତ୍ରୀମାନେ ଅଟନ୍ତି ତ ଖନ୍ତୁ
ହିତ ପତିଙ୍କ ବିରହ କଥା ଶୁଣିବାରୁ ।
ଶୋକରେ ତୁଳସୀଦେବୀ ଦୁଃଖିତା ହୋଇଲେ
ପତି କୋଳେ ବସିକରି ରୋଦନ ସେ କଲେ ।
ତାହା ଦେଖି ଶଙ୍ଖଚୂଡ଼ ଦିବ୍ୟ ଜ୍ଞାନବନ୍ତ
କହିଲେ ଶାନ୍ତ କରିବା ପାଇଁ ତାଙ୍କ ଚିତ୍ତ ।
ବୋଇଲେ ଶ୍ରୀକୃଷ୍ଣ ମୋତେ ପୂର୍ବରେ ଯେମନ୍ତ
ଦେଇଛନ୍ତି ତାହା ଯୋଗେ ଅଟେ ମୁଁ ସ୍ୱତନ୍ତ୍ର ।
ତାହା ଏବେ ମୋ ଠାରୁ ଶୁଣ ଆଗୋ ବାଳେ
ଦୁଃଖଶୋକ ମୋହ ନ ବାଧିବ ଯେଉଁ କାଳେ ।
ଏହା କହି ସର୍ବଶୋକ ହର ମନ୍ତ୍ର ଦାନ
କଲେ ସେ ହଳତରେ ପୁଣି ଦାନବ ରାଜନ ।
ସେ ସକାଶୁ ଦିବ୍ୟଜ୍ଞାନ ପାଇଲେ ତୁଳସୀ
ପ୍ରସନ୍ନ ତାହାଙ୍କ ମୁଖପଦ୍ମ ଗଲା ଦିଶି ।

ବାରଷରେ ପତିସଙ୍ଗେ ନାନାସୁଖ ଭୋଗ
କଲେ ସେ ରଜନୀରେ ମନ୍ଦ୍ର ଘୋର ସଂଯୋଗ ।
କ୍ରୀଡ଼ାରସେ ମଗ୍ନହୋଇ ସେ ରାଜଦମ୍ପତି
ମୁର୍ଚ୍ଛିତ ହୋଇଲେ ସୁଖ ହୋଇବାରୁ ଅତି ।
ଅଙ୍ଗ ପ୍ରତ୍ୟଙ୍ଗ ସକଳ ପୁଲକରେ ପୂର୍ଣ୍ଣ
ହେଲା ସେ କାଳରେ ଆହେ ମୁନିଙ୍କ ମଣ୍ଡନ ।
କେବଳ ଅଙ୍ଗ ମିଶିବାରୁ ପତି ପତ୍ନୀଙ୍କର
ଦେଖାଗଲେ ସେହିରୂପେ ଅର୍ଦ୍ଧନାରୀଶ୍ୱର ।
ନିଜ ପ୍ରାଣଠାରୁ ପ୍ରାଣପ୍ରିୟଙ୍କୁ ଅଧିକ
ଜାଣଇ ତୁଳସୀ ମନେ ହୋଇଲେ ଉତ୍ସୁକ ।
ସେହିପରି ଶଙ୍ଖଚୂଡ଼ ଦାନବଙ୍କ ପତି
ଭାବିଲେ ତୁଳସୀ ମୋର ଜୀବନ ସମ୍ପତ୍ତି ।
ଏହିରୂପେ କାମରସେ ମାତି ଦୁଇପ୍ରାଣୀ
କେଉଁଠାରେ ଅଛନ୍ତି ସେ ନ ପାରିଲେ ଜାଣି ।
କେତେବେଳେ କ୍ଷଣେମାତ୍ର ସଚେତ ହୁଅନ୍ତି
ନାନାଭାବ ଭଙ୍ଗିମାରେ ଆଳାପ କରନ୍ତି ।
କେତେବେଳେ ଜ୍ଞାନଶୂନ୍ୟ ହୋଇ କ୍ଷଣେଯାଏ
ବୁଡ଼ିଥାନ୍ତି ଶଯ୍ୟାରେ କାଠପିତୁଳା ପରାୟେ ।
ପରସ୍ପରେ ସମର୍ପଣ କରନ୍ତି ତାମ୍ବୁଳ
ଧରଅନ୍ତି ଚୁମ୍ବନ ପ୍ରେମରସେ ହୋଇ ଭୋଳ ।
ସୁମର ବ୍ୟଜନ ଯୋଗ ଶୀତଳ ପବନ
କେତେବେଳେ ବସି କ୍ଷଣେ କରନ୍ତି ସେବନ ।
ଶଯ୍ୟାରୁ ଉଠି ପୁଣି ଅନ୍ୟସ୍ଥାନେ ବସି
କଥାବାର୍ତ୍ତା ହେଉଥାନ୍ତି ଅଳ୍ପ ଅଳ୍ପ ହସି ।
ଏରୂପେ ତାଙ୍କର କ୍ରୀଡ଼ା ବରତ ନୋହିଲା
ଦେଖୁ ଦେଖୁ ବିଭାବରୀ ଅବସାନ ହେଲା ।
ଏକୁ ଆରେକର ପ୍ରୀତିଡ଼ୋରେ ବନ୍ଧା ଯେଣୁ
ଗତ ଦିନ ବର୍ଷ ମାସ ନ ଜାଣିଲେ ତେଣୁ ।
ଜୟ ପରାଜୟ ଚର୍ଚ୍ଚା ନୋହିଲା କାହାର
ଧନ୍ୟ ସେ ଦମ୍ପତି ଗୀତେ କହେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଶଙ୍ଖଚୂଡ଼ ପାଶକୁ ଶଙ୍କରଙ୍କର ଦୂତ ପ୍ରେରଣ ନାମ ଅଷ୍ଟାଦଶୋଽଧ୍ୟାୟଃ ।

—ଃ—*—ଃ—

# ଊ ନ ବିଂ ଶ ଅ ଧ୍ୟା ୟ

## ଶିବଙ୍କ ସହିତ ଶଙ୍ଖଚୂଡ଼ର ବାକ୍ୟ ବିନିମୟ

ନାରାୟଣ ବୋଇଲେ ହେ ଶୁଣ ମୁନିବର
କହିବା ଆଳାପ ଶିବ ଶଙ୍ଖଚୂଡ଼ଙ୍କର ।
ବ୍ରାହ୍ମମୁହୂର୍ତ୍ତରେ ଶଙ୍ଖଚୂଡ଼ ଦଣ୍ଡଧାରୀ
ମନେ ମନେ ଶ୍ରୀକୃଷ୍ଣଙ୍କୁ ଧ୍ୟାରଣା କରି ।
ଶଯ୍ୟାରୁ ଉଠି ରାତିବାସ ତ୍ୟାଗ କଲେ
ମଙ୍ଗଳମନ୍ତ୍ରରେ ସ୍ନାନ ବିଧାନ ଯାଚିଲେ ।
ପୁଣି ଦିବ୍ୟଜଳ ଆଣି ସନ୍ଧ୍ୟା ତରପଣ
ଯଥା ସମୟରେ କେତେ କରି ସମାପନ ।
ଧଉତ ବସନ ପିନ୍ଧି ଉଜ୍ଜ୍ୱଳ ତିଳକ
ଦେଲେ ଆନନ୍ଦ ମନେ ଦାନବ ନାୟକ ।
ଏ ବାହାରେ ନିତ୍ୟକର୍ମ ଦେବତା ବନ୍ଦନ
ସକଳ କାର୍ଯ୍ୟ ସମାପ୍ତ କରି ତତକ୍ଷଣ ।
ଦଧି ଘୃତଆଦି ଯେତେ ଶୁଭଦ୍ରବ୍ୟମାନ
ଦରଶନ କଲେ ପାଶେ ଅଣାଇ ବହନ ।
ଶୁଦ୍ଧପୂତ ହୋଇ ରତ୍ନ ଆସନେ ବସିଲେ
କର୍ମଠ ଦ୍ୱିଜଗଣଙ୍କୁ ଡକାଇ ଆଣିଲେ ।
ବିବିଧ ବସନ ରତ୍ନ ମଣି ମୁକ୍ତା ହାର
ଦାନକଲେ ଯୁଦ୍ଧେ ସିଦ୍ଧିପାଇଁ ହୋଇ ଭିର ।
ଗୁରୁଙ୍କୁ ଡକାଇ ଯାହା ମଙ୍ଗଳ ବିଧାନ
କରାଇ ତାହାଙ୍କୁ ଦେଲେ ବହୁରତ୍ନ ଧନ ।
ଏ ବାହାରେ ଗଜ ଅଶ୍ୱ ଧେନୁ କୋଟି କୋଟି
ଗରିବ ଦ୍ୱିଜଙ୍କୁ ସେ କାଳରେ ଦେଲେ ବାଣ୍ଟି ।
ସହସ୍ରେ ନଗରୀ ତିନିଲକ୍ଷ ପଲ୍ଲୀ ଗ୍ରାମ
ତାହା ସଙ୍ଗେ ଧନରତ୍ନ ବସ୍ତ୍ର ଅନୁପମ ।

ଦ୍ୱିଜଙ୍କୁ ଆନନ୍ଦଭରେ ଦେଲେ ସେହିକ୍ଷଣି
ବିତରଣ କଲେ ମିଷ୍ଟ ଖାଦ୍ୟଦ୍ରବ୍ୟ ପୁଣି ।
ପୁତ୍ରପାଶେ ସମର୍ପଣ କରି ସ୍ୱରାଜ୍ୟକୁ
ରାଜସିଂହାସନେ ଅଭିଷେକ କଲେ ତାଙ୍କୁ ।
ପାତ୍ରମନ୍ତ୍ରୀ ଭୃତ୍ୟ ଭୁଲେ ଭଣ୍ଡାର ବାହନ
ସକଳ ବିଷୟ ପୁଣି କଲେ ସମର୍ପଣ ।
ଯୁଦ୍ଧକୁ ଯିବାକୁ ନିଜେ ସଜବାଜ ହେଲେ
ଇନ୍ଦ୍ରଧନୁ ପରି ମହାଧନୁକୁ ଧଇଲେ ।
ଦୂତପେଷି ଶୀଘ୍ରଆଜ୍ଞା ଡକାଇ ସୈନ୍ୟଙ୍କୁ
ଅଣାଇଲେ ଅସ୍ତ୍ର ଶସ୍ତ୍ର ସହିତେ ପାଶକୁ ।
ତିନିଲକ୍ଷ ଅଶ୍ୱ ଏକଲକ୍ଷ ମତ୍ତଗଜ
ଆସିଲେ ଯୁଦ୍ଧ କରିବା ପାଇଁ ହୋଇ ସଜ ।
ଅୟୁତେକ ରଥ ତିନକୋଟି ଧନୁର୍ଦ୍ଧର
ବାହାରି ହୋଇଲେ ପଛେ ପଛେ ତାହାଙ୍କର ।
ତିନ ତିନକୋଟି ମୁଖ୍ୟ ଚର୍ମଶୂଳଧାରୀ
ଆସିଲେ ସେକ୍ଷଣି ଘୋରଯୁଦ୍ଧ ଇଚ୍ଛାକରି ।
ଏରୂପେ ସେନା ସଂଗ୍ରହ କରିଣ ରାଜନ
ଏକ ସେନାପତି ତହିଁ କଲେ ନିଯୋଜନ ।
ମହାବୀର ଯୁଦ୍ଧ ବିଶାରଦ ସେ ଅଟଇ
ଶସ୍ତ୍ର ଅସ୍ତ୍ର ଜାଣିବାରେ ତାହାପରି ସେହି ।
ମହାରଥ ବୋଲିକରି ଅଟେ ତାର ନାମ
ରଥୀଙ୍କ ମଧ୍ୟରେ ସେହି ଅଟଇ ଉତ୍ତମ ।
ତିନିଲକ୍ଷ ଅକ୍ଷୌହିଣୀ ସେନା ଅଧିପତି
ହୋଇ ସେ ରହିଲେ ଜାଣ ଆହେ ମହାମତି ।
ସେ ସୈନ୍ୟ ମଧ୍ୟରେ ତିନିଦଶ ଅକ୍ଷୌହିଣୀ
ବାଦ୍ୟକାର ଶଙ୍ଖକାର ରହିଥିଲେ ପୁଣି ।
ଶ୍ରୀହରିଙ୍କୁ ମନେ ମନେ ଦାନବଈଶ୍ୱର
ସୁମରଣା କରି ପୁରୁ ହୋଇଲେ ବାହାର ।
ସୁବର୍ଣ୍ଣ ରତ୍ନ ନିର୍ମିତ ବିମାନେ ବସିଲେ
ଶୁକ୍ରଦେବଙ୍କ ପାଦରେ ପ୍ରଣାମ କରିଲେ ।
ଇଷ୍ଟଦେବଙ୍କୁ ବନ୍ଦନା କରି ସେ ଅନ୍ତରେ
ଶିବଙ୍କ ପାଖକୁ ଗଲେ ଯୁଝିବା ଇଚ୍ଛାରେ ।
ଅତି ପୁଣ୍ୟମୟ ପୁଷ୍ପଭଦ୍ରା ନଦୀତଟ
ବିରାଜିତ ସର୍ବ ଅକ୍ଷ ନାମେ କଳ୍ପବଟ ।
ସିଦ୍ଧଙ୍କ ଆଶ୍ରୟ ରୂପ ସିଦ୍ଧଶ୍ରମ ଥାଇ
ସିଦ୍ଧକ୍ଷେତ୍ର ନାମେ ପରିଚିତ ଅଛି ହୋଇ ।

ଏକନାମ ପୁଣ୍ୟକ୍ଷେତ୍ର ଭାରତବର୍ଷରେ
କପିଳ ମୁନିଙ୍କ ତପସ୍ଥାନ ସେହିଠାରେ ।
ପଶ୍ଚିମ ସାଗର ପୂର୍ବ ମଳୟ ପର୍ବତ
ପଶ୍ଚିମ ଦିଗରେ ସେହି ଅଟେ ଅବସ୍ଥିତ ।
ଆଉରି ଶ୍ରୀ ଶୈଳଗିରି ଉତ୍ତର ଭାଗରେ
ଗନ୍ଧମାଦନ ପର୍ବତ ଦକ୍ଷିଣ ଦିଗରେ ।
ପଞ୍ଚ ଯୋଜନ ବିସ୍ତୀର୍ଣ୍ଣ ଅଟେ ସେହି ସ୍ଥାନ
ଦୀର୍ଘରେ ଅଟଇ ପୁଣି ତହୁଁ ଶତଗୁଣ ।
ନିର୍ମଳ ଜଳରେ ପୂର୍ଣ୍ଣ ପୁଷ୍ପଭଦ୍ରା ନଦୀ
ବହୁଅଛି ତାର ତଳେ ରସାତଳ ଭେଦି ।
ଲବଣ ସମୁଦ୍ର ପ୍ରିୟା ହଜଭାଗ୍ୟବତୀ
ବିଶୁଦ୍ଧ ସ୍ଫଟିକ ପରି ନିର୍ମଳ ସେ ଅତି ।
ଶରାବତୀ ତାର ସଙ୍ଗେ ହୋଇଣ ମିଶ୍ରିତ
ବହୁଅଛି ହିମାଳୟ ପାହୁଁ ଅବିରତ ।
ଏମନ୍ତ ଯେ ସ୍ଥାନ ତହିଁ ଶଙ୍ଖଚୂଡ଼ ବୀର
ସୈନ୍ୟ ସେନ ଉପନିବେଶ ହୋଇଲା ସତ୍ୱର ।
ଦେଖିଲା ସେଠାରେ ବଟବୃକ୍ଷ ମୂଳେ ହର
ବସିଛନ୍ତି କୋଟିସୂର୍ଯ୍ୟ ସମ୍ପରକାର ।
ଯୋଗ ଆସନରେ ସ୍ଥିରଭାବେ ବସିକରି
ସସ୍ମିତ ବଦନେ ମୁଖେ ମହାଭାବ ଧରି ।
ବିଶୁଦ୍ଧ ସ୍ଫଟିକ ପ୍ରାୟେ ପରକାଶି ତେଜ
ବ୍ରହ୍ମଜ୍ୟୋତିରେ ବିରାଜମାନ ଦେବରାଜ ।
ତ୍ରିଶୂଳ ପଟ୍ଟୀଶ ବ୍ୟାଘ୍ରଚର୍ମ ବାସଧର
ତପତ କାଞ୍ଚନ ବର୍ଣ୍ଣ ଶିରେ ଜଟାଭାର ।
ତ୍ରିନେତ୍ର ପଞ୍ଚ ବଦନ ନାଗ ଯଜ୍ଞସୂତ୍ର
ବିଭୂତି ଭୂଷିତ ଶୁଭ୍ର ପୁଣ୍ୟମୟ ଗାତ୍ର ।
ମୃତ୍ୟୁଞ୍ଜୟ ଅଟନ୍ତି ସେ ମୃତ୍ୟୁର ମରଣ
ବିଶ୍ୱମୃତ୍ୟୁ ବିଶ୍ୱରୂପ ଜଗତ କାରଣ ।
ଭକତବତ୍ସଳ ପ୍ରଭୁ ଗୌରୀଦେବୀ କାନ୍ତ
ମନୋହର ରୂପ ବୃଷବାହନ ସୁଶାନ୍ତ ।
ତପଫଳ ଦାନକାରୀ ସର୍ବଫଳଦାତା
ସନ୍ତୁଷ୍ଟ ପ୍ରସନ୍ନ ମୁଖ ସଂସାର କରତା ।
ବିଶ୍ୱରୂପ ବିଶ୍ୱବୀଜ ବିଶ୍ୱନାଥ ହର
ବିଶ୍ୱସଂହାର କାରଣ ଜ୍ଞାନୀଗଣ ବର ।
ଅଭେଦ ଜୀବକାରଣ ନରକ ତାରଣ
ଜ୍ଞାନପ୍ରଦ ଜ୍ଞାନବୀଜ ନିତ୍ୟ ସନାତନ ।

ତାଙ୍କୁ ଦେଖି ଶଙ୍ଖଚୂଡ଼ ମହାଭକ୍ତି ପ୍ରେମଭାବେ
ପ୍ରଣାମ କଲା ସାଷ୍ଟାଙ୍ଗେ ଭାବେ ହୋଇ ଲୋଟି ।
ତା ସଙ୍ଗେ ସୈନ୍ୟ ଯାଆନ୍ତ ଯେତେକ ଯାଇଥିଲେ
ସମସ୍ତେ ଭକତିଭାବରେ ଦଣ୍ଡବତ ହେଲେ ।
ଶିବଙ୍କର ବାମଭାଗେ ଥିଲେ ମହାକାଳୀ
ତାଙ୍କୁ ମଧ୍ୟ ପ୍ରଣମିଲେ ମସ୍ତକକୁ ଢାଳି ।
ତାହାଙ୍କ ଆଗରେ କାର୍ତ୍ତିକେୟ ଥିଲେ ରହି
ନମସ୍କାର କଲେ ସବେ ଆନନ୍ଦକୁ ବହି ।
ତାହା ଦେଖି ମହାଦେବ କାଳୀ କାର୍ତ୍ତିକେୟ
ଆଶୀର୍ବାଦ କଲେ ତାଙ୍କୁ ହୋଇଣ ସଦୟ ।
ଦାନବଙ୍କୁ ଦେଖି ନନ୍ଦୀଆଦି ଶିବଗଣେ
ପରସ୍ପରେ ଆସି କଥା ହେଲେ ଜଣେ ଜଣେ ।
ଏରୂପେ ଆଳାପ କରି ଶଙ୍ଖଚୂଡ଼ ବୀର
ବସିଲେ ଯାଇ ଶିବଙ୍କ ପାଖରେ ସ୍ଥିର ।
ପ୍ରସନ୍ନ ମାନସେ ପ୍ରଭୁ ବୃଷଭ ବାହନ
ଅନାଇଁ ତାହାଙ୍କୁ ହସି କହିଲେ ବଚନ ।
ବୋଇଲେ ହେ ମହାରାଜା ସର୍ବଶୁଭେ ତୁମ୍ଭେ
ଅଛଟି କି କହ ଏବେ ପଚାରୁଛୁ ଆମ୍ଭେ ।
ଜଗତ ସୃଜନକାରୀ ଚତୁରାନନ ପିତା
ଧର୍ମ ଦେବଙ୍କ ଜନକ ଅଟନ୍ତି ବିଧାତା ।
ବିଧାତାଙ୍କଠାରୁ ଧର୍ମ ଉତପନ୍ନ ହୋଇ
ମରୀଚି ନାମରେ ପୁତ୍ର ଜାତକଲେ ସେହି ।
ବସୁଧାରୁ ଧାର୍ମିକପଣେ ବଳି ତାଙ୍କଠାରୁ
ନ ଥିଲେ କେହିଟି ଜାଣ ମୋର କହିବାରୁ ।
କଶ୍ୟପ ଅଟନ୍ତି ତାହାଙ୍କର ଯେ ନନ୍ଦନ
ସମସ୍ତ ଦେଶରେ ଖ୍ୟାତ ଯାହାଙ୍କର ନାମ ।
ତାଙ୍କଠାରେ ତୁଷ୍ଟ ହୋଇ ଦକ୍ଷ ପ୍ରଜାପତି
ଦାନକଲେ ଭକ୍ତିଭରେ ତେରଟି ଦୁହିତା ।
ସେମାନଙ୍କ ମଧ୍ୟେ ସତୀ ପତିବ୍ରତା ଗୁଣେ
ଥିଲେ ପରମାସୁନ୍ଦରୀ ଦନୁ ନାମେ ଜଣେ ।
ପତିଙ୍କର ପ୍ରିୟବଶୀ ଅଟନ୍ତି ଯେ ବାଳା
କେତେକାଳେ ତାହାଙ୍କର ଗର୍ଭବାସ ହେଲା ।
ଚାଳିଶ ତନୟ ତାଙ୍କଠାରୁ ଉତପତ୍ତି
ହେଲେ ଜାଣ ଆହେ ଶଙ୍ଖଚୂଡ଼ ମହାମତି ।
ମହାବଳ ପରାକ୍ରମ ବିପ୍ରଚିତ୍ତି ବୀର
ସେ ସବୁ ପୁତ୍ରଙ୍କ ମଧ୍ୟେ ଥିଲେ ଯେ ତୁମର ।

ତାହାଙ୍କ ବୀର୍ଯ୍ୟରେ ଦମ୍ଭନାମେ ଏକ ସୁତ
ଜନମିଲେ ଅଟନ୍ତି ସେ ଦିବ୍ୟ ତେଜୋଯୁକ୍ତ ।
ଜିତେନ୍ଦ୍ରିୟ ଧର୍ମଶୀଳ ବିଷ୍ଣୁଭକ୍ତ ସେହି
ପୁଷ୍କର ତୀର୍ଥରେ ତପ ଆରମ୍ଭିଲେ ଯାଇଁ ।
ପରମ ମନ୍ତ୍ରକୁ ଜପକରି ଏକଚିତ୍ତେ
ଲକ୍ଷେ ସମ୍ବତ୍ସର କଟାଇଲେ ବିଧିମତେ ।
ଶୁକ୍ରାଚାର୍ଯ୍ୟ ହୋଇଥିଲେ ତାହାଙ୍କର ଗୁରୁ
ତାଙ୍କ ଉପଦେଶେ ମନଦେଲେ ହୋଇ ସ୍ଥିରୁ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ଅନୁଗ୍ରହ ବଳେ
ତନୟ ରୂପେ ତୁମ୍ଭଙ୍କୁ କାଳେ ସେ ପାଇଲେ ।
ପୂର୍ବକାଳେ ଶ୍ରୀକୃଷ୍ଣଙ୍କ ପାରିଷଦ ତୁମ୍ଭେ
ହୋଇଥିଲ ଯଥାର୍ଥଟି କହୁଅଛୁ ଆମ୍ଭେ ।
ଶ୍ରୀକୃଷ୍ଣ ରାଧାଙ୍କ ପାଦେ ଭକ୍ତ କରିଥିଲ
ଦଇବେ ରାଧିକାଠାରୁ ଶାପକୁ ପାଇଲ ।
ସେ ସକାଶୁ ଭାରତରେ ଦାନବ ଈଶ୍ୱର
ହୋଇଅଛ ଏଥିରେ ସନ୍ଦେହ ନ କର ।
ବିଷ୍ଣୁଭକ୍ତ ପଣେ ତୁମ୍ଭେ ସମାନରେ କେହି
ଜଗତରେ ଥିବ ବୋଲି ମନେ ହେଉନାହିଁ ।
ବୈଷ୍ଣବ ଗୁଣରେ ପୂର୍ଣ୍ଣ ଅଟେ ଯେଉଁ ଜନ
କରଇ ସେ ଜଗତକୁ ଭ୍ରମରୂପେ ଜ୍ଞାନ ।
ବିଷ୍ଣୁ ସେବା ବିନା ଆଉ ସକଳ ପଦାର୍ଥ
ବୈଷ୍ଣବ ମତରେ ଜାଣ ଅଟେ ଅଯଥାର୍ଥ ।
କେବଣ ଦ୍ରବ୍ୟ ତାହାଙ୍କୁ ଦେଲେ ଯାଚକରି
ବିଚାରନ୍ତି ତାହା ସବୁ ତୃଣ କାଷ୍ଠ ପରି ।
କେବଳ ଶ୍ରୀକୃଷ୍ଣ ସେବା ଅଧିକ ସଂସାରେ
ଅଟଇ ବୋଲି ଭାବନା କରନ୍ତି ମନରେ ।
ବ୍ରହ୍ମା ରୁଦ୍ର ପୁରନ୍ଦର କୁବେର ବରୁଣ
ଏ ଆଦି ଦେବଙ୍କର ଯେ ଅଧିକାର ପୁଣ ।
ଗଣେନା ତା ନ କରନ୍ତି ବିଷ୍ଣୁଙ୍କ ଭକତେ
ବିଷ୍ଣୁ ଉପାସନା ମୁଖ୍ୟ ତାହାଙ୍କର ମତେ ।
ତୁମ୍ଭେ ତ ପରମଭକ୍ତ ଅଟ କୃଷ୍ଣଙ୍କର
ତୁମ୍ଭପକ୍ଷେ ତୁଚ୍ଛ ଅଟେ ନିଖିଳ ସଂସାର ।
ମୋହବଶେ ଦେବତାଙ୍କ ରାଜ୍ୟ ଧନ ଯାହା
ହରିନେଇଅଛ ତାହା ଦିଅ ଏବେ ତାହା ।
ତେମନ୍ତ ହେଲେ ବିଶେଷ ତୋଷ ମୁଁ ଲଭିବି
ପ୍ରଶଂସା କରି ତୁମ୍ଭଙ୍କୁ ନିଜ ସ୍ଥାନେ ଯିବି ।

ମହାସୁଖେ ନିଜ ରାଜ୍ୟ ଭୋଗକର ସ
ସନ୍ତୁଷ୍ଟ ହୁଅନ୍ତୁ ଦେବେ ତାଙ୍କ ସ୍ଥାନ ପାଇ ।
କଶ୍ୟପ ବଂଶରେ ସେ ତ ଜାତ ହୋଇଛନ୍ତି
ତୁମ୍ଭେ ମଧ୍ୟ ଅଟ ସେହି ବଂଶର ସନ୍ତତି ।
ଯାଇରେ ନିରୋଧ କରି ହେବ କେଉଁ କାର୍ଯ୍ୟ ।
ଭଲକରି ମନେ ଚିନ୍ତା କର ମହାରାଜ ।
ବ୍ରହ୍ମହତ୍ୟା ଆଦି ଯେତେ ପାତକ ଅଛଇ
ଜ୍ଞାତିଦ୍ରୋହ ପାପର ସେ ସମାନ ନୁହଇ ।
ତୁମ୍ଭେ ଅବା ବୋଲିବ ମୋ ସମ୍ପଦ ହରିନ
ହେବ ଦେବତାଙ୍କୁ ରାଜ୍ୟ କଲେ ସମର୍ପଣ ।
ସେଥି ସମ୍ବନ୍ଧରେ ମୁହିଁ କହୁଅଛୁ ଶୁଣ
ସବୁବେଳେ ସବୁ କଥା ଥାଏ କି ସମାନ ।
କାହାର କଦାପି ସବୁକାଳେ ସବୁକଥା
ଚିରଦିନ ରହି ନ ପାରଇଟି ସର୍ବଥା ।
ସୃଷ୍ଟି ଆଦ୍ୟେ ବ୍ରହ୍ମାଙ୍କର ଜନ୍ମ ହୋଇଥାଏ
ଅବସାନେ ପୁଣି ନାଶକାଳ ଆସି ହୁଏ ।
ଏହିରୂପେ ରଥଚକ୍ର ପ୍ରାୟେ ପୁନଃପୁନଃ
ଘଟଇ ସବୁଙ୍କାଙ୍କ ଉତ୍ଥାନ ପତନ ।
ତପବଳେ ଜ୍ଞାନବୁଦ୍ଧି ହୁଅଇ ଲୋକର
ହିତାହିତ ବିବେଚନା କରେ ତହୁଁ ନର ।
ସତ୍ୟଯୁଗେ ଚଉପାଦେ ଧର୍ମ ରହିଥାଇ
ତ୍ରେତାଯୁଗେ ପୁଣି ତିନପାଦରେ ରହଇ ।
ଦ୍ୱାପରଯୁଗ ହୁଅନ୍ତେ ଦୁଇପାଦେ ରହେ
କଳିଯୁଗେ ଏକପାଦେ ରହଇ ନିଶ୍ଚୟେ ।
ପୁଣି ଯେତେବେଳେ ବୃଦ୍ଧି ପାଉଥାଏ କଳି
ହ୍ରାସ ହେଉଥାଏ ଧର୍ମ କ୍ଷୀଣଚନ୍ଦ୍ର ଭଳି ।
ଏହିରୂପେ କଳିଯୁଗ ହେଲେ ଅବଶେଷ
ଧର୍ମ ହୁଏ କୁହୁଚନ୍ଦ୍ର କଳାର ସଦୃଶ ।
ଗ୍ରୀଷ୍ମକାଳେ ସୂର୍ଯ୍ୟଙ୍କର ଯେଉଁ ତେଜଥାଇ
ଶିଶିର କାଳରେ ତାହା ରହି ନ ପାରଇ ।
ମଧ୍ୟାହ୍ନରେ ଅବା ଦିବା ସମୟେ ଯେପରି
ହୋଇଥାନ୍ତି ସନ୍ଧ୍ୟାବେଳେ ନୁହନ୍ତି ସେପରି ।
କାଳବଶେ ପୂର୍ବଦିଗେ ନୂତନ ଉଦୟ
ସମରେ ହୁଏ ତାଙ୍କର ବାଳକ ସମସ୍ତ ।
ପୁଣି ଯଉବନ କାଳ ହୁଏ ଉପସ୍ଥିତ
କେତେକ ସମୟେ ପୁଣି ହୁଅନ୍ତି ଅସ୍ତମିତ ।

ଦୁର୍ଦ୍ଦିନ ଦିନରେ ଦୃଶ୍ୟ ନ ହୁଅନ୍ତି ଜନେ
ଆବର ଆକାଶେ ମେଘ ଆବୋରିବା ବେଳେ ।
ରାହୁଗ୍ରାସ କଲେ ଯେଣେ ହୁଅନ୍ତି କମ୍ପିତ
ପ୍ରସନ୍ନ ହୁଅନ୍ତି ତହୁଁ ହୋଇଲେ ମୁକତ ।
ସେହିରୂପେ ନିଶାକର ପୂର୍ଣ୍ଣିମା ତିଥିରେ
ପୂର୍ଣ୍ଣ ଅବୟବ ଦେଖାଯାନ୍ତି ଯେ ପ୍ରକାରେ ।
ସେହିପରେ ପ୍ରତିଦିନ ଦୃଶ୍ୟ ନ ହୁଅନ୍ତି
କ୍ରମେ କ୍ରମେ କ୍ଷୟ ବୃଦ୍ଧି ଉଭୟ ଭଜନ୍ତି ।
ଶୁକ୍ଳପକ୍ଷେ ତାହାଙ୍କର ସ୍ୱରୂପ ଯେମନ୍ତି
ବଢ଼ଇ କୃଷ୍ଣପକ୍ଷରେ ନ୍ୟୂନ ହୁଏ ଅତି ।
ସେହି ପକ୍ଷେ କଳଙ୍କତା ଜାତ ହୋଇଥାଏ
ପୁଣି ରାହୁ ଗ୍ରାସକାଳେ ସେହିପରି ହୁଏ ।
ନିବିଡ଼ ମେଘରେ ଅବା ଆବୃତ ହୋଇଲେ
ତେମନ୍ତ ମଳିନତାକୁ ପାଅନ୍ତି ସେ ଭଲେ ।
କାଳବଶେ ରୂପ ଗୁଣ ତେଜ ଶ୍ରୀ ସମ୍ପନ୍ନ
ଦେଖାଯାନ୍ତି ପୁଣି କାଳେ ନିତାନ୍ତ ମଳିନ ।
ଦାନବାଧି ବଳିରାଜା ସୁତଳରେ ରହି
ଦିନ ନେଉଛନ୍ତି କାଳେ ଇନ୍ଦ୍ର ହେବେ ସେହି ।
କାଳଯୋଗେ ବସୁମତୀ ଶସ୍ୟପୂର୍ଣ୍ଣ ହୁଏ
ଚରାଚର ଜଗତକୁ ମସ୍ତକରେ ବହେ ।
ସେହି କାଳବଶେ ପୁଣି ଜଳମଧ୍ୟେ ବୁଡ଼ି
କଷଣ ଭୋଗ କରଇ ବିପଦରେ ପଡ଼ି ।
କାଳରେ ଉତ୍ପନ୍ନ ହୁଏ ନିଖିଳ ସଂସାର
ପୁଣି କାଳଯୋଗେ ନାଶ ଘଟଇ ତାହାର ।
କେବଳ ପରମ ଆତ୍ମା ପରମ ପୁରୁଷ
ଶ୍ରୀକୃଷ୍ଣ ସମାନ ଭାବେ ହୁଅନ୍ତି ପ୍ରକାଶ ।
ଯେ ପ୍ରକାଶ ମୃତ୍ୟୁଞ୍ଜୟ ହୋଇଅଛୁ ମୁହିଁ
ଅସଂଖ୍ୟ ପ୍ରାକୃତ ଲୟ ଦେଖି ମୁଁ ଅଛଇ ।
ଏ ବାହାରେ ଆଜ୍ଞ କେତେ ପ୍ରଳୟ ସେପରି
ହେଇଛି ସେ କଥା କହି ନ ପାରଇ ହେରି ।
ପ୍ରକୃତି ସ୍ୱରୂପ ସେହି ପୁରୁଷ ଉତ୍ତମ
ସକଳ ଜୀବର ଆତ୍ମା ପୁଣ୍ୟମୟ ଧାମ ।
ଇଚ୍ଛାମତେ ନାନାରୂପେ ଧରି ସେ ପାରନ୍ତି
ଅଶେଷ ପ୍ରାଣୀଙ୍କ ହୃଦେ ପୂରି ରହିଛନ୍ତି ।
ଯେଉଁ ଲୋକ ତାହାଙ୍କର ନାମ ଗୁଣ ଗାନ
କରୁଥିବ ଏ ବାହାରେ ତାଙ୍କ ରୂପ ଧ୍ୟାନ ।

ସେ ଲୋକର ଜରା ମୃତ୍ୟୁ ଜନ୍ମ ରୋଗ ଭୟ
ନ ହୁଅଇ ଜାଣ କେଉଁକାଳରେ ଉଦୟ ।
ତାଙ୍କ ବୋଲେ ସୃଷ୍ଟି ସରଜନା କରେ ଧାତା
ବିଷ୍ଣୁ ଦେବ ଲଅନ୍ତି ମହା ପାଳନ କରତା ।
ସଂହାର କରତା ମୂର୍ତ୍ତି ହୋଇଅଛୁ ଜାଣ
ଏରୂପେ ବିଶ୍ୱମୂର୍ତ୍ତି ହୋଇ ଆମ୍ଭେ ତିନିଜଣ ।
ରହି ଅଛୁ ଆହେ ଶଙ୍ଖଚୂଡ଼ ଦଣ୍ଡଧାରୀ
ମୋର କହିବାରୁ ତୁମ୍ଭେ ବୁଝ ଭଲ କରି ।
ସଂସାର ବନ୍ଧନ ମୋହ ଛାଡ଼ିକରି ଏବେ
ଶ୍ରୀକୃଷ୍ଣ ନାମ କୀର୍ତ୍ତନ କରିବଟି ସେତେବେ ।
ସକଳ ପାପରୁ ହେଲେ ମୁକତ ଲଭିବ
ତିନ ଲୋକରେ ଦୁର୍ଲ୍ଲଭ ସମ୍ପଦ ପାଇବ ।
ଯେରୂପେ ଗରୁଡ଼ ଆଗେ ସର୍ପ ନ ରହନ୍ତି
ସେରୂପେ ପାତକ ପଳାଇବ କରି ଭ୍ରାନ୍ତି ।
ଏହି ପରି ସଦାଶିବ ଶଙ୍ଖଚୂଡ଼ ଆଗେ
ମଧୁର ବଚନ କହି ଅତ୍ୟନ୍ତ ସରାଗେ ।
ମଉନ ହୁଅନ୍ତେ ଶଙ୍ଖଚୂଡ଼ ମହାପତି
କହିଲେ ବଚନ ତାଙ୍କୁ ପ୍ରଣାମି ବିନତି ।
ବୋଇଲେ ହେ ନାଥ ସର୍ବ ଜଗତକାରଣ
ମୋର ହିତଲାଗି ଯାହା କହିଲ ଆପଣ ।
ସମସ୍ତ ଅଟଇ ସତ୍ୟ ତହିଁରୁ କଳ୍ପିତ
ମିଥ୍ୟା ବୋଲିକରି ଗଣୁନାହିଁ ମୋର ଚିତ୍ତ ।
ତଥାପି ଯଥାର୍ଥ କଥା କେତେଗୋଟି ମୁହିଁ
କହୁଅଛି ମନଦେଇ ଶୁଣିମା ଗୋସାଇଁ ।
ଜ୍ଞାତିଦ୍ରୋହ କଲେ ମହାପାତକ ହୋଇବ
ଏକଥା ମୋହର ଆଗେ କହିଲ ଯା ଦେବ ।
ତାହାର ପ୍ରତିବଚନ ମୋହଠାରୁ ଶୁଣ
ଦୋଷଥିଲେ ମାତ କ୍ଷମା କରିବ ଆପଣ ।
ଦେବଙ୍କର ଭାଇ ବଳୀ ବୈରୋଚନ ସୁତ
ହରିଲେ କିରୂପେ ଦେବେ ତାର ସବୁ ବିତ୍ତ ।
ସୁତଳରେ ନେଇ ତାଙ୍କୁ ଦେଲେ ବାସସ୍ଥାନ
ଏ କଥା ଅଟଇ କେଉଁ ଧର୍ମର ବିଧାନ ।
ଏ ବାହାରେ ଭାଇଥିଲେ ହିରଣ୍ୟାକ୍ଷ ଦୈତ୍ୟ
ଦେବତାଙ୍କ ମନ୍ତ୍ରଣାରେ ହୋଇଲା ନିହତ ।
ଶୁମ୍ଭ ଆଦି କେତେବେଳେ ଦୈତ୍ୟ ସେହିପରି
ଦେବଙ୍କ ହସ୍ତରେ ମରି ଗଲେ ଯମପୁରୀ ।

ପୂର୍ବକାଳେ ଦେବାସୁରେ ସମୁଦ୍ର ମନ୍ଥିଲେ
ଅମୃତ ଆଦି କେତେକ ପଦାର୍ଥ ପାଇଲେ ।
ଛଳ କଉଶଳେ ଦେବେ ଖାଇଲେ ଅମୃତ
ଅସୁରଙ୍କୁ କଲେ ଭଲ ଦ୍ରବ୍ୟରୁ ବଞ୍ଚିତ ।
କଷ୍ଟ ପାଇବାର ସାର ହେଲା ତାହାଙ୍କର
କହ ଏହା ଅଟେ କେଉଁ ଧର୍ମର ବିଚାର ।
ଜଗତ ଅଟଇ କ୍ରୀଡ଼ାସ୍ଥାନ କୃଷ୍ଣଙ୍କର
ଯାହାଠାରେ ତୋଷମତି ହୋନ୍ତି ସେ ଈଶ୍ୱର ।
ଅତୁଲ୍ୟ ସମ୍ପଦ ଦାନ କରନ୍ତି ତାହାକୁ
ଭୋଗ କରୁଥାଏ ସବୁକାଳେ ସେ ସୁଖକୁ ।
ଏରୂପେ ଦେବ ଦାନବ ବାଦ ନିରନ୍ତରେ
ଲାଗିଅଛି ଜାଣ ଦେବ ମୋର କହିବାରେ ।
ଜୟ ପରାଜୟ କ୍ରମେ ଦୁହିଙ୍କର ହୁଏ
କେତେବେଳେ କେ ହାରଇ ଜିଣଇ ବା କିଏ ।
ଏ ପ୍ରକାଶୁ ବୋଲୁଅଛି ଆମ୍ଭମାନଙ୍କର
ବିରୋଧେ ଆସିବା ବୃଥା ଅଟଇ ତୁମ୍ଭର ।
ମୋହର ପରମ ବନ୍ଧୁ ଅଟ ଭୂତପତି
ତୁମ୍ଭଙ୍କୁ ଦେଖି ଆନନ୍ଦ ହୁଅଇ ମୋ ମତି ।
ମୋ ସଙ୍ଗେ ଯୁଝିବା ଇଚ୍ଛା କରିଛ ଯା ତୁମ୍ଭେ
ଏଥୁ ବଳି ଲଜ୍ଜାକଥା ନାହିଁ ଦେବ ଆମ୍ଭେ ।
ଯୁଦ୍ଧ କରୁ କରୁ ଯେବେ ହେବ ପରାଜୟ
ଅଯଶ ପାଇବ କଷ୍ଟେ ଆହେ ମୃତ୍ୟୁଞ୍ଜୟ ।
ଏହିରୂପେ ଶଙ୍ଖଚୂଡ଼ କହିବାର ଶୁଣି
କହିଲେ ତାହାକୁ ହସି ଦେବ ଶୂଳପାଣି ।
ବୋଇଲେ ହେ ମହାରାଜା ତୁମ୍ଭର ବଚନ
ଶୁଣିକରି ତୋଷଯୁକ୍ତ ହୋଇଲା ମୋ ମନ ।
ମାତ୍ର ଯାହା କହୁଅଛି ଶୁଣ ମନଦେଇ
ତୁମ୍ଭେ ତ ବ୍ରହ୍ମଅଂଶରେ ଅଛ ଜାତ ହୋଇ ।
ତୁମ୍ଭ ତୁଲେ ଯୁଦ୍ଧକରି ହେଲେ ପରାଜୟ
ଲଜ୍ଜା ଅପକୀର୍ତ୍ତି କିପାଁ ହୋଇବ ଉଦୟ ।
ପୂର୍ବକାଳେ ମଧୁକଇଟଭଙ୍କ ସଙ୍ଗରେ
ଯୁଦ୍ଧ କଲେ ହରି ତାଙ୍କୁ ଜିଣିବା ଇଚ୍ଛାରେ ।
ହିରଣ୍ୟକଶିପୁ ତୁଲେ ପୁଣି କେତେଦିନେ
ଯୁଦ୍ଧ କରିଥିଲେ ଧାଇ କ୍ରୋଧ ବହି ମନେ ।
ହିରଣ୍ୟାକ୍ଷ ତୁଲେ ପୁଣି ସେହି ଚକ୍ରପାଣି
ଯୁଝିଲେ ସେ କଥା ତୁମ୍ଭେ ଥିବ ନିଜେ ଶୁଣି ।

ବିପ୍ରଙ୍କ ସଙ୍ଗେ ମୁହିଁ ସେ ଚରଣ କରି
କଳ୍ପିତ ମାନରେ ତାଙ୍କୁ ଦେଉଛୁ ସଦାଶି ।
ସର୍ବେଶ୍ୱରି ସର୍ବମାତା ପ୍ରକୃତି ସୁନ୍ଦରି
ସୁହିଥିଲେ ଶୁମ୍ଭଆଦି ଦୈତ୍ୟଙ୍କୁ ସେପରି ।
ଏହିରୂପେ କେତେ କେତେ ଅସୁରଙ୍କୁ ଆମ୍ଭେ
ଯୁଦ୍ଧରେ ସଂହାରି ଅଛୁ ନ ଜାଣ କି ତୁମ୍ଭେ ।
କୃଷ୍ଣଙ୍କ ପାର୍ଷଦ ତୁମ୍ଭେ ହେବାରୁଟି ଜାଣ
ଯେଉଁ ଦୈତ୍ୟମାନଙ୍କେ କେ ନୋହିବେ ତୁମ୍ଭସମ ।
ଏଣୁ ବୋଲୁଅଛୁ ତୁମ୍ଭ ସଙ୍ଗେ ଯୁଦ୍ଧକଲେ
ଲଜ୍ଜା ଅପମାନ କର୍ପେ ହେବ ବା ହାରିଲେ ।
ହରିଙ୍କ ଚରଣେ ଦେବେ ପଶିଲେ ଶରଣ
ଯୁଝିବାକୁ ମୋତେ ପେଷିଛନ୍ତି ସେହି ଜାଣ ।

ଏ ସକାଶୁ ଯୁଦ୍ଧ ଏକା ଅଟେ ମୋର ଲୋଡ଼ା
ନ ହୁଅଛୁ ମାନ ଦେବ ବୋଲି ଧର୍ମହନ୍ତା ।
ଅଧିକ କଥାବାର୍ତ୍ତାରେ ନାହିଁ ପ୍ରୟୋଜନ
ଦେବତାଙ୍କୁ ସମର୍ପଣ କର ରାଜ୍ୟଧନ ।
ନୋହିଲେ ପୌରୁଷ ଦେଖି ଯୁଦ୍ଧକରି ଆସ
ଏଥିରୁ କଥା ଗୋଟିଏ ହୋଇବ ଅବଶ୍ୟ ।
ଏରୂପେ କହି ଶଙ୍କର ମଉନ ହୋଇଲେ
ତାହା ଶୁଣି ଶଙ୍ଖଚୂଡ଼ ରାଜନ ସେଜାଇଲେ ।
ଯୁଦ୍ଧ କରିବାକୁ ମନେ ମନେ କରି ସ୍ଥିର
ଅମାତ୍ୟଙ୍କ ସଙ୍ଗେ ସେନ ଭେଟିଲେ ସତ୍ୱର ।
ତାହା ଜାଣିକରି ଶିବଙ୍କର ଅନୁଚର
ଜାଗ୍ରତ ହୋଇଲେ ରାବ କରଇ ଖେଚର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଶିବଙ୍କ ସହିତ ଶଙ୍ଖଚୂଡର
ବାକ୍ୟ ବଦନମଦ୍ୟେ ନାମ ଊନବିଂଶୋଽଧ୍ୟାୟଃ ।

---

## ବିଂଶ ଅଧ୍ୟାୟ

## ଶଙ୍ଖଚୂଡ଼ ସହିତ ମହାକାଳୀଙ୍କର ସମର

କହନ୍ତି ନାରଦ ଆଗେ ଋଷି ନାରାୟଣ
ଶୁଣ ଏଥୁଅନନ୍ତରେ ଦ୍ୱିଜକୁଳଗଣ ।
ଶିବଙ୍କୁ ପ୍ରଣାମ କରି ରାଜା ଶଙ୍ଖଚୂଡ଼
ଯୁଦ୍ଧ କରିବା ସକାଶେ ମନ କଲେ ଦୃଢ଼ ।
ସ୍ୱର୍ଣ୍ଣମୟ ରଥପରେ ଆରୋହଣ କଲେ
ମନ୍ତ୍ରୀଙ୍କୁ ପଠାଇ ସୈନ୍ୟ ସଜ କରାଇଲେ ।
ଦେବଙ୍କୁ ଡକାଇ ପାଶେ ଦେବ ଉମାପତି
ରଣ କରିବାକୁ ଆଜ୍ଞା ଦେଲେକ ଝଟତି ।
ଏ ବାହାରେ ଆପଣାର ସୈନ୍ୟ ଅଣାଇଲେ
ନିଜ ନିଜ ଶସ୍ତ୍ର ଘେନି ସମସ୍ତେ ଆସିଲେ ।
ପରସ୍ପରେ ହେଲ ଦେବ ଦାନବ ସମର
ବୃଷପର୍ବା ସଙ୍ଗେ ରଣ କଲେ ପୁରନ୍ଦର ।
ରଥ ଚଢ଼ି ଦିନକର ବିପ୍ରଚିତ୍ତି ସଙ୍ଗେ
ମସାମସି ହେଲେ ନାନା ଅସ୍ତ୍ର ରଣରଙ୍ଗେ ।
ଦମ୍ଭ ସହିତରେ ଯୁଦ୍ଧ କଲେ କୃଷ୍ଣଧର
ଅଦମ୍ଭ ହୋଇଲା ଦୈତ୍ୟ ଅସ୍ତ୍ରରେ ତାଙ୍କର ।

କାଳେଶ୍ୱର ବୀର ତୁଲେ କାଳ କଲେ ରଣ
ପ୍ରହାରିଲେ ବଜ୍ରପରି ତୀକ୍ଷ୍ଣ ତୀକ୍ଷ୍ଣ ବାଣ ।
ଗୋକର୍ଣ୍ଣଙ୍କୁ ହୁତାଶନ ବାଟେ ଆଗୁଳିଲେ
କାଳକେୟ ସଙ୍ଗତରେ କୁବେର ଯୁଝିଲେ ।
ମୟ ଦାନବକୁ ଦେଖି ବିଶ୍ୱକର୍ମା ଧାଇଁ
ପ୍ରହାରିଲେ ଶୂଳ ଶକ୍ତି ତୋମର ନଠାଇ ।
ଭୟଙ୍କର ପାଶେ ମୃତ୍ୟୁ ଯୁଝିବାକୁ ଗଲେ
ସଂହାର ସହିତେ ଯମ ରଣ ଆରମ୍ଭିଲେ ।
କଳମ୍ବିକଙ୍କ ଦୈତ୍ୟପରେ ବରୁଣ ଦେବତା
ପ୍ରହାରିଲେ ପରଶୁଧ ଗୁଡ଼ ମନ୍ତ୍ରୁଚକ୍ରା ।
ଚଞ୍ଚଳ ଦୈତ୍ୟଙ୍କୁ ବଳେ ଆଗୁଳିଲେ ବାତ
ଧୃତରାଷ୍ଟ୍ର ସଙ୍ଗେ ରଣ କଲେ ବିଧିସୁତ ।
ରକ୍ତାକ୍ଷ ସଙ୍ଗରେ ଶନୈଶ୍ଚର ଯୁଦ୍ଧକଲେ
ଜୟନ୍ତ ରତ୍ନସାରଙ୍କୁ ଶର ପ୍ରହାରିଲେ ।
ବର୍ଚ୍ଚସଙ୍କ ତୁଲେ ବସୁମାନେ କଲେ ଯୁଦ୍ଧ
ଅଶ୍ୱିନୀକୁମାର ଦୁହେଁ ମନେ ବହି କ୍ରୋଧ ।

ପାର୍ଷଦମାନ ଦୈତ୍ୟ କୁଳେ ରଣ କଲେ ଯାଇଁ
ବାନ୍ଧିଲେ ଧୂମ୍ରକୁ ନଳକୁବେର ଭିଡ଼ାଇ ।
ଧନୁର୍ଦ୍ଧର ଧର୍ମ ଦୁହେଁ ଘୋରଯୁଦ୍ଧ କଲେ
ମଣ୍ଡୂକାକ୍ଷକୁ ଜଗାଳ ମଙ୍ଗଳ ଯୁଝିଲେ ।
ଶେ ଘକାରର ମୁଖକୁ ଅନାଇ ଈଶାନ
ବୋଇଲେ ରାକ୍ଷସ ଆଜ ଯିବୁ ଯମସ୍ଥାନ ।
ପୀଠରକୁ ମନମଥ ଶରମୁଖ ମାରି
ରଥ ଅଶ୍ୱ ସଙ୍ଗତରେ ଦେଲେ ଚୂନ କରି ।
ଉଲ୍କାମୁଖ ଧୂମ୍ର ଖଡ୍ଗଧ୍ୱଜ କାଷ୍ଠମୁଖ
ପିଣ୍ଡ ଧୂମ୍ରଲୋଚନ ଯେ ଦନ୍ଦଶାର ମୁଖ୍ୟ ।
ବଶ୍ୱ ପଲାଶ କପିଳ ଏମାନଙ୍କ ସଙ୍ଗେ
ସମର କଲେ ଆଦିତ୍ୟଗଣ ନାନାରଙ୍ଗେ ।
ଏକାଦଶ ଭୟଙ୍କର ଦୈତ୍ୟଙ୍କ ଆଗରେ
ଏକାଦଶ ରୁଦ୍ର ରଣ ଯୁଝିଲେ ସତ୍ୱରେ ।
ଉଗ୍ରଦଣ୍ଡ ଆଦି କେତେ ଦାନବଙ୍କୁ ଦେଖି
ମହ ମୃତ୍ୟୁ ଦେବା ଯୁଦ୍ଧ କଲେ ହୋଇ ସୁଖୀ ।
ନନ୍ଦୀଶ୍ୱର ପ୍ରଭୃତି ଯେ ଶିବଗଣ ଥିଲେ
ମୁଖ୍ୟ ମୁଖ୍ୟ ଦାନବଙ୍କୁ ଶସ୍ତ୍ର ପ୍ରହାରିଲେ ।
ପ୍ରଳୟକାଳ ପରାୟେ ହେଲା ସେ ସମସ୍ତ
ଦୁଇପକ୍ଷୁ କୋଟି କୋଟି ସୈନ୍ୟ ହେଲେ କ୍ଷୟ ।
ବଟବୃକ୍ଷ ମୂଳେ ଶିବ କାଳୀଙ୍କ ସହିତେ
ବସିଥିଲେ ପୁଣି ପାଶେ ଥିଲେ ନିଜ ସୁତେ ।
ରତ୍ନ ସିଂହାସନ ପରେ ଶଙ୍ଖଚୂଡ଼ ବୀର
ବଇଁଲା ଯୁଦ୍ଧକୁ ଇଚ୍ଛେ ନ ହୋଇ ବାହାର ।
କେବଳ ଦୁଇ ସୈନ୍ୟଙ୍କ ମଧ୍ୟେ ରଣ ଘୋର
ଚଳିଲା କ୍ରମେ କ୍ରମେ ହୋଇଣ ତୁମୁଳ ।
ଦାନବଙ୍କ ସଙ୍ଗେ ଦେବେ ଯୁଝି ନ ପାରିଲେ
ପରାଜିତ ହୋଇ ରଣ ଛାଡ଼ି ପଳାଇଲେ ।
ତାହା ଦେଖି କାର୍ତ୍ତିକେୟ କରି ମହାକୋପ
ବାହାର ହୋଇଲେ ହସ୍ତେ ଘେନି ଶରଚାପ ।
ଦେବତାଙ୍କୁ ଡାକି କହେ ନ ଡର ବୋଇଲେ
ସମର ମଧ୍ୟରେ ଯାଇ ପରବେଶ ହେଲେ ।
ଏକା ହୋଇ ଦାନବଙ୍କ ସଙ୍ଗେ କଲେ ରଣ
ବର୍ଷିଲେ ଅନଳ ପ୍ରାୟେ ଲକ୍ଷ ଲକ୍ଷ ବାଣ ।
ଶତେ ଅକ୍ଷୌହିଣୀ ସେନା ଏକ ଅସ୍ତ୍ରାଘାତେ
ନିପାତନ କଲେ ସେ କନକରେ କ୍ରୋଧଚିତ୍ତେ ।

ଖର୍ପର ଘେନିଣ କାଳୀ କମଳଲୋଚନା
ଦାନବଙ୍କ ରକ୍ତପାନ କଲେ ଅକଳନା ।
ଦଶଲକ୍ଷ ଗଜ ଶତଲକ୍ଷ ଅଶ୍ୱ କୁଳେ
ତୁଣ୍ଡରେ ପକାଇ ଆଣ୍ଠେ ଚୋବାଇ ଖାଇଲେ ।
ମହାବଳ ପରାକ୍ରମ ଦାନବ ସଇନ୍ୟ
କାର୍ତ୍ତିକେୟ ଶରଘାତେ ହେଲେ ଛିନ୍ନ ଭିନ୍ନ ।
ତାହାଙ୍କର କରି ଗୃଧ୍ରବେଗେ ପଳାଇଲେ
ସମରେ ଗୋଟିଏ ହେଲେ ରହି ନ ପାରିଲେ ।
ତାହା ଦେଖି ବୃଷପର୍ବା ବିପ୍ରଚିତ୍ତି ଦମ୍ଭ
ବିକଙ୍କଣ ଆଦି ଯୋଦ୍ଧେ ହୋଇଣ ଅଦମ୍ଭ ।
ଗୋଟି ଗୋଟି ହୋଇ ସ୍କନ୍ଦ ଆଗକୁ ଧାଇଁଲେ
ଅସ୍ତ୍ର ଶସ୍ତ୍ର ଘେନି ରଣ ଘୋର ଆରମ୍ଭିଲେ ।
ଗଣନା ନ କରି ତାଙ୍କୁ କାର୍ତ୍ତିକେୟ ବୀର
ପ୍ରହାରିଲେ ଶୂଳଶକ୍ତି ପରଶୁ ଶର ।
ମହାମୃତ୍ୟୁ ଭୟଙ୍କର ରୂପକୁ ଦେଖାଇ
ଯାହାକୁ ଦେଖିଲେ ଆଗେ ଦେଲେ ତାକୁ ଖାଇ ।
ସେ ଦୁହିଙ୍କ ସଙ୍ଗେ ଦୈତ୍ୟ ନ ପାରିଲେ ଯୁଝି
କେହି ପଳାଇଲ କେ ପଡ଼ିଲା ରଣମଝି ।
ଆକାଶରେ ଦେବବଳ ଦୁନ୍ଦୁଭି ବଜାଇ
ପୁଷ୍ପ ବରଷିଲେ ସ୍କନ୍ଦ ମସ୍ତକରେ ନେଇ ।
ଦେଖିକରି କାର୍ତ୍ତିକେୟ ବଳ ପରାକ୍ରମ
ପଳନ୍ତେ ଆପଣା ସୈନ୍ୟ ଛାଡ଼ିଣ ସଂଗ୍ରାମ ।
ଶଙ୍ଖଚୂଡ଼ ରଜା ତାହା ଦେଖି ନୟନରେ
ବସିଲେ ବିମାନ ଚଢ଼ି ଧନୁ ଧରି କରେ ।
କାର୍ତ୍ତିକେୟ ମସ୍ତକରେ ବରଷିଲେ ଶର
ଯେରୂପେ ଶ୍ରାବଣ ମାସେ ଦ୍ରୋଣ ଜଳଧାର ।
ଭୟଙ୍କର ଅସ୍ତ୍ରମାନ ସର୍ଜନ କଲେ
ଅନ୍ଧକାରେ ଦଶଦିଗ ରୁନ୍ଧପକାଇଲେ ।
ଆକାଶରୁ କୋଟି କୋଟି ପଡ଼ିଲା ଅନଳ
ସ୍ଥାନ ନ ରହିଲା କାହିଁ ପଡ଼ିବାକୁ ତିଳ ।
ଏହିରୂପେ ଦାନବର ପରାକ୍ରମ ଯୋଗେ
ନନ୍ଦୀଶ୍ୱର ଆଦି ଦେବେ ନ ରହି ତା ଆଗେ ।
ମହାଭୟ କରି ଏଣେତେଣେ ପଳାଇଲେ
କେବଳ ଯେ କାର୍ତ୍ତିକେୟ ନିଶ୍ଚଳେ ରହିଲେ ।
ଆଗରେ ଦେଖି ତାହାଙ୍କୁ ଦାନବରାଜନ
ବର୍ଷିଲେ କାର୍ମୁକ ଟାଣି ତୀକ୍ଷ୍ଣମାରଗଣ ।

ପର୍ବତ ପାଷାଣ ବୃକ୍ଷ ବରଷଣ କଲେ
ଶକ୍ତିଶୂଳ ଆଦି ନାନାଶସ୍ତ୍ର ପ୍ରହାରିଲେ ।
ସେ ଘାତରେ କାର୍ତ୍ତିକେୟ ସେନାପତି ବୀର
ଆଚ୍ଛାଦିତ ହେଲେ ଯେସନ୍ତ ମେଘେ ଦିବାକର ।
ସେ ସମୟେ ଶଙ୍ଖଚୂଡ଼ କ୍ଷୁରକାଣ୍ଡ ବିନ୍ଧି
କାର୍ତ୍ତିକେୟ ହସ୍ତୁ ଧନୁ ପକାଇଲେ ଛେଦି ।
ଘୋଟକ ସାରଥି ଭଙ୍ଗିଲେ ରଥ ନୂଆକରି
ଦେଲେ ସେହିକ୍ଷଣି ନୀଳ ତୀକ୍ଷ୍ଣ ଶର ମାରି ।
ଦିବ୍ୟଅସ୍ତ୍ର ବିନ୍ଧି ପୁଣି ମୟୂରର ଦେହ
ଖଣ୍ଡ ଖଣ୍ଡ କଲେ ମାନସରେ ବହି କୋହ ।
ସେ ଅନ୍ତରେ ସୂର୍ଯ୍ୟତୁଲ୍ୟ ତେଜସ୍କର ଶକ୍ତି
ଫିଙ୍ଗିଦେଲେ ସ୍କନ୍ଦ ଉପରକୁ ସେ ଦୁର୍ମତି ।
ସେ ଘାତରେ ସେନାପତି ସ୍କନ୍ଦ ମହାବଳୀ
କ୍ଷଣେ ଯାଏ ମୂର୍ଚ୍ଛା ଯାଇ ନ ପାରିଲେ ଚଳି ।
ସଚେତ ହୋଇଣ ପୁଣି ଦିବ୍ୟଧନୁ ଆଣି
ଗୁଣ ଦେଇ ଦେଲେ ଥରେ କର୍ଣ୍ଣଯାଏ ଟାଣି ।
ଦିବ୍ୟ ଅସ୍ତ୍ରମାନ ତହିଁ ବସାଇ ତତ୍ପର
ବିନ୍ଧିଲେ ଦାନବଠାରେ କ୍ରୋଧ ବହି ଘୋର ।
ପର୍ବତ ପାଷାଣ ବୃକ୍ଷ ଶକ୍ତିଶୂଳ ଆଦି
ଯେତେକ ପ୍ରହାରିଥିଲା ଦାନବ ସମ୍ବାଦି ।
ଟିକିଟିକି କରି ସବୁ ତଳେ ପକାଇଲେ
ପାର୍ଜନ୍ୟ ଅସ୍ତ୍ରରେ ଅଗ୍ନି ନିର୍ବାପିତ କଲେ ।
ସାମାନ୍ୟ ଅସ୍ତ୍ରରେ ଶଙ୍ଖଚୂଡ଼ ରଥ ଧନୁ
କାଟି ପକାଇଲେ ପୁଣି ଶିବଙ୍କର ସୂନୁ ।
ଆବର କବଚ ରତ୍ନକରୀଟ କୁଣ୍ଡଳ
ସ୍ୱର୍ଣ୍ଣ ଆଭରଣମାନ ପକାଇଲେ ତଳ ।
ପୁଣି ମହାଶକ୍ତିଟାଏ ହସ୍ତରେ ଧରିଲେ
ବୁଲାଇଣ ଶଙ୍ଖଚୂଡ଼ ବକ୍ଷକୁ ଫିଙ୍ଗିଲେ ।
ଉଲ୍କା ପରି ଆକାଶରେ ଚହଟି ସେ ବାଣ
ପଡ଼ିଲା ଦନୁଜପତି ହୃଦେ ତତକ୍ଷଣ ।
ସେ ଘାତେ ଚେତନା ତେଜି ବୀର ଶଙ୍ଖଚୂଡ଼
ପଡ଼ିଗଲେ ମହୀପରେ ହୋଇ ଲଣ୍ଡଭଣ୍ଡ ।
ମୁହୂର୍ତ୍ତେ ଅନ୍ତରେ ପୁଣି ଜ୍ଞାନକୁ ପାଇଲେ
ଆନରଥେ ବସି ଆନ ଧନୁକୁ ଧଇଲେ ।
ମାୟା ଜାଣିବାରେ ସେ ଅତ୍ୟନ୍ତ କୁଶଳ
ପ୍ରହାରିଲେ କ୍ଷଣକରେ ଶର ମାନମାନ ।

ଆଚ୍ଛାଦିଲେ ଶରେ ଷଡ଼ାନନଙ୍କୁ ସମରେ
ଶୁଣ ହେ ନାରଦ ମୁନି ସ୍ଥିର ମାନସରେ ।
ପୁଣି ଦିବ୍ୟ ଶକ୍ତିକୁ ଧରିଲେ ହସ୍ତରେ
ଦିଶୁଥିଲା ତେଜେ ଶତସୂର୍ଯ୍ୟ ପରକାରେ ।
ବିଷ୍ଣୁଙ୍କ ତେଜରେ ସେହି ଅଟଇ ଅବ୍ୟର୍ଥ
ଶତ୍ରୁ ବିନାଶନ ପାଇଁ ଅତି ସମରଥ ।
ସେ ଶକ୍ତିକୁ କାର୍ତ୍ତିକେୟ ଉପରେ ଫିଙ୍ଗିଲେ
ବଜ୍ରସ୍ୱର ନାମି ସେହି ଗଗନମଣ୍ଡଳେ ।
ଗରଜନ କରି ସ୍କନ୍ଦ ଉପରେ ପଡ଼ିଲା
ଅନଳବର୍ଣ୍ଣ ହେବା ପ୍ରାୟେ ଦେଖାଗଲା ।
ସେ ଆଘାତ ପାଇ ତଳେ ଶଙ୍କରଙ୍କ ଶିଷ୍ୟ
ପଡ଼ିଲେ ହୃଦରେ ଜ୍ଞାନ ନ ରହିଲା ଲେଶ ।
ମହାକାଳୀ ତାହାଙ୍କର ପାଶରେ ତ ଥିଲେ
କୋଳେକରି ଶିବଙ୍କର ପାଶେ ତାଙ୍କୁ ଦେଲେ ।
ପୁତ୍ରଙ୍କ ଅବସ୍ଥା ଦେଖି ଦେବ ମହେଶ୍ୱର
ସଚେତ କଲେ ସେକ୍ଷଣି ହୋଇ ତତ୍ପର ।
ପୁଣି ଦିବ୍ୟ ମନ୍ତ୍ରବଳେ ବଳ ପରାକ୍ରମ
ସକଳ ତାହାଙ୍କଠାରେ କଲେ ବିନ୍ନବେଶ ।
ଅକ୍ଷତ ଶରୀର ହୋଇ ପୂର୍ବପରି ସ୍କନ୍ଦ
ବନ୍ଦିଲେ ପିତାଙ୍କୁ ପାଦେ ହୋଇଣ ଆନନ୍ଦ ।
ସେ ଅନ୍ତରେ ମହାକାଳୀ ଶିବଙ୍କ ପାଶରେ
ପୁତ୍ରକୁ ରଖାଇ ନିଜେ ଚଳିଲେ ସମରେ ।
ନନ୍ଦୀଶ୍ୱର ଆଦି ବୀରେ ତାଙ୍କ ପଛେ ପଛେ
ଗଲେ ଆପଣାର ଅସ୍ତ୍ର ଶସ୍ତ୍ର ଘେନି ସ୍ୱଚ୍ଛେ ।
ଦେବତା ଗନ୍ଧର୍ବ ଯକ୍ଷ ପନ୍ନଗ ବେତାଳ
ତାହାଙ୍କ ପାଶରେ ସବୁ ହେଲେ ଯାଇ ଠୁଳ ।
ବଜାଇଲେ ଶଙ୍ଖଭେରୀ ଦୁନ୍ଦୁଭି ଅପାର
ଧାଇଁଲେ ଆଗକୁ ମୁଖେ କରି ରେରେକାର ।
ସମର ଭୂମିରେ ଦେବୀ ସିଂହନାଦ କରି
ପୂର୍ଣ୍ଣ କଲେ ଅନ୍ତରୀକ୍ଷ ଦିଗ ବସୁନ୍ଧରୀ ।
ସେ ନାଦ ଶୁଣି ଦାନବେ ହାରିଲେ ଚେତନା
ପୁନଃ ପୁନଃ ଅଟ୍ଟହାସ୍ୟ କଲେ ଚନ୍ଦ୍ରାନନା ।
ମଧୁପାନ କରି ପୁଣି ନୃତ୍ୟ ଆରମ୍ଭିଲେ
କାହିଁରେ ଦାନବ ଅଛୁ ବୋଲି ଡାକ ଦେଲେ ।
ତାଙ୍କପଛେ ଉଗ୍ରଦଂଷ୍ଟ୍ରା ଉଗ୍ରଚଣ୍ଡା ଘେନି
ପ୍ରବେଶ ହୋଇଲେ ସଙ୍ଗେ କୋଟବୀକୁ ଘେନି ।

ଯେ ଗିମା ଡ଼ାକଣୀ ଭୂତ ପିଶାଚ ବେତାଳ
ଦେବଙ୍କ ସଙ୍ଗତେ ଆସି ହେଲେ ତହିଁ ମେଳ ।
କାଳୀଙ୍କୁ ସମରେ ଦେଖି ଶଙ୍ଖଚୂଡ଼ ବୀର
ଆସିଲେ ଆୟୁଧ ଘେନି ନ କରି ଉଚ୍ଛୁର ।
କାଳୀଙ୍କ ସ୍ୱରୂପ ଦେଖି ଭୟରେ ଦାନବେ
ପଳାଇବା ପାଇଁ ଚେଷ୍ଟା କଲେକ ସରବେ ।
ତା' ଜାଣି ଦାନବରାଜା ବୋଇଲେ ନ ଡର
ଦେଖ ଆଜ କରିବି ମୁଁ କେମନ୍ତ ସମର ।
ଏହିକାଳେ ଦୁଇ ସୈନ୍ୟ ହେଲେ ଭେଟାଭେଟି
ଶସ୍ତ୍ରାଘାତେ ପରସ୍ପରେ ହେଲେ ପିଟାପିଟି ।
ଅନଳ ଅସ୍ତ୍ର ବସାଇ ବିନ୍ଧିଣ କାଳିକା
ମଲରେ ଦାନବ ବୋଲଦେଲେ ପୁଣି ଡକା ।
ସେ ଅସ୍ତ୍ରକୁ ଶଙ୍ଖଚୂଡ଼ ପାର୍ଜନ୍ୟ ଅସ୍ତ୍ରରେ
ନିବାରଣ କଲେ ତହିଁ କ୍ଷଣକ ମାତ୍ରରେ ।
ସେ ଅନ୍ତେ ବାରୁଣୀ ଅସ୍ତ୍ର ବିନ୍ଧିଲେ ଈଶ୍ୱରୀ
ଗାନ୍ଧର୍ବାସ୍ତ୍ରେ ଶଙ୍ଖଚୂଡ଼ ଦେଲା ତା ସଂହାରି ।
ମାହେଶ୍ୱର ଅସ୍ତ୍ର କାଳୀ କରନ୍ତେ ପ୍ରହାର
କୋଟି କୋଟି ଶର ତହୁଁ ହୋଇଲା ବାହାର ।
ଅଗ୍ନି ଶିଖାପରି ସବୁ ଦେହକୁ ଦହିଲା
ଦୁଇ ସୈନ୍ୟଙ୍କର ମନେ ଭୟ ଥୁଆଇଲା ।
ବୈଷ୍ଣବ ଅସ୍ତ୍ରକୁ ରାଜା ଧନୁରେ ବସାଇ
ସେ ମହାଅସ୍ତ୍ରକୁ ଆସୁ ଦେଲେ ନିବର୍ତ୍ତାଇ ।
ତାହା ଦେଖି ମହାକାଳୀ ନାରାୟଣ ଅସ୍ତ୍ର
ପ୍ରହାର କଲେ ସେକାଳେ ପଢ଼ି କରି ମନ୍ତ୍ର ।
ତାଙ୍କୁ ଦେଖି ଶଙ୍ଖଚୂଡ଼ ରଥୁ ଓହ୍ଲାଇଲେ
ଧନୁଶର ତେଜ ବେନି କରକୁ ଯୋଡ଼ିଲେ ।
ଦଣ୍ଡବତ ହୋଇ ତଳେ ପଡ଼ିଲେ ସେ ଶୋଇ
ତାହା ଦେଖି ଅସ୍ତ୍ରବର ଗଲା ଆଡ଼ହୋଇ ।
ଗହୁଁ ଗହୁଁ ଆକାଶରେ ଲୀନ ହୋଇଗଲା
ପ୍ରଣାମ କରିବା ଯୋଗୁଁ ବାଧା ସେ ନ ଦେଲା
ତାହା ଦେଖି କାଳୀ ମନେ ମହାକ୍ରୋଧ କରି
ବ୍ରହ୍ମଅସ୍ତ୍ର ପ୍ରହାରିଲେ ମନ୍ତ୍ରକୁ ଉଚ୍ଚାରି ।
ବ୍ରହ୍ମାସ୍ତ୍ରେ ସଂହାରି ତାହା ଦାନବ ଈଶ୍ୱର
ଯୁଝିଲେ କାଳୀଙ୍କ ସଙ୍ଗେ ହୋଇ ତତପର ।
ଦିବ୍ୟଅସ୍ତ୍ର ପୁଣି କାଳୀ କଲେ ସରଜନ
ଦିବ୍ୟାସ୍ତ୍ରରେ ଶଙ୍ଖଚୂଡ଼ କଲେ ତା ବାରଣ ।

ସେ ଜଳ ବସ୍ତୃତ ଅସ୍ତ୍ରେ ସେବଣ ଶକତ
ତାହାକୁ ଘେନିଣ କାଳୀ ନୋ'ଧକର ଅନ୍ତ ।
ଫିଙ୍ଗନ୍ତେ ଦାନବରାଜ ଉପରକୁ ଯୋଟି
ଶତଖଣ୍ଡ କରି ଶଙ୍ଖଚୂଡ଼ ଦେଲେ କାଟି ।
ଏହିରୂପେ ଦାନବର ସକଳ ଆୟୁଧ
ବୃଥାହେବା ଦେଖି କାଳୀ ପୁଣି ହେଲେ କ୍ରୋଧ ।
ଦିବ୍ୟ ପାଶୁପତ ଅସ୍ତ୍ର ଧନୁରେ ସନ୍ଧିଲେ
ବିନ୍ଧିବା ଇଚ୍ଛାରେ କର୍ଣ୍ଣପାଏ ଓଟାରିଲେ ।
ସେସମୟକାଳେ ଆକାଶରୁ ଶୁଭିଲା ବଚନ
ଏ ମହାଅସ୍ତ୍ରକୁ ଦେବୀ ନ କର ସର୍ଜନ ।
ପାଶୁପତ ଅସ୍ତ୍ରେ ନ ମରିବ ଶଙ୍ଖଚୂଡ଼
କହୁଅଛୁ ତୁମ୍ଭେ ଆଜ ଯୁଦ୍ଧରେ ନ ବୁଡ଼ ।
ଯେତେବେଳେ ଯାଏ ବିଷ୍ଣୁ କବଚ କଣ୍ଠରେ
ଧାରଣ ସେ କରିଥିବ ଯତ୍ନ ସହକାରେ ।
ଆଉରି ତାହାର ପତ୍ନୀ ତୁଳସୀ ସୁନ୍ଦରୀ
ଯେତେଦିନ ସତୀତ୍ୱକୁ ଥିବ ରକ୍ଷାକରି ।
ସେତେଦିନ ଯାଏ ଜରାମୃତ୍ୟୁ ଆଦି କେହି
ବାଧା ନ ଦେବେ ତାହାକୁ ଜାଣ କହୁଥାଇ ।
ଏରୂପେ ବିଧାତା ତାକୁ ଦେଇଛନ୍ତି ବର
ବଚନ ଅନ୍ୟଥା କେ କରିବ ଧାତାଙ୍କର ।
ଏମନ୍ତେ ଆକାଶବାଣୀ ଶୁଣି ଭଦ୍ରକାଳୀ
ନ ବିନ୍ଧିଲେ ସେ ଅସ୍ତ୍ରକୁ ମନେ ମନେ ଭାଳି ।
ଶତଲକ୍ଷ ଦାନବଙ୍କୁ କରିଣ ନିପାତ
ଶଙ୍ଖଚୂଡ଼ ମସ୍ତକକୁ ବଢ଼ାଇଲେ ହାତ ।
ଦିବ୍ୟାସ୍ତ୍ର ପ୍ରୟୋଗ କରି ଦାନବ ରାଜନ
କାଳୀଙ୍କ ଗମନ ମାର୍ଗ ରୁନ୍ଧିଲେ ସେକ୍ଷଣ ।
ତା ଦେଖି କାଳୀକାଦେବୀ ଖଡ୍ଗ ହସ୍ତେ ଧରି
ଫିଙ୍ଗିଲେ ଦାନବରାଜ ଦେହେ ଲକ୍ଷ୍ୟକରି ।
ଦିବ୍ୟଅସ୍ତ୍ରେ ଶଙ୍ଖଚୂଡ଼ କାଟିଲେ ସେ ଖଡ୍ଗ
ଦେଖି କାଳୀଙ୍କର ମନେ ଜନମିଲା ରାଗ
ବିକଟ ମୁଖ ବିସ୍ତାରି ବେଗରେ ଧାଇଁଲେ
ଗ୍ରାସ କରିବାପାଇଁକି ମନେ ବିଚାରିଲେ ।
ଦାନବେଶ୍ୱର ସର୍ବ ସିଦ୍ଧେଶ୍ୱର ବରେ
ନିବାରିଲେ କାଳୀକାଙ୍କୁ ସେକାଳେ ସତ୍ୱରେ ।
ମୁଷ୍ଟି ପ୍ରହାରିଣ ଦେବୀ ଦାନବର ରଥ
ସାରଥି ଘୋଟକ ତୁଲେ କଲେ ମଗ୍ନ ପଥ ।

ପୁଣି ମହାଶୂଳ ଧରି ଫିଙ୍ଗିଲେ ଜାଣ ଇ
ଧଇଲେ ଦାନବରାଜ ବାମହସ୍ତେ ଧାଇଁ ।
ତାହା ଦେଖି କାଳୀ ପୁଣି ପ୍ରହାରିଲେ ମୁଷ୍ଟି
ଶବଦ ଶୁଭିଲା ବଜ୍ର ହେଲା ପରି ବୃଷ୍ଟି ।
ଶଙ୍ଖଚୂଡ଼ ପୃଷ୍ଠଦେଶେ ବାଜନ୍ତେ ସେ ଯାଇ
ଭ୍ରମିଲା ଦାନବ କ୍ଷଣେ ଜ୍ଞାନଶୂନ୍ୟ ହୋଇ ।
ପୁଣି ଚେତାପାଇ ସିଂହପରି ସେ ଉଠିଲେ
ଆଗରେ କାଳିକା ରହିଅଛନ୍ତି ଦେଖିଲେ ।
ତାଙ୍କ ସଙ୍ଗେ ବାହୁଯୁଦ୍ଧ ନ କଲେ ସେ ଯାଇ
ପ୍ରଣାମ କଲେ ତାହାଙ୍କୁ ଭକତି ଦେଖାଇ ।
ଯେତେ ଯେତେ ଅସ୍ତ୍ର ପ୍ରହାରିଲେ ଦେବୀ ତହୁଁ
ଛେଦିଲେ କେତେକ ଧରିନେଲେ ସ୍ୱହୁଁ ସ୍ୱହୁଁ ।
ମାତୃ ବୁଦ୍ଧିରେ ଲେଉଟି ପ୍ରହାର ନ କଲେ
ସେ ସମୟେ ଦେବୀ ତାଙ୍କ ସେନା ନେଇଗଲେ ।
ପୁନଃପୁନଃ ଶୂଳଇଣ ଫିଙ୍ଗିଲେ ଊର୍ଦ୍ଧ୍ୱକୁ
ଫିଙ୍ଗନ୍ତି ବାଳକେ ଯେସନେ କ୍ରୀଡ଼ା କନ୍ଦୁକକୁ
ମହାବଳୀ ଶଙ୍ଖଚୂଡ଼ ଆକାଶରୁ ଖସି
ସମର ଭୂମିରେ ଉଭା ହେଲେ ପୁଣି ଆସି ।
ରତ୍ନମୟ ରଥପରେ ବସେ କରି ଧୀର
କାଳୀଙ୍କୁ ପ୍ରମାଣ କଲେ ସେହୁ ଭକତିର ।
ତିଳେହେଁ ବିଶ୍ରାମ ତାହାଙ୍କର ସେ ନୋହିଲା
ତା ଦେଖି ଅମରପୁରେ ଗ୍ଳାନି ପଡ଼ିଲା ।
ଯୁଦ୍ଧଘାତେ ଦଳଦଳ ଚମକିଲା ମହୀ
ଜଗତ ଭୁବନେ କେହି ନ ପାରିଲେ ରହି ।
ଦାନବଙ୍କର ରକତ ପାନକରି ତୋଷେ
ପ୍ରବେଶ ହେଲେ କାଳୀକା ଶିବଙ୍କର ପାଶେ ।
ଗୋଟି ୨ କରି ମାତ ତାହାଙ୍କ ଆଗରେ
ଯୁଦ୍ଧକଥା ବଖାଣିଲେ ସନ୍ତୋଷ ମନରେ ।
ଦାନବ ବଳ ନିଧନ ହେବା କଥା ଶୁଣି
ହଠ ହଠ ହସିଲେକ ଦେବ ଶୂଳପାଣି ।
ବୋଇଲେ ସବୁ ଦାନବ ସଂହାରିଛୁ ମୁହିଁ
ଆଜ ମାତ୍ର ଏକଲକ୍ଷ ରହିଛନ୍ତି ଯାଇଁ ।
ଦାନବ ରାଜାର ତେଜପାଶେ ଜଗିଛନ୍ତି
ପିପିଳିକା ଯିବା ପାଇଁ ପଥ ନ ଛାଡ଼ନ୍ତି ।
ପାଶୁପତ ବାଣେ ମୁହିଁ ଦାନବର ପ୍ରାଣ
ନାଶିବାକୁ ଯାନ୍ତେ ଶୂନ୍ୟ ଶୁଭିଲା ତକ୍ଷଣ ।
ନମାର ନମାର ମାତ ଦାନବଙ୍କୁ ତୁମ୍ଭେ
ନ ମରିବ ସେ ଦାନବ ତବ ହାତେ କେବେଁ ।
ତାହାଶୁଣି ଅସ୍ତ୍ର ଆଉ ନମାରି ତାହାରେ
ଆସିଲିଁ ଲେଉଟି କ୍ଳାନ୍ତହୋଇ ନିଜପୁରେ ।
ଏଣିକ ତୁମ୍ଭର ଯାହା ଇଚ୍ଛା ତାହା କର
ରହିଲା ଦାନବ ନାଶ ଘୋର ଚବଳର ।
ଏହାକହି ମହାଦେବ ହୋଇଲେ ମଉନ
ଯେ ପାଦେ ଶରଣ ସଦା କ୍ଷେତ୍ରବାସୀ ଜନ ।
ତାହାଙ୍କ ବ୍ୟତିତ ଆନ କାହାରେ ନ ଜାଣଇ
ସେହି ପିତା ସେହି ମାତା ସେହି ବନ୍ଧୁ ଭାଇ ।

—o—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଶଙ୍ଖଚୂଡ଼ ସହିତ ମହାକାଳୀଙ୍କର ସମର ବର୍ଣ୍ଣନେ ନାମ ବିଂଶୋଽଧ୍ୟାୟଃ

—*—

## ଏକବିଂଶ ଅଧ୍ୟାୟ

## ମହାଦେବଙ୍କ ହସ୍ତରେ ଶଙ୍ଖଚୂଡ଼ର ବିନାଶ

ଶୁଣ ୨ ସୁଜ୍ଞଜନେ ଦେଇ ମନ କର୍ଣ୍ଣ
ବେଦବିଧି ଆଗରେ ବଖାଣିଲେ ନାରାୟଣ ।
କାଳୀଙ୍କ ବଚନ ଶୁଣି ଦେବ ଶୂଳପାଣି
ଘଇନଙ୍କୁ ସଙ୍ଗେ ନେଇ ଚଳିଲେ ତକ୍ଷଣି ।
ସାଗର ସମାନ ଥାଟ ମାଡ଼ିଣ ଚଳିଲେ
ଶଙ୍ଖଚୂଡ଼ ଅଗ୍ରତରେ ଯାଇଣ ମିଳିଲେ ।
ଦାନବ ରାଜନ ପାଶେ ଦେଖି ଶଙ୍କରଙ୍କୁ
ପ୍ରଣାମ କରିଲେ ରଥୁଁ ଓହ୍ଲାଇ ତଳକୁ ।
ତାହାପରେ ଖଡ୍ଗ ଧନୁ କରେ ଧରି ବୀର
ଯୁଦ୍ଧ କରିବା ନିମନ୍ତେ ହେଲା ଅଗ୍ରସର ।
ତାହାଦେଖି ମହାଦେବ ପିନାକ ଧରିଣ
ସନ୍ଧାନ କଲେ ଦାନବ ରାଜାଙ୍କୁ ଲକ୍ଷିଣ ।

ଦୁହିଁଙ୍କ ମଧ୍ୟରେ ଘୋର ସମର ହୋଇଲା
ବର୍ଷ ୨ ଏକ ବର୍ଷ କାଳ ବିତି ଗଲା ।
ହାରିବା ଆଉ ଜିଣିବା ନୋହିଲା କାହାର
ନୋଧଭରେ ଦୁହେଁ କରୁଅଛନ୍ତି ସମର ।
ବୃଷଭ ଉପରେ ବସି ଶଙ୍କର ଯୁଝନ୍ତି
ଦାନବ ରାଜନ ରଥପରେ ଯୁଝୁଥାନ୍ତି ।
ଶିବଗଣଙ୍କୁ ଯେତେକ ନାଶନ୍ତି ଅସୁର
ମୃତ୍ୟୁ ସଞ୍ଜିବନୀ ମନ୍ତ୍ରେ ଜିଆନ୍ତି ଶଙ୍କର ।
ଏହିଭାବେ କେତେଦିନ ସମର ବଢ଼ିଲା
ଶଙ୍ଖଚୂଡ଼ ତେଜ ସୂର୍ଯ୍ୟ ମଳିନ ହୋଇଲା ।
ତାହା ଦେଖି ଶିବ ମନେ ଶଙ୍କା ହୋନ୍ତେ ଜାତ
ମନ ମଧ୍ୟରେ ଜାଣିଣ ଲକ୍ଷ୍ମୀଙ୍କର କାନ୍ତ ।
ବୃଦ୍ଧ ବ୍ରାହ୍ମଣ ରୂପରେ ପ୍ରବେଶି ସେଠାରେ
ଦାନବ ରାଜା ନିକଟେ ମିଳିଲେ ସତ୍ୱରେ ।
ବୋଇଲେ ହେ ମହାରାଜ ତିନିଦିନୁଁ ମୁହିଁ
ଉପବାସ ରହିଅଛି କିଛି ଭକ୍ଷି ନାହିଁ ।
ତଥାପି ସେଥିରେ ମୋର ଟିକେ ନାହିଁ ଲକ୍ଷ୍ୟ
ଆସିଛି ମାଗିବି ଏକ କଥା ତବ ପାଖ ।
ଦେବାପାଇଁ ସତ୍ୟ ଯେବେ କରିବ ରାଜନ ।
ମାଗିବାପାଇଁକି ତାହା ହେତ ମୁ ଭାଜନ ।
ଶଙ୍ଖଚୂଡ଼ ତାହା ଶୁଣି ବୋଇଲା ହେ ଦ୍ୱିଜ
ସତ୍ୟ କଲି ମାଗିବ ଯା ଦେବି ନିଶ୍ଚେ ଆଜ ।
ଏରୂପେ ବ୍ରାହ୍ମଣ ଆଗେ ସତ୍ୟ କରାଇଲେ
ତୁମ୍ଭର କବଚ ମୋତେ ଦିଅ ହେ ବୋଇଲେ
ସତ୍ୟସନ୍ଧ ମହାମତି ଶଙ୍ଖଚୂଡ଼ ବୀର
ଭାବିଲେ ଏଥର ମୃତ୍ୟୁ ହୋଇଲା ମୋହର ।
ଏତେ ଭାବି ସତ୍ୟପାଶେ ବନ୍ଧା ହୋଇକରି
କବଚକୁ ଦେଲେ ନିଜ ଅଙ୍ଗରୁ ଉତାରି ।
ତାହା ନେଇ ବହୁରୂପୀ ଦେବ ନାରାୟଣ
ଶଙ୍ଖଚୂଡ଼ ଅନ୍ତଃପୁରେ ମିଳିଲେ ତକ୍ଷଣ ।
ତୁଳସୀଦେବୀଙ୍କୁ ଘେନି କାମକ୍ରୀଡ଼ା କଲେ
ତାହାର ଗର୍ଭରେ ତହିଁ ବୀର୍ଯ୍ୟ ନିବେଶିଲେ ।
ଶିବଙ୍କ ସଙ୍ଗରେ ଏଣେ ଶଙ୍ଖଚୂଡ଼ ବୀର
ବିଶ୍ରାମ ନ କରେ କ୍ଷଣେ କରଇ ସମର ।
ଦୁହେଁ ହେଉଛନ୍ତି ନାନାଶସ୍ତ୍ର ମରାମରି
କେ ଅଧିକ ଊଣା କେହି ନ ହୁଅଇ ହାରି ।

ଏଥୁଅନ୍ତେ ମହାଦେବ ଧନୁଃଶର ଥୋଇ
ଧରିଲେ ଯେ ଶୂଳ ତାଙ୍କୁ ବିଷ୍ଣୁ ଥିଲେ ଦେଇ
ଗ୍ରୀଷ୍ମ ମଧ୍ୟାହ୍ନ ସୂର୍ଯ୍ୟପରି ତେଜ ତାର
ଦେଖିଲେ ନୟନ ବୁଜି ହେଲା ସଭୁଙ୍କର ।
ଅଗ୍ରେ ତାର ନାରାୟଣ ଅଂଶ ବିଦ୍ୟମାନ
ମଧ୍ୟଦେଶ ଅଟେ ବ୍ରହ୍ମଅଂଶେ ପରିପୂର୍ଣ୍ଣ ।
ମୂଳେ ପୁଣି ଶିବଅଂଶ ଅଟେ ବିରାଜିତ
ଧାର ହୋଇଅଛି କାଳ ଅଂଶରେ ପୂରିତ ।
କଳ୍ପାନ୍ତକାଳରେ ଯେସନେ ପ୍ରଳୟ ପାବକ
ତେମନ୍ତ ଦିଶଇ ତେଜପୁଞ୍ଜରୁ ଅଧିକ ।
ଦୁର୍ଦ୍ଧର୍ଷ ଅଟଇ ପୁଣି ଅନିବାର୍ଯ୍ୟ ବଳ
କରି ସେ ପାରଇ ଶତ୍ରୁବଳରେ କବଳ ।
ତେଜେ ସୁଦର୍ଶନଠାରୁ ନ ଦିଶଇ ଊଣା
ହେବ ଅବା କେଉଁ ଅସ୍ତ୍ର ତା ସଙ୍ଗେ ତୁଳନା ।
ଶିବ ବିଷ୍ଣୁ ଦୁହିଙ୍କର ବିନୁ ଆନ କେହି
ସେ ଶୂଳକୁ ଟେକିବାକୁ ସମର୍ଥ ନୁହଇ ।
ଅଟଇ ସହସ୍ର ହସ୍ତ ଦୈର୍ଘ୍ୟର ପ୍ରମାଣ
ବିସ୍ତୃତ ଅଟଇ ଶତହସ୍ତ ଯାଏ ପୁଣ ।
ସଜୀବ ବ୍ରହ୍ମସ୍ୱରୂପ ବୋଲି ତାକୁ ଜାଣ
କ୍ଷଣକେ ବ୍ରହ୍ମାଣ୍ଡ କରି ପାରଇ ଦହନ ।
କୋଟିସୂର୍ଯ୍ୟ ତେଜ ତାର ଅଙ୍ଗେ ବିରାଜଇ
ଚାହିଁଦେଲା କ୍ଷଣି ନେତ୍ର ଯାଏ ବୁଜି ହୋଇ ।
ଏମନ୍ତ ଶୂଳକୁ ଧରି ତ୍ରିପୁର ଅରାତି ।
ବୁଲାଇଲେ ପୁନଃପୁନଃ ଚକ୍ରାକାର କରି ।
ବୋଇଲେ ରେ ଶଙ୍ଖଚୂଡ଼ ହେଲା ତୋ ବିନାଶ
ଇଷ୍ଟକୁ ସୁମର କହ୍ନୁ ଦେବ ବିଶ୍ୱବାସ ।
ଶଙ୍ଖଚୂଡ଼ ଉପରକୁ ଫିଙ୍ଗିଲେ ଉଦ୍ଦେଶି
ଗମିଲା ସେ ଝଟକୁଲେ ଆକାଶକୁ ଗ୍ରାସି ।
ତାକୁ ଦେଖି ଶଙ୍ଖଚୂଡ଼ ଧନୁଃଶର ତେଜି
ଶ୍ରୀକୃଷ୍ଣଙ୍କ ଚରଣକୁ ମାନସରେ ଭଜି ।
ଯୋଗ ଆସନରେ ବସି ଧ୍ୟାନମଗ୍ନ ହେଲେ
ନାସା ଅଗ୍ରେ ଦୃଷ୍ଟି ଦେଇ ନିଶ୍ଚଳେ ବସିଲେ ।
ବଜ୍ରପରି ଆକାଶରୁ ଖସି ଅସ୍ତ୍ରବର
ପଡ଼ିଲା ଦାନବରାଜା ମସ୍ତକ ଉପର ।
ତତ୍କାଳକୁ ଅନଳ ପ୍ରାୟ ପୋଡ଼ି ପକାଇଲା
ସାରଥି ଅଶ୍ୱ ସହିତେ ପଦା କରିଦେଲା ।

ସେହିକ୍ଷଣି ଶଙ୍ଖଚୂଡ଼ ଦାନବ ଶ୍ରେଷ୍ଠ
ତ୍ୟାଗକରି ଦିବ୍ୟରୂପ ଧଇଲେ ମଲ୍ଲର ।
ଆସିଲା ଦିବ୍ୟଯାନ ଗୋଲୋକରୁ ଖସି
ଶରଦ ଚନ୍ଦ୍ରମା ପ୍ରାୟେ ନୟନକୁ ଦିଶି ।
ସେ ଯାନ ମଧ୍ୟରେ ପ୍ରଭୁ ଜଗତପାବନ
ଦ୍ୱିଭୁଜ ମୁରଲୀହସ୍ତ ରତ୍ନ ବିଭୂଷଣ ।
କିଶୋର ବୟସ ଗୋପକୁମାର ସ୍ୱରୂପ
ବେଢ଼ି ରହିଛନ୍ତି ପାଶେ ନାନା ଗୋପୀଗୋପ
ଏମନ୍ତ ଯାନକୁ ଶଙ୍ଖଚୂଡ଼ ଦେଖିକରି
ପ୍ରଣାମ କଲେ ପ୍ରଭୁଙ୍କ ଚରଣପାଦ ଧରି ।
ସେ ଯାନରେ ଯାଇ ତାହା ମଧ୍ୟରେ ବସିଲେ ।
ହରଷିତ ମନେ ଶୂନ୍ୟମାର୍ଗେ ଚଳିଲେ ।
ରାଧା ମାଧବଙ୍କୁ ଏକ ଆସନରେ ଦେଖି
ଦଣ୍ଡବତ ହେଲେ ପୁଣି ହୋଇ ଅଶ୍ରୁମୁଖୀ ।
ରାଧାକୃଷ୍ଣ ଦୁହେଁ ତାଙ୍କୁ ଦେଖି ସେ ସମୟେ
ପ୍ରସନ୍ନ ଦୃଷ୍ଟିରେ କ୍ଷଣେ ଅନାଇ ରହିଲେ ।
କୋଳେ ବସାଇଲେ ତହୁଁ ସ୍ନେହଭରେ ନେଇ
ମଙ୍ଗଳ କୁଶଳ ବାର୍ତ୍ତା ପୁଚ୍ଛିଲେ ତୁହାଇ ।
ଦାନବକୁ ଭସ୍ମକରି ଶୂଳ ଚଳିଗଲା
ମହାଦେବଙ୍କ ହସ୍ତରେ ପ୍ରବେଶ ହୋଇଲା ।
ଶୂଳପାଣି ବୋଲାଇଲେ ସେ ଶୂଳରେ ହର
ଶୁଣ ହେ ନାରଦ ମୁନିଗଣଙ୍କର ବର ।
ଶଙ୍ଖଚୂଡ଼ ରାଜାଙ୍କର ଅସ୍ଥି ଥିଲା ଯେତେ
ଶୂଳକୁ ପଠାଇ ଶିବ ଅଣାଇ ତୁରିତେ ।
ଲବଣ ସମୁଦ୍ର ଜଳେ ପକାଇବା ପାଇଁ
ଅନୁଜ୍ଞା ଦିଅନ୍ତେ ଶୂଳ ପକାଇଲେ ନେଇ ।
ସେହି ଅସ୍ଥି ଶଙ୍ଖ ଜାତି ରୂପେ ଜନମିଲା
ଦେବଙ୍କ ପୂଜାରେ ଶୁଦ୍ଧପୂତ ସେ ହୋଇଲା ।

ଶଙ୍ଖଜଳେ ଦେବତାଙ୍କୁ କଲେ ଅର୍ଚ୍ଚନା
ତୁଷ୍ଟ ହୁଅନ୍ତି ମହାଦେବଙ୍କର ବିନା ।
ଯେଉଁଠାରେ ଶଙ୍ଖଶବ୍ଦ ହେଉଥାଏ ନିତ୍ୟେ
ଅଲକ୍ଷ୍ମୀ ସେଠାରେ ରହି ନ ପାରେ କଷ୍ଟରେ ।
ଶଙ୍ଖନାଦ ଶୁଣାଗଲେ ଦୂରେ ଅବା ବନେ
ଶଙ୍ଖଚୂଡ଼ କଥା ପଡ଼ଇ ସର୍ବ ମନେ ।
ଗଙ୍ଗାଜଳେ ସ୍ନାନ କଲେ ସକଳ ତୀର୍ଥରେ
ସ୍ନାନକଲା ଫଳ ଲଭ ହୁଏ ନିଶ୍ଚୟରେ ।
ଯେଉଁଠାରେ ଶଙ୍ଖ ଥାଏ ସେହିଠାରେ ହରି
ବାସ କରନ୍ତି ଜାଣ ଆହେ ତପସ୍ୱୀ ।
ଏ ବାହାରେ ମହାଲକ୍ଷ୍ମୀ ଆନନ୍ଦରେ ରହି
ରହନ୍ତି ଏଥିରେ କିଛି ସନ୍ଦେହ ଯେ ନାହିଁ ।
ସ୍ତ୍ରୀଙ୍କର ମୁଖରେ ଅଥବା ଶୂଦ୍ରଙ୍କ ମୁଖରେ
ଶଙ୍ଖଧ୍ୱନି ହେଉଥାଏ ଯେଉଁ ଘରେ ।
ସେଠାରେ ମହାଲକ୍ଷ୍ମୀ ରହି ନ ପାରନ୍ତି
ରୁଷ୍ଟ ହୋଇ ଶୀଘ୍ର ଅନ୍ୟସ୍ଥାନକୁ ଯାନ୍ତି ।
ଦାନବକୁ ବଧ କରି ବୃଷଭ ବାହନ
ସୈନ୍ୟସେନ କଲେ ଶିବଲୋକକୁ ଗମନ ।
ଦେବତାଏ ଆପଣାର ରାଜ୍ୟଧନ ପାଇ
ନିଜ ନିଜ ସ୍ଥାନେ ଗଲେ ହରଷିତ ହୋଇ ।
ଦୁନ୍ଦୁଭି ବଜାଇ ସ୍ୱର୍ଗେ ଅପ୍ସରା ଗନ୍ଧର୍ବେ
ନୃତ୍ୟଗୀତ ଆରମ୍ଭିଲେ ଆନନ୍ଦରେ ସର୍ବେ ।
ଶିବଙ୍କ ମସ୍ତକ ପରେ ପୁଷ୍ପ ବରଷିଲେ
ଧନ୍ୟ ଧନ୍ୟ ବୋଲି ପୁଣି ପ୍ରଶଂସା କଲେ ।
ବୋଲେ କ୍ଷେତ୍ରବାସୀ ଦୀନ ଆହେ ସଦାଶିବ
ତୁମ୍ଭ ପାଦପଦ୍ମ ତଳେ ଦିଅ ମୋତେ ଠାବ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଶଙ୍ଖଚୂଡ଼ର ମହାଦେବଙ୍କ ହସ୍ତରେ ବିନାଶେ ନାମ ଏକାଦଶୋଽଧ୍ୟାୟଃ ।

—*—

## ଦ୍ୱାଦଶ ଅଧ୍ୟାୟ
## ତୁଳସୀଙ୍କର ମାହାତ୍ମ୍ୟ ବର୍ଣ୍ଣନ

ନାରଦ ବୋଇଲେ ପ୍ରଭୁ କୁହ ମୋତେ ପୁଣି
କିରୂପେ ତୁଳସୀଠାରେ ଲକ୍ଷ୍ମୀଙ୍କର ସନ୍ଧି ।
ସର୍ବଦାନ କଲେ ତାହା କହ ଭଲକରି
ଶୁଣିବା ପାଇଁକି ଶ୍ରଦ୍ଧା ହେଉଛି ମୋ ହରି ।

ତାହା ଶୁଣି ନାରାୟଣ ବୋଇଲେ ସେ କଥା
କହୁଅଛୁ ଶୁଣ ମନଦେଇ ହରକଥା ।
ଦେବଙ୍କ କାର୍ଯ୍ୟରେ ପ୍ରଭୁ ଲକ୍ଷ୍ମୀଦେବୀ ପତି
ଶଙ୍ଖଚୂଡ଼ କବଚକୁ ନେଇଣ ତ୍ୱରିତ ।
ତୁଳସୀ ମନ୍ଦିରେ ଯାଇ ଛଦ୍ମବେଶ ହେଲେ
ମାୟାବଳେ ତାର ମନ ମୁଗ୍ଧ କରାଇଲେ ।
ଆପଣା ରୂପକୁ ଶଙ୍ଖଚୂଡ଼ ରୂପ ପରି
କଲେ ପୁଣି ସେ କାଳରେ ପ୍ରଭୁ ଦଇତ୍ୟାରି ।
ଦୁନ୍ଦୁଭି ବଜାଇ ଜୟ ଶବଦ ଶୁଣାଇ
ତୁଳସୀ ସତୀର ଚିତ୍ତ ଭୁଲାଇଲେ ତହିଁ ।
ସେ ଶବଦ ଶୁଣି ସତୀ ଆନନ୍ଦ ମନରେ
ଅନାଇଲା ଧୀରେ ଯାଇ ଗବାକ୍ଷ ମାର୍ଗରେ ।
ଦେଖିଲା ଆପଣା ସ୍ୱାମୀ ଯୁଦ୍ଧେ ଜୟ କରି
ଦୁନ୍ଦୁଭି ବଜାଇ ପୁରେ ଆସୁଛନ୍ତି ଫେରି ।
ସେ ସକାଶୁ ହରଷରେ ବ୍ରାହ୍ମଣଙ୍କୁ ଧନ
ରତ୍ନ ବସ୍ତ୍ରଆଦି କେତେ କଲା ବେଗେ ଦାନ ।
ଭିକ୍ଷୁକ ଯାଚକ ବନ୍ଦୀମାନଙ୍କୁ ଡକାଇ
ବହୁତ ଧନ ତାହାଙ୍କୁ ଦେଲା ତୋଷ ବହି ।
ରଥରୁ ଓହ୍ଲାଇ ମାୟା ରୂପୀ ନାରାୟଣ
ତୁଳସୀର ସମୀପରେ କଲେ ପଦାର୍ପଣ ।
ଦେଖିଲେ ମନ୍ଦିର ତାର ସୁବର୍ଣ୍ଣ ଭୂଷିତ
ସ୍ୱର୍ଗପୁର ତା ଆଗରେ ହୋଇବ ଲଜ୍ଜିତ ।
କାନ୍ତ ଆସିବାର ଦେଖି ସୁନ୍ଦରୀଙ୍କ ବର
ସୁବର୍ଣ୍ଣ ପାତ୍ରରେ ବେଗେ ଅଣାଇଲେ ନୀର ।
ପତିଙ୍କର ଦେନପାଦ ଧୋଇଣ ହରଷରେ
ପ୍ରଣାମ କଲେ ଲୋତକ ରଖି ନୟନରେ ।
ରତ୍ନସିଂହାସନ ପରେ ବସାଇଲେ ନେଇ
କର୍ପୂର ମିଶା ତାମ୍ବୁଳ ଦେଇଣ ଭୁଞ୍ଜାଇ ।
ବୋଇଲା ହେ ନାଥ ଆଜ ଜନମ ମୋହର
ସଫଳ ହୋଇଲା ଦରଶନରେ ତୁମ୍ଭର ।
ଯୁଦ୍ଧେ ଜୟକରି ଯାହା ଆସିଲ ଘରକୁ
ଏଥୁ ବଳି ଭାଗ୍ୟ ଆଜ ନାହିଁ ଦେଖିବାକୁ ।
ଏମନ୍ତ ବୋଲିଣ କାମେ ଜରଜର ହୋଇ
ମନ୍ଦହାସ ବହି ମୁଖେ କଟାକ୍ଷରେ ଚାହିଁ ।
ପୁଲକ ପୂରିତ ଅଙ୍ଗେ ସମୀପରେ ବସି
ସାଦରେ ପୁଚ୍ଛିଲା ଯୁଦ୍ଧକଥା ହସି ହସି ।
ବୋଇଲ ସକଳ ସୃଷ୍ଟି ସଂହାର କରତା
ଅଟନ୍ତି ସେ ଶିବ ଜଗତର ପିତାମାତା ।
ତାଙ୍କ ସଙ୍ଗେ ଯୁଦ୍ଧ କରି କରୂପେ ତୁମ୍ଭର
ଜୟଲାଭ ହେଲା ତାହା କହ ମୋ ଆଗର ।
ତୁଳସୀ ବଚନ ଶୁଣି ହସି ଲକ୍ଷ୍ମୀକାନ୍ତ
କହିଲେ ତାଙ୍କର ଆଗେ ଅଳୀକ ବୃତ୍ତାନ୍ତ ।
ବୋଇଲେ ଗୋ ପ୍ରାଣପ୍ରିୟେ ଶୁଣ ମନଦେଇ
ଯେରୂପ ସମରେ ଜୟଲାଭ କଲି ମୁହିଁ ।
ଶିବଙ୍କ ସଙ୍ଗରେ ମୋର ଏକବର୍ଷ ଯାଏ
ସମର ହେଲା କାହାକୁ ନ ଜିଣିଲୁ କେ ଏ ।
ମୋହର ସକଳ ସୈନ୍ୟ ବିନାଶ ହୋଇଲେ
ସେହିପରି କେତେ ରୁଦ୍ରଗଣ ନାଶଗଲେ ।
ତାହା ଜାଣି ପ୍ରଜାପତି ଆସି ସେହିଠାକୁ
ନାନା ପରକାରେ କଥା କହିଣ ଆମ୍ଭଙ୍କୁ ।
ଦୁହିଙ୍କ ମଧ୍ୟରେ ପ୍ରୀତି ଜାତ କରାଇଲେ
ଦେବତାଏ ରାଜ୍ୟ ଧନ ଫେରାଇଣ ଦେଲେ ।
ଏହିରୂପେ ସମାଧାନ ହୋଇ ମୁଁ ପୁରକୁ
ଆସିଲି ଶଙ୍କର ଗଲେ ନିଜ ଭବନକୁ ।
ଏହିରୂପେ କହି ତାକୁ କୋଳରେ ବସାଇ
ନାନାବିଧ କାମକ୍ରୀଡ଼ା କଲେ ତୋଷ ବହି ।
ତୁଳସୀ ତ ପତିବ୍ରତା ପ୍ରିୟଙ୍କ ମଣ୍ଡନା
ସମ୍ଭୋଗକାଳରେ ନିଜେ କରିଣ ତର୍କଣା ।
ଜାଣିଲା ନୁହନ୍ତି ସେହି ଆପଣାର କାନ୍ତ
କପଟେ ଅନ୍ୟ ପୁରୁଷ ହୋଇଛି ଆଗତ ।
ଏମନ୍ତ ବିଚାରି ତାକୁ ବୋଇଲା କିଏ ସେ
ଅଟ ତୁମ୍ଭେ କପଟରେ ଆସିଛ ମୋ ପାଶେ ।
ମାୟାରେ ମୋହର ଅଙ୍ଗସଙ୍ଗ ଭୋଗ କଲ
ସତୀଧର୍ମ ନଷ୍ଟ କରି କି ଯଶ ଅର୍ଜିଲ ।
ଯଥାର୍ଥ କହିଲେ ଯିବ ଏଠାରୁ ଉବୁରି
ନୋହିଲେ ଶାପ ଅନଳେ ଦେବ ଭସ୍ମ କରି ।
ତୁଳସୀ ବଚନ ଶୁଣି ଶାପଭୟେ ଡରି
ସ୍ୱରୂପ ଧଇଲେ ମାୟାଦେହ ଛାଡ଼ି କରି ।
ଅତ୍ୟନ୍ତ ସୁନ୍ଦର ମୂର୍ତ୍ତି ପ୍ରସନ୍ନ ବଦନ
ଉଭାହୋଇ ତୁଳସୀର ଆଗେ ସେହିକ୍ଷଣ ।
ନବୀନ ନୀରଦ ପରି ଶ୍ୟାମଳ ବରନ
ଶରତ ପଙ୍କଜ ପତ୍ର ସମାନ ଲୋଚନ ।

କୋଟି କନ୍ଦର୍ପଙ୍କୁ ଜିଣି ହରେ ଅଙ୍ଗ ଶୋଭା
ଝଲସି ପଡ଼ଇ ରତ୍ନ ଆଭରଣ ପ୍ରଭା ।
ପୀତ ବସନରେ ଶୋଭା ପାଏ କଟିଦେଶ
ସୁରଙ୍ଗ ଅଧରେ ବିରାଜଇ ମନ୍ଦହାସ ।
ଏମନ୍ତ ରୂପକୁ ଦେଖି ତୁଳସୀ ସୁନ୍ଦରୀ
ମୂର୍ଚ୍ଛାକୁ ପାଇଲା କାମବାଣେ ହୋଇ ଭାରି ।
ଚେତାପାଇ ପୁଣି ତାଙ୍କ ମୁଖକୁ ଅନାଇ
ବୋଇଲା ହେ ଦେବ ତୁମ୍ଭେ ଜଗତ ଗୋସାଇଁ
ପାଷାଣୁ କଠିନ ଅଟେ ତୁମ୍ଭର ହୃଦୟ
ତୁମ୍ଭ ମାୟାବଳେ ମଲେ ମୋର ପ୍ରାଣପ୍ରିୟ ।
ଦୟା ବୋଲିବାର କଥା ନାହିଁ ତୁମ୍ଭଠାରେ
ଧର୍ମ ଭଙ୍ଗ କଲ ମୋର କପଟ ବେଶରେ ।
ପାଷାଣ ସଦୃଶ ତୁମ୍ଭେ ଅଟ ଆହେ ହରି
ପାଷାଣ ହୁଅ ମୋହର ଶାପ ପାଇକରି ।
ଦୟାସିନ୍ଧୁ ବୋଲି ଯେବା ବୋଲନ୍ତି ତୁମ୍ଭଙ୍କୁ
ବାତୁଳ ବୋଲି ମୁଁ ଭାବୁଅଛୁ ସେମାନଙ୍କୁ ।
ବିନାଦୋଷେ ଆପଣାର ଭକ୍ତକୁ କପଟରି
ବିନାଶିଲ ପରଙ୍କର କଥା ଶୁଣିକରି
ସକଳ ଆତ୍ମାରେ ତୁମ୍ଭେ ଥାଇ ହୃଦକଥା
ଜାଣୁ ଜାଣୁ କିପାଁ ନ ଜାଣିଲ ପର ବ୍ୟଥା ।
ଏ ସକାଶୁଁ ଏକଜନ୍ମେ ଆପଣାକୁ ତୁମ୍ଭେ
ପାସୋରିବ ନୋହେ ଶାପ ଦେଉଅଛୁ ଆମ୍ଭେ ।
ଏହିରୂପେ କହି ସତୀ ହରିଙ୍କ ପାଦରେ
ପଡ଼ିଣ ରୋଦନ କଲା ଉଚ୍ଚସ୍ୱରେ ।
ତା ଦେଖି କରୁଣାମୟ ଶ୍ରୀହରି ସେ କାଳେ
ଦୟାବନ୍ତ ମିଷ୍ଟବାକ୍ୟେ ତାକୁ ବୋଧକଲେ ।
ବୋଇଲେ ଶୋଚନା ଆଉ ନ କର ଗୋ ସତୀ
ମୁଁ ଯାହା କହୁଛି ଏବେ ଶୁଣ ଦେଇ ମତି ।
ମୋତେ ପାଇବାକୁ ତୁମ୍ଭେ ପିତୃ ଆଳୟରେ
ତପ କରୁଥିଲ ବସି ପୁଣ୍ୟନଦୀ ତୀରେ ।
ତୁମ୍ଭଙ୍କୁ ପାଇବା ପାଇଁ ଶଙ୍ଖଚୂଡ଼ ବୀର
ବହୁତ ତପସ୍ୟା କଲା ଆଗୋ ରମାକର ।
ସେ ଫଳରେ ପତ୍ନୀରୂପେ ପାଇ ତୁମ୍ଭ ସଙ୍ଗେ
ମହା ଆନନ୍ଦରେ କ୍ରୀଡ଼ା କଲା ନାନାରଙ୍ଗେ ।
ଏବେ ତୁମ୍ଭ ତପଫଳ ଦେବାର ସମୟ
ହୋଇଅଛି ଏଥିରେ ଯେ ନ କର ସଂଶୟ ।

ମର୍ତ୍ତ୍ୟଶରୀରକୁ ତ୍ୟାଗି ତୁମ୍ଭେ ଗୋ ସୁନ୍ଦରୀ
ମୋ ସଙ୍ଗେ ବିହାର କର ଦିବ୍ୟଦେହ ଧରି ।
ତୁମ୍ଭର ଏ ଦେହ ନଦୀସ୍ୱରୂପ ହୋଇବ
ଜଗତେ ଗଣ୍ଡକୀ ବୋଲି ନାମକୁ ବହିବ ।
ଭାରତବର୍ଷରେ ପୁଣ୍ୟତୀର୍ଥ ହେବ ସେହି
ପବିତ୍ର ହୋଇବେ ଲୋକେ ସ୍ନାନ କରି ତହିଁ ।
ଆଉ ତୁମ୍ଭ କେଶପାଶ ହେବ ପୁଣ୍ୟବୃକ୍ଷ
ତାକୁ ସେବାକରି ଜନେ ଅରଜିବେ ମୋକ୍ଷ ।
ତୁମ୍ଭ ନାମ ଅନୁସାରେ ନାମଟି ତାହାର
ତୁଳସୀ ବୃକ୍ଷ ବୋଲାଇ ହେବ ମନୋହର ।
ସେ ବୃକ୍ଷର ପତ୍ର ପୁଷ୍ପେ ତିନି ଜଗତରେ
ପ୍ରସିଦ୍ଧ ହୋଇବେ ଦେବ ଦେବୀଙ୍କ ପୂଜାରେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ବଇକୁଣ୍ଠ ପୁରେ ।
ଆଉରି ମୁଁ ବାସ କରିଥିବ ଯେଉଁଠାରେ ।
ସେଠାରେ ତୁଳସୀ ବୃକ୍ଷ ମୋ ସମୀପେ ଥିବ
ପତ୍ର ପୁଷ୍ପ ଦେଇ ମୋର ମନ ତୋଷୁଥିବ ।
ଗୋଲୋକେ ବିରଜା ତୀରେ ରାସକ୍ରୀଡ଼ା ସ୍ଥଳେ
ବୃନ୍ଦାବନେ ଅବା ସ୍ୱର୍ଗଲୋକ ମହୀତଳେ ।
ଭଣ୍ଡୀର ଚମ୍ପକ ବନେ ଚନ୍ଦନ କାନନେ
ଆଉରି ମାଧବୀ କୁନ୍ଦ ମଲ୍ଲୀ ଉପବନେ ।
ପୁଣ୍ୟ ତୀର୍ଥ ନଦନଦୀ ତୀର ପ୍ରଦେଶରେ
ତୁଳସୀ ପାଦପ ଜାତ ହେଉ ସବୁଠାରେ ।
ପୁଣ୍ୟଦେଶ ପୁଣ୍ୟପ୍ରଦ ତୁଳସୀର ମୂଳ
ଜାଣିବ ଅଟଇ ସେହି ସର୍ବତୀର୍ଥ ସ୍ଥଳ ।
ସେଠାରେ ସକଳ ଦେବଙ୍କର ବାସସ୍ଥାନ
ହୋଇବ ନିଶ୍ଚୟ ବୋଲି ମାନସରେ ଘେନ ।
ଏ ବାହାରେ ମୋର କ୍ରୀଡ଼ାସ୍ଥାନ ଅଟେ ସେହି
ତୁଳସୀ ପାଦପ ଜାତ ହୋଇଥିବ ଯହିଁ ।
ସେ ବୃକ୍ଷରୁ ଝଡ଼ି ପଡ଼ୁଥିବ ଯେତେ ପତ୍ର
ତାହା ପାଇ ପୁଲକିତ ହେବ ମୋର ଗାତ୍ର ।
ମିଶାଇ ତୁଳସୀ ପତ୍ର ଉତ୍ତମ ଜଳରେ
ବିଷ୍ଣୁ ମନ୍ତ୍ର ପଢ଼ି ସ୍ନାନ କରଇ ଯେ ବାରେ ।
ସକଳ ତୀର୍ଥରେ ସ୍ନାନଫଳ ତାର ହୁଏ
ସକଳ ଯାଗଫଳକୁ ଲଭେ ସେ ନିଶ୍ଚୟେ ।
ସହସ୍ର ଅମୃତଘଟ ଢାଳିଦେଲେ ନେଇ
ଯେ ରୂପେ ତୋଷ ହୁଅନ୍ତି ପ୍ରଭୁ ରମାସାଇଁ ।

ଗୋଟିଏ ତୁଳସୀପତ୍ର ଦେଲେ ସ୍ନେହରେ
ସନ୍ତୋଷ ହୋଇବେ କୃଷ୍ଣ ଜାଣ ଗୋ ସୁନ୍ଦରୀ
ପୁଣ୍ୟକ୍ଷେତ୍ରେ ଦଶଧେନୁ ଗାଈ ଦାନ କଲେ
ଯେଉଁ ପୁଣ୍ୟଫଳ ଜନେ ପାଇଥାନ୍ତି ଭଲେ ।
ତୁଳସୀପତ୍ର ଦାନରେ ସେତିକି ଫଳ ହୁଏ
ଅଧିକ ଊଣା ତହିଁରେ କିଛି ଯେ ନ ଥାଏ ।
ଯେ ଲୋକ ତୁଳସୀପତ୍ର ଜଳ ମୃତ୍ୟୁକାଳେ
ଲଭଇ ସକଳପାପୁ ତରଇ ସେ ହେଳେ ।
ବିଷ୍ଣୁଙ୍କ ଲୋକରେ ଯାଇଁ ବସେ ମହାସୁଖେ
ନ ପଡ଼ଇ ଆଉ ଯମଦଣ୍ଡ ଘୋର ଦୁଃଖେ ।
ନିତ୍ୟ ଯେ ତୁଳସୀ ଦଳ ମିଶାଇଣ ଜଳ
ପାନକଲେ ତାର ହୃଦ ହୁଅଇ ନିର୍ମଳ ।
ମୋହଠାରେ ଭକ୍ତିକରି ଯେବଣ ମାନବ
ତୁଳସୀ ପତ୍ରରେ ନିତ୍ୟ ପୂଜା କରୁଥିବ ।
ଲକ୍ଷେ ଅଶ୍ୱମେଧ ଯାଗ ଫଳ ହେବ ତାର
କହନ୍ତି ତୁଳସୀ ଆଗେ ପ୍ରଭୁ ଦାମୋଦର ।
ଦେହରେ ତୁଳସୀ ଦଳ ଲଗାଇ ହସ୍ତରେ
ଧାରଣକରି ଯେ ପୁଣ୍ୟ ତୀର୍ଥସ୍ଥାନେ ମରେ ।
ବଇକୁଣ୍ଠ ଭୁବନରେ ବସଇ ସେ ଯାଇ
ପ୍ରତିଦିନ ବିଷ୍ଣୁଙ୍କର ଦରଶନ ପାଇ ।
ତୁଳସୀକାଷ୍ଠ ନିର୍ମିତ ମାଳା କଣ୍ଠଦେଶେ
ଯେ ଜନ ଧାରଣ କରେ ଅତ୍ୟନ୍ତ ହରଷେ ।
ପଦେ ପଦେ ଅଶ୍ୱମେଧ ଯାଗଫଳ ପାଇ
ଅନ୍ତଃକାଳେ ବିଷ୍ଣୁଙ୍କର ପୁରେ ବସେ ଯାଇ ।
ହସ୍ତେ ଯେ ତୁଳସୀ ଧରି ଶପଥ କରିବ
କାଳାନ୍ତରେ ପୁଣି ତାହା ରକ୍ଷା ନ କରିବ ।
ନରକ ମଧ୍ୟରେ ଯାଇଁ ଜରଇ ସେ ଘର
ଯେତେକାଳଯାଏ ଥାନ୍ତି ଚନ୍ଦ୍ର ଦିବାକର
ତୁଳସୀକୁ ଧରି ଯେବା ମିଛକଥା କହେ
ଯୁଗେ ଯୁଗେ କୁମ୍ଭୀପାକେ ବାସକରି ରହେ ।
ମରଣ କାଳରେ ଯାର ତୁଳସୀ ମିଶ୍ରିତ
ଜଳ କଣିକାଏ ମୁଖେ ହୁଅଇ ପତିତ ।
ଦେହ ଅନ୍ତେ ରତ୍ନଯାନ ଆରୋହଣ କରି
ବୈକୁଣ୍ଠପୁରକୁ ଯେହୁ ଯାଏ ଗୋ ସୁନ୍ଦରୀ ।
ଦ୍ୱାଦଶ ପୂର୍ଣ୍ଣିମା ପୁଣି ଅମାବାସ୍ୟା ଦିନେ
ଏ ବାହାରେ ପର୍ବତିଥି ରବି ସଂକ୍ରମଣେ ।

ମଧ୍ୟାହ୍ନରେ ଅସ୍ତକାଳେ ସନ୍ଧ୍ୟା ସମୟରେ
ଅଶୌଚେ ରାତି ବସନ ବହିଣ ଅଙ୍ଗରେ ।
ତୈଳଯୋଗ ସ୍ନାନ କରି ଦିବା ସମୟରେ ।
ତୁଳସୀ ଦଳ ଖଣ୍ଡନ କରନ୍ତି ଯେ ନରେ ।
ସେମାନେ ହରିଙ୍କ ଦେହେ ନଖକ୍ଷତ ଦେଇ
ଅପରାଧ କରିଥାନ୍ତି ଜାଣ ଗୋ ସୁମୁହିଁ ।
ତୁଳସୀ ଦଳକୁ ତୋଳି ପାତ୍ରସ୍ଥିତ ଯାଏ
ରଖିଲେ ତହିଁରେ କିଛି ଦୋଷ ଯେ ନ ଥାଏ ।
ଶ୍ରାଦ୍ଧ ବ୍ରତ ଦାନରେ ବା ପ୍ରତିଷ୍ଠା କର୍ମରେ
ଏ ବାହାରେ ଦେବତାଙ୍କ ଅର୍ଚ୍ଚନା କାର୍ଯ୍ୟରେ
ସେ ତୁଳସୀ ଉପଯୋଗ କଲେ ଦୋଷ ନାହିଁ
ମନଦେଇ ଶୁଣ ଆଗୋ ସ୍ଥିରୁ ଚନ୍ଦ୍ରମୁହିଁ ।
ଜଳରେ ଭୂମିରେ ଅବା ବିଷ୍ଣୁଙ୍କ ଦେହରେ
ଥିବ ଯେ ତୁଳସୀ ତାହା ଆଣି ଆଉ ଥରେ ।
ଧଉତ କରିଣ ଅନ୍ୟ କାର୍ଯ୍ୟେ ଲଗାଇବ
ତହିଁରେ ଯେ କିଛିହେଲେ ଦୋଷ ନ ହୋଇବ
ତୁଳସୀ ବୃକ୍ଷର ଅଧିଷ୍ଠାତ୍ରୀ ଯେଉଁ ଦେବୀ
ଗୋଲୋକରେ କୃଷ୍ଣଙ୍କର ପାଦ ପଦ୍ମ ସେବି ।
ତାହାଙ୍କ ସଙ୍ଗରେ କ୍ରୀଡ଼ାକରି ଅବିରତେ
ଦିନ ନେଉଥିଲେ ନିତ୍ୟେ ହରଷିତ ଚିତ୍ତେ ।
ନଦୀ ଅଧିଷ୍ଠାତ୍ରୀ ଦେବୀ ଭାରତବର୍ଷରେ
ବାସ କରିବେ ଲବଣ ସାଗର ପାଶରେ ।
ମୋହର ଅଂଶରେ ଜାତ ଅଟେ ସେ ସାଗର
ପତ୍ନୀ ହୋଇକରି ମନ ମୋହିବେ ତାହାର ।
ବୈକୁଣ୍ଠ ପୁରକୁ ତୁମ୍ଭେ ଯାଇ ମୋର ସଙ୍ଗେ
ବିହାର କରିବ ମହାସୁଖେ ନାନାରଙ୍ଗେ ।
ଲକ୍ଷ୍ମୀ ସରସ୍ୱତୀଙ୍କର ସମ ନ ହୋଇବ
ଏଥିରେ ସଂଶୟ ମନେ ନ କର ଗୋ ଲବ ।
ମୁଁ ମଧ୍ୟ ଭାରତବର୍ଷେ ଗଣ୍ଡକୀ ତଟରେ
ରହିବ ତୁମ୍ଭର ପାଶେ ଶଇଳ ରୂପରେ ।
ସେ ଶୈଳ ଗହ୍ୱରରେ ଥାଇ ବଜ୍ରକୀଟଗଣ
ଶିଳା କାଟି ମୋର ଚକ୍ର କରିବେ ନିର୍ମାଣ ।
ଏକଦ୍ୱାରେ ଚାରିଗୋଟି ଚକ୍ର ହୋଇଥିବ
ସେ ମଧ୍ୟରେ ବନମାଳା ଚିହ୍ନ ଦେଖାଯିବ ।
ନୂତନ ନୀରଦ ପ୍ରାୟେ ଶ୍ୟାମଳ ବରନ
ଏମନ୍ତ ଚକ୍ରର ନାମ ଲକ୍ଷ୍ମୀ ନାରାୟଣ ।

ଏକଦ୍ୱାରେ ସ୍ୱର୍ଣଚକ୍ର ବରନ ଶ୍ୟାମଳ
ନ ଥିବ ମାଝକ ଚର୍ହିଁ ପରେ ବନମାଳ ।
ଲକ୍ଷ୍ମୀ ଜନାର୍ଦ୍ଦନ ବୋଲି ତାହାକୁ ଜାଣିବ
ଦୁଇଦ୍ୱାରେ ସ୍ୱର୍ଣଗୋଟି ଚକ୍ର ଯହିଁ ଥିବ ।
ଦେଖା ଯାଉଥିବ ପୁଣି ଗୋସ୍ପଦର ଚିହ୍ନ
ହୋଇଥିବ ମଧ୍ୟ ବନମାଳାର ବର୍ଜ୍ଜନ ।
ରଘୁନାଥ ବୋଲି ନାମ ଅଟଇ ତାହାର
ଅତି କ୍ଷୁଦ୍ର ଦୁଇ ଚକ୍ର ଚିହ୍ନଟି ଯାହାର ।
ଶ୍ୟାମଳ ବରନ ନାମେ ସେ ଦଧିବାମନ
ତାଙ୍କୁ ପୂଜାକଲେ ଲୋକ ହୁଏ ଧନବାନ ।
ସ୍ଥୂଳ ବର୍ତ୍ତୁଳାକାର ବନମାଳା ଶୂନ୍ୟ
ସ୍ପଷ୍ଟ ହୋଇଥିବ ଯହିଁ ଦୁଇ ଚକ୍ର ଚିହ୍ନ ।
ଦାମୋଦର ନାମ ତାର ଆଗୋ ସ୍ୱରୁକେଶି
ତାକୁ ପୂଜାକଲେ ନାଶହୁଏ ପାପରାଶି ।
ମଧ୍ୟରେ ବର୍ତ୍ତୁଳାକାର ଦୁଇଚକ୍ରଯୁତ
ବିଗ୍ରହଟି ହୋଇଥାଏ ବାଣରେ କ୍ଷତ ।
ଆବର ଦିଶଇ ଚର୍ହିଁ ଶର ତୂଣ ଚିହ୍ନ
ରଣରାମ ବୋଲିକରି ଅଟେ ତାଙ୍କ ନାମ ।
ମଧ୍ୟରେ ସପ୍ତଚକ୍ର ଛତ୍ର ତୂଣ ଥାଇ
ଯେବଣ ମୂରତି ଦେହେ ବିରାଜିତ ହୋଇ ।
ରାଜ ରାଜେଶ୍ୱର ବୋଲି ଜାଣିବ ତାହାକୁ
ଦେଇ ସେ ପାରଇ ରାଜ୍ୟଧନ ସମ୍ପଦକୁ ।
ଚତୁର୍ଦ୍ଦଶ ଚକ୍ରଯୁକ୍ତ ସ୍ଥୂଳ ଯେ ଅଟଇ
ନବୀନ ନୀରଦ ପରି ତେଜ ପ୍ରକାଶଇ ।
ଅନନ୍ତ ବୋଲିଣ ଅଟେ ତାର ନାମଧେୟ
ଚତୁର୍ବର୍ଗ ଫଳକୁ ସେ ଦିଅଇ ନିଶ୍ଚୟ ।
ଜଳଦ ବରନ ଚକ୍ର ଆକାର ଅଟଇ
ଏ ବାହାରେ ଦୁଇଚକ୍ର ଚିହ୍ନ ବିରାଜଇ ।
ମଧ୍ୟରେ ଗୋସ୍ପଦ ଦୃଶ୍ୟ ହୁଅଇ ଯାହାର
ମଧୁସୂଦନ ନାମଟି ଅଟଇ ତାହାର ।
ସୁଦର୍ଶନ ବୋଲାଏ ସେ ଏକଚକ୍ର ଯାର
ଅସ୍ପଷ୍ଟ ଚକ୍ରର ନାମ ଅଟେ ଗଦାଧର ।
ଦୁଇଚକ୍ର ଥାଇ ଯେହୁ ହୟମୁଖପରି
ଦିଶୁଥାଏ ହୟଗ୍ରୀବ ନାମଟି ତାହାର ।
ଅତ୍ୟନ୍ତ ବିସ୍ତୃତ ପୁଣି ବିକଟ ବଦନ
ମଧ୍ୟରେ ଦୁଇଟି ଚକ୍ର ଦିଶେ ଶୋଭନ ।
ଯାହାକି ସେ ନରସିଂହ ବୋଲିଣ ନାମକୁ
ବୈରାଗ୍ୟ ଜନ୍ମେ ଦରଶନ କଲେ ତାକୁ ।
ଦ୍ୱିଚକ୍ର ବିସ୍ତୃତ ମୁଖ ବନମାଳାଯୁତ
ଅଟେ ଯେ ସେ ଲକ୍ଷ୍ମୀ ନରସିଂହ ନାମେ ଖ୍ୟାତ
ତାକୁ ପୂଜାକଲେ ସୁଖ ମିଳଇ ଅପାର
ଧନ ରତନରେ ପୂର୍ଣ୍ଣ ହୁଅଇ ଭଣ୍ଡାର ।
ଦ୍ୱାରଦେଶେ ଦୁଇଚକ୍ର ଲକ୍ଷ୍ମୀଚିହ୍ନ ହୋଇ
ଦିଶଇ ଯହିଁରେ ବାସୁଦେବ ସେ ବୋଲାଇ ।
ତାହାକୁ ପୂଜିଲେ ସର୍ବ କାମନା ପୂରଣ
ହୁଅଇ ଗୋ ନାରୀଗଣ ମସ୍ତକମଣ୍ଡନ ।
ନବୀନ ଜଳଦ ପରି ଯାହାର ବରନ
ଆବର ଦିଶଇ ଅତି ସୂକ୍ଷ୍ମ ଚକ୍ରଚିହ୍ନ ।
ବିବର ପାଖରେ ବହୁ ଛିଦ୍ର ଦେଖାଯାଏ
ପ୍ରଦ୍ୟୁମ୍ନ ବୋଲିଣ ତାର ନାମ ଗୋଟି ହୁଏ ।
ଗୃହୀମାନଙ୍କର ସେହୁ ହୁଏ ସୁଖକର
ତାର ଦରଶନେ ସର୍ବପାପ ଯାଏ ଦୂର ।
ଏକଲଗ୍ନ ହୋଇ ଦୁଇଗୋଟି ଚକ୍ରଥିବ
ପୃଷ୍ଠଦେଶେ ପୁଣି ବହୁ ଚକ୍ର ଦେଖାଯିବ ।
ଏମନ୍ତ ମୂର୍ତ୍ତିର ନାମ ଅଟେ ସଙ୍କର୍ଷଣ
ଗୃହୀମାନଙ୍କର ସୁଖପ୍ରଦ ସେହୁ ଜାଣ ।
ବର୍ତ୍ତୁଳ ପୀତ ବରଣ ଅତ୍ୟନ୍ତ ସୁନ୍ଦର
ଅଟଇ ଯେ ଅନିରୁଦ୍ଧ ନାମଟି ତାହାର ।
ଗୃହସ୍ଥମାନଙ୍କରେ ସେ ସୁଖଦାନକାରୀ
ମୋର କହିବାରୁ ଜାଣ ହେ ସୁରସୁନ୍ଦରୀ ।
ଯେଉଁଠାରେ ଶାଳଗ୍ରାମ ଶିଳା ରହିଥାଏ
ସେଠାରେ ଶ୍ରୀହରି ବାସ କରନ୍ତି ନିଶ୍ଚୟେ ।
ସକଳ ତୀର୍ଥକୁ ଘେନି ଲକ୍ଷ୍ମୀ ସରସ୍ୱତୀ
ସେହିସ୍ଥାନେ ଯାଇ ସବୁବେଳେ ରହିଥାନ୍ତି ।
ବ୍ରହ୍ମହତ୍ୟା ଆଦିକରି କେତେ ମହାପାପ
ଶାଳଗ୍ରାମ ପୂଜାକଲେ ସବୁ ହୁଏ ଲୋପ ।
ଛତ୍ରାକାର ଶାଳଗ୍ରାମ ରଖିଲେ ଗୃହରେ
ରାଜ୍ୟ ପ୍ରାପତ ହୁଅଇ ଜାଣ ନିଶ୍ଚୟରେ ।
ବର୍ତ୍ତୁଳ ରୂପକୁ ପୂଜା କଲେ ଧନ ହୁଏ
ଶକଟ ଆକୃତି ହେଲେ ଦୁଃଖକୁ ସେ ଦିଏ ।
ଶୂଳାଗ୍ର ସମାନ ହେଲେ ମରଣ ନିଶ୍ଚିତ
ଦରିଦ୍ର ହୁଅଇ ମୁଖ ଦିଶିଲେ ବିକୃତ ।

ଟିଙ୍ଗଳ ସରଳ ଯେବେ ସ୍ନାନ ହୁଏ ଜାଣ
ନତମନେ ବ୍ୟାଧିଜାତ କରେ ଏ ପ୍ରମାଣ ।
ବ୍ରତଦାନ ପ୍ରତିଷ୍ଠା ଯେ ଶ୍ରାଦ୍ଧ ଦେବାର୍ଚ୍ଚନ
ଏହା ଆଦିକରି ଯେତେ ମଙ୍ଗଳ ବିଧାନ ।
ଶାଳଗ୍ରାମ ଶିଳା ତହିଁ ପ୍ରଶସ୍ତ ଅଟଇ
ନ ଥିଲେ ସକଳ କର୍ମ ନିଷ୍ଫଳ ହୁଅଇ ।
ଶାଳଗ୍ରାମ ଶିଳା ଧୋଇ ଯେ ଜଳରେ ସ୍ନାନ
କଲେ ସର୍ବତୀର୍ଥ ଯଜ୍ଞଫଳ ହୁଏ ଜାଣ ।
ଆବର ସକଳଦାନ ପୁଣ୍ୟଫଳ ହୁଏ
ସନ୍ତୋଷ ହୁଅନ୍ତି ସବୁବେଳେ ଦେବତା ଏ ।
ତାହାର ପରଶ ବାଞ୍ଛା ପୁଣ୍ୟ ତୀର୍ଥମାନେ
କରୁଛନ୍ତି ସବୁ ସମୟରେ ତୋଷମନେ ।
ଜୀବନ ମୁକତ ମହା ପବିତ୍ର ସେ ଜନ
ହୁଅଇ ନିଶ୍ଚୟ ଏଥି ସଂଶୟ ନ ଘେନ ।
ବିଧିମତେ ସ୍ମୃତିବେଦ କଲେ ଅଧ୍ୟୟନ
ଏ ବାହରେ ଘୋର ତପ କଲେ ଯେଉଁ ପୁଣ୍ୟ ।
ହୁଅଇ କେବଳ ଶାଳଗ୍ରାମ ପୂଜା କଲେ
ସେହି ପୁଣ୍ୟ ଲାଭ ହୋଇଥାଏ ଜାଣ ଭଲେ ।
ଶାଳଗ୍ରାମ ଶିଳା ଧୋଇ ସେ ଜଳକୁ ନିତ୍ୟ
ପାନକଲେ ନାଶହୁଏ ସକଳ ଦୁରିତ ।
ଜନ୍ମମୃତ୍ୟୁ ଜରା ବ୍ୟାଧି ଦୁଃଖ ଶୋକ ମୋହ
ଛୁଇଁ ନ ପାରନ୍ତି କେତେବେଳେ ତାର ଦେହ ।
ଇଛନ୍ତି ତାହାର ସ୍ପର୍ଶ ସର୍ବ ପୁଣ୍ୟତୀର୍ଥ
ଜୀଇ ଥିବାଯାକ ସେହି ଅଟଇ କୃତାର୍ଥ ।
ଅନ୍ତଃକାଳେ ଶ୍ରୀହରିଙ୍କ ସମୀପରେ ଯାଇ
ବସଇ ଆନନ୍ଦେ ଦୁଃଖ ଶୋକ ଛାଡ଼ିଦେଇ ।
ଅସଂଖ୍ୟ ପ୍ରାକୃତ ଲୟ ଦରଶନ କଲେ
ରହିଥାଏ ଶ୍ରୀହରିଙ୍କ ସେବକ କାର୍ଯ୍ୟରେ ।
ବ୍ରହ୍ମହତ୍ୟା ଗୋହତ୍ୟାଦି ଯେତେଯେତେ ପାପ
ଭୟକରି ନ ଯାଆନ୍ତି ତାହାର ସମୀପ ।
ତା ପାଦରଜରେ ମହୀ ହୁଅଇ ପବିତ୍ର
କଳୁଷ ପରଶ ନ କରଇ ତାର ଗାତ୍ର ।
ମୃତ୍ୟୁକାଳେ ଶାଳଗ୍ରାମ ଶିଳା ଧୌତ ନୀର
ପାନ କଲେ ପାତକି ପଳାଏ ସତ୍ୱର ।
ଅନ୍ତ୍ୟରେ ବିଷ୍ଣୁଲୋକ ହୁଅଇ ପ୍ରାପତ
ଶୁଣ ଆଗୋ ପୃଥୁକେଶୀ ଦେଇକରି ଚିତ୍ତ ।

କର୍ମଭୋଗ ଅବସାନରେ ନିର୍ବାଣ ମୁକତି
ମିଳଇ ଆବର ବିଷ୍ଣୁ ପାଦରେ ଭକତି ।
ଶାଳଗ୍ରାମ ଶିଳା ଧରି ଯେ ମିଥ୍ୟା କହଇ
ସଂସାର କଣ୍ଟକେ ଦଗ୍ଧ ହୋଇଥାଏ ସେହି ।
ଶପଥ କରଣ ଯେହୁ ଶାଳଗ୍ରାମ ଛୁଇଁ
ସେ କଥାକୁ ଶୁଣି ରକ୍ଷାକରି ନ ପାରଇ ।
ଲକ୍ଷେ ମନ୍ୱନ୍ତର ଠାରୁ ଅଧିକ ସମୟ
ଅସିପତ୍ର ନରକରେ ପଡ଼େ ତାର କାୟ ।
ଶାଳଗ୍ରାମକୁ ତୁଳସୀ ବିଚ୍ଛେଦ ଯେ କରେ
ସ୍ତ୍ରୀ ବିଚ୍ଛେଦ ହୁଅଇ ତାର ଜନ୍ମାନ୍ତରେ ।
ଯେ ରୂପେ ଶଙ୍ଖରେ ଯେବା ନ ଦିଏ ତୁଳସୀ
ସପ୍ତଜନ୍ମଯାଏ ବ୍ୟାଧି ଦିଏ ତାକୁ ଗ୍ରାସି ।
ଆବର ଭାର୍ଯ୍ୟାହୀନ ହୁଅଇ ସେ ଜାଣ
ମିଥ୍ୟା ନ ଅଟଇ ତୁମ୍ଭ କହିବା ବଚନ ।
ଶାଳଗ୍ରାମ ଶଙ୍ଖ ପୁଣି ତୁଳସୀକୁ ଆଣି
ଏକ ଆସନରେ ଭଜେ କରେ ଯେଉଁ ପ୍ରାଣୀ ।
ସେହି ମହାଜ୍ଞାନୀ ଅଟେ ଶ୍ରୀହରିଙ୍କ ପ୍ରିୟ
ତାହାପ୍ରତି ନାରାୟଣ ହୁଅନ୍ତି ସଦୟ ।
ଯେବଣ କାମିନୀଠାରେ ଯେ ପୁରୁଷବର
ଧର୍ମ୍ୟଦାନ କରିଥାଏ ମାତ୍ର ଏକଥର ।
ସେ ଦୁହିଙ୍କ ପରସ୍ପର ବିଚ୍ଛେଦ ହୋଇଲେ
ମହାକଷ୍ଟ ହୁଏ ମୁହିଁ ଜାଣୁଅଛି ଭଲେ ।
ସମାପତ ହେବାଯାଏ ଏକ ମନ୍ୱନ୍ତର
ପ୍ରିୟା ହୋଇଥିଲ ତୁମ୍ଭେ ଶଙ୍ଖଚୂଡ଼ଙ୍କର ।
ତାଙ୍କ ବିରହରେ ଦୁଃଖ ତୁମ୍ଭର ଅପାର
ହୋଇଥିବ ନିଶ୍ଚୟେ ଗୋ ରମଣୀଙ୍କ ବର ।
ଏହିରୂପେ କହି ହରି ବିରତ ହୋଇଲେ
ତୁଳସୀର ବଦନକୁ ଅନାଇ ରହିଲେ ।
ଏହିରୂପେ ଶ୍ରୀହରିଙ୍କ ବଚନେ ତୁଳସୀ
ଦେହତ୍ୟାଗ କଲେ ତାଙ୍କ ସମୀପରେ ବସି ।
ସେହିକ୍ଷଣି ଦିବ୍ୟରୂପ ଧାରଣ ସେ କଲେ
ଶ୍ରୀହରିଙ୍କ ବକ୍ଷସ୍ଥଳେ ଯାଇଣ ରହିଲେ ।
ପୂର୍ବରୁ ତ ମହାଲକ୍ଷ୍ମୀ ସେହିଠାରେ ଥିଲେ
ଆନନ୍ଦରେ ଦୁଇଦେବୀ ମିଳିତ ହୋଇଲେ ।
ଜଗତ କରତା ତାଙ୍କୁ ଘେନି ସଙ୍ଗତରେ
ପ୍ରବେଶ ହୋଇଲେ ଯାଇ ବଇକୁଣ୍ଠ ପୁରେ ।

ଲକ୍ଷ୍ମୀ ସରସ୍ୱତୀ ଗଙ୍ଗା ତୁଳସୀ ସକଳେ
ବିଷ୍ଣୁଙ୍କର ପ୍ରିୟ ମନୋହାରୀ ଏ ସମସ୍ତେ ।
ଗଣ୍ଡକୀ ନାମରେ ଯେଉଁନଦୀ ହୋଇଅଛି
ତୁଳସୀଙ୍କ ଶରୀରରୁ ସେ ବହି ଯାଇଛି ।
ସେ ନଦୀ କୂଳରେ ଏକ ବିଶାଳ ପର୍ବତ
ନାରାୟଣଙ୍କ ଅଂଶରୁ ହୋଇଛି ସମ୍ଭୂତ ।
ବଜ୍ର ନାମେ କୀଟ ରହି ସେହି ପର୍ବତରେ
ଶିଳାଖଣ୍ଡ ମାନ କାଟୁଅଛନ୍ତି ଦନ୍ତରେ ।

ଯେବେ ଯେଉଁ ଶିଳାଖଣ୍ଡ ଜଳରେ ପଡ଼ଇ
ଜଳଦ ସମ ତାହାର ହୁଏ ବରଣଇ ।
ପୁଣି ଆବର୍ତ୍ତ କରଣ ବାଜଣ ଚକ୍ରରେ
ପିଙ୍ଗଳ ବରନ ହୁଏ ଯେ ଥାଏ ସ୍ଥଳରେ ।
ଶୁଣିଲତ ସବୁ କଥା ଆହେ ତପୋଧନ
ଆଉ ଯେବେ ଇଚ୍ଛା ଅଛି ପୁଚ୍ଛ ତା ବଚନ ।
ଏହା କହିଣ ମଉନ ହେଲେ ନାରାୟଣ
ଗୀତ ଛନ୍ଦେ ଲେଖେ ଷେହ ମୋହନ ଶ୍ରବଣ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ତୁଳସୀଙ୍କର ମହାତ୍ମ୍ୟ ବର୍ଣ୍ଣନ ନାମ ଦ୍ୱାବିଂଶୋଽଧ୍ୟାୟଃ**

---

## ତ୍ରୟୋବିଂଶ ଅଧ୍ୟାୟ

## ତୁଳସୀଙ୍କର ପୂଜାବିଧି ବର୍ଣ୍ଣନା

ନାରଦ ବୋଇଲେ ଆହେ ଋଷିଙ୍କ ପ୍ରଧାନ
ଜଗତ ମାତା ତୁଳସୀ ପୂଜ୍ୟା ସର୍ବସ୍ଥାନ ।
ପୁଣି ନାରାୟଣଙ୍କର ପ୍ରିୟା ମନୋହାରୀ
ତାହାଙ୍କର ପୂଜାସ୍ତୋତ୍ର ଅଟଇ କପରି ।
ବିସ୍ତାରି ମୋ ଆଗେ ତାହା କରନ୍ତୁ ବର୍ଣ୍ଣନ
ଶୁଣିବା ପାଇଁକ ଦେବ କଳଅଛି ମନ ।
ଆଦ୍ୟରେ ତାହାଙ୍କ ପୂଜା ବିଧି କେହୁ କଲା
କେ ଅବା କବଚ ସ୍ତୋତ୍ର ଆରମ୍ଭ କରିଲା ।
କେମନ୍ତେ ଜଗତପୂଜ୍ୟା ହୋଇଲେ ତୁଳସୀ
ତାହା ମୋହ ଅଗ୍ରତରେ କୁହନ୍ତୁ ବିଶେଷି ।
କହନ୍ତି ଶୌନକ ଆଗେ ସୂତ ମୁନିବର
ଏହିରୂପେ ନାରାୟଣ ନାରଦଙ୍କ ଗିର ।
ଶୁଣିକରି ପୁଣ୍ୟମୟ କଥା ତାଙ୍କ ଆଗେ
କହି ଆରମ୍ଭିଲେ ପୁଣି ଅତି ଅନୁରାଗେ ।
ବୋଇଲେ ଯେ ସବୁ କଥା କହିବା ବତାଇ
ଶୁଣ ହେ ନାରଦ ମୁନି ମନକର୍ଣ୍ଣ ଦେଇ ।
ତୁଳସୀ ଲକ୍ଷ୍ମୀ ଦୁହିଙ୍କୁ ଘେନି ନାରାୟଣ
ବୈକୁଣ୍ଠ ଭୁବନେ ଲୀଳା କଲେ ଅନୁକ୍ଷଣ
ସଉଭାଗ୍ୟ ଗଉରବେ ଲକ୍ଷ୍ମୀଙ୍କ ସମାନ
ତୁଳସୀଙ୍କୁ କଲେ ପ୍ରଭୁ ଜଗତ ପାବନ ।
ଗଙ୍ଗା ଲକ୍ଷ୍ମୀ ଦୁହେଁ ତାଙ୍କ ନବଦଙ୍ଗ ଦେଖି
ସହିଲେ ମନରେ କିନ୍ତୁ [illegible] ଦୁଃଖୀ ।

ମାତ୍ର ସହି ନ ପାରିଲେ ସରସ୍ୱତୀ ଦେବୀ ।
ସପତ୍ନୀ ସୌଭାଗ୍ୟ ସୁଖ ମନେ ମନେ ଭାବି ।
ତୁଳସୀ ସଙ୍ଗରେ କଳି ଆରମ୍ଭିଲେ ଯାଇ
ପ୍ରହାର କଲେ ତାହାଙ୍କୁ ପୁଣି କୋପ ବହି ।
ସେ ସକାଶୁ ଅପମାନ ଲଜ୍ଜାରେ ତୁଳସୀ
ଅନ୍ତର୍ଦ୍ଧାନ ହେଲେ ଆଉ କାହାକୁ ନ ଦିଶି ।
ସର୍ବଜ୍ଞାନମୟୀ ସେ ତ ଯୋଗୀ ଯୋଗେଶ୍ୱରୀ
ଶ୍ରୀହରିଙ୍କୁ ଦରଶନ ନ ଦେଲେ ସେପରି ।
ତାଙ୍କୁ ନ ଦେଖି ଶ୍ରୀହରି ଆତୁର ହୋଇଲେ
ସରସ୍ୱତୀଙ୍କୁ ବହୁତ ପ୍ରବୋଧନା କଲେ ।
ତାହାଙ୍କ ଅନୁଜ୍ଞା ଘେନି ତୁଳସୀ କାନନେ
ପ୍ରବେଶ ହୋଇଲେ ଖେଦ ବହି ନିଜ ମନେ ।
ସ୍ନାନ ସନ୍ଧ୍ୟା ତରପଣ ଶେଷକରି ତହିଁ
ପୂଜା କଲେ ତୁଳସୀଙ୍କୁ ଗନ୍ଧ ପୁଷ୍ପ ଦେଇ ।
ଏ ବାହାରେ ସ୍ତୋତ୍ର ଧ୍ୟାନ କବଚ ପଢ଼ିଲେ
ପୁଣି ଦଶାକ୍ଷର ମୂଳମନ୍ତ୍ର ଜପ କଲେ ।
ଯେ ମନ୍ତ୍ର ସ୍ୱରୂପ ଏବେ କହୁଅଛି ଶୁଣ
ଯେ ମନ୍ତ୍ର ପଠନେ ହୁଏ କଳୁଷ ମୋଚନ ।
ପ୍ରଥମରେ ଲକ୍ଷ୍ମୀମାୟା କାମ ସରସ୍ୱତୀ
ଏହାଙ୍କର ବୀଜାକ୍ଷର କରଇବ ସ୍ଥିତ ।

ଯେ ଅନ୍ତରେ ବୃନ୍ଦାବନୀ ଶବଦ ଶେଷରେ
ଚତୁର୍ଥୀ ବିଭକ୍ତି ଯୋଗ କରାଇବା ପରେ ।
ଏବଂ ଶେଷେ ସ୍ୱାହା ଦେବନ ବର୍ଣ୍ଣ ନବେଣ୍ଣିବ
ଏହିପରି ଦଶାକ୍ଷର ମନ୍ତ୍ରଟି ହୋଇବ ।
କଳ୍ପବୃକ୍ଷ ତୁଲ୍ୟ ଏହି ମନ୍ତ୍ରର ପ୍ରଭାବ
ଏ ମନ୍ତ୍ରେ ତୁଳସୀ ପୂଜା ଯେ ଜନ କରିବ ।
ପ୍ରାପତ ହୋଇବ ତାକୁ ସକଳ ସମ୍ପତ୍ତି
ଆବର ସନ୍ତୁଷ୍ଟ ହେବେ ପ୍ରଭୁ ରମାପତି ।
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ଆଦି
ବିଧିମତେ ନାନା ଉପଚାରକୁ ସମ୍ପାଦି ।
ତୁଳସୀଙ୍କୁ ଆରାଧନା କରିବ ହରଷେ
ପଢ଼ିବ କବଚ ସ୍ତୋତ୍ର ଉପଚାର ଶେଷେ ।
ଶ୍ରୀହରିଙ୍କ ସ୍ତୋତ୍ର ଶୁଣି ସନ୍ତୋଷେ ତୁଳସୀ
ବାହାର ହେଲେ ବୃକ୍ଷରୁ ସ୍ୱରୂପ ପ୍ରକାଶି ।
ଶ୍ରୀହରିଙ୍କ ଚରଣରେ ପଶିଲେ ଶରଣ
ତାହା ଦେଖି ଦୟାମୟ ପ୍ରଭୁ ନାରାୟଣ ।
ପ୍ରସନ୍ନ ହୋଇଣ ତାଙ୍କୁ ବରଦାନ କଲେ
ଜଗତରେ ପୂଜ୍ୟା ତୁମ୍ଭେ ହୁଅ ଗୋ ବୋଇଲେ
ଆବର ବୋଇଲେ ମୁହିଁ ମସ୍ତକେ ବକ୍ଷରେ
ତୁମ୍ଭଙ୍କୁ ଧାରଣ କରିଥିବ ନିରନ୍ତରେ ।
ଦେବତା ଦାନବ ଯକ୍ଷ ଗନ୍ଧର୍ବାଦି ଯେତେ
ଯେମନ୍ତେ ତୁମ୍ଭଙ୍କୁ ନିଜ ମସ୍ତକେ ସମସ୍ତେ ।
ଏହିରୂପେ କହି ନାରାୟଣ ଯେଣୁ ତାଙ୍କୁ
ଆନନ୍ଦ ମନରେ ଗଲେ ଆପଣା ପୁରକୁ ।
ନାରଦ ବୋଇଲେ ମନ୍ତ୍ର ଶୁଣିଲି ଗୋସାଇଁ
ସ୍ତୋତ୍ର ଧ୍ୟାନ କଥାମାନ କିଛି ଶୁଣି ନାହିଁ ।
ବିଶେଷ ଭାବରେ ତାହା କହ ମହାମତି
ତାହା ଶୁଣି ହରଷରେ ନାରାୟଣ ଯତି ।
ବୋଇଲେ ସେ କଥା ଏବେ କହୁଅଛି ଶୁଣ
ତୁଳସୀଙ୍କ ବିରହରେ ପ୍ରଭୁ ନାରାୟଣ ।
ତୁଳସୀ ବନକୁ ଯାଇ ପୂଜାବିଧି ସାର
ସ୍ତୁତି ଆରମ୍ଭିଲେ ସ୍ଥିରଭାବେ ବସିକରି ।
ବୋଇଲେ ଗୋ ବୃନ୍ଦାବନୀ ତୁଳସୀ ସୁନ୍ଦରୀ
ଅଟନ୍ତି ମୋହର ସଦା ପ୍ରିୟ ସହଚରୀ ।
ତାହାଙ୍କୁ ମୁଁ ଆନନ୍ଦରେ କରୁଛି ଭଜନ
ହଅନ୍ତୁ ସେ ମୋ ଆଗକୁ ଆସି ଦରଶନ ।

ପୂର୍ବରେ ସେ ବୃନ୍ଦାବନେ ଥିଲେ ପ୍ରଥମରେ
ସେ ସକାଶୁ ବୃନ୍ଦାବନୀ ବୋଲନ୍ତି ଲୋକରେ
ତାଙ୍କୁ ମୁହିଁ ସୁମରଣା କରୁଅଛି ଏବେ
ପ୍ରକାଶ ହୁଅନ୍ତୁ ଆସି ମୋହର ଅଗ୍ରତେ ।
ଅଖିଳ ବିଶ୍ୱରେ ଯେହୁ ପୂଜିତା ଅଟନ୍ତି
ସେ ହେତୁ ବିଶ୍ୱପୂଜିତା ନାମ କହନ୍ତି ।
ତାହାଙ୍କୁ ମୁଁ ଭଜୁଅଛି ଅନ୍ତର ସହିତ
ମୋହର ଆଗରେ ଆସି ହୁଅନ୍ତୁ ବ୍ୟକତ ।
ଯାହାଙ୍କର ପଦ ବିନା ବୃନ୍ଦାରକ ବୃନ୍ଦ
ବିବିଧ ପୁଷ୍ପରେ ହେଲେ ନୁହନ୍ତି ଆନନ୍ଦ ।
ତାହାଙ୍କ ବିରହେ ମୋର ବଢ଼ୁଅଛି ଶୋକ
ଦେଖିବାପାଇଁକି ମନ ହୁଅଇ ଉତ୍ସୁକ ।
ଯାହାଙ୍କୁ ପାଇ ଆନନ୍ଦ ହୁଅଇ ଜଗତ
ସେ ହେତୁ ନନ୍ଦନୀ ବୋଲି ନାମ ଅଟେ ଖ୍ୟାତ ।
ଜାତ ହେଉ ତାହାଙ୍କର ମୋଠାରେ ପୀରତି
ବନ୍ଦନ କରୁଛି ମୁହିଁ ପ୍ରକାଶି ବିନତି ।
ତିନି ଭୁବନରେ ନାହିଁ ଯାହାଙ୍କର ସମ
ତେଣୁ ତୁଳସୀ ବୋଲିଣ ହୋଇଅଛି ନାମ ।
ଶରଣ ନେଉଛି ମୁହିଁ ତାହାଙ୍କର ପାଦେ
ପ୍ରସନ୍ନ ହୁଅନ୍ତୁ ମୋହଠାରେ ଅପ୍ରମାଦେ ।
ଶ୍ରୀକୃଷ୍ଣ ଜୀବନରୂପା ପ୍ରାଣପ୍ରିୟା ସତୀ
କୃଷ୍ଣ ଜୀବନୀ ହେଲିଣ ଯାହାଙ୍କର ଖ୍ୟାତି ।
ମୋହର ଜୀବନ ରକ୍ଷା କରନ୍ତୁ ସେ ବାରେ
ପ୍ରଣାମ କରୁଛି ତାଙ୍କ ପାଦ ପଙ୍କଜରେ ।
ଏହିରୂପେ ସ୍ତୁତି ଭଣି ରମାଦେବୀ କାନ୍ତ
ତୁଳସୀଙ୍କୁ ଧ୍ୟାନକରି ହୋଇଲେ ନିବୃତ୍ତ ।
ମୁହୂର୍ତ୍ତେ ଅନ୍ତରେ ପୁଣି ଦେଖିଲେ ତୁଳସୀ
ପ୍ରଣାମ କରୁଅଛନ୍ତି ପାଦତଳେ ଆସି ।
ଶୋକ କରୁଛନ୍ତି ମନେ ପାଇ ଅଭିମାନ
ବିଷାଦରେ ଶୁଷ୍କ ହୋଇଅଛି ଚନ୍ଦ୍ରାନନ ।
ଏରୂପେ ପ୍ରିୟାଙ୍କ ଦଶା ଦେଖିଣ ଶ୍ରୀହରି
ବସାଇଲେ ତାଙ୍କୁ ବକ୍ଷସ୍ଥଳେ ନେଇକରି ।
ତହିଁ ଅନ୍ତରେ ସରସ୍ୱତୀ ଆଜ୍ଞା ଘେନି ଶିରେ
ପ୍ରବେଶ ହୋଇଲେ ଯାଇଁ ଆପଣାର ପୁରେ ।
ତୁଳସୀ ଦେବୀଙ୍କ ସଙ୍ଗେ ସରସ୍ୱତୀଙ୍କର ।
ପ୍ରୀତି କରାଇଲେ କହି ନାନା ତଥ୍ୟ ଗିର ।

ସର୍ବପୂଜ୍ୟା ହୁଅ ବୋଲି ତୁଳସୀ ଦେବୀଙ୍କୁ
ବର ଦେଲେ ସେ କାଳରେ ପ୍ରକାଶି ସ୍ନେହକୁ ।
ବିଷ୍ଣୁଙ୍କର ବର ପାଇ ତୁଳସୀ ସୁନ୍ଦରୀ
ଆନନ୍ଦିତ ହେଲେ ପୂର୍ବ ଦୁଃଖକୁ ପାସୋରି ।
ଏଥୁଅନ୍ତେ ସରସ୍ୱତୀ ଉଠି ସ୍ନେହଭରେ
ତୁଳସୀଙ୍କୁ ଆଲିଙ୍ଗନ କଲେ ସେ କାଳରେ ।
ସେହିପରି ଲକ୍ଷ୍ମୀ ଗଙ୍ଗା ଦୁହେଁ ବେଗେ ଯାଇ
ଆଲିଙ୍ଗନ କରି ପାଶେ ବସାଇଲେ ନେଇ ।
ଏହିରୂପେ ପରସ୍ପର ପ୍ରୀତି ବଢ଼ାଇ
ଗୃହକୁ ଗଲେ ସମସ୍ତେ ତୋଷମତି ହୋଇ ।
ବୃନ୍ଦା ବୃନ୍ଦାବନୀ ବିଶ୍ୱପାବନୀ ନନ୍ଦିନୀ
ବିଶ୍ୱପୂଜିତା ତୁଳସୀ ଶ୍ରୀକୃଷ୍ଣ ଜୀବନୀ ।
ପୁଷ୍ପସାର ଏହିପରି ଅଠନାମ ଯେନ
ସ୍ତୋତ୍ରକୁ ପଢ଼ିବ ତାହା ସନ୍ତତରେ ପୁଣି ।
ଏ ବାହାରେ ପୂଜାବିଧି ସରିବଟି ଯେବେ
ଅଶ୍ୱମେଧ ଫଳଲାଭ ହେବ ଜାଣ ତେବେ ।
କାର୍ତ୍ତିକ ପୂର୍ଣ୍ଣିମା ଦିନେ ଜନ୍ମିଲେ ତୁଳସୀ ।
ସେହିଦିନ ପୂଜିଥିଲେ ତାଙ୍କୁ ବ୍ରହ୍ମର୍ଷି ।
ସେ ସକାଶୁ ଭକ୍ତିଭରେ ତୁଳସୀ ପୂଜନ
କାର୍ତ୍ତିକ ପୂର୍ଣ୍ଣିମାଦିନେ କରେ ଯେଉଁ ଜନ ।
ଇହଲୋକେ ସର୍ବପାପୁଁ ମୁକତ ହୁଅଇ
ଦେହଅନ୍ତେ ବଇକୁଣ୍ଠ ପୁରେ ବସେ ଯାଇଁ ।
କାର୍ତ୍ତିକ ମାସରେ ଯେବା ତୁଳସୀ ପତର
ସମର୍ପଣ କରେ ନେଇ ବିଷ୍ଣୁଙ୍କର ଶିର ।
ଦଶସହସ୍ର ଗଜଦାନ ଫଳଲାଭ କରେ
ଅନ୍ତଃକାଳେ ବିହରଇ ବଇକୁଣ୍ଠ ପୁରେ ।
ଅପୁତ୍ରିକ ପୁତ୍ର ପାଇ ଆନନ୍ଦ ହୁଅଇ
ଭାର୍ଯ୍ୟାହୀନ ହୋଇଥିଲେ ଦିବ୍ୟସ୍ତ୍ରୀ ପାଇ ।
ବନ୍ଧୁହୀନ ଲୋକ ଯେବେ ଏ ସ୍ତବ ପଢ଼ଇ
ପ୍ରିୟବନ୍ଧୁ ଲାଭକରି ଆନନ୍ଦ ହୁଅଇ ।

ରୋଗରେ ବା ବନ୍ଧନରେ ପଡ଼ି ଯେଉଁ ଜନ
କଷ୍ଟଭୋଗ କରୁଥାଏ ହୋଇ ମ୍ଳାନମାନ ।
ଏ ସ୍ତୋତ୍ର ପଠନ କଲେ ମୁକତ ହୁଅଇ
ବିଷ୍ଣୁଙ୍କ ବଚନ ଏହା ଅନ୍ୟଥା ନୁହଇ ।
ଭୟାତୁର ଲୋକଠାରୁ ଛାଡ଼ିଯାଏ ଭୟ ।
ପାତକୀ ଲୋକର ହୁଏ ସର୍ବପାପ କ୍ଷୟ ।
ଏହିରୂପେ ସ୍ତୋତ୍ରପାଠ ବିଧାନ ଅଟଇ
ଧ୍ୟାନ ପୂଜା ବିଧି ଏବେ ଶୁଣ ମନଦେଇ
ତୁଳସୀ କୁସୁମ ସାର ମନୋହର ଅତି
ସକଳ ଲୋକପାବନୀ ବିଷ୍ଣୁ ପ୍ରିୟବତୀ ।
ଅଶେଷ ପାତକ ତୃଣ ଦାବାଗ୍ନିବୈଶ୍ୱାନର
ଭୂଷିତ କରୁଛ ଦେବୀ ଶ୍ରୀହରିଙ୍କ ଶିର ।
ତୁମ୍ଭର କୁସୁମ ତୁଲେ ହେବାକୁ ତୁଳନା
ଅନ୍ୟପୁଷ୍ପ ଖୋଜିବାର ଉପହାସ ବିନା ।
ସକଳ ଲୋକରେ ତୁମ୍ଭେ ପବିତ୍ର ବୋଲାଅ
ସର୍ବଦେବ ଦେବୀଙ୍କର ମସ୍ତକରେ ଥାଅ ।
ତୁମ୍ଭ କୃପାବଳେ ଲୋକ ହୁଅଇ ମୁକତ
ତୁମ୍ଭଙ୍କୁ ଯେ ଭଜେ ସେହୁ ଶ୍ରୀହରିଙ୍କ ଭକ୍ତ ।
ଏମନ୍ତ ଯେ ପୁଣ୍ୟମୟୀ ଅଟ ମାହାମାୟେ
ଶରଣ ପଶୁଛି ମୁହିଁ ମାତ ତୁମ୍ଭ ପାୟେ ।
ପୂଜା ଉପଚାରମାନ ଦେଇ ଧ୍ୟାନକରି
ଭକ୍ତିରେ ପୂଜା କରିବ ତୁଳସୀ ସୁନ୍ଦରୀ ।
ତଦଅନ୍ତେ ସ୍ତୋତ୍ର ପଢି ପ୍ରଣାମ କରିବ
ଯେତେ ବିଘ୍ନମାନ ଥିବ ବିନାଶ ହୋଇବ ।
ଆଉ ଯାହା ଶୁଣିବ ତା ପରର ବଚନ ।
ଏହା କହି ନାରାୟଣ ମଉନ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ତୁଳସୀଙ୍କର ପୂଜାବିଧି ବର୍ଣ୍ଣନେ
ନାମ ଷଡ଼ବିଂଶୋଽଧ୍ୟାୟଃ ।

# ଚତୁର୍ବିଂଶ ଅଧ୍ୟାୟ

## ସାବିତ୍ରୀ ଉପାଖ୍ୟାନ ଓ ସାବିତ୍ରୀ ସ୍ତୋତ୍ର ବର୍ଣ୍ଣନ

ନାରାୟଣ ମୁଖ ଚାହିଁ ହୋଇ କୃତ୍ୟ କୃତ୍ୟ
ବୋଇଲେ ଶୁଣିଲି ଦେବ ତୁଳସୀ ଚରିତ ।
ଏବେ ସାବିତ୍ରୀଙ୍କ କଥା ଶୁଣିବାକୁ ମନ
ବଳୁଅଛି ବିସ୍ତାରକରି କୁହନ୍ତୁ ବଚନ ।
କାହାର ଔରସେ ସେହୁ ଜନମ ହୋଇଲେ
ପ୍ରଥମରେ କେଉଁମାନେ ତାଙ୍କୁ ପୂଜା କଲେ ।
କେଉଁ ପରକାରେ ସେହୁ ମର୍ତ୍ତ୍ୟେ ହେଲେ ଖ୍ୟାତ
ସମ୍ପୂର୍ଣ୍ଣ ବାରେ ମୋତ କୁହ ତପୋବନ୍ତ ।
ଏହା ଶୁଣି ନାରାୟଣ ହରଷିତ ହୋଇ
ଆରମ୍ଭ କରିଲେ ନାରଦଙ୍କ ମୁଖ ଚାହିଁ ।
ବୋଇଲେ ହେ ମୁନିବର ଶୁଣ ଦେଇ ମନ
ଆଦ୍ୟରେ ପୂଜିଲେ ତାଙ୍କୁ ସେ ଚତୁରାନନ ।
ଦ୍ୱିତୀୟେ ଅମରଗଣ ତୃତୀୟେ ପଣ୍ଡିତ
ପୂଜା କଲେ ସାବିତ୍ରୀଙ୍କୁ ହୋଇ ତୋଷ ଚିତ୍ତ ।
ତାହାପରେ ଅଶ୍ୱପତି ନାମେ ଦଣ୍ଡଧର
ପୂଜା କରନ୍ତେ ସକଳେ ପୂଜିଲେ ସତ୍ୱର ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦି କରି
ପୂଜିଲେ ମା ସାବିତ୍ରୀଙ୍କୁ ଆହେ ତପସ୍ୱୀ ।
ନାରଦ ବୋଇଲେ ଅଶ୍ୱପତି କେ ଅଟନ୍ତି
କେବଣ ଦେଶରେ ଅଟେ ତାହାଙ୍କ ବସତି ।
କାହିଁକି ସେ ସାବିତ୍ରୀଙ୍କୁ ଆରାଧନା କଲେ
ମୋ ଆଗେ ତାହା ବିସ୍ତାରି କହ ଦେବ ଭଲେ ।
ନାରାୟଣ ବୋଇଲେ ତା ଶୁଣ ମନଦେଇ
ଅଶ୍ୱପତି ଅଟନ୍ତି ସେ ମଦ୍ରଦେଶ ସାଇଁ ।
ଶତ୍ରୁକୁଳ ଅନ୍ତକ ସେ ମିତ୍ର ହିତକାରୀ
ନ ଥିଲେ କେ ଭାରତରେ ରାଜା ତାଙ୍କପରି ।
ତାହାଙ୍କର ଧର୍ମପତ୍ନୀ ସତୀ ପତିବ୍ରତା
ମାଳତୀ ନାମରେ ସେହି ଜଗତେ ବିଖ୍ୟାତା ।
ଯେଉଁରୂପେ ବିଷ୍ଣୁ ପ୍ରିୟା ଦେବୀ କମଳାମା
ସେରୂପେ ସେ ଅଶ୍ୱପତି ରାଜାଙ୍କ ଘରଣୀ ।
ଦୈବ ଯୋଗରେ ବନ୍ଧ୍ୟା ହୁଅନ୍ତେ ସୁନ୍ଦରୀ
ବଶିଷ୍ଠଙ୍କଠାରୁ ଉପଦେଶ ପାଇକରି ।

ସାବିତ୍ରୀ ଦେବୀଙ୍କୁ ପୂଜା କଲେ ଭକ୍ତିଭରେ
ଗନ୍ଧପୁଷ୍ପ ଧୂପଆଦି ନାନା ଉପଚାରେ ।
ଏହାପରେ କେତେଦିନ ହୋଇଲା ଅତୀତ
ଦରଶନ ନ ଦେଲେ ସେ ଜଗତର ମାତ ।
ସେଥି ସକାଶରୁ ଦେବୀ ହୋଇଣ ଦୁଃଖିତା
ଘରକୁ ବାହୁଡ଼ି ଗଲେ କରି ଘୋରଚିନ୍ତା ।
ତାହାଙ୍କର ମନକଥା ଜାଣି ନରସାଇଁ
ପ୍ରବୋଧନା କଲେ ତାଙ୍କୁ ନାନାକଥା କହି ।
ସାବିତ୍ରୀଙ୍କୁ ଆରାଧନା କରିବା ଅର୍ଥରେ
ପ୍ରବେଶ ହୋଇଲେ ନିଜେ ପୁଷ୍କର ତୀର୍ଥରେ ।
ସଂଯତ ଭାବରେ ତହିଁ ଶତବର୍ଷ ଯାଏ
ଘୋରତପ ଆଚରଣ କଲେ ନରରାୟେ ।
ସେକାଳେ ସାବିତ୍ରୀଦେବୀ ପ୍ରସନ୍ନ ହୋଇଲେ
ରାଜାଙ୍କ ପାଖକୁ ଆସି ଦରଶନ ଦେଲେ ।
ତେତେବେଳେ ଆକାଶରୁ ଅଶରୀରୀ ବାଣୀ
ଶୁଭିଲା ରାଜନ ତାହା ଶୁଣିଲେ ସେକ୍ଷଣି ।
ଯେବେ ତୁମ୍ଭେ ଦଶଲକ୍ଷ ଗାୟତ୍ରୀ ଜପିବ
ତାହାହେଲେ ତୁମ୍ଭ କାର୍ଯ୍ୟ ସଫଳ ହୋଇବ ।
ଏହି ସମୟରେ ପରାଶର ମୁନିବର
ମିଳିଲେ ସମୀପେ ଆସି ଅଶ୍ୱପତିଙ୍କର ।
ରାଜାଙ୍କ ମୁଖକୁ ଚାହିଁ ବୋଇଲେ ଏମନ୍ତ
ଶୁଣ ଆହେ ଅଶ୍ୱପତି ନୃପ ତପୋବନ୍ତ ।
ଗାୟତ୍ରୀ ମନ୍ତ୍ରକୁ ଏକଥର ଜପକଲେ
ଦିନକର ପାପ ନାଶ ହୋଇଥାଏ ଭଲେ ।
ଦଶବାର ଜପକଲେ ଦିନରାତି ମିଶି
ଯେତେ ପାପ ହୋଇଥାଏ ସବୁ ହୁଏ ଧ୍ୱଂସି ।
ଶତେ ଜପକଲେ ଏକ ମାସକର ପାପ
ଜାଣିଥାଅ ନିଶ୍ଚୟରେ ହୁଅଇଟି ଲୋପ ।
ବର୍ଷରେ ସଞ୍ଚିତ ଅଟେ ଯେତେକ କଲ୍ମଷ
ସହସ୍ରେ ଗାୟତ୍ରୀଜପ କଲେ ଯାଏ ନାଶ ।
ଲକ୍ଷକରେ ଜନ୍ମକୃତ ପାପ ନଷ୍ଟ ହୁଏ
ଦଶଲକ୍ଷ କଲେ ତିନିଜନ୍ମ ପାପ ଯାଏ ।

ଶତଲକ୍ଷ ଜପ କଲେ ସକଳ ଜନ୍ମର
ପାତକ ବିନାଶ ହୁଏ ଆହେ ନୃପବର ।
ମୁକତ ହୁଅଇ ଦ୍ୱିଜ ତାର ଦଶଗୁଣେ
ସଂଶୟ ନାହିଁ ଏଥିରେ ବୋଲି ଯେନ ମନେ ।
ସର୍ପଫଣା ଆକୃତିରେ ହସ୍ତକୁ ରଖିବ
ମାତ୍ର ଉର୍ଦ୍ଧ୍ୱ ସ୍ତଗିଟିକୁ ମୁଦ୍ରିତ କରିବ ।
ଅନନ୍ତ ମସ୍ତକ ପୁଣି ପୂର୍ବମୁଖ ହୋଇ
ବସିବ ନିଷ୍କଳ ଭାବେ ଜପେ ମନଦେଇ ।
ଅନାମିକା ଅଙ୍ଗୁଳିର ମଧ୍ୟରୁ ଗଣିବ
ବାମକ୍ରମେ ତର୍ଜନୀର ମୂଳ ଶେଷ ନେବ ।
ସେ ମଧ୍ୟରେ ଦଶଗୋଟି ପବ ଗଣିକରି
ବୁଝିବ ଦଶ ସଂଖ୍ୟାକୁ ମନରେ ବିଚାରି ।
ଶ୍ୱେତପଦ୍ମ ବୀଜ ଅବା ସ୍ଫଟିକର ମାଳା
ସଂସ୍କାର କରିବ ତାକୁ ନ କରଣ ହେଳା ।
ସେହି ମାଳାସେନ ତୀର୍ଥସ୍ଥାନେ ଦେବାଳୟେ
ନିଷ୍ଠକରେ ବସି ଜପ କରିବ ନିର୍ଭୟେ ।
ସାତଟି ଅଶ୍ୱତ୍ଥ ପତ୍ର ପକାଇ ଭୂମିରେ
ଥୋଇବ ମାଳାକୁ ଅତି ଯତ୍ନେ ତାହା ପରେ ।
ଗୋରୋଚନା ଲଗାଇଣ ଗାୟତ୍ରୀ ମନ୍ତ୍ରରେ
ସ୍ନାନ କରାଇବ ପୁନଃପୁନଃ ସ୍ୱଚ୍ଛ ନୀରେ ।
ବିଧି ଅନୁସାରେ ଶତେ ଗାୟତ୍ରୀ ଜପିବ
ତେବେ ସେ ମାଳାଟି ଶୁଦ୍ଧହେବ ଜାଣିଥିବ ।
ଅଥବା ପଞ୍ଚଗବ୍ୟରେ ଧୌତ କଲେ ଥରେ
ସଂସ୍କୃତ ହୁଅଇ ମାଳା ଜାଣ ନିଷ୍ଠପୂରେ ।
ନୋହିଲେ ବା ଗଙ୍ଗାନୀରେ ସ୍ନାନ କରାଇଲେ
ସବୁଠାରୁ ବଳ ଶୁଦ୍ଧ ହୋଇଥାଏ ଭଲେ ।
ଏହିରୂପେ ଗାୟତ୍ରୀର ଜପର ବିଧାନ
ଦଶଲକ୍ଷ ଜପ ଚତୁର୍ଥ କର ଦେଇ ମନ ।
ବିଚନ୍ଦ୍ର ପାତକ କ୍ଷୟ ହୋଇବ ଅବଶ୍ୟ
ଦର୍ଶନ ଦେବେ ସାବିତ୍ରୀ ଆସି ତୁମ୍ଭ ପାଶ ।
ପ୍ରତିଦିନ ତ୍ରିସନ୍ଧ୍ୟାରେ ସନ୍ଧ୍ୟା କରୁଥିବ
ଧଉତ ବସନ ପିନ୍ଧି ଶୁଚିମନ୍ତ ହେବ ।
ସନ୍ଧ୍ୟାହୀନ ହେଲେ ଲୋକ ଅଶୁଚି ବୋଲାଇ
କେବଣ କର୍ମକୁ ଯୋଗ୍ୟ ହୋଇ ନ ପାରଇ ।
ଯେଉଁଜନ ପ୍ରାତଃକାଳେ ସାୟାହ୍ନେ ଯେପରି
ସନ୍ଧ୍ୟା ନ କରଇ ନିତ୍ୟ କର୍ମ ଅନୁସରି ।
ଯେତେ ଧର୍ମ କର୍ମ ସେହି କରେ ଦିନକରେ
ସକଳ ନଷ୍ଟ ହୁଅଇ ଜାଣ ସେ ହେତୁରେ ।
ଶୂଦ୍ରର ସମାନ ବୋଲି ଜାଣିବ ତାହାକୁ
ଉପଯୁକ୍ତ ନୁହଇ ସେ ବ୍ରାହ୍ମଣ କର୍ମକୁ ।
ଜୀବନ ଥିବାପର୍ଯ୍ୟନ୍ତ ଯେଉଁ ବିପ୍ରବର
ତ୍ରିକାଳରେ ସନ୍ଧ୍ୟା କରୁଥାଏ ନିରନ୍ତର ।
ତେଜ ଗୁଣ ତପସ୍ୟାରେ ଆଦିତ୍ୟ ସମାନ
ଅଟଇ ସେ ଦ୍ୱିଜ ମୋର କହିବାରୁ ଘେନ ।
ତା' ପାଦଧୂଳିରେ ଧରା ହୁଅଇ ପବିତ୍ର
ଜୀବତାବସ୍ଥାରେ ମୁକ୍ତ ଅଟେ ତାର ଗାତ୍ର ।
ମୃତ୍ୟୁପରେ ବଇକୁଣ୍ଠ ପୁରକୁ ସେ ଯାଏ
ଯେଉଁ ବିପ୍ର ବିଧିମତେ ସନ୍ଧ୍ୟା କରୁଥାଏ ।
ତାହାର ପରଶ ମାତ୍ରେ ପୁଣ୍ୟ ତୀର୍ଥଗଣ
ପବିତ୍ର ହୁଅନ୍ତି ଏହା ବେଦରେ ପ୍ରମାଣ ।
ଗରୁଡ଼ ପାଶକୁ ସର୍ପ ନ ଯାନ୍ତି ଯେପରି
ତାହାକୁ ନ ଯାନ୍ତି ପାପେ ମହାଭୟ କରି ।
ଆପଣା ଇଚ୍ଛାରେ ଯେଉଁ ଦୁର୍ବୁଦ୍ଧି ବ୍ରାହ୍ମଣ
ଛାଡ଼ିଦିଏ ଦେବପୂଜା ସନ୍ଧ୍ୟା ତର୍ପଣ ।
କାଳେ ଯେବେ ପୂଜା ଶ୍ରାଦ୍ଧକରେ ସେ ଅଧମ
ଗ୍ରହଣ ତା ନ କରନ୍ତି ଦେବ ପିତୃଗଣ ।
ଯେଉଁଲୋକ ଅଟେ ବିଷ୍ଣୁମନ୍ତ୍ରରେ ବିହୀନ
ସେହିଟି ବିଷ ନ ଥିବା ସର୍ପର ସମାନ ।
ଏକାଦଶୀ ଉପବାସ କରୁ ସେ ନ ଥାଇ
ତାକୁ ମଧ୍ୟ ବିଷହୀନ ସର୍ପତୁଲ୍ୟ କହି ।
ଯେଉଁ ବିପ୍ର ଯାଏ ଶୂଦ୍ର ବେବାହ କରି
ଅଥବା ଭ୍ରମଣ କରେ ଶୂଦ୍ରଘର ପ୍ରତି ।
ଅଥବା ଶୂଦ୍ରର ସୂପକାର ହୋଇଥାଏ
ସେ ଅଟଇ ବିଷଶୂନ୍ୟ ସର୍ପର ସଦୃଶ୍ୟେ ।
ଇଷ୍ଟଙ୍କୁ ପୂଜା ନ କରି ଭୁଞ୍ଜଇ ଯେ ଅନ୍ନ
ଅଥବା ବୃଷଳବାହ୍ୱ କଟାଏ ଜୀବନ ।
ଶୂଦ୍ରର ହସ୍ତରୁ ଅନ୍ନ ଭୋଜନ କରଇ
ତାହାକୁ ପୁଚ୍ଛ ବିଷାଣହୀନ ପଶୁ କହି ।
ଶୂଦ୍ରଠାରୁ ପ୍ରତିଗ୍ରହ କରଇ ଯେ ଦ୍ୱିଜ
ଅଥବା ଶୂଦ୍ରର ଯାଗେ ହୁଅଇ ଋତ୍ୱିଜ ।
ଅନ୍ୟ ଗାଁରେ ବା ଲେଖନୀରେ ଉଦର ପୋଷଇ
ସେ ଲୋକକୁ ବିଷହୀନ ସର୍ପ କହି ।

ଯେଉଁ ବିପ୍ର ବେଶ୍ୟା ଅବା ଋତୁସ୍ନାନଠାରୁ
ଅନ୍ନ ଭୋଜନ କରଇ ନୋହିବ କହୁ ଖାରୁ ।
ନ ଅବା ବର୍ଜ୍ଜ୍ୟ କାର୍ଯ୍ୟ କରି ବଞ୍ଚୁଥାଇ
ଜୀଇଥିଲେ ହେଲେ ମଳସ୍ଥାପ୍ୟେ ଅଟେ ସେହି ।
କନ୍ୟାକୁ ବିକ୍ରୟ କରି ଆଣଇ ଯେ ଧନ
ହରିଙ୍କ ନାମ ବିକ୍ରୟ କରେ ଯେବା ପୁଣ ।
ତାହାକୁ ବିଷବିହୀନ ସର୍ପର ସଦୃଶ
ଜାଣିବ ନିଶ୍ଚୟ ଆହେ ନରକୁଳକଣ୍ଠଶ ।
ସୂର୍ଯ୍ୟ ଉଦୟରେ ଯେଉଁ ଦୁର୍ବୋଧ ବ୍ରାହ୍ମଣ
ଭୋଜନ କରଇ ବସି ଦୁଇଥର ଅନ୍ନ ।
ଅଥବା ମତ୍ସ୍ୟ ମାଂସ ଭୋଜନ କରଇ
ତାହାକୁଟି ବିଷହୀନ ସର୍ପ ବୋଲି କହି ।
ଯେଉଁ ବିପ୍ର ଶାଳଗ୍ରାମ ଶିଳା ପୂଜାବିଧି
ନ କରଇ ପଶୁପରି ଅଟେ ସେ ଦୁର୍ବୁଦ୍ଧି ।
ଏରୂପେ ଅଶ୍ୱପତିଙ୍କୁ କହି ମୁନିବର
ପୂଜାଧ୍ୟାନ ଆଦି ଯେ ସାବିତ୍ରୀ ଦେବୀଙ୍କର ।
ବିଶଦ ଭାବରେ ସବୁ ବୁଝାଇ କହିଲେ
ଆଶୀର୍ବାଦ କରି ନିଜ ଭୁବନକୁ ଗଲେ ।
ତାଙ୍କଠାରୁ ଅଶ୍ୱପତି ଉପଦେଶ ପାଇ
ସାବିତ୍ରୀ ଦେବୀଙ୍କୁ ପୂଜାକଲେ ମନଦେଇ ।
ଯଥାସମୟରେ ଦେବୀ ଦରଶନ ଦେଲେ
ଏ ବାହାରେ ରାଜାଙ୍କର ବାଞ୍ଛା ପୂର୍ଣ୍ଣକଲେ ।
ନାରଦ ବୋଇଲେ ସେହି ଧ୍ୟାନ ପୂଜାବିଧି
କିରୂପେ ଅଟଇ ତାହା କହ ତପୋନିଧି ।
ମହାମୁନି ପରାଶର ଯେଉଁ ମନ୍ତ୍ର ଦେଲେ
ତାହାର ସ୍ୱରୂପ ମଧ୍ୟ କହ ଏବେ ଭଲେ ।
କେଉଁ ବିଧାନରେ ଅଶ୍ୱପତି ନରପାଳ
ସମ୍ପାଦନ କଲେ ପୂଜା ବିଷୟ ସକଳ ।
ସନ୍ତୋଷ ହୋଇଣ ଦେବୀ କିବା ବରଦେଲେ
କେତେଦିନେ ତାର ଫଳ ରାଜା ଭୋଗକଲେ ।
ଏହିରୂପେ ପଚାରନ୍ତେ ନାରଦ ମହର୍ଷି
ନାରାୟଣ ମୁନି କଥା ଆରମ୍ଭିଲେ ହସି ।
ବୋଇଲେ ସାବିତ୍ରୀ ପୂଜା ବିଧାନକୁ ଏବେ
କହୁଅଛି ଶୁଣ ଶ୍ରଦ୍ଧା ହେଉଅଛି ଯେବେ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନେ
ଆରମ୍ଭିବ ବ୍ରତ ଅଧିବାସ ତୋଷମନେ ।

ଚତୁର୍ଦ୍ଦଶୀଦିନ ଯତ୍ନେ ବ୍ରତ ଆଚରିବ
ଚଉଦ ପ୍ରକାର ଫଳ ସଂଗ୍ରହ କରିବ ।
ପୁଷ୍ପଧୂପଦୀପ ଆଦି ଉପଚାର ଦେଇ
ନଇବେଦ୍ୟ ଦେବ ସେହି ଫଳ ଆଗେ ଦେଇ
ଚଉଦ ବରଷେ ପୂର୍ଣ୍ଣ ହୁଅଇ ଏ ବ୍ରତ
କହୁଅଛି ଶୁଣ ତାର କ୍ରମ ବିଧିମତ ।
ବସ୍ତ୍ର ଯଜ୍ଞୋପବୀତ ଭୋଜ୍ୟ ଆଦିକରି
ସମର୍ପିବ ଧ୍ୟାନମୂଳମନ୍ତ୍ରକୁ ଉଚ୍ଚାରି ।
ଚୂତପତ୍ର ଫଳଯୁକ୍ତ କଳସ ସ୍ଥାପିବ
ଗଣେଶ ଆଦିତ୍ୟ ଅଗ୍ନି ବିଷ୍ଣୁ ଦୁର୍ଗା ଶିବ ।
ଏମାନଙ୍କୁ ପୂଜାକରି ଇଷ୍ଟ ଦେବତାଙ୍କୁ
ଘଟେ ଆବାହନ କରି ପୂଜିବ ତାହାଙ୍କୁ ।
ସେ ଅନ୍ତରେ ଉଚ୍ଚାରିବ ସାବିତ୍ରୀଙ୍କ ଧ୍ୟାନ
କହୁଅଛି ତାହା ସୁଧି ଶୁଣ ଦେଇ ମନ ।
ତପତ କାଞ୍ଚନ କାନ୍ତି ବ୍ରହ୍ମତେଜୋମୟୀ
ମଧ୍ୟାହ୍ନ ମାର୍ତ୍ତଣ୍ଡ ଶୋଭି ଦେବୀ ମହାମାୟୀ ।
ମନ୍ଦହାସ ପୂର୍ଣ୍ଣମୁଖୀ ରତ୍ନଭୂଷିତା
ବହ୍ନି ଶୁଦ୍ଧ ସୁବସନା ତ୍ରିଜଗତମାତା ।
ଭକତବତ୍ସଳା ସୁଖଦାତ୍ରୀ ମୁକ୍ତିପ୍ରଦା
ଶାନ୍ତରୂପା ମନୋରମା ବିଧାତୃ ପ୍ରମଦା ।
ସର୍ବ ସମ୍ପଦଦାୟିନୀ ସମ୍ପଦ ରୂପିଣୀ
ବେଦ ଅଧିଷ୍ଠାତ୍ରୀ ଦେବୀ ଶାସ୍ତ୍ର ସ୍ୱରୂପିଣୀ ।
ବେଦ ବୀଜ ବିଧାୟିନୀ ଦେବତା ଜନନୀ
ନମସ୍ତେ ସାବିତ୍ରୀ ଦେବୀ ଘେନ ମୋ ଦୟିନୀ ।
ଏହିରୂପେ ଧ୍ୟାନକରି ପୁଷ୍ପ ଘେନି କରେ
ଖୋପିବ ନେଇଣ ତାହା ନିଜ ମସ୍ତକରେ ।
ପୁଣି ଆଉ ଥରେ ସେହି ଧ୍ୟାନକୁ ପଢ଼ିବ
ସାବିତ୍ରୀଙ୍କୁ ଘଟେ ଆବାହନ ଯେ କରିବ ।
କ୍ରମେ ଷୋଳ ଉପଚାର ବେଦମନ୍ତ୍ରେ ଦେଇ
ପୂଜା କରିବ ଆନନ୍ଦେ ଭକ୍ତିମନ୍ତ ହୋଇ ।
ସ୍ତୁତିପାଠ ଅନ୍ତେ ପୁଣି ପ୍ରଣାମ କରିବ
ତେବେ ଆପଣାର ଇଷ୍ଟଫଳକୁ ପାଇବ ।
ଆସନ ସ୍ୱାଗତ ପାଦ୍ୟ ଅର୍ଘ୍ୟ ସ୍ନାନଜଳ
ଗନ୍ଧପୁଷ୍ପ ଧୂପଦୀପ ନୈବେଦ୍ୟ ତାମ୍ବୁଳ ।
ସୁଶୀତଳ ନୀର ପୁଣି ବସନ ଭୂଷଣ
ଏହାପରେ ମନୋହର ଦିବ୍ୟ ଆଚମନ ।

ଉତ୍ତମ ତଳପ ଏହିପରି ଉପସ୍କର
କ୍ରମେ କ୍ରମେ ସମର୍ପିବ ଷୋଡ଼ଶ ପ୍ରକାର ।
ଦେବତା ବସିବାପାଇଁ ଆସନ ନିର୍ମାଣ
କରାଇବ ଦାରୁମୟ ସ୍ୱର୍ଣ୍ଣ ଅବା ପୁଣ ।
ନୋହିଲେ ବା ରୌପ୍ୟତାମ୍ରେ କରିବ ବିସ୍ତର
କହୁଅଛି ଆହେ ମୂଳ ଶୁଣ ହେତୁକରି ।
ସେ ଅନ୍ତରେ ପାଦ୍ୟ ଜଳପାତ୍ର ହସ୍ତେ ଧରି
ବୋଲିବ ପବିତ୍ର ତୀର୍ଥ ପୂର୍ଣ୍ୟବ୍ରତ ବାରି ।
ଭକ୍ତିଭରେ ନିବେଦନ କରୁଅଛି ମୁହିଁ
ପାଦ୍ୟରୂପେ ପ୍ରତିଗ୍ରହ କର ମହାମାୟୀ ।
ଦୁର୍ବା ପୁଷ୍ପ ଅକ୍ଷତରେ ଯୁକ୍ତ ଅର୍ଘ୍ୟ ବାରି
ମିଶ୍ରିତ ହୋଇଛୁ ଶଙ୍ଖ ସଲିଳ ଆକାର ।
ପ୍ରଜାଅଙ୍ଗ ଅଟେ ତାହା ସେନ ଦେବ ମାତ
ନିବେଦନ କରୁଛୁ ମୁଁ ହୋଇ ଅତିପ୍ରୀତ ।
ସୁଗନ୍ଧ ସୁନ୍ଦର ଧାର୍ଣ୍ଣୀ ତିଳଜାତ ତୈଳ
ଦେହ ସୁବାସିତ କରଣରେ ଯାହା ମୂଳ ।
ନିବେଦନ କରୁଅଛି ଭକ୍ତିଭରେ ତାହା
ଗ୍ରହଣ କର ଗୋ ମାତ ବଢ଼ାଇ ଉତ୍ସାହା ।
ମଳୟ ସମ୍ଭବ ଗନ୍ଧ ଦ୍ରବ୍ୟରେ ଉତ୍ତମ
ଦେହ ଶୋଭା ବୃଦ୍ଧିକାରୀ ଚନ୍ଦନ ଯା ନାମ ।
ଦେହ ଆଭରଣ ସର୍ବ ଶୋଭା ବର୍ଦ୍ଧନ
କାର୍ପାସ ଜନିତ ଦ୍ରବ୍ୟ ଅମୂଲ୍ୟ ବସନ ।
ପ୍ରତିଗ୍ରହ କରି ମାତ ପରସନ୍ନ ହୁଅ
ମୋଠାରେ ସର୍ବଦା ଦୟା ସ୍ନେହ ରଖିଥାଅ ।
କାଞ୍ଚନ ନିର୍ମିତ ରମ୍ୟ ଆଭରଣଗଣ
ସୁନ୍ଦର ଶରୀର ଦ୍ରବ୍ୟ ସୌନ୍ଦର୍ଯ୍ୟ କାରଣ ।
ତାହାକୁ ଗ୍ରହଣ କର ଆନନ୍ଦ ମନରେ
ସମର୍ପଣ କରୁଅଛି ତୁମ୍ଭ ଶ୍ରୀମୁଖରେ ।
ନାନା ପୁଷ୍ପମୟ ଗନ୍ଧ ଚନ୍ଦନ ସଂଯୁତ
ପ୍ରୀତିକର କାରଣ ମାଲ୍ୟ ସେନ ଅମ୍ବମାତ ।
ସର୍ବମଙ୍ଗଳ ସ୍ୱରୂପ ମଙ୍ଗଳ କାରଣ
ଗ୍ରହଣ କରନ୍ତୁ ଦେବ ସୁଗନ୍ଧ ଚନ୍ଦନ ।
ନିର୍ମଳ ସୁରମ୍ୟ ପୁଣି ପ୍ରୀତିପ୍ରଦାୟକ
ଦୟାବନ୍ତି ସେନ ଦେବୀ ଆଚମନୀୟକ ।
ରତ୍ନଧାରେ ନିର୍ମିତ ସେ ଗନ୍ଧ ଦ୍ରବ୍ୟ ଯୁକ୍ତ
ସୁଖଦ ତଳପ ସେନ କରୁଛି ଅର୍ପିତ ।

ନାନାବୃକ୍ଷ ସମୁତ୍ପନ୍ନ ନାନା ରୂପବନ୍ତ
ଫଳଦ ଫଳ ଗ୍ରହଣ କର ଦେବମାତ ।
ନିର୍ମଳ ସୁଗନ୍ଧ ଜଳ ଶୋଭା ବୃଦ୍ଧିକର
ସେନ ଦେବ ହସ୍ତରେ ସୁଗମ୍ୟ ସିନ୍ଦୂର ।
ପୁଣ୍ୟସୂତ୍ର ନିର୍ମିତ ଶୁଦ୍ଧଗ୍ରନ୍ଥି ଯୁକ୍ତ
ଆବର ଗ୍ରହଣ କର ସୁଯଜ୍ଞୋପବୀତ ।
ଏହିରୂପେ ବର୍ଣ୍ଣପତି ଉପଚାରମାନ
ସମର୍ପି କର ମୂଳମନ୍ତ୍ର ଉଚ୍ଚାରଣ ।
ସେ ଅନ୍ତରେ ସ୍ତୋତ୍ର ପଢ଼ି ପ୍ରଣାମ କରିବ
ବିପ୍ରଙ୍କୁ ଡକାଇ ଧନ ରତ୍ନ ବସ୍ତ୍ର ଦେବ ।
ଲକ୍ଷ୍ମୀମାୟା କାମପୂର୍ବ ସାବିତ୍ରୀ ଶବ୍ଦର
ଚତୁର୍ଥ୍ୟନ୍ତେ ସ୍ୱାହା ଏହି ଦୁଇଟି ଅକ୍ଷର ।
ଏହାକୁ ସେ ଅଷ୍ଟାକ୍ଷର ମନ୍ତ୍ର ବୋଲି କହି ।
କାମନା ପୂରଣକାରୀ ଅଟଇଟି ଏହି ।
ତନେ ଗୋଲୋକରେ ପ୍ରଜାପତିଙ୍କୁ ଡକାଇ
ସାବିତ୍ରୀଙ୍କୁ ଦେଲେ ତାଙ୍କୁ ଗଧା ପ୍ରାଣସାଇଁ ।
ସେକାଳେ ତାଙ୍କ ସଙ୍ଗରେ ସାବିତ୍ରୀ ସୁନ୍ଦରୀ
ନ ଗଲେ ବ୍ରହ୍ମଲୋକକୁ ଅଭିମାନ କରି ।
ସେ ସକଳୁଁ ଶ୍ରୀକୃଷ୍ଣଙ୍କ ଆଜ୍ଞା ସେନ ଶିରେ
ସ୍ତୁତି କଲେ ସାବିତ୍ରୀଙ୍କୁ ପ୍ରଜାପତି ଧୀରେ ।
ବୋଇଲେ ଗୋ ନାରାୟଣୀ ଦେବୀ ସନାତନ
ପରସନ୍ନ ହୁଅ ସେନ ମୋହର ବନ୍ଦି ମା ।
ଶ୍ରୀକୃଷ୍ଣଙ୍କଠାରୁ ତୁମ୍ଭେ ହୋଇଅଛ ଜାତ
କେ ଅବା ଜାଣି ପାରିବ ତୁମ୍ଭ ଆଦିଅନ୍ତ ।
ତେଜସ୍ୱରୂପ ଆନନ୍ଦ ରୂପରେଟି ତୁମ୍ଭେ
ପ୍ରକାଶ ହୋଇଛ ଲୋକେ ଜାଣିଅଛୁଁ ଆମ୍ଭେ ।
ଆବର ବ୍ରାହ୍ମଣଙ୍କର ଜାତି ସ୍ୱରୂପରେ
ଜନମିଛ ତେଣୁ ଏବେ ହୁଅ ମୋହଠାରେ ।
ନିତ୍ୟ ଆନନ୍ଦରୂପିଣୀ ନିତ୍ୟପ୍ରିୟା ଦେବୀ
ପବିତ୍ର ହୁଅଇ ଲୋକ ତୁମ୍ଭପାଦ ସେବି ।
ସକଳ ମଙ୍ଗଳମୟ ଅଟ ତୁମ୍ଭେ ସେଣୁ
ମୋହର ମଙ୍ଗଳ କର ଦୟାକରି ତେଣୁ ।
ସର୍ବସ୍ୱରୂପିଣୀ ବରପ୍ରଦକର ମନ୍ତ୍ରସାର
ପ୍ରସନ୍ନ ହୋଇଣ ଦୟାକର ମୋହଠାର ।
ବିପ୍ରଜନଙ୍କର ପାପ ତୃଣ ଦହନରେ
ଜ୍ୱଳ ଅନଳ ସମ ନ ଅଟ ସବୁଠାରେ ।

ପ୍ରାର୍ଥନା କରୁଛୁ ମୂର୍ତ୍ତି ତୁମ୍ଭପାଦେ ପଡ଼
କୃପାକରି ମୋର କନ୍ତୁଷକୁ ଦିଅ ଛାଡ଼ ।
ଯେତେ ମୋର ଦୋଷଥିବ ଅପାର ଗୁଣରେ
କ୍ଷମାକର ମାଗୁଅଛୁ ମୂର୍ତ୍ତି ବିନୟରେ ।
ସର୍ବସିଦ୍ଧି ଦାତ୍ରୀ ମାତ କରୁଣା ଦାୟିମା
ତେଣୁ ଯେ ସାବିତ୍ରୀ ନାମ କହୁଛ ମେଦିନୀ ।
ଏମନ୍ତ ଭାବେ ପ୍ରାର୍ଥନା କରି ଦେବବର
ମଉନ ହୋଇ ବସିଲେ ଅମର ସଙ୍କର ।
ତା ଦେଖି ସାବିତ୍ରୀ ଦେବୀ ମନେ ତୋଷ ହୋଇ
ସ୍ୱୀକାର କଲେ ତାଙ୍କ ସଙ୍ଗେ ଯିବା ପାଇଁ ।
ତାହାପରେ ବିମାନରେ ବସି ଦୁଇଜଣ
ପ୍ରବେଶ ହୋଇଲେ ବ୍ରହ୍ମଲୋକରେ ଯାଇଣ ।
ରାଜା ଅଶ୍ୱପତି ଏହି ସ୍ତବ ପାଠ କରି
ସାବିତ୍ରୀଙ୍କୁ ଦରଶନ କଲେ ଦଣ୍ଡଧାରୀ ।
ମନୋବାଞ୍ଛା ତାହାଙ୍କର ପୂରଣ କରିଲେ
ଯାହା ବାଞ୍ଛିଲେ ଅଚିରେ ତାହା ସେ ପାଇଲେ
ଏହି ସାବିତ୍ରୀ ସ୍ତୋତ୍ରକୁ ପଢ଼ିବ ଯେ ଜନ
ବେଦ ପାଠକର ଫଳ ପାଇବ ବଦନ ।
ଆଉର ଧନ ସମ୍ପତ୍ତି ବର୍ଦ୍ଧିତ ହୋଇବ
କ୍ଷେତ୍ରମୋହନ କହଇ ତାଙ୍କ ପାଦ ସେବ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀ ଉପାଖ୍ୟାନ ସହିତ ସାବିତ୍ରୀ ସ୍ତୋତ୍ର ବର୍ଣ୍ଣନେ ନାମ ଚତୁର୍ବିଂଶୋଽଧ୍ୟାୟଃ ।**

—ঃ—*—ঃ—

## ପଞ୍ଚବିଂଶ ଅଧ୍ୟାୟ

## ଯମଙ୍କ ସହ ସାବିତ୍ରୀଙ୍କର କଥୋପକଥନ

ନାରାୟଣ ବୋଇଲେ ହେ ଶୁଣ ତପୋଧନ
କହିବି ବିସ୍ତାରି ସବୁ ଶୁଣ ଦେଇ ମନ ।
ଏହିରୂପେ ସାବିତ୍ରୀଙ୍କୁ ବିଧିମତେ ପୂଜା
କଲେ ମହାଆନନ୍ଦରେ ଅଶ୍ୱପତି ରାଜା ।
ସେ ସକାଶୁଁ ତୋଷ ହୋଇ ତ୍ରୈଲୋକ୍ୟଜନନୀ
ଉପସ୍ଥିତ ହେଲେ ତାଙ୍କ ଆଗେ ଆସି ପୁଣି ।
ସହସ୍ର ଆଦିତ୍ୟ ପରି ବିରାଜଇ ପ୍ରଭା
ସୁନ୍ଦର ପଣରେ ଆଉ କ ଉପମା ଦେବତା
ସସ୍ମିତ ମୁଖରେ ଦେବୀ ରାଜାଙ୍କୁ ଅନାଇ
ବୋଇଲେ ଜାଣିଲି ତୁମ୍ଭ ମନକଥା ମୁହିଁ ।
ତବ ରାଣୀ ଇଚ୍ଛା କରିଛନ୍ତି କନ୍ୟାପାଇଁ
ତୁମ୍ଭେ ପୁତ୍ର ଚାହୁଁ ଅଛ ଆହେ ନରସାଇଁ ।
ଦୁହିଙ୍କର ମନୋରଥ ସଫଳ ହୋଇବ
ସୁନ୍ଦରୀ କନ୍ୟା ଗୋଟିଏ ଆଗେ ଜନ୍ମ ହେବ
ତେଣିଅନ୍ତେ ଏକ ପୁତ୍ର ହୋଇବ ଉତ୍ପନ୍ନ
ତୁମ୍ଭର କୁଳକୁ ସେହି କରିବେ ମଣ୍ଡନ
ଏହିରୂପେ କହି ଦେବୀ ବ୍ରହ୍ମଲୋକେ ଗଲେ
ଅଶ୍ୱପତି ଆପଣାର ଭୁବନେ ମିଳିଲେ ।
କେତେଦିନ ଅନ୍ତେ ଜାତହେଲା କନ୍ୟାଟିଏ
ସାକ୍ଷାତରେ ଦିଶଇ ସେ କମଳା ପରାଏ ।
ସାବିତ୍ରୀଙ୍କୁ ଆରାଧନା କରିବାରୁ ନୃପ
ଦେବକନ୍ୟା ପରି ହୋଇଥିଲା ତାର ରୂପ ।
ସାବିତ୍ରୀ ବୋଲିଣ ରାଜା ତାର ନାମ ଦେଲେ
ଅତ୍ୟନ୍ତ ଆଦର ସ୍ନେହେ ଯତ୍ନରେ ପାଳିଲେ ।
କ୍ରମେ କ୍ରମେ ସେ କନ୍ୟାର ବାଳକାଳ ଗଲା
ଦିନୁଦିନ ଚନ୍ଦ୍ରକଳା ପ୍ରାୟେ ସେ ବଢ଼ିଲା ।
ରୂପ ଯଉବନ ତେଜେ ପୂର୍ଣ୍ଣ କଳେବର
ଫୁଟିଲା କୁସୁମ ତୁଲ୍ୟ ଅତି ମନୋହର ।
ବିବାହ ସମୟ ଆସି ହୁଅନ୍ତେ ପ୍ରବେଶ
ବର ଖୋଜାଇଲେ ଅଶ୍ୱପତି ନରଈଶ ।
ମାତ୍ର ଅନୁରୂପ ବର କାହିଁ ନ ପାଇଲେ
ଯେ ଯେଣ କନ୍ୟାକୁ ଡାକି ଏମନ୍ତ କହିଲେ ।

ବୋଇଲେ ଗୋ ପୁତ୍ରି କୃଷ୍ଣ ଅନୁରୂପେ ମୂର୍ତ୍ତି
ବରଟିଏ ଖୋଜ ଖୋଜ ନ ପାଇଲି କାହିଁ ।
ଏ ସକଳ ଶୁ ବୋଲୁଅଛୁ ଆପଣା ଇଚ୍ଛାରେ
ପତି ଅନ୍ୱେଷଣ କର ଯାଇ ତୁମ୍ଭେ ଥରେ ।
ପିତାଙ୍କ ଆଦେଶ ପାଇ ସାବିତ୍ରୀ ସୁନ୍ଦରୀ
ବୃଦ୍ଧମନ୍ତ୍ରୀ ବ୍ରାହ୍ମଣଙ୍କୁ ସଙ୍ଗତରେ ଧରି ।
ବୁଲି ବୁଲି ବନେ ସତ୍ୟବାନଙ୍କୁ ଦେଖିଲେ
ମନେ ମନେ ପତିରୂପେ ବରଣ ସେ କଲେ ।
ପିତାଙ୍କ ପାଖରେ ଆସି ଜଣାଇଲେ ତାହା
ଶୁଣି ଅତି ଆନନ୍ଦରେ ନରକୁଳ ନାହା ।
ସମ୍ଭାର ଅଣାଇ ସତ୍ୟବାନଙ୍କୁ ଡକାଇ
ତାଙ୍କ ସଙ୍ଗେ ସାବିତ୍ରୀଙ୍କୁ ବିବାହ ଦେଲାଇ ।
ଝିଅ ଜୁଆଇଁଙ୍କୁ ନାନାରତ୍ନରେ ଭୂଷିତ
କରି ପୁଣି ଯଉତୁକ ଦେଲେ ସେ ବହୁତ ।
ଭାରଯାଙ୍କୁ ସଙ୍ଗେ ଘେନି ସତ୍ୟବାନ ବୀର
ପ୍ରବେଶ ହୋଇଲେ ଯାଇ ଆପଣା ମନ୍ଦିର ।
ତାଙ୍କ ତୁଲେ କ୍ରୀଡ଼ାକରି ଗୋଟିଏ ବରଷ
ମୁହୂର୍ତ୍ତେ ପରାଏ ତହୁଁ କରିଦେଲେ ଶେଷ ।
ଦିନକରେ ପିତାଙ୍କର ଆଜ୍ଞା ଶିରେ ବହି
ବନକୁ ଗଲେ ସେ କାଷ୍ଠ ଆଣିବାର ପାଇଁ ।
ବନଶୋଭା ଦେଖିବାକୁ ସାବିତ୍ରୀ ସୁନ୍ଦରୀ
ତାହାଙ୍କର ପଛେ ପଛେ ଗଲେ ଅନୁସରି ।
ବୃକ୍ଷପରେ ଚଢି କାଷ୍ଠ ହାଣିବା କାଳରେ
ଦୈବଯୋଗେ ସତ୍ୟବାନ ପଡ଼ିଲେ ତଳରେ ।
କଠିନ ଆଘାତ ପାଇ ତାହାଙ୍କ ଜୀବନ
ଶରୀରକୁ ଛାଡ଼ି ଉଡ଼ିଗଲା ତତକ୍ଷଣ ।
ସେ କାଳକୁ ଯମରାଜ ସେହିଠାକୁ ଆସି ।
ସତ୍ୟବାନ ଜୀବନକୁ ଧଇଲେ ଆକର୍ଷି ।
ଦକ୍ଷିଣ ଦିଗକୁ ମୁଖକରି ଚାଲିଗଲେ
ତା ଦେଖି ସାବିତ୍ରୀ ଦେବୀ ଆଶ୍ଚର୍ଯ୍ୟ ହୋଇଲେ
ଯମଙ୍କ ହସ୍ତରେ ପତି ଜୀବ ଥିବା ଜାଣି
ତାଙ୍କ ପଛେ ଗୋଡ଼ାଇଣ ଗଲେ ସେହିକ୍ଷଣି ।
କେତେଦୂର ଗଲା ପରେ ସଂଯମନୀ ପତି
ପଛକୁ ଚାହିଁ ଦେଖିଲେ ଆସୁଛନ୍ତି ସତୀ ।
ସେ ତ ସାଧୁମାନଙ୍କର ଅତ୍ୟନ୍ତ ପ୍ରବର
କହିଲେ ତାହାଙ୍କୁ ଚାହିଁ ସୁମଧୁର ଗିର ।

ବୋଇଲେ ଗୋ ପତିବ୍ରତା ସତୀ ତୁ ଭାମିନୀ
ମୋ ହସ୍ତରେ କର୍ମ ଆୟୁଅନ୍ତ ହୋଇ କ୍ଷୀଣ ।
ମନୁଷ୍ୟ ଶରୀର କରିଅଛ ତ ଧାରଣ
କିରୂପେ ଯମଲୋକକୁ କରିବ ଗମନ ।
ଯଦି ପତିଙ୍କର ସଙ୍ଗ ଇଚ୍ଛା ହେଉଅଛୁ
ଦେହ ତ୍ୟାଗକର ଏହିକ୍ଷଣି ମୁଁ ବୋଲୁଛୁ ।
ପଞ୍ଚଭୂତ ଶରୀରକୁ ଘେନି କେହିଁ ନର
ଯିବାକୁ ସମର୍ଥ ହୋଇ ନାହିଁ ମନେ କର ।
ତୁମ୍ଭ ପତିଙ୍କର କାଳ ହୋଇବାରୁ ପୂର୍ଣ୍ଣ
ଭୋଗ କରିବାକୁ ନିଜ କର୍ମଫଳମାନ ।
ଗମନ କରୁଅଛନ୍ତି ଆମ୍ଭର ଗୃହକୁ
ଫେରିଯାଅ ଏବେ ତୁମ୍ଭେ ଆପଣା ବାସକୁ ।
ଆପଣା କର୍ମରେ ଜନ୍ତୁ ଜନମ ହୁଅଇ
ପୁଣି କାଳ କବଳରେ ପଡ଼ି ନାଶଯାଇ ।
ଏ ବାହାରେ ଦୁଃଖ ସୁଖ ଭୟ ଶୋକଆଦି
ପୂର୍ବଜନ୍ମ କର୍ମ ଭୋଗ କରାଏ ସମ୍ପଦି ।
କର୍ମବଳେ ଇନ୍ଦ୍ର ହୋଇ ପାରେ ଏକା ନର
ଆବର ହୋଇ ପାରଇ ବ୍ରହ୍ମାଙ୍କ କୁମର ।
ସ୍ୱକର୍ମ ବଳରେ ହୁଏ ଶ୍ରୀହରିଙ୍କ ଦାସ
ଜନ୍ମ ମୃତ୍ୟୁ ଜରା ବ୍ୟାଧି ନ ଯାନ୍ତି ତା ପାଶ ।
ସ୍ୱକର୍ମରେ ସବୁ ସିଦ୍ଧି ଲାଭ ହୋଇଥାଏ
ଅମର ପଦବୀ ମଧ୍ୟ ପରାପତ ହୁଏ ।
ବିଷ୍ଣୁଙ୍କ ସାଲୋକ୍ୟ ଆଦି ଚତୁଷ୍ଟୟ ସିଦ୍ଧି
ଆପଣା କର୍ମରେ ହୋଇଥାଏ ଯଥାବିଧି ।
ବ୍ରାହ୍ମଣତ୍ୱ ମଧ୍ୟ ନିଜ କର୍ମରେ ହୁଅଇ
ଏ ବାହାରେ ଅଲଭ୍ୟରେ ମୁକତି ମିଳଇ ।
ସୁରତ୍ୱ ବା ମନୁଷ୍ୟତ୍ୱ ରାଜତ୍ୱ ସେପରି
ଲଭଇ ମାନବ ନିଜ କର୍ମ ଅନୁସରି ।
ମୁନି ଋଷିଗଣ ଅବା ତପସ୍ୱୀତ୍ୱ ପୁଣି
କ୍ଷତ୍ରିୟ ବୈଶ୍ୟତ୍ୱ କର୍ମ ଦେଇଥାଏ ଆଣି ।
କର୍ମରେ ଶୂଦ୍ର ଅନ୍ତ୍ୟଜ ହୁଅଇ ମାନବ
କର୍ମବଳେ ପୁଣି ମ୍ଳେଚ୍ଛ ଜନ୍ମର ସମ୍ଭବ ।
କର୍ମରେ ଜଙ୍ଗମ ପୁଣି ସ୍ଥାବର ରୂପରେ
ଜନମ ହୁଅଇ ଜୀବ ସଂସାର ମଧ୍ୟରେ
ଶୈଳତ୍ୱ ବୃକ୍ଷତ୍ୱ ନିଜ କର୍ମବଳେ ହୁଏ
ପଶୁ ପକ୍ଷୀ ଜୀବକୁହିଁ କର୍ମ ଜନମାଏ ।

କ୍ଷୁଦ୍ର ଜନ୍ତୁ ହୁଏ ଲୋକ ନିଜ କର୍ମ ଯୋଗେ
ଆଉର ଆଶ୍ରୟ କରିଥାଏ କୃମିଯୋନି ।
କର୍ମ ଯୋଗ୍ୟ ସର୍ପ ଜନ୍ମ ଲଭନ୍ତି ମନୁଷ୍ୟେ
ଗନ୍ଧର୍ବ ଯୋନିରେ ଜାତ ହୁଅନ୍ତି କର୍ମବଶେ ।
ରାକ୍ଷସ କିନ୍ନର ଯକ୍ଷ ହୁଅନ୍ତି ସେପରି
ଆଉର ଭୂତ କୁଷ୍ମାଣ୍ଡ ସ୍ୱରୂପକୁ ଧରି ।
ପ୍ରେତ ବେତାଳ ବଂଶରେ ହୁଅନ୍ତି ମଧ୍ୟ ଜାତ
କେତେକ ହୁଅନ୍ତି ନିଜ କର୍ମଯୋଗେ ଭୂତ ।
ରାକ୍ଷସ ଦାନବ ଦୈତ୍ୟ ଅସୁର ରୂପରେ
କେଉଁମାନେ ଜାତ ହୋଇ ବୁଲନ୍ତି ମହୀରେ ।
ପାତକୀ ହୁଅଇ ଲୋକ ନିଜ କର୍ମଫଳେ
ପୁଣି ଧର୍ମ ଉପାର୍ଜନ କରଇ ସେ ହେଳେ ।
ଅପୁତ୍ରିକ ହୁଏ କେବା ପୁତ୍ରବନ୍ତ ହୁଏ
ଅନ୍ଧ ବଧିର ହୋଇ କେ କଷ୍ଟ ଭୋଗୁଥାଏ ।
ବିକଳାଙ୍ଗ ହୁଏ କେହି ହୁଅଇ ସୁନ୍ଦର
ଭୋଗହୀନ ପୁଣି ଭୋଗୀ ହୁଏ କେଉଁନର ।
କର୍ମଯୋଗେ ନରକରେ ପଡ଼ଇ କେ ଯାଇ
କେହି ଅବା ସୁଖଭୋଗ କରେ ସ୍ୱର୍ଗେ ଥାଇ ।
ଚନ୍ଦ୍ରଲୋକ ସୂର୍ଯ୍ୟଲୋକ ମିଳଇ କାହାକୁ
କେହି ଗତି କରିଥାଏ ଅନଳ ଲୋକକୁ ।
ଚନ୍ଦ୍ରଲୋକ ବାୟୁଲୋକ କର୍ମବଶେ ମିଳେ
ବରୁଣ ଲୋକରେ କେବା ରହେ ସବୁକାଳେ ।
କର୍ମରେ କୁବେରଲୋକେ ଯାଏ କେ ଆନନ୍ଦେ
କେହି ଅବା ଶିବଲୋକେ ହରପାଦେ ବନ୍ଦେ ।

ହୁଅଇ କାହାର ଧ୍ରୁବଲୋକରେ ନିବାସ
କେ ରହେ ନକ୍ଷତ୍ରଲୋକେ ହୋଇଣ ହରଷ ।
ତପବଳେ ସତ୍ୟଲୋକେ ଜନଲୋକେ ଅବା
ପୁଣି ତପ ମହାଲୋକେ ଲଭଇ କେ ସେବା ।
କେ ଯାଇ ବସଇ ସୁଖେ ବ୍ରହ୍ମାଙ୍କ ଲୋକରେ
ନିଜ କର୍ମଗୁଣେ କେହୁ ରହଇ ପାତାଳେ ।
କେ ଗମଇ ତଳାତଳେ କେହୁ ରସାତଳ ।
କର୍ମଗୁଣେ ଲାଭ ହୁଏ କାର ସୁତଳ ।
ପବିତ୍ର ଭାରତଭୂମି ମଧ୍ୟରେ କେ ଜନ
ଜନ୍ମ ହୋଇ ଭୋଗ କରେ ନାନାସୁଖମାନ ।
ବୈକୁଣ୍ଠ ଗୋଲୋକ ଅବା କାହାର ଭାଗ୍ୟରେ
ଘଟିଥାଏ ଆପଣାର କରମ ଯୋଗରେ ।
କର୍ମରେଟି ଲୋକ ଚିରଆୟୁଷ ଲଭଇ
ଅଥବା ଅଳ୍ପ ଆୟୁଷ ହୋଇଣ ମରଇ ।
କର୍ମରେ କୋଟିଏ କଳ୍ପ କାହାର ଆୟୁଷ
ହୁଅଇ ଅଳପକାଳେ କେବା ପୁଣି ନାଶ ।
କର୍ମରେ ସୁ ଦୀର୍ଘାୟୁଷ ଲଭଇ କେ ଜନ
କେହି ଅବା ରୋଗେ ଥାଇ ହୁଏ ଜୀବହୀନ ।
ଏହିପରି କର୍ମତତ୍ତ୍ୱ ଜାଣ ଗୋ ସୁନ୍ଦରୀ
ଶୁଣିଲ ତ ସବୁ କଥା ଆଦ୍ୟପ୍ରାନ୍ତ କରି ।
ଏବେ ଯାଅ ସୁଖେ ନିଜ ଭବନକୁ ଯାଅ
ପତିଙ୍କ ଜୀବନ ଆଶା ମନରେ ନ ଥୁଅ ।
ଏହିରୂପେ କହି ଯମ ମଉନ ହୋଇଲେ
ଅଧମ କ୍ଷେତ୍ରମୋହନ ଭାବ ଗୀତେ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀ ଓ ଯମଙ୍କର କଥୋପ
କଥନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।

## ଷଡ଼ବିଂଶ ଅଧ୍ୟାୟ

### ଯମପତିଙ୍କୁ ସାବିତ୍ରୀଙ୍କର ପ୍ରଶ୍ନ

ସାବିତ୍ରୀ ସୁନ୍ଦରୀ ଶୁଣି ଯମଙ୍କର ଗିର
ଶିରେ କରଯୋଡ଼ି ତାଙ୍କୁ ଦେଲେକ ଉତ୍ତର ।
କୁହ ଆହେ ଧର୍ମରାଜ ଏ ନର ଲୋକରେ
କେଉଁ କର୍ମ କଲେ ମୁକ୍ତ ହୋଇଥାନ୍ତି ନରେ ।

ଆଉର ଶୁଭ କରମ କାହାକୁ କହନ୍ତି
ଅଶୁଭ କରମ କଏ କୁହ ଯମପତି ।
କେଉଁ କର୍ମ କରି ସାଧୁ ଲଭନ୍ତି ମୁକତି
କୁହନ୍ତୁ ଅଶୁଭକର୍ମ ଅଟଇ କେମନ୍ତ ।

କେମନ୍ତ ପ୍ରକାରେ କର୍ମଫଳ ଭୋଗେ ନର
ନିର୍ଲିପ୍ତ ପ୍ରବୃତ୍ତ ପୁଣି କେ ଅଟେ ସଂସାର ।
ଦେହ ବୋଲନ୍ତି କାହାକୁ ଦେହୀ କେ ଅଟଇ
ସଂସାର କର୍ମରେ ସଦା କେହୁ ଲିପ୍ତ ଥାଇ ।
କାହାର ନାମ ଅଟଇ ଜ୍ଞାନବୁଦ୍ଧି ମନ
ପ୍ରାଣ ବୋଲନ୍ତି କାହାକୁ ଜ୍ଞାନବନ୍ତ ଜନ ।
ଇନ୍ଦ୍ରିୟ ବୋଲଣ ମର୍ତ୍ତ୍ୟେ ଅଟଇ କେ ଖ୍ୟାତ
ତାହାର ଲକ୍ଷଣ ପୁଣି ଅଟଇ କେମନ୍ତ ।
ସେ ଇନ୍ଦ୍ରିୟ ମାନଙ୍କର ପ୍ରଭୁ କେ ଅଟଇ ।
ଭୋକ୍ତା ଭୋଜୟିତା ବୋଲି କାହାକୁ ଯେ କହି
ଜୀବ ପରମ ବୋଲଣ କହନ୍ତି କାହାରେ
ଏହା ବିସ୍ତାର କରଣ କୁହ ମୋ ଆଗରେ ।
ତବ ଶ୍ରୀମୁଖରୁ ଏହା କରିଲେ ଶ୍ରବଣ
ସକଳ ସନ୍ଦେହ ମନୁଁ ହୋଇବ ଖଣ୍ଡନ ।
ସାବିତ୍ରୀଙ୍କଠାରୁ ଏହା ଶୁଣି ଯମପତି
କହି ଆରମ୍ଭିଲେ ମନେ ହୋଇ ତୋଷମତି ।
ବୋଇଲେ ପୁଚ୍ଛିଲ ଯାହା ସତୀଙ୍କ ଅଗ୍ରଣୀ
କହୁଅଛୁ ଗୋଟି ଗୋଟି ଶୁଣ ହୋଇ ତୁନି ।
ବେଦ ପ୍ରତିଷ୍ଠିତ ଅଟେ ଯେଉଁ କର୍ମମାନ
ତାହାକୁ ମଙ୍ଗଳ କୃତ୍ୟ ବୋଲନ୍ତି ବିଦ୍ୱାନ ।
ଆଉର ଅଟଇ ଯେତୁ ଲୋକ ହିତକର
ସକଳ ଶୁଭ କର୍ମରେ ଅଟଇ ସେ ସାର ।
ଅବୈଦିକ କର୍ମ ଯାହା ଅଶୁଭଟି ସେହି
ତେମନ୍ତ କରମେ ଫଳ ପ୍ରାପତ ନୁହଇ ।
କାରଣ ସଙ୍କଳ୍ପହୀନ ଶ୍ରୀହରି ସେବନ
ସମୂଳେ କର୍ମକୁ ନାଶ କରଇ ସେ ଜାଣ ।
ବିଷ୍ଣୁଭକ୍ତି ଦାନ ସେହି କରଇ ଅନ୍ତରେ
ତାହାର ତୁଳନା ଆଉ ନାହିଁ ଜଗତରେ ।
ବିଷ୍ଣୁଭକ୍ତ ଯେଉଁଲୋକ ସେ ଅଟେ ମୁକତ
ଏରୂପେ ହୋଇଛି ବେଦ ଶାସ୍ତ୍ରେ ବ୍ୟକତ ।
ଜନ୍ମ ମୃତ୍ୟୁ ଜରା ବ୍ୟାଧି ଶୋକ ଭୟ କେହି
ତାହାଠାକୁ କେବେ ଆସି ପାରନ୍ତିଟି ନାହିଁ ।
ଶୁଣ ଗୋ ସାଧ୍ୱୀ ଏବେ ସ୍ଥିରକରି ଚିତ୍ତ
ମୁକତି ହୋଇଛି ଦୁଇପ୍ରକାରେ ବିହିତ ।
ନିର୍ବାଣକାରିଣୀ ହରି ଭକତିଦାୟିନୀ
ଏହିପରି ସେ ଦୁଇର ନାମ ଅଟେ ପୁଣି ।
ନିର୍ବାଣ ଯେ ଗତିରେ ଜୀବ ବ୍ରହ୍ମେ ହୁଅ ଲୀନ
ହରିଭକ୍ତ କରେ ସଦା ବିଷ୍ଣୁଙ୍କୁ ସେବନ ।
ବୈଷ୍ଣବମାନେ ହରି ଭକତି ଲୋଡ଼ନ୍ତି
ଅନ୍ୟମାନଙ୍କର ଇଚ୍ଛା ନିର୍ବାଣ ମୁକତି ।
ଶ୍ରୀକୃଷ୍ଣ ଅଟନ୍ତି କର୍ମବୀଜ ରୂପ ଜାଣ
ଆଉର ତାହାର ଫଳପ୍ରଦ ସେହି ପୁଣ ।
ଏ ବାହାରେ କର୍ମରୂପ ବୋଲଅନ୍ତି ସେହି
ତାଙ୍କଠାରୁ ସବୁ କର୍ମ ଅଛି ଜାତ ହୋଇ ।
ସକଳ କରମ ଫଳ ଜୀବ ଭୋଗକରେ
ନିର୍ଲିପ୍ତ ଅଟଇ ଆତ୍ମା ସମସ୍ତ ପ୍ରକାରେ ।
ଆତ୍ମାର ଯେ ପ୍ରତିବିମ୍ବ ଦେହୀ ସେ ବୋଲାଏ
ଜୀବ ନାମରେ ମଧ ସେ ଖ୍ୟାତ ହୋଇଥାଏ ।
ଦେହଟି ଅଟଇ ପଞ୍ଚଭୂତର ବିକାର
କାର୍ଯ୍ୟ ଅଟେ ତାର ସୁଖ ଦୁଃଖ ଭୋଗିବାର ।
ଜଳବିନ୍ଦୁ ପରି ତାହା ଅନିତ୍ୟ ଅଟଇ
କ୍ଷଣକରେ ଜାତ ପୁଣି ବିନଷ୍ଟ ହୁଅଇ ।
ପୃଥିବୀ ବାୟୁ ଆକାଶ ଜଳ ପୁଣି ତେଜ
ଏମାନଙ୍କୁ ପଞ୍ଚଭୂତ ବୋଲି ମନେ ବୁଝ ।
ସର୍ବଦା ଅଟଇ ଦେହୀ କର୍ତ୍ତା ଭୋଗକାରୀ
ପରମାତ୍ମା ଅଟେ ଭୋଜୟିତା ସେତାହାରି ।
ସମ୍ପଦ ଅଟଇ ଭୋଗ ମୁକତି ଯେ ପୁଣ
ନିଷ୍କୃତି ନାମରେ ଖ୍ୟାତ ହୋଇଅଛି ଜାଣ ।
ସ୍ୱଚ୍ଛନ୍ଦିତ କାରଣ ଯେ ତାକୁ ବୋଲି ଜ୍ଞାନ
ସେ ଅଟଇ ବିଷୟର ବିଭାଗ କାରଣ ।
ବୁଦ୍ଧି ଅଟେ ବିବେଚନା ସ୍ୱରୂପ ଆଉର
ଶାସ୍ତ୍ରର ଯେ ଜ୍ଞାନ ଜାତ କରେ ନିରନ୍ତର ।
ପ୍ରାଣ ଅପାନ ସମାନ ଉଦାନ ଯେ ବ୍ୟାନ
ଏପରି ବାୟୁରେ ପାଞ୍ଚ ଗୋଟି ଅଂଶ ଜାଣ ।
ପ୍ରାଣ ନାମରେ ବିଖ୍ୟାତ ଅଟନ୍ତି ଜଗତେ
ବଳରୂପେ ଦେହରେ ସେ ରହନ୍ତି ସତତେ ।
ଈଶ୍ୱର ଅଂଶ ସମ୍ଭୂତ ଜନମ ତାଙ୍କର
ପ୍ରବର ପ୍ରେରକ ସେହୁ ଇନ୍ଦ୍ରିୟ ଗଣର ।
ପଞ୍ଚବଂଶ କର୍ମମାନ ହୁଏ ତାଙ୍କ ଯୋଗେ
ବିପୁଳ ଉତ୍ସାହ ଦାନ କରନ୍ତି ସେ ବେଗେ ।
ଅନ୍ୟରୂପ ଅସାଧୁଣ ଅଟେ ଯେଉଁ ଜ୍ଞାନ
ଶାସ୍ତ୍ରରେ ବିହିତ ତାର ନାମ ଅଟେ ମନ ।

ଲୋଚନ ଶ୍ରବଣ ନାସା ଚର୍ମ ଜିହ୍ୱା ଆସ୍ୟ
ଶରୀର ଏମାନେ ଅଙ୍ଗ ସ୍ୱରୂପ ଅବଶ୍ୟ ।
ସକଳ କର୍ମ ପ୍ରେରଣା ଦଅନ୍ତି ଏନ୍ତ
ଯାଙ୍କ ଛଡା କେହି କାର୍ଯ୍ୟ ସାଧିତ ନୁହଇ ।
ଶତ୍ରୁ ମିତ୍ର ଦୁହେଁ ଦୁଃଖ ସୁଖର କାରଣ
ବସ୍ତୁସ୍ୱ ଅଟନ୍ତି ସନ୍ତ ମାନସରେ ଯେନ ।
ସୂର୍ଯ୍ୟ ବାୟୁ ବସୁମତୀ ବାଣୀ ଆଦିକରି
ଦେବତା ଅଟନ୍ତି ବୋଲି ଜାଣ ଗୋ ସୁନ୍ଦରୀ ।
ପ୍ରାଣଆଦି ଦେହକୁ ଯେ ଧାରଣ କରଇ
ଜୀବ ବୋଲି କରି ତାକୁ ଶାସ୍ତ୍ରରେ କହନ୍ତି ।
ନିର୍ଗୁଣ ପ୍ରକୃତି ପର ପରମସ୍ୱରୂପ
ପରମାତ୍ମା ପରଂବ୍ରହ୍ମ ତ୍ରିଭୁବନ ଈଶ ।
ସବୁ କାରଣର ସେ ଯେ ଅଟନ୍ତି କାରଣ
ଶ୍ରୀକୃଷ୍ଣ ସକଳ ରୂପୀ ପ୍ରଭୁ ଭଗବାନ ।
ଏରୂପେ ଅଟଇ ଜାଣ ସଂସାର ତତ୍ତ୍ୱ
କହିଲି ପୃଚ୍ଛିଲ ଯାହା ଫିଟାଇ ସଂଶୟ ।
ଏବେ ଇଚ୍ଛା ସୁଖେ ନିଜ ଭବନକୁ ଯାଅ
ପଥଶ୍ରମେ ଶରୀରକୁ କଷ୍ଟ ନ ଦିଅ ।
ସାବିତ୍ରୀ ବୋଇଲେ ତୁମ୍ଭ ପାଶରେ ମୋ ପତି
ଅଛନ୍ତି ଆବର ତୁମ୍ଭେ ଜ୍ଞାନମୟ ମୂର୍ତ୍ତି ।
ତୁମ୍ଭ ଦୂତଙ୍କର ପାଶ ଛାଡ଼ିକରି ମୁହିଁ
ଯିବାପାଇଁ କେବେହେଲେ ସମର୍ଥ ନୁହଇ ।
ଆପଣଙ୍କୁ ଯେଉଁ ଯେଉଁ ପ୍ରଶ୍ନ ପଚାରିବି
କହିବା ହୋଇବେ କିଛି ମନରେ ନ ଭାବି ।
କେଉଁ କର୍ମ କଲେ ଜୀବ କେଉଁଣ ଯୋନିରେ
ଜାତହୁଏ କେଉଁଠାରେ କେଉଁଣ ପ୍ରକାରେ ।
କିରୂପେ କରମ କଲେ ସ୍ୱର୍ଗ ଲଭ ହୁଏ
କି କରମ କଲେ ପ୍ରାଣୀ ନରକକୁ ଯାଏ ।
ମୁକ୍ତି ମିଳଇ କିରୂପେ କର୍ମ ଆଚରିଲେ
ଶ୍ରୀହରିଙ୍କ ସେବା କେଉଁ କର୍ମେ ହୁଏ ଭଲେ ।
କେଉଁ କର୍ମଫଳ ଭୋଗୀ ଅଭୋଗୀ ବା ହୋଇ
ଦୀର୍ଘ ବା ଅଳପ ଆୟୁ କେଉଁ କର୍ମେ ପାଇ ।
କେଉଁ କର୍ମେ ଦୁଃଖୀ ସୁଖୀ ହୁଅଇ ମାନବ
ଅଙ୍ଗହୀନ ହୋଇ କେଉଁ କର୍ମର ପ୍ରଭାବ ।
ବଧିର କାଣ କୁବୁଜ ଖଞ୍ଜ ଆଦିକରି
ବିକଳ ହୁଅଇ ଅଙ୍ଗ କେଉଁ କର୍ମ କରି ।
କୃପଣ ପ୍ରମତ୍ତ ମୂର୍ଖ କେଉଁ କର୍ମେ ଲୋକ
ହୁଅଇ ଅଥବା ଧୂର୍ତ୍ତ କିବା ଚିର ମୂକ ।
ବ୍ରହ୍ମଘ୍ନ ଘାତକ ଲୁବ୍ଧ ନର ପଶୁଘାତୀ
କେଉଁ କେଉଁ କର୍ମ କଲେ ଏରୂପ ହୁଅନ୍ତି ।
ସାଲୋକ୍ୟାଦି ଚତୁଷ୍ଟୟ ସିଦ୍ଧି କିରୂପରେ
କର୍ମ ଆଚରଣ କରି ଲଭିଥାନ୍ତି ନରେ ।
ବ୍ରହ୍ମତ୍ୱ ବା ତପସ୍ୱୀତ୍ୱ କେଉଁଣ କର୍ମରେ
ପ୍ରାପତ ହୁଅଇ ଦେବ ଭାବ ସେ ପ୍ରକାରେ ।
ସ୍ୱର୍ଗ ଅବା ବଇକୁଣ୍ଠ ଆଦି ଦିବ୍ୟସ୍ଥାନ
ଲବ୍ଧ ହୋଇଥାଏ କଲେ କେଉଁ କର୍ମମାନ ।
ସର୍ବ ଉତ୍କୃଷ୍ଟ ଯେ ସ୍ଥାନ ଅଟଇ ଗୋଲୋକ
କେଉଁ କରମରେ ବାସକରେ ତହିଁ ଲୋକ ।
କେତେ ପ୍ରକାର ଅଟଇ ନରକର ନାମ
ସେ ମଧ୍ୟରେ ଅବା କେତେ ନିକୃଷ୍ଟ ଉତ୍ତମ ।
କେଉଁ ଲୋକ କି ପ୍ରକାରେ ନରକେ ପଡ଼ଇ
ତହିଁରେ କେତେକ ଦିନ ଯାଏଁ ହୁଏ ରହି ।
ପାତକୀ ଲୋକର କେଉଁ କର୍ମ କରିବାରେ
କେଉଁ ରୋଗ ଆକ୍ରମଣ କରେ ନିରନ୍ତରେ ।
ଏହି ସବୁକଥା ମୋତେ କହ ଭଲକରି
ଜ୍ଞାନୀଙ୍କ ଉତ୍ତମ ତୁମ୍ଭେ ଅଟ ଦଣ୍ଡଧାରୀ ।
ଏହିରୂପେ ମହାସତୀ ଯମ ଅଗ୍ରତରେ
କହିଲେ କ୍ଷେତ୍ର ମୋହନ ଭଣଇ ଗୀତରେ ।

———

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଯମପତିଙ୍କୁ ସାବିତ୍ରୀଙ୍କର ପ୍ରଶ୍ନ ବର୍ଣ୍ଣନେ ନାମ ଷଡ଼ବିଂଶୋଽଧ୍ୟାୟଃ ।

————

# ସପ୍ତବିଂଶ ଅଧ୍ୟାୟ

## ଯମଙ୍କଠାରୁ ସାବିତ୍ରୀଙ୍କର ବରଲାଭ

ନାରାୟଣ ବୋଇଲେକ ଆହେ ମୁନିବର
ସାବିତ୍ରୀ ବଚନେ ତୋଷ ହୋଇ ଯମେଶ୍ୱର
ଆନନ୍ଦରେ ହସି ତାଙ୍କୁ କହିଲେ ବୁଝାଇ
ତୁମ୍ଭ ସମ ଭାଗ୍ୟବତୀ ତ୍ରିପୁରେ କେ ନାହିଁ ।
ଦ୍ୱାଦଶ ବରଷ ମାତ୍ର ବୟସ ତୁମ୍ଭର
ଜ୍ଞାନ ଗାରିମାରେ ପୂର୍ଣ୍ଣ ତବ କଳେବର ।
ଯୋଗୀଜନମାନଙ୍କରେ ଦୁର୍ଲ୍ଲଭଟି ଯେହ୍ନ
ତାହା ଏବେ ତବ ମୁଖୁଁ ଶୁଣୁଅଛୁ ମୁହିଁ ।
ସାବିତ୍ରୀଙ୍କ ବରଦାନେ ତାଙ୍କ କଳାଂଶେନ
ଜନମ ଲଭିଛ ତୁମ୍ଭେ ନିଶ୍ଚେ ଏ ମେଦିନୀ ।
ତବ ପିତା ଅଶ୍ୱପତି ବହୁ କଷ୍ଟ ସହି
ସାବିତ୍ରୀଙ୍କ ଠାରୁ ବର ଲଭିଛନ୍ତି ସେହି ।
ସେ ସକାଶୁ ତାଙ୍କ ସମସରି ଅଟ ତୁମ୍ଭେ
ତେଣୁ ତବ ପରେ ତୋଷ ହୋଇଅଛୁ ଆମ୍ଭେ ।
ଯେଉଁପରି ପଦ୍ମାଳୟା ହରିଙ୍କ କୋଳରେ
ଆବର ପାର୍ବତୀ ମହାଦେବଙ୍କ ଅଙ୍କରେ ।
ଶ୍ରୀକୃଷ୍ଣଙ୍କ କୋଳେ ଯଥା ରାଧିକା ସୁନ୍ଦରୀ
ସାବିତ୍ରୀ ଯେପରି ଧାତାଙ୍କର ମନୋହାରୀ ।
ମୂର୍ତ୍ତି ମୂର୍ତ୍ତିମତୀ ଯେହ୍ନେ ଧର୍ମ ବକ୍ଷସ୍ଥଳେ
ଶତରୂପା ଯେଉଁପରି ମନୁଙ୍କର କୋଳେ ।
ଦେବହୂତି କର୍ଦ୍ଦମଙ୍କ ପାଶେ ଯେଉଁପରି
ବଶିଷ୍ଠଙ୍କ ମନୋହାରୀ ଅରୁନ୍ଧତୀ ନାରୀ ।
କଶ୍ୟପ ଲଳନା ଯେହ୍ନେ ଅଦିତି ସୁନ୍ଦରୀ
ଗୌତମ ବାମା ଅହଲ୍ୟା ଅଟନ୍ତି ଯେପରି ।
ଇନ୍ଦ୍ରଙ୍କ କୋଳରେ ଶଚୀ ଶୋଭେ ଯେଉଁରୂପେ
ଅଟନ୍ତି ଯଥା ରୋହିଣୀ ଚନ୍ଦ୍ରଙ୍କ ସମୀପେ ।
କାମଦେବ କୋଳେ ରତି ହୁତାଶନେ ସ୍ୱାହା
ପିତୃଗଣେ ସ୍ୱଧା ଦିବାକରେ ସଂଜ୍ଞା ପ୍ରିୟା ।
ବରୁଣାନୀ ବରୁଣଙ୍କ ପାଶରେ ଯେପରି
ଦକ୍ଷିଣା ଅଟନ୍ତି ଯେହ୍ନେ ଯଜ୍ଞ ସହଚରୀ ।
ବରାହ ପାଶରେ ଧରା ଯେରୂପେ ଶୋଭିତା
କାର୍ତ୍ତିକେୟ ଦେବ ପାଶେ ଦେବସେନା ଯଥା ।
ସୌଭାଗ୍ୟ ପ୍ରୀତି ଲଭ କରନ୍ତି ସର୍ବଦା
ସେହିରୂପେ ତୁମ୍ଭେ ସତ୍ୟବାନଙ୍କ ପ୍ରମଦା ।
ହୋଇଥାଅ ସବୁବେଳେ ଆଗୋ ପତିବ୍ରତେ
ଏ ବର ତୁମ୍ଭଙ୍କୁ ମୁହିଁ ଦେଲି ତୋଷଚିତ୍ତେ ।
ଆଉ କେଉଁ ବର ଇଚ୍ଛା କରିଅଛ ଯେବେ
ମାଗ ମୁହିଁ ଏହିକ୍ଷଣି ଦେଇଯିବି ତେବେ ।
ସାବିତ୍ରୀ ବୋଇଲେ ସତ୍ୟବାନ ଔରସରେ
ଶତେକ କୁମର ଜାତ ହେବେ ମୋ ଜଠରେ ।
ମୋର ପିତା ଅପୁତ୍ରିକ ହୋଇଛନ୍ତି ଯେଣୁ
ତାଙ୍କୁ ଶତେ ପୁତ୍ର ଦାନ କର ବୋଲେ ତେଣୁ ।
ଆବର ଶ୍ୱଶୁର ଶାଶୁ ଚକ୍ଷୁହୀନ ହୋଇ
ମଳପରି ରହିଛନ୍ତି ଜୀବନକୁ ବହି ।
ପୁଣି ରାଜ୍ୟଭ୍ରଷ୍ଟ ହୋଇ ଭିକ୍ଷାରେ ଜୀବନ
ଅତ୍ୟନ୍ତ କଷ୍ଟରେ କରୁଅଛନ୍ତି ଯାପନ ।
ତାଙ୍କୁ ଚକ୍ଷୁ ରାଜ୍ୟଲାଭ ହେଉ ତୁମ୍ଭ ବୋଲେ
ଏ ବାହାରେ ମୁହିଁ ସତ୍ୟବାନଙ୍କର ତୁଲେ ।
ଅନ୍ତଃକାଳେ ଶ୍ରୀହରିଙ୍କ ମନ୍ଦିରକୁ ଯାଇ
ରହିବି ସଂସାର ଦୁଃଖ ମୋହ ଛାଡ଼ିଦେଇ ।
ଏହି ବର ଦିଅ ପ୍ରଭୁ ଦୟାକରି ବାରେ
ପ୍ରୟୋଜନ ନାହିଁ ମୋର ଏଥି ଅନ୍ୟ ବରେ ।
ତୁମ୍ଭଠାରୁ ଜୀବ କର୍ମବିପାକ ଶ୍ରବଣ
କରିବାପାଇଁକି ବଳୁଅଛି ମୋର ମନ ।
ଅତଏବ ତାହା ମୋତେ ଶୁଣାଇବା ହେବେ
ଏତିକି ପ୍ରାର୍ଥନା କରୁଅଛି ମୁହିଁ ଏବେ ।
ତାହା ଶୁଣି ଯମରାଜା ସନ୍ତୁଷ୍ଟ ହୋଇଲେ
ସାବିତ୍ରୀ ବଦନ ଚାହିଁ ସେକାଳେ କହିଲେ ।
ବୋଇଲେ ଗୋ ସତୀ ତୁମ୍ଭେ ଲୋଡ଼ିଅଛ ଯାହା
ଆମ୍ଭର ବୋଲେ ପ୍ରାପତ ହେବ ନିଶ୍ଚେ ତାହା ।
କହୁଅଛୁ ଏବେ ଜୀବ କରମ ବିପାକ
ମନଦେଇ ଶୁଣ ସେହି ସବୁ କଥାଯାକ ।
ଭାରତବର୍ଷରେ ଶୁଭାଶୁଭ କର୍ମଫଳେ
ଜନମ ହୁଅନ୍ତି ଲୋକେ ପୁଣ୍ୟକ୍ଷୟ କାଳେ ।

ଭାରତବରଷ ପରି ଅନ୍ୟ ନାହିଁ ସ୍ଥାନ
କର୍ମଫଳ ଭୋଗିବାକୁ ନୁହେଁ ବିଦ୍ୟମାନ ।
ଦେବତା ଦାନବ ଦୈତ୍ୟ ଗନ୍ଧର୍ବ ରାକ୍ଷସ
କର୍ମଜନକ ଅଟନ୍ତି ଆବର ମନୁଷ୍ୟ ।
ଆଉ ଯେତେ ଜୀବ ସୃଷ୍ଟି ମଧ୍ୟରେ ଅଛନ୍ତି
ଏମାନଙ୍କ ପରି କେ ନୁହନ୍ତି ଜାଣ ସତି ।
ବଶିଷ୍ଟ ଯୋନିରେ ଜାଣ ଯେଉଁ ଜୀବଗଣ
ଭୁଞ୍ଜନ୍ତି ସେ କର୍ମଫଳ ଜନ୍ମରେଟି ପୁଣ ।
ବିଶେଷେ ମନୁଷ୍ୟମାନେ ସକଳ ଯୋନିରେ
ଜାତ ହୋଇଣ ଭ୍ରମନ୍ତି ସଂସାର କର୍ମରେ ।
ପୂର୍ବ ଅରଜିତ କର୍ମ ଶୁଭାଶୁଭମାନ
ଭୋଗ କରନ୍ତି ସର୍ବଦା ଭିନ୍ନ ନାନାସ୍ଥାନ ।
ଶୁଭକର୍ମ କରିଥିଲେ ସ୍ୱର୍ଗକୁ ଯାଆନ୍ତି
ଅଶୁଭେ ନରକେ ପଡ଼ି ଘାଣ୍ଟି ହେଉଥାନ୍ତି ।
କର୍ମ ନିର୍ମୂଳ ନ ହେଲେ ମୁକତି ମିଳଇ
ଦୁଇ ପରକାରେ ତାହା ପୂର୍ବେ ଅଛି କହି ।
ନିର୍ବାଣ ଶ୍ରୀକୃଷ୍ଣ ସେବା ସ୍ୱରୂପ ତାହାର
ଏହା ମଧ୍ୟ ପୂର୍ବେ କହିଅଛୁ ସମାଦର ।
କୁତ୍ସିତ କରମେ ଲୋକ ରୋଗୀ ହୋଇଥାଏ
ଶୁଭକର୍ମ କଲେ ରୋଗଶୂନ୍ୟ ହୋଇ ରହେ ।
ଆବର ଦୀର୍ଘାୟୁ ଅବା ଅଳ୍ପଆୟୁ ହୋଇ
କର୍ମ ଅନୁସାରେ ସୁଖଦୁଃଖ ଭୋଗୁଥାଇ ।
ଅନ୍ଧ ବିକଳାଙ୍ଗ ହୋଇ କୁତ୍ସିତ କର୍ମରେ
ଶୁଭକର୍ମେ ସିଦ୍ଧିଲାଭ ହୁଏ ନିଶ୍ଚୟରେ ।
ସାମାନ୍ୟ ଭାବରେ ସବୁ କହିଲି ସୁନ୍ଦରୀ
ଶୁଣ ଏବେ ତାହା କହୁଅଛଇ ବିସ୍ତାରି ।
ଭାରତବରଷେ ସବୁ ଜାତିଙ୍କ ମଧ୍ୟରେ
ଦୁଲଭ ମାନବ ଜାତି ଅଟେ ନିରନ୍ତରେ ।
ସବୁ ବର୍ଣ୍ଣରେ ଉତ୍ତମ ଅଟଇ ବ୍ରାହ୍ମଣ
ପ୍ରଶସ୍ତ ଅଟଇ ସବୁକର୍ମରେ ସେ ଜାଣ ।
ତହିଁରେ ଶ୍ରେଷ୍ଠ ବୋଲାଏ ବିଷ୍ଣୁଙ୍କର ଭକ୍ତ
ସର୍ବଦା ତାଠାରେ ଧର୍ମ ହୁଏ ଅନୁରକ୍ତ ।
ନିଷ୍କାମ ସକାମ ଭେଦ ବିଷ୍ଣୁ ଭକ୍ତଗଣ
ଦୁଇ ଶ୍ରେଣୀରେ ବିଭକ୍ତ ହୋଇଥାନ୍ତି ଜାଣ ।
ସକାମଠାରୁ ପ୍ରଧାନ ଅଟଇ ନିଷ୍କାମ
ଭକ୍ତମାନଙ୍କରେ ଶ୍ରେଷ୍ଠ ଅଟେ ସେ ଉତ୍ତମ ।

ସବୁକର୍ମ ଭୋଗ କରି ସକାମ ବୈଷ୍ଣବ
ନିଷ୍କାମକୁ କେବେ ନ ଲାଗଇ ଉପଦ୍ରବ ।
ଅନ୍ତଃକାଳେ ଦେହ ତେଜି ବିଷ୍ଣୁଙ୍କ ଲୋକରେ
ବାସ ସେ କରଇ ଯାଇ ଆନନ୍ଦ ମନରେ ।
ସଂସାର କଷଟେ ଆଉ ନ ପଡ଼ଇ ସେହି
ନିରାମୟ ଭାବେ ସବୁକାଳେ ଥାଏ ରହି ।
ଶ୍ରୀକୃଷ୍ଣଙ୍କ ସେବାରେ ଯେ ହୁଅଇ ନିରତ
ନିଶ୍ଚୟ ହୁଏ ତାହାକୁ ଗୋଲୋକ ପ୍ରାପତ ।
ଯେଉଁମାନେ ଚତୁର୍ଭୁଜ ବିଷ୍ଣୁଙ୍କ ସେବାରେ
ଆସକତ ହୋଇଥାନ୍ତି ଏକାଗ୍ର ଚିତ୍ତରେ ।
ଦିବ୍ୟରୂପ ବହି ସେହୁ ବଇକୁଣ୍ଠେ ବାସ
କରନ୍ତି ସନ୍ଦେହ ଏଥି ନାହିଁ ଜାଣ ଲେଶ ।
ସକାମ ବୈଷ୍ଣବମାନେ ବଇକୁଣ୍ଠ ପୁରେ
ଭୋଗସାରି ପୁଣି ଜାତ ହୁଅନ୍ତି ମର୍ତ୍ତ୍ୟରେ ।
ଉତ୍ତମ ବ୍ରାହ୍ମଣକୁଳେ ଜନ୍ମ ତାହାଙ୍କର
ହୋଇଥାଏ ଜାଣ ଆଗୋ ରମଣୀଙ୍କ ବର ।
ତପକର ଫଳରେ ସେ ନିଷ୍କାମ ହୁଅନ୍ତି
ଶ୍ରୀକୃଷ୍ଣଙ୍କଠାରେ ରହେ ତାହାଙ୍କର ଭକ୍ତି ।
ତାହାଙ୍କୁ ନିର୍ମଳ ବୁଦ୍ଧି ଦିଅନ୍ତି ଶ୍ରୀହରି
ମୁକତି ଲଭନ୍ତି ସେହୁ ଭୋଗ ତ୍ୟାଗକରି ।
ସକାମ ବୈଷ୍ଣବ ଯେଉଁ ବ୍ରାହ୍ମଣ ଅଟନ୍ତି
ସୁଲଭ ନୁହଇ ତାହାଙ୍କର ବିଷ୍ଣୁଭକ୍ତି ।
ନିଷ୍କାମ କରମ ବିନା ସୁନିର୍ମଳ ବୁଦ୍ଧି
କେବଣ କାଳରେ ହୋଇ ନ ପାରଇ ସିଦ୍ଧି ।
ପୁଣ୍ୟାର୍ଥେ ଯେଉଁ ଦ୍ୱିଜ ତପସ୍ୟା ଆଚରେ
ଅନ୍ତଃକାଳେ ବସଇ ସେ ବଇକୁଣ୍ଠପୁରେ ।
ପୁଣି କେତେକାଳ ଅନ୍ତେ ଭାରତ ବରଷେ
ଜନମ ହୁଅଇ ନିଜ କର୍ମଫଳ ଶେଷେ ।
ଯେଉଁମାନେ ତୀର୍ଥସ୍ଥାନେ ନିଜ ଧର୍ମେ ଥାଇ
ତପସ୍ୟା କରନ୍ତି ସୁଖଭୋଗ ଛାଡ଼ିଦେଇ ।
ଯେଉଁମାନେ ଅନ୍ତଃକାଳେ ସତ୍ୟଲୋକେ ଯାନ୍ତି
ପୁଣି ଆସି ଭାରତରେ ଜନମ ହୁଅନ୍ତି ।
ସ୍ୱଧର୍ମନିରତ ହୋଇ ସୂର୍ଯ୍ୟଙ୍କୁ ଯେମାନେ
ଭକ୍ତିଭରେ ପୂଜା କରୁଥାନ୍ତି ସବୁ ଦିନେ ।
ସେମାନେ ସୂର୍ଯ୍ୟଲୋକକୁ ଯାଇକରି ପୁଣି
ଆସନ୍ତି ଭାରତବର୍ଷେ କର୍ମଫଳ ଘେନି ।

ଯେଉଁ ଦ୍ୱିଜେ ଶିବଶକ୍ତି ଗଣପତି ପୂଜା
କରନ୍ତି ଧର୍ମରେ ଦେଇକରି ନିଜ ମଜ୍ଜା ।
ଶିବଲୋକରେ ସେମାନେ କେତେକାଳ ରହି
ଆସନ୍ତି ଭାରତେ ପୁଣି କର୍ମଭୋଗ ପାଇଁ ।
ଯେଉଁମାନେ ଅନ୍ୟ ଦେବ ଦେବୀ ପୂଜା କରି
ଯାପନ କରନ୍ତି ଧର୍ମେ ଦିବସ ଶର୍ବରୀ ।
ସେମାନେ ଇନ୍ଦ୍ରଲୋକକୁ ଗମନ କରନ୍ତି
ଭାରତରେ ଆସି ପୁଣି ଜନମ ହୁଅନ୍ତି ।
ସ୍ୱଧର୍ମକୁ ତେଜି ଯେଉଁ ବ୍ରାହ୍ମଣ ସନ୍ତାନ
ନିଷ୍କାମେ ହରିଙ୍କୁ ପୂଜା କରେ ପ୍ରତିଦିନ ।
ଭକତିବଳରେ ସେହି ଶ୍ରୀହରିଙ୍କ ପାଶେ
ଅନ୍ତଃକାଳେ ବସେ ଯାଇ ଅତ୍ୟନ୍ତ ହରଷେ ।
ସ୍ୱଧର୍ମରହିତ ହୋଇ ଅନ୍ୟ ଦେବଠାରେ
ଆସକ୍ତ ହୁଅନ୍ତି ଯେହୁ ଜ୍ଞାନ ଅଭାବରେ ।
ତାହାଙ୍କୁଟି ଭ୍ରଷ୍ଟାଚାର ମୂଢ଼ ବୋଲି ଜାଣ
ପାଆନ୍ତି ସେ ଅନ୍ତଃକାଳେ ନରକରେ ସ୍ଥାନ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରି ଜାତି
ନିଜ ଧର୍ମେ ଯେବେ ଶୁଭକର୍ମ କରୁଥାନ୍ତି ।
ତହିଁରୁ ଯଥାର୍ଥ ଫଳ ହୁଅଇ ପ୍ରାପତ
ଯେବେ ସେ ହୁଅନ୍ତି ନିଜ ଧରମରହିତ ।
ମହାଘୋର ନରକରେ ପଡ଼ି ଅନ୍ତଃକାଳେ
କଷ୍ଟଭୋଗ କରୁଥାନ୍ତି ଜୀବନ ଥିବାଲେ ।
ସେ ଅନ୍ତେ ଭାରତବର୍ଷେ ଜାତ ହୋଇକରି
ମହାଦୁଃଖ କଷ୍ଟ ଭୋଗ କରନ୍ତି ସେପରି ।
ସ୍ୱଧର୍ମ ନିରତ ହୋଇଥାଏ ଯେ ବ୍ରାହ୍ମଣ
ସେ ଯେବେ ଧାର୍ମିକଦ୍ୱିଜେ କରେ କନ୍ୟାଦାନ ।
ଚନ୍ଦ୍ରଲୋକେ ଅନ୍ତଃକାଳେ ବସଇଟି ସେହି
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ରହିଥାଏ ତହିଁ ।
କନ୍ୟାକୁ ଯେ ଅଳଙ୍କାରେ ବିଭୂଷିତ କରି
ଦାନ କରେ ଦୁଇଗୁଣ ଫଳହୁଏ ତାରି ।
ଗୋରସ ରଜତବସ୍ତ୍ର ଶସ୍ୟ ଫଳ ଜଳ
ବ୍ରାହ୍ମଣଙ୍କୁ ଦେଲେ ମନେ ନ ହୋଇ ବିକଳ ।
ମିଳଇ ଅବଶ୍ୟ ବିଷ୍ଣୁ ଭବନରେ ବାସ
ହୋଇଅଛୁ ଏହା ଶ୍ରୁତି ଶାସ୍ତ୍ରରେ ପ୍ରକାଶ ।
ଏକ ମନ୍ୱନ୍ତର ଶେଷ ହେବାଯାଏ ତହିଁ
ଆଶ୍ରୟ ମିଳଇ ଏଥେ ସନ୍ଦେହ ଯେ ନାହିଁ ।

ଧେନୁଲୋକ ସ୍ୱର୍ଣ୍ଣ ରଜ ତାମ୍ର ଆଦିକରି
ଦାନଦିଏ ଶୁଚିମନ୍ତ ଦ୍ୱିଜଙ୍କୁ ବିଚାରି ।
ସୂର୍ଯ୍ୟଲୋକରେ ନିବାସ କରେ ସେ ପୁରୁଷ
ଯାବତ ହୁଅଇ ଶେଷ ଅୟୁତେ ବରଷ ।
ଉତ୍ତମ ଦ୍ୱିଜଙ୍କୁ ଭୂମି ଧାନ୍ୟ ଯେବା ଦିଏ
ଶ୍ୱେତଦ୍ୱୀପେ ବିଷ୍ଣୁଙ୍କର ପାଶରେ ସେ ରହେ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ସେହିସ୍ଥାନ ତାର
କଦାପି ବଞ୍ଚିତ ହୁଏ ନାହିଁ ମନେକର ।
ପ୍ରତ୍ୟେକନ୍ତ ଶ୍ରେଣୀରେ ସେ ଅଟଇ ଅଧିକ
ତା ସମାନ ଭାଗ୍ୟବାନ ନୁହେଁ ଅନ୍ୟଲୋକ ।
ଦ୍ୱିଜଙ୍କୁ ଯେ ଭକ୍ତିଭରେ ଗୃହଦାନ କରେ
ବସଇ ସେ ଅନ୍ତଃକାଳେ ବସୁଙ୍କ ଲୋକରେ ।
ସେ ଗୃହର ରେଣୁ ଅଟେ ଯେତେ ପରିମାଣ
ସେତେବର୍ଷ ସେହିଠାରେ ହୁଏ ତାର ସ୍ଥାନ ।
ପୁଣ୍ୟ ଦିବସରେ ସେହି ଦାନ ହୋଇଥିଲେ
ତାହାର ଦ୍ୱିଗୁଣ ଫଳ ମିଳଇଟି ଭଲେ ।
ଯେବେ କେଉଁ ଦେବତାଙ୍କୁ ଗୃହ ଦେଇଥିବ
ଅନ୍ତଃକାଳେ ସେ ଦେବଙ୍କ ଭବନକୁ ଯିବ ।
ଗୃହରେଣୁ ସମାନରେ ବରଷ ସେଠାରେ
ଭୋଗକରି ରହି ତହିଁ ଆନନ୍ଦ ମନରେ ।
ଅଟ୍ଟାଳିକା ଗୃହ ଦେଲେ ତାର ଚାରିଗୁଣ
ଫଳଲଭ ହୋଇଥାଏ ବୋଲିକରି ଜାଣ ।
ତହିଁରୁ ଅଧିକ ଗୃହ ଦେଇଥିବ ଯେବେ
ଶତଗୁଣ ଫଳଲଭ ହୋଇବଟି ତେବେ ।
ତଡ଼ାଗ ଅଥବା କୂପ ପ୍ରାଣୀଙ୍କର ହିତେ
ଦାନ କରିଥାଏ ଯେହୁ ଆନନ୍ଦିତ ଚିତ୍ତେ ।
ଅୟୁତେ ବରଷଯାଏ ଜନଲୋକେ ବାସ
ହୋଇଥାଏ ତାହାର ଗୋ ନାଗଗଣ ଈଶ ।
ବାପୀ ଦାନକଲେ ଶତଗୁଣ ଫଳ ହୁଏ
ପ୍ରସନ୍ନ ହୁଅନ୍ତି ତାହାଠାରେ ଦେବତାଏ ।
ସେତୁ ଅବା ଘାଟ କଲେ ତଡ଼ାଗ ଦାନର
ଫଳଲଭ ହୋଇଥାଏ ଜାଣ ନିରନ୍ତର ।
ସହସ୍ରେ ଧନୁର ଦୀର୍ଘ ପ୍ରସ୍ଥଟି ଯାହାର
ବାପୀ ବୋଲିକରି ନାମ ଅଟଇ ତାହାର ।
ସାମାନ୍ୟ ସଣତଦାନ କରିବଟି ଯେବେ
ଦଶ ବାପୀ ଦାନଫଳ ହୋଇବଟି ତେବେ ।

ପ୍ର ବନାଇ ଦେଲେ ତାହା ଗୃହ ପ୍ରଶ
ଦୁଇ ଗୁଣ ଫଳ ଲଭି ହୁଅଇ ଅବଶ୍ୟ ।
କାଳେ ଯେବେ ପଙ୍କୋଦ୍ଧାର କରିବ ତଢ଼ାଗ
ତଡ଼ାଗ ଦାନର ଫଳ ହେବ ଗୁରୁତର ।
ବାମ୍ପୀରୁ ଯେ ରୂପେ ପଙ୍କ ଉଦ୍ଧାରଣ କଲେ
ବାପୀ ଦାନ ତୁଲ୍ୟ ଫଳ ହୋଇଥାଏ ଭଲେ ।
ଯେ ଜନ ଅଶ୍ୱତ୍ଥ ବୃକ୍ଷ ଲଗାଇ ତାହାକୁ
ପ୍ରତିଷ୍ଠା କରଇ କାଳେ ଡକାଇ ଦ୍ୱିଜଙ୍କୁ ।
ଅଯୁତେ ବରଷେ ରହେ ସେ ତପ ଲୋକରେ
ଉତ୍ତମ ବଂଶେ ଜନମ ହୁଏ ସେ ଅନ୍ତରେ ।
କୁସୁମ ଉଦ୍ୟାନ ଦାନ କଲେ ତୋଷ ଚିତ୍ତେ
ଧ୍ରୁବଲୋକେ ବାସ ହୁଏ ବରଷ ଅଯୁତେ ।
ବିମାନ ଦାନ ଯେ କରେ ବିଷ୍ଣୁଙ୍କ ସକାଶେ
ମନ୍ୱନ୍ତର ଯାଏ ସେହୁ ବିଷ୍ଣୁଲୋକେ ବସେ ।
ସେହି ବିମାନଟି ଯେବେ ଶବ ହୋଇ ଥାଇ
ତାର ଚାରି ଗୁଣ ଫଳ ପ୍ରାପତ ହୁଅଇ ।
ଶିବିକା ଦାନରେ ରଥଦାନ ଅର୍ଦ୍ଧ ଫଳ
ହୁଅଇ ଅବଶ୍ୟ କେବେ ନୁହେ ତା ବିଫଳ ।
ଯେଉଁ ଲୋକ ଭକ୍ତିଭରେ ଶ୍ରୀହରିଙ୍କ ପାଇଁ
ମନ୍ଦିର ଗୋଟିଏ ତୋଷେ ପ୍ରଦାନ କରଇ ।
ମନ୍ୱନ୍ତର ଯାଏ ସେହି ବିଷ୍ଣୁଙ୍କ ଲୋକରେ
ବାସକରି ରହେ ଯାଇ ଉତ୍ତମ ସୁଖରେ ।
ସ୍ୱଜମାଗ ନିକଟରେ ଅଟ୍ଟାଳିକା କଲେ
ଅଯୁତେ ବରଷ ଇନ୍ଦ୍ରଲୋକ ମିଳେ ଭଲେ ।
ତାହାକୁ ବ୍ରାହ୍ମଣ ଅବା ଦେବତାଙ୍କ ପାଇଁ
ଦେଲେ ତାର ଦୁଇ ଗୁଣ ଫଳ ଲଭ ହୋଇ ।

ଏହିପରି ଧାଡ଼ା ଧାଡ଼ା ହୋଇଥିବ ଦାନ
ପର ଲୋକେ ଭୋଗ ହେବ ସେହି ଦ୍ରବ୍ୟମାନ ।
ପୁଣ୍ୟବନ୍ତ ଜନେ ସ୍ୱର୍ଗେ ସୁଖଭୋଗ କରି
ପବିତ୍ର ଘରରେ ଜାତ ହୁଅନ୍ତି ସୁନ୍ଦରୀ ।
ପ୍ରଥମରେ ବିପ୍ରକୁଳେ ଜନମ ପାଆନ୍ତି
କ୍ରମେ କ୍ରମେ ପୁଣ୍ୟବନ୍ତ ପଣ୍ଡିତ ହୁଅନ୍ତି ।
ଭାରତରେ ବିପ୍ର ଯେବେ ଧାର୍ମିକ ହୁଅଇ
ଅନ୍ତଃକାଳେ ସ୍ୱର୍ଗସୁଖ ଭୋଗ ସେ କରଇ ।
ପୁଣି ବିପ୍ରକୁଳେ ଆସି ହୁଏ ଉତପନ୍ନ
ଏ ରୂପେ କ୍ଷତ୍ରିୟ ବୈଶ୍ୟ ଶୂଦ୍ରାଦିଙ୍କୁ ଜାଣ ।
କ୍ଷତ୍ରିୟ ବା ବୈଶ୍ୟ କୋଟି କଳ୍ପ ଯାଏ ତପ
କଲେ ହୋଇ ନ ପାରଇ ବ୍ରାହ୍ମଣ ସ୍ୱରୂପ ।
ଏହିରୂପେ ବେଦଶାସ୍ତ୍ର ସମ୍ମତ ଅଟଇ
ଏହାକୁ ଅନ୍ୟଥା କରି ନ ପାରନ୍ତି କେହି ।
ନିଜ ଧର୍ମ ତ୍ୟାଗ କଲେ ବ୍ରାହ୍ମଣତନୟ
ନାନା ଯୋନିରେ ଜନମ ହୁଅଇ ନିଶ୍ଚୟ ।
କର୍ମ ଫଳ ଭୋଗକରି ପୁଣି ଆଉ ଥରେ
ଜନମ ହୁଅଇ ସେହି ବ୍ରାହ୍ମଣ ଯୋନିରେ ।
ଯେଉଁ କର୍ମ କରିଥାଏ ଯେବଣ ମନୁଷ୍ୟ
ନ ଭୁଞ୍ଜିଲେ ତାର ଫଳ ନ ହୁଏ ବିନାଶ ।
ଏ ସକାଶୁଁ ଶୁଭାଶୁଭ କର୍ମ ଫଳମାନ
ଭୋଗ କରଇ ମନୁଷ୍ୟ ଜନ୍ମାନ୍ତରେ ଜାଣ ।
କର୍ମ ବିପାକ ଚରିତ ଶୁଣିଲ ତ ବସି
ପଚାର ଆଉ କି ଇଚ୍ଛା ଥିଲେ ସୁରୁକେଶୀ ।
ଏତେ ବୋଲି ଯମରାଜ ମଉନ ହୋଇଲେ
ଘନ ଘନ କ୍ଷେତ୍ରବାସୀ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଯମଙ୍କଠାରୁ ସାବିତ୍ରୀଙ୍କର ବରଲାଭ ବର୍ଣ୍ଣନେ ନାମ ସପ୍ତବିଂଶୋଽଧ୍ୟାୟଃ ।

## ଅଷ୍ଟାବିଂଶ ଅଧ୍ୟାୟ

### ସାବିତ୍ରୀଙ୍କ ଆଗରେ ଯମରାଜଙ୍କ ଦ୍ୱାରା କର୍ମବିପାକର ସବିଶେଷ ବର୍ଣ୍ଣନ

ସାବିତ୍ରୀ ବୋଇଲେ ଶୁଣ ଆହେ ସତ୍ପତି
ସ୍ୱର୍ଗକୁ କେଉଁ ପ୍ରକାରେ କର୍ମକରି ଯାନ୍ତି ।
ମୋହ ଆଗରେ ପ୍ରକାଶ କରନ୍ତୁ ବଦନ
ଶୁଣିବା ପାଇଁକ ହେବ ବଳାଅଛି ମନ ।

ତାହା ଶୁଣି ଯମରାଜା ବୋଲେ ଆଗୋ ସତୀ ।
କହିବା ସେ କଥା ଏବେ ଶୁଣ ଦେଇ ମତି
ଯେବଣ ଜନ ବ୍ରାହ୍ମଣେ ଦିଏ ଅନ୍ନଦାନ
ହୁଅଇ ତାହାର ସବୁଠାରୁ ବଳ ପୁଣ୍ୟ ।

ଅନ୍ୟପରିମାଣେ ଦିବ୍ୟ ସହସ୍ରେ ବରଷ
ହରଷରେ ଇନ୍ଦ୍ରଲୋକେ କରଇ ସେ ବାସ ।
ଅନ୍ନଦାନ ସବୁଠାରୁ ଅଟଇ ଯେ ସାର
ଆନ ଦାନ ସମସ୍ତେହେଁ ତାହାର ସଙ୍ଗର ।
ଉଚ ନୀଚ ଭେଦ ଭାବ କିଛି ନ ଖୋଜିବ
କ୍ଷୁଧାର୍ତ୍ତ ମାଗିଲେ ଯାଥେ ସାଥେ ଅନ୍ନଦେବ ।
ଆସନ ସଜାଇ ସ୍ନେହେ ଦେବତା ବ୍ରାହ୍ମଣେ
ଯେହୁ ଦାନ କରେ ସେହୁ ମୁକ୍ତ ହୁଏ କ୍ଷଣେ ।
ଅୟୁତେ ବରଷ ଯାଏ ଅଗ୍ନିଙ୍କ ଲୋକରେ
ଶରୀର ତେଜଣ ସେହି ଜନ ବାସ କରେ ।
ଦୁହାଁଳିଆ ଗାଈମାନ ଯେହୁ ବ୍ରାହ୍ମଣଙ୍କୁ
ଦାନକରେ ସେହୁ ଗମେ ସେ ସୁରଆଳକୁ ।
ସେ ଗାଈ ଅଙ୍ଗରେ ଯେତେ ଲୋମମାନ ଥାଏ
ତେତେକାଳ ବସେ ସେହୁ ବୈକୁଣ୍ଠ ଆଳୟେ ।
ତୀର୍ଥସ୍ଥାନମାନଙ୍କରେ ପୁଣ୍ୟ ଦିବସରେ
ଯେବେ ଦେଇଥିବ ଗସ୍ତେ ବସିବ ସ୍ୱର୍ଗରେ ।
ବିଷ୍ଣୁଙ୍କ କ୍ଷେତ୍ରରେ ଦେଲେ ହୁଏ କୋଟିଫଳ
ହୁଅଇ ଏକଥା ସତ୍ୟ କହିଥିବ ଠୁଳ ।
ଉଭୟମୁଖୀ ଗାଈକୁ ବ୍ରାହ୍ମଣଙ୍କୁ ଦେଲେ
ବୈକୁଣ୍ଠେ ବସେ ଲୋମତୁଲ୍ୟ ବର୍ଷେ ଭଲେ ।
ବ୍ରାହ୍ମଣଙ୍କୁ ଶାଳଗ୍ରାମ ବସ୍ତ୍ର ସହିତରେ
ଦାନ ଦେଲେ ବିଷ୍ଣୁପୁରେ ସ୍ଥାନ ପାନ୍ତିନରେ ।
ଯେତେକାଳ ଯାଏ ଚନ୍ଦ୍ର ଦିବାକର ଥାନ୍ତି
ସେତେକାଳ ହୁଏ ସେହି ସ୍ଥାନେ ତାର ସ୍ଥିତ ।
ମନୋହର ଛତ୍ର ଯେହୁ ଦିଏ ବ୍ରାହ୍ମଣକୁ
ଦେହଅନ୍ତେ ଯାଏ ସେହି ବରୁଣପୁରକୁ ।
ଅୟୁତେ ବରଷ ସେ ସ୍ଥାନରେ ବାସ କରେ
ବ୍ରାହ୍ମଣକୁଳେ ଜନମ ହୁଏ ସେ ଅନ୍ତରେ ।
ବିପ୍ରକୁ ଦିଅଇ ଯେବା ପାଦୁକା ଯୁଗଳ ।
ବାୟୁଲୋକେ ବସେ ଦଶସସ୍ର ବର୍ଷ କାଳ ।
ଯେଉଁଲୋକ ମନୋହର ଶଯ୍ୟା ସଜକରି
ପୁଣ୍ୟଦିନେ ବ୍ରାହ୍ମଣକୁ ଦିଏ ଗୋ ସୁନ୍ଦରୀ ।
ଚନ୍ଦ୍ରଲୋକେ ଚନ୍ଦ୍ର ଦିବାକର ଥିବାଯାଏ
ବାସକରି ନାନାସୁଖ ଭୋଗ କରୁଥାଏ ।
ଯେଉଁ ଲୋକ ଦେବ ବ୍ରାହ୍ମଣକୁ ଦୀପଦାନ
ଦିଅଇ ସେ ବ୍ରହ୍ମଲୋକେ ପାଏ ଯାଇ ସ୍ଥାନ ।

ଏକ ମନ୍ୱନ୍ତର ରହେ ହୋଇ ମହାସୁଖୀ
ଶୁଣ ଗୋ ଶରଦପୂର୍ଣ୍ଣଚନ୍ଦ୍ର ବନ୍ଧୁମୁଖୀ ।
ସେ ଅନ୍ତେ ମନୁଷ୍ୟଲୋକେ ଜନମ ହୁଅଇ
ସକଳ ଶାସ୍ତ୍ରରେ ଦିବ୍ୟଜ୍ଞାନ ଲଭେ ସେହି ।
ସେହି ପୁଣ୍ୟବଳେ ଆଉ ଯମଲୋକ ଗତି
ନୁହଇ ତାହାର ଜାଣ ଆଗୋ କୁଳବନ୍ତୀ ।
ବ୍ରାହ୍ମଣକୁ ଗଜ ଦାନ କଲେ ଭାରତରେ
ସ୍ଥାନ ମିଳେ ଇନ୍ଦ୍ରଙ୍କର ଅର୍ଦ୍ଧ ଆସନରେ ।
ଇନ୍ଦ୍ରଙ୍କ ଆୟୁଷ ଶେଷହେବା ଯାଏ ତହିଁ
ଭୋଗ କରୁଥାଏ ମହାସୁଖ ତୋଷ ବହି ।
ଭାରତବରଷେ ଯେହୁ ଉତ୍ତମ ଦ୍ୱିଜଙ୍କୁ
ଅଶ୍ୱଦାନ କରେ ଧର୍ମେ ବଳାଇ ମନକୁ ।
ଚତୁର୍ଦ୍ଦଶ ଇନ୍ଦ୍ରକାଳ ବରୁଣ ଲୋକରେ
ସପତ୍ନୀ ତୁଷ୍ଟ ସଙ୍ଗେ ଘେନି ବାସକରେ ।
ଉତ୍ତମ ଶିବିକା କଲେ ବ୍ରାହ୍ମଣଙ୍କୁ ଦାନ
ମନ୍ୱନ୍ତର ଯାଏ ବିଷ୍ଣୁଲୋକେ ପାଏ ସ୍ଥାନ ।
ବ୍ୟଜନ ଶ୍ୱେତ ଚମର ବିପ୍ରକୁ ଯେ ଦିଏ
ଅୟୁତେ ବରଷେ ବାୟୁଲୋକ ସୁଖ ପାଏ ।
ଧାନ୍ୟ ଦାନ କରେ ଯେବା ଉତ୍ତମ ବ୍ରାହ୍ମଣେ
ଯେତେଗୋଟି ଧାନ୍ୟ ତେତେବର୍ଷ ପରିମାଣେ ।
ବିଷ୍ଣୁଲୋକେ ବାସକରି ପୁଣି ନିଜବଂଶେ
ଜନମ ହୁଅଇ ପୂର୍ବ ସୁକୃତର ବଳେ ।
ଧନ ଜନ ଦୀର୍ଘାୟୁଷ ଲଭି ହୁଏ ତାର
ଏଥିରେ ଗୋ ବନ୍ଧୁକେଶୀ ସନ୍ଦେହ ନ କର ।
ଦାତା ଆଉ ଗ୍ରହଣକର୍ତ୍ତା ବେନି ଜନ
ପ୍ରବେଶ ହୁଅନ୍ତି ଅନ୍ତେ ବୈକୁଣ୍ଠ ଭୁବନ ।
ଭାରତ ବରଷେ ଜନ୍ମ ଲଭି ଯେଉଁ ନର
ଶ୍ରୀହରିଙ୍କ ନାମ ଜପ କରେ ନିରନ୍ତର ।
ସେହି ଲୋକ ଚିରଜୀବୀ ହୁଅଇ ନିଶ୍ଚୟ
ତାହାକୁ ଦେଖିଲେ ମୃତ୍ୟୁ କରେ ମହାଭୟ ।
ଶ୍ରୀହରିଙ୍କ ମୂର୍ତ୍ତିକୁ ସେ ଦୋଳାରେ ବସାଇ
ଉତ୍ସବ କରଇ ତୋଷେ ଦିଏ ପହଁରାଇ ।
ପୂର୍ଣ୍ଣିମା ରଜନୀ ଶେଷେ କଲେ ଏହିପରି
ଜୀବନ୍ତ ମୁକତ ସେହି ଅଟେ ଗୋ ସୁନ୍ଦରୀ ।
ଇହଲୋକ ସୁଖ ଭୋଗକରି ସେହି ଲୋକ
ଅନ୍ତଃକାଳେ ହୁଏ ଯାଇ ବିଷ୍ଣୁଙ୍କ ସେବକ ।

ଶତମନ୍ୱନ୍ତର ଯାଏ ସେହିଠାରେ ରହେ
ସେ ଅନ୍ତେ ବ୍ରାହ୍ମଣ କୁଳେ ଜାତ ପୁଣି ହୁଏ ।
ବଇଶାଖେ ଯେବେ ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ର
କରଥାଏ ନାରାୟଣ ଦେବତାଙ୍କ କ୍ଷେତ୍ରେ ।
ଦୁଇଗୁଣ ଫଳ ତହିଁ ହୁଅଇଟି ଜାଣ
କହୁ ଅଛନ୍ତି ଏରୂପେ କମଳଆସନ ।
ଯେଉଁଲୋକ ବ୍ରାହ୍ମଣଙ୍କୁ ଜଳଦାନ କରେ
ବସଇ ସେ ଅନ୍ତକାଳେ ବସୁଙ୍କ ମନ୍ଦିରେ ।
ଜଳପ୍ରମାଣ ବରଷ ସେଠାରେ ତାହାର
ଅବସ୍ଥାନ ହୁଏ ଆଗୋ ସତୀ ମନୋହର ।
ସେ ଅନ୍ତରେ ଆପଣାର କୁଳେ ଜାତ ହୋଇ
ପୁଣ୍ୟାପୁରୁଷ ଧର୍ମ ଧନ ଲଭଇରେ ସେହି ।
ତୀର୍ଥମାନେ ଜଳ ଦାନ କରଥିବ ଯେବେ
ତହିଁର ଦ୍ୱିଗୁଣ ଫଳ ହୋଇବଟି ତେବେ ।
ବସ୍ତ୍ର ଅଳଙ୍କାରେ ମଣ୍ଡି ସୁନ୍ଦରୀ ରମଣୀ
ବ୍ରାହ୍ମଣଙ୍କୁ ଦାନ କରଥାଏ ଯେହୁ ପୁଣି ।
ଚତୁର୍ଦ୍ଦଶ ଇନ୍ଦ୍ର କାଳ ଚନ୍ଦ୍ରଲୋକେ ଯାଇ
ବାସ କରଇ ସେ ଲୋକ ମହାସୁଖ ପାଇ ।
ସେହିଠାରେ ସ୍ୱର୍ଗବାରସ୍ତ୍ରୀଙ୍କ ସହିତେ
କ୍ରୀଡ଼ା କରୁଥାଏ ଅତି ଆନନ୍ଦ ଚିତ୍ତେ ।
ସେ ଅନ୍ତେ ଗନ୍ଧର୍ବ ଲୋକେ ଅୟୁତ ବରଷ
ହୁଏ ଆଗୋ ମହାସତୀ ତାହାର ନିବାସ ।
ବେଶଭୂଷା ହୋଇ ତହିଁ ଉର୍ବଶୀ ସୁନ୍ଦରୀ
କ୍ରୀଡ଼ା କରୁଥାଏ ତାହା ସଙ୍ଗେ ଆସିକରି ।
ସେ ଅନ୍ତେ ସହସ୍ରେ ଜନ୍ମେ ସୁନ୍ଦରୀ କାମିନୀ
ଭୋଗକରେ ସେହି ପୂର୍ବଦାନ ଫଳଯୋଗେ ।
ବ୍ରାହ୍ମଣଙ୍କୁ ଫଳବୃକ୍ଷ ଦିଏ ଯେ ସନ୍ତୋଷେ
ଫଳ ପ୍ରମାଣ ବରଷ ଇନ୍ଦ୍ରଲୋକେ ବସେ ।
ପୁଣି ଆପଣା ବଂଶରେ ଜନମ ହୁଅଇ
ପୁତ୍ରପୌତ୍ର ସେନ ମହାସୁଖରେ ରହଇ ।
ସେପରି ସହସ୍ରେ ବୃକ୍ଷ କରଥିଲେ ଦାନ
ଫଳ ପ୍ରାପତ ହୁଅଇ ତହୁଁ ଲକ୍ଷେଗୁଣ ।
କେବଳ ଯେ ଫଳ ଦାନ କଲେ ବ୍ରାହ୍ମଣଙ୍କୁ
ତାର ଫଳେ ଗମଇ ସେ ସ୍ୱର୍ଗ ଭବନକୁ ।
ଚିରକାଳ ରହି ତହିଁ ପୁଣି ଭାରତରେ
ଜନମ ହୁଅଇ ଆସି ଉତ୍ତମ କୁଳରେ ।

ନାନା ଦ୍ରବ୍ୟ ପୂର୍ଣ୍ଣକରି ବ୍ରାହ୍ମଣ ଯକାରେ
ଗୃହଟିଏ ଦାନ କରଥାଏ ଯେ ସନ୍ତୋଷେ ।
କୁବେରଲୋକରେ ସେହି ଏକମନ୍ୱନ୍ତର
ବାସକରେ ଜାଣ ଆଗୋ ରମଣୀଙ୍କବର ।
ସେ ଅନ୍ତରେ ଧନବନ୍ତ ବଂଶେ ଜନ୍ମ ହୋଇ
ଦାନ ପୁଣ୍ୟ କରେ ଧର୍ମେ ମାନସକୁ ଦେଇ ।
ଯେଉଁ ଲୋକ ପୁଣ୍ୟକ୍ଷେତ୍ରେ ଶସ୍ୟପୂର୍ଣ୍ଣମହୀ
ବ୍ରାହ୍ମଣଙ୍କୁ ଦାନ କରେ ଭକ୍ତିଭାବ ବହି ।
ଶତ ମନ୍ୱନ୍ତର ବଇକୁଣ୍ଠେ ବାସ କରି
ନାନାବିଧ ସୁଖଭୋଗ କରେ ସେହିନର ।
ପୁଣି ସୁଯୋନିରେ ଜନ୍ମ ଲଭଇ ମହୀରେ
ଧନବନ୍ତ ହୁଏ ପୁଣି ଲୋକଙ୍କ ମଧ୍ୟରେ
ଶତେ ଜନ୍ମଯାଏ ତାକୁ ଉର୍ବରା ମେଦିନୀ
ତ୍ୟାଗ ନ କରଇ ପୂର୍ବ କର୍ମଫଳ ଘେନି ।
ଲକ୍ଷ୍ମୀବନ୍ତ ଧନଶାଳୀ ପୁତ୍ରବନ୍ତ ହୋଇ
ଜାତ ନ ହୁଅନ୍ତି ତାର ବଂଶରେଟି କେହି
ଉତ୍ତମ ଲୋକ ସଙ୍କୁଳ ଗ୍ରାମଟିଏ ବାଛି
ବ୍ରାହ୍ମଣଙ୍କୁ ଦାନ ଯେବା କରଇ ମୁରୁଛି ।
ଲକ୍ଷେ ମନ୍ୱନ୍ତର ଯାଏ ବଇକୁଣ୍ଠେ ଘର
ସେହି ଧର୍ମଫଳ ଜାଣ ହୁଏ ସେ ଲୋକର ।
ଜନମ ଯେ ହୁଏ ପୁଣ ରାଜା ଔରସରେ,
ଅଧିକାର କରେ ବସି ଲକ୍ଷେକ ଗ୍ରାମରେ ।
ଲକ୍ଷେ ଜନ୍ମଯାଏ ତାକୁ ଫଳବତୀ ମହୀ
କେତେବେଳେ ଛାଡ଼ିକରି ନ ପାରଇ ରହି ।
ଉତ୍ତମ ସ୍ୱପ୍ରଜା ପଞ୍ଚଶସ୍ୟ ସମନ୍ୱିତ
ଏ ବାହାରେ ପୁଷ୍କରିଣୀ ଫଳ ବୃକ୍ଷଯୁତ ।
ଏମନ୍ତ ନଗରଟିଏ ବ୍ରାହ୍ମଣଙ୍କୁ ଦାନ
କରଇ ଭାରତ ବର୍ଷେ ଯେଉଁ ପୁଣ୍ୟବାନ ।
ଦଶଲକ୍ଷ ଇନ୍ଦ୍ରକାଳ ବଇକୁଣ୍ଠେ ବସି
ଭୋଗ କରଇ ସେ ନାନାସୁଖ ଅହର୍ନିଶି ।
ପୁଣି ଆପଣା ଯୋନିରେ ଜନ୍ମ ଲଭିକରି
ହୁଅଇ ଭାରତବର୍ଷେ ମୁଖ୍ୟ ଦଣ୍ଡଧାରୀ ।
ଦଶସହସ୍ର ନଗର ମିଳଇ ତାହାକୁ
ଏଥିରେ ସଂଶୟ ନାହିଁ କହିଲି ତୁମ୍ଭଙ୍କୁ ।
ନିଯୁତେ ଜନମ ଯାଏ ତାକୁ ବସୁମତୀ
ଛାଡ଼ିକରି ନ ରହଇ ଜାଣ ଗୋ ସୁନ୍ଦରୀ ।

ପରମ ଐଶ୍ୱର୍ଯ୍ୟ ଲଭି ସେ ମର୍ତ୍ତ୍ୟଲୋକରେ
ସ୍ୱର୍ଗରେ ଇନ୍ଦ୍ର ସମାନ ଭାଗ୍ୟ ଭୋଗକରେ ।
ଭକ୍ତିଭରେ ଯେଉଁ ଲୋକ ଶତେକ ନଗର
ଦାନକରେ ଅବା ଏକଦେଶ ସେ ପ୍ରକାର ।
ଉତ୍ତମ ପ୍ରଜାଗଣରେ ପୂର୍ତ୍ତି କରଇ ଏ
କୋଟି ମନ୍ୱନ୍ତର ବଇକୁଣ୍ଠେ ସ୍ଥାନ ପାଏ ।
ସ୍ୱଯୋନିରେ ଜନ୍ମ ହୋଇ ପୁଣି ଭାରତରେ
ଅଧିପତି ହୁଏ ଏକ ଉତ୍ତମ ଦ୍ୱୀପରେ ।
ପରମ ଐଶ୍ୱର୍ଯ୍ୟ ଭୋଗ କରେ ଅବିରତ ।
ଯେଉଁରୂପେ ସ୍ୱର୍ଗ ସୁଖ ଭୁଞ୍ଜେ ଶଚୀକାନ୍ତ ।
କୋଟିଏ ଜନ୍ମରେ ତାକୁ ନ ଛାଡ଼ଇ ମହୀ
ରାଜତ୍ୱ କରଇ ଲୋକ ପାଇ ଦୀର୍ଘାୟୁଷ ସେହି ।
ଯେଉଁ ଲୋକ ଆପଣାର ସବୁ ଅଧିକାର
ଉତ୍ତମ ଦ୍ୱିଜକୁ ଦିଏ ନ ହୋଇ କାତର ।
ଏହାଠାରୁ ଚତୁର୍ଗୁଣ ଫଳ ତାର ହୁଏ
ଅନ୍ତଃକାଳେ ଶ୍ରୀହରିଙ୍କ ପାଶରେ ସେ ରହେ ।
ଜମ୍ବୁଦ୍ୱୀପ ଦାନ କରିପାରେ ଯେଉଁ ଜନ
ତାହାର ହୁଅଇ ଏଥୁଁ ଫଳ ଶତେଗୁଣ ।
ସପ୍ତଦ୍ୱୀପା ପୃଥିବୀ କଲେ ହେଲେ ଦାନ
କି ଅବା ସକଳ ତୀର୍ଥଜଳେ କଲେ ସ୍ନାନ ।
ଅଥବା ସମସ୍ତ ତପ ଉପବାସ କଲେ
କୋଟିଏ ବା ସର୍ବସିଦ୍ଧି ପ୍ରାପତ ହୋଇଲେ ।
କାଳବଶେ ଜନ୍ମମୃତ୍ୟୁ ହୁଅଇ ଅବଶ୍ୟ
ମାତ୍ର ଯେଉଁ ଲୋକ ଅଟେ ଶ୍ରୀହରିଙ୍କ ଦାସ ।
ଜନ୍ମମୃତ୍ୟୁ ଜରା ବ୍ୟାଧି ତାହାର ପାଶକୁ
ଆସି ନ ପାରନ୍ତି କେବେ ସନ୍ତାପ ଦେବାକୁ ।
ଆଗୋ ସତୀ ବଇଷ୍ଣବେ ବୋଲି ବ୍ରହ୍ମାଙ୍କର
ଉତ୍ପତ୍ତି ପତନ ଦେଖୁଥାନ୍ତି ବାରମ୍ବାର ।
ଗୋଲୋକ ବା ବଇକୁଣ୍ଠେ ରହି ସେହିମାନେ
ଶ୍ରୀହରିଙ୍କୁ ସେବା କରୁଥାନ୍ତି ଅନୁକ୍ଷଣେ ।
ଯେଉଁ ଲୋକ ବିଷ୍ଣୁ ମନ୍ତ୍ର ଉପାସନା କରି
ମାନବ ଶରୀର ତେଜି ଦିବ୍ୟଦେହ ଧରେ ।
ଏ ବାହାରେ ଜରାମୃତ୍ୟୁ ଜନ୍ମ ତ୍ୟାଗକରି
ବିଷ୍ଣୁଙ୍କ ସେବାରେ ଦିନ କଟାଇ ସେ ହରି ।
ଗୋଲୋକ ଭବନେ ରହି ପ୍ରାକୃତିକ ଲୟ
ଅସଂଖ୍ୟ ହୁଅନ୍ତା ତାହା ଦେଖନ୍ତି ନିଶ୍ଚୟ ।

ଦେବ ସିଦ୍ଧ ମୁନିମାନେ ଅସଂଖ୍ୟ ଜଗତ
ଭୋଗ ନ କରନ୍ତି କରଇ ଯେ ବିଷ୍ଣୁଭକ୍ତ ।
କାର୍ତ୍ତିକ ମାସରେ ଯେହୁ ତୁଳସୀ ମଞ୍ଜରୀ
ବିଷ୍ଣୁଙ୍କୁ ଅର୍ପଣ କରେ ଅତି ଯତ୍ନ କରି ।
ପତ୍ର ପରିମାଣ ଯୁଗ ଶ୍ରୀହରିଙ୍କ ପାଶେ
ଅବସ୍ଥାନ କରଇ ସେ ଆନନ୍ଦ ମାନସେ ।
ପୁନରପି ନିଜ ଗେହେ ଜନ୍ମଲାଭ କରି
ସେବାକରେ ଶ୍ରୀକୃଷ୍ଣଙ୍କୁ ଭକ୍ତିଭାବ ଧରି ।
ଭାରତବର୍ଷରେ ସୁଖୀ ଚିରଜୀବୀ ହୁଏ ।
ତା ସମାନ ଭାଗ୍ୟବନ୍ତ ନ ହୁଅନ୍ତି କିଏ ।
କାର୍ତ୍ତିକରେ ହରିଙ୍କୁ ଯେ ଘୃତଦୀପ ଦେବ
ଯେତେକାଳ ଘୃତଦୀପ ମଧ୍ୟେ ରହିଥିବ ।
ସେତିକ ବରଷ ପାଏ ବିଷ୍ଣୁଙ୍କ ଲୋକରେ
ନିବାସ କରଇ ସୁଖେ ମହାଆନନ୍ଦରେ ।
ପୁଣି ଆପଣା କୁଳରେ ଜନମ ହୁଅଇ
ଶ୍ରୀହରିଙ୍କ ସେବାରେ ସେ ମନକୁ ଦିଅଇ ।
ମହାଧନୀ ଚକ୍ଷୁଷ୍ମାନ ଦୀପ୍ତିମନ୍ତ ପୁଣି
ହୁଅଇ ନିଶ୍ଚୟ ଜାଣ ସତୀ ଶିରୋମଣି ।
ମାଘମାସେ ଯେଉଁଲୋକ ପ୍ରଭାତ କାଳରେ
ସ୍ନାନକରେ ମନ୍ଦାକିନୀ ପବିତ୍ର ଜଳରେ ।
ଷାଠିଏ ସହସ୍ର ଯୁଗ ହରିଙ୍କ ମନ୍ଦିରେ
ଆନନ୍ଦ ଚିତ୍ତରେ ବସି ସୁଖ ଭୋଗକରେ ।
ସ୍ୱଯୋନିରେ ଜନ୍ମ ପୁଣି ଭାରତବର୍ଷରେ
ବିଷ୍ଣୁଭକ୍ତ ଜିତେନ୍ଦ୍ରିୟ ପଣ୍ଡିତ ହୁଏ ସେ ।
ମାଘମାସେ ପ୍ରୟାଗରେ କରଇ ଯେ ସ୍ନାନ
ଲକ୍ଷେ ମନ୍ୱନ୍ତରେ ବିଷ୍ଣୁଲୋକେ ପାଏ ସ୍ଥାନ ।
ପୁନରପି ସ୍ୱଯୋନିରେ ଜନ୍ମ ହୋଇକରି
ବିଷ୍ଣୁମନ୍ତ୍ର ଜପ ସବୁ କଳୁଷ ସଂହାରି ।
ମନୁଷ୍ୟ ଶରୀର ତେଜି ବୈକୁଣ୍ଠ ଯାଏ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ସେଠାରେ ଥାଏ ।
ସେ ଅନ୍ତରେ ଶ୍ରୀହରିଙ୍କ ସେବକ ହୁଅଇ
କ୍ରମେ କ୍ରମେ ମୁକ୍ତିମାର୍ଗେ ପ୍ରବେଶ କରଇ ।
ଭୃତ୍ୟଜନ ଗଙ୍ଗାରେ ଯେ ସ୍ନାନକରେ ଯାଇ
ସୂର୍ଯ୍ୟଙ୍କ ସମାନ ସେହି ପବିତ୍ର ଅଟଇ ।
କୋଟି କୋଟି ଅଶ୍ୱମେଧ ଫଳ ହୁଏ ତାର
ଏଥିରେ ଟିକେ ସନ୍ଦେହ ନାହିଁ ମାତ୍ର ।

ତାହାର ପଦରଜରେ ପୂତ ହୁଏ ମହୀ
ଅନ୍ତଃକାଳେ ବୈକୁଣ୍ଠରେ ବସଇ ସେ ଯାଇ ।
ପୁଣି ସ୍ୱଯୋନିରେ ଜାତହୋଇ ତପୋଧନ
ହୋଇଏ ଜଗତେ ସେହୁ ଭାଗ୍ୟବନ୍ତ ଜନ ।
ଆବର ପଣ୍ଡିତ ଜିତେନ୍ଦ୍ରିୟ ସତ୍ୟବ୍ରତ
ତପଶୀଳ ହୁଏ ପୁଣି ବିଶୁଦ୍ଧ ଚରିତ ।
ମୀନ କର୍କଟ ଏ ଦୁଇମାସର ମଧ୍ୟରେ
ସୂର୍ଯ୍ୟଙ୍କର ସେହୁ ସେବା ଘୋରତପ କରେ ।
ଚତୁର୍ଦ୍ଦଶ ଇନ୍ଦ୍ରକାଳ ବୈକୁଣ୍ଠେ ବସଇ
ସେ ଅନ୍ତରେ ନିଜକୁଳେ ଜନମ ହୁଅଇ ।
ଯେଉଁଲୋକ ଗ୍ରୀଷ୍ମକାଳେ ସୁବାସିତ ନୀର
ଦାନକରି ତୋଷେ ଚିତ୍ତ ଜୀବମାନଙ୍କର ।
ସେ ମଧ୍ୟ ବୈକୁଣ୍ଠପୁରେ ବସେ ଅନ୍ତଃକାଳେ
ପୁଣି ଜାତହୁଏ ଆସି ଆପଣାର କୁଳେ
ବୈଶାଖେ ହରିଙ୍କ ଗାତ୍ରେ ଲେପିଲେ ଚନ୍ଦନ
ଷଷ୍ଟିସହସ୍ର ଯୁଗ ହୁଏ ବିଷ୍ଣୁଲୋକେ ସ୍ଥାନ ।
ପୁଣି ଆପଣା ବଂଶରେ ଜନ୍ମଲଭି ହୁଏ
ଧନଜନ ଗୋପଲକ୍ଷ୍ମୀ ପୂର୍ଣ୍ଣ ହୋଇଥାଏ ।
ଯଜ୍ଞସୂତ୍ର ଦାନକଲେ ଏହିରୂପେ ଫଳ
ହୁଅଇ ଗୋ ପତିବ୍ରତେ ଅନ୍ୟଥା ନ ଭଳ ।
ବୈଶାଖ ମାସରେ ବ୍ରାହ୍ମଣଙ୍କୁ ଶକ୍ତୁ ଦାନ
କରେ ଯେଉଁ ଲୋକ ହରଷିତ କରି ମନ ।
ଶକ୍ତୁରେ ଯେତେକ ରେଣୁ ପୂର୍ଣ୍ଣଥାଏ ହୋଇ
ସେତେକ ବରଷ ବିଷ୍ଣୁଲୋକେ ସେ ବସଇ ।
ଭାରତବରଷେ ଯେହୁ କୃଷ୍ଣ ଜନ୍ମାଷ୍ଟମୀ
ବ୍ରତ ଆଚରଣ କରେ ମିଥ୍ୟାରେ ନ ଭ୍ରମି ।
ଶତଜନ୍ମର କଳୁଷ ଖଣ୍ଡିତ ହୁଅଇ
ସଂଶୟ ଏଥିରେ କିଛୁ ନାହିଁ କହୁଥାଇ ।
ଚତୁର୍ଦ୍ଦଶ ଇନ୍ଦ୍ରକାଳ ବୈକୁଣ୍ଠ ଭୁବନେ
ବସଇ ସେ ଶ୍ରୀହରିଙ୍କୁ ସେବି ଅନୁକ୍ଷଣେ ।
ପୁଣି ସ୍ୱଯୋନିରେ ଜାତ ହୋଇ ମହୀତଳେ
ଶ୍ରୀକୃଷ୍ଣଙ୍କୁ ସେବା କରିଥାଏ ସବୁକାଳେ ।
ଏହି ଭାରତବର୍ଷରେ ଶିବରାତ୍ରି ବ୍ରତ
ଆଚରଣ କରେ ଯେହୁ ନ ହୋଇ ବିରତ ।
ସପ୍ତମନ୍ୱନ୍ତର ଯାଏ ଶିବଙ୍କ ଲୋକରେ
ରହଇ ସେ ମହାନନ୍ଦେ ଈଶଙ୍କ ଭବରେ ।
ଶିବରାତ୍ରି ନିଶାକାଳେ ବିଲ୍ୱପତ୍ର ନେଇ
ଯେଉଁ ଲୋକ ଶିବଙ୍କର ମସ୍ତକେ ଦିଅଇ ।
ପତ୍ର ପରିମାଣ ଯୁଗ ଶିବ ଭୁବନରେ
ବିହାର କରଇ ଶିବଗଣଙ୍କ ସଙ୍ଗରେ ।
ପୁଣି ନିଜକୁଳେ ଆସି ଜନମ ହୁଅଇ
ବିଦ୍ୟାବନ୍ତ ରୂପବନ୍ତ ଧନବନ୍ତ ହୋଇ ।
ଚୈତ୍ରରେ ବା ମାଘମାସେ ଶିବଙ୍କୁ ଯେ ବ୍ରତୀ
ଅର୍ଚ୍ଚନା କରଇ ଧର୍ମେ ଦେଇ ନିଜମତି ।
ଏ ବାହାରେ ନୃତ୍ୟଗୀତ ଉତ୍ସବ କରାଇ
ନାନା ଉପଚାରେ ମିଷ୍ଟ ଦ୍ରବ୍ୟମାନ ଦେଇ ।
ମାସ ଅବା ଅର୍ଦ୍ଧମାସ ଦଶ ସାତଦିନ
ଏହିପରି ନିୟମରେ କରଇ ପାଳନ ।
ଦିନ ପରିମାଣ ଯୁଗ ଶିବଲୋକେ ରହି
ଆନନ୍ଦରେ ଦିନ ସେହି ଯାପନ କରଇ ।
ଶ୍ରୀରାମ ନବମୀ ଉପବାସ ଯେହୁ କରେ
ସପ୍ତ ମନ୍ୱନ୍ତର ବସେ ବିଷ୍ଣୁଙ୍କ ମନ୍ଦିରେ ।
ଆପଣା କୁଳରେ ପୁଣି ଜନ୍ମ ହୋଇକରି
ଶ୍ରୀରାମଙ୍କୁ ସେବା କରେ ଭକ୍ତିଭାବ ଧରି ।
ଜିତେନ୍ଦ୍ରିୟ ଧର୍ମବନ୍ତ ପଣ୍ଡିତ ଦୟାକୁ
ପୁଣି ସତ୍ୟସନ୍ଧ ହୁଏ ଜନ୍ମହୋଇବାକୁଁ ।
ସାମାନ୍ୟ ମାନବ ହୋଇ ଅବା ହୋଇ ରାଜା
ଯେବେ ସେ ଶରତକାଳେ କରେ ଦୁର୍ଗାପୂଜା ।
ଗନ୍ଧପୁଷ୍ପ ଧୂପଦୀପ ନୈବେଦ୍ୟ ଆଦି
ନାନାବିଧ ଉପଚାର ସାଦରେ ସମ୍ପାଦି ।
ନୃତ୍ୟଗୀତ ନାନାବାଦ୍ୟ କଉତୁକ ଯୋଗେ
ସନ୍ତୁଷ୍ଟ କରେ ଦେବୀଙ୍କୁ ଭକ୍ଷ୍ୟ ଭୋଜ୍ୟଭୋଗେ ।
ସେ ଲୋକ ସପତ ମନ୍ୱନ୍ତର ପରିଯନ୍ତେ
ଶିବଲୋକରେ ନିବାସ କରଇ ନିଶ୍ଚିନ୍ତେ ।
ପୁଣି ସ୍ୱଯୋନିରେ ଜାତ ହୋଇ ମହୀତଳେ
ଅରଜଇ ଧର୍ମ ଧନ ଜ୍ଞାନ ବୁଦ୍ଧି ବଳେ ।
ପୁତ୍ର ପୌତ୍ର ହୋଇ ନିଜ କୁଟୁମ୍ବରେ ସୁଖ
ଲଭଇ ତାଠାରୁ ଲକ୍ଷ୍ମୀ ନୁହନ୍ତି ବିମୁଖ ।
ହସ୍ତୀ ଅଶ୍ୱ ଛତ୍ର ଶ୍ୱେତଚାମର ବିମାନ
ରାଜସମ୍ପଦ ପ୍ରାପତ ହୁଏ ମନେ ଘେନ ।
ଭାଦ୍ର କୃଷ୍ଣ ଅଷ୍ଟମୀରେ ମହାଲକ୍ଷ୍ମୀଙ୍କର
ଅର୍ଚ୍ଚନା କରଇ ଯେହୁ ହୋଇ ତତପର ।

ନୋହିଲେ ସେ ଦିନଠାରୁ ପକ୍ଷ ଶେଷଯାଏ
ନାନାବିଧ ଉପଚାରେ ପୂଜାକଲେ ସ୍ନେହେ ।
ଚନ୍ଦ୍ର ସୂର୍ଯ୍ୟ ଯେତେ କାଳ ଉଦୟ ହୁଅନ୍ତି
ହୁଏ ସେତେକାଳ ତାର ବଇକୁଣ୍ଠେ ସ୍ଥିତି ।
ପୁଣି ବଂଶେ ଜାତ ହୋଇ ରାଜରାଜେଶ୍ୱର
ପଦଲାଭ କରଇ ସେ ସତ୍ୟ ମନେକର ।
କାର୍ତ୍ତିକ ମାସ ପୂର୍ଣ୍ଣିମା ତିଥିରେଟି ଯେହ୍ନ
ରାସ ମଣ୍ଡଳ ଗୋଟିଏ ନିର୍ମାଣ କରଇ ।
ଶିଳାରେ କାଷ୍ଠରେ ଅବା ଖଟେ ଗୋପୀଗୋପ
ରାଧିକା ସହିତେ ପୁଣି ଶ୍ରୀକୃଷ୍ଣଙ୍କ ରୂପ ।
ନିର୍ମାଣ କରାଇ ମୁଖ୍ୟ ଶିଳ୍ପୀଙ୍କ ହସ୍ତରେ
ବସାଇ ଆନନ୍ଦେ ସେହି ରାସ ମଣ୍ଡଳରେ ।
ଉପଚାର ଷୋଡ଼ଶରେ ପୂଜା ବିଧି କରି
ପ୍ରଣାମ କରିବ ମନେ ଶ୍ରୀକୃଷ୍ଣ ସୁମରି ।
ସେହିଲୋକ ଅନ୍ତଃକାଳେ ଗୋଲୋକରେ ବାସ
କରଇ ବ୍ରହ୍ମାଙ୍କ ଆୟୁ ହେବାଯାଏ ଶେଷ ।
ସେ ଅନ୍ତେ ଭାରତବର୍ଷେ ଜନ୍ମଲାଭକରି
ସର୍ବଦା ମନରେ ଧ୍ୟାନ କରୁଥାଏ ହରି ।
ହରିରେ ସୁଦୃଢ଼ ଭକ୍ତି ହୁଅଇ ତାହାର
ଗୋଲୋକକୁ ଯାଏ ତେଜି ମନୁଷ୍ୟ ଶରୀର ।
ଶ୍ରୀକୃଷ୍ଣ ସାରୂପ୍ୟ ଲଭିକରି ସେ ଅନ୍ତରେ
ପାର୍ଷଦ ହୋଇଣ ରହେ ତାହାଙ୍କ ପାଶରେ ।
ଜରା ମୃତ୍ୟୁ ଭୟ ଶୋକେ ପୁଣି ତାର ନାହିଁ
ନୁହଇ ଏକଥା ଗୋଟି ଅଟଇ ଯଥାର୍ଥ ।
କୃଷ୍ଣପକ୍ଷ ଅବା ଶୁକ୍ଳପକ୍ଷ ଏକାଦଶୀ
ତିଥିରେ ଯେ ଉପବାସ କରେ ଅହର୍ନିଶି ।
ବ୍ରହ୍ମାଙ୍କ ସମୟ କାଳ ବୈକୁଣ୍ଠେ ବସଇ
ମହତ ଆନନ୍ଦ ଲଭିକରେ ସେହିଠାଇଁ ।
ଭାରତକୁ ଆସି ପୁଣି ହରିଭକ୍ତି ପାଏ
ଅନ୍ତଃକାଳେ ପୁନରପି ବଇକୁଣ୍ଠେ ଯାଏ ।
ଭାଦ୍ରକୃଷ୍ଣ ଦ୍ୱାଦଶୀରେ ଇନ୍ଦ୍ରଙ୍କୁ ଯେ ନର
ପୂଜାକରେ ହରଷରେ ହୋଇ ଜର ଜର ।
ଷାଠିଏ ସହସ୍ର ବର୍ଷ ଶକ୍ରଲୋକେ ରହି
ପୁଣି ଭାରତବର୍ଷରେ ଜନମ ହୁଅଇ ।
ଶୁକ୍ଳପକ୍ଷ ରବିବାର ସପ୍ତମୀ ତିଥିରେ
ରବି ସଂକ୍ରମଣ ଯେବେ ହୁଏ ଦଇବରେ ।
ସେହିଦିନ ସୂର୍ଯ୍ୟପୂଜା ହବିଷ୍ୟ ଭୋଜନ
ପୁଣ୍ୟକ୍ଷେତ୍ରେ ଦେବସ୍ଥାନେ କରେ ଯେଉଁଜନ ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ସୂର୍ଯ୍ୟଲୋକେ ବାସ
ହୁଅନ୍ତି ଏମନ୍ତ ଶାସ୍ତ୍ରେ ହୋଇଛି ପ୍ରକାଶ ।
ଭାରତବରଷେ ପୁଣି ଜାତ ହୋଇକରି
ଅରୋଗୀ ଲକ୍ଷଣବନ୍ତ ହୁଅଇ ସେପରି ।
ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେଟି ଯେବେ
ସାବିତ୍ରୀଙ୍କୁ ପୂଜା କରୁଥିବ ଭକ୍ତିଭାବେ ।
ସପ୍ତ ମନ୍ୱନ୍ତରବ୍ରହ୍ମଲୋକେ ଆନନ୍ଦରେ
ବାସ କଲାପରେ ପୁଣି ଭାରତବର୍ଷରେ ।
ଜନମ ପ୍ରାପତ ହୁଏ ଏ କଥା ଅବଶ୍ୟ
କଦାପି ଏଥିରେ ନ କରିବ ଅବିଶ୍ୱାସ ।
ଚିରଜୀବୀ ଜ୍ଞାନବନ୍ତ ପରାକ୍ରମଶାଳୀ
ହୁଅଇ ତେମନ୍ତ ଲୋକ ଜାଣ କହିଦେଲି ।
ସରସ୍ୱତୀଙ୍କୁ ଯେ ମାଘ ଶୁକ୍ଳ ପଞ୍ଚମୀରେ
ପୂଜା କରୁଥାଏ ନାନାବିଧ ଉପଚାରେ ।
ବ୍ରହ୍ମାଙ୍କ ବୟସ କାଳ ବଇକୁଣ୍ଠେ ବସି
ଭୋଗକରେ ନାନାରୂପ ସୁଖେ ଅହର୍ନିଶି ।
ପୁଣି ନରଜନ୍ମ ଲଭି କବି ସୁପଣ୍ଡିତ
ହୁଅଇ ଆବର ସବୁ ଗୁଣରେ ମଣ୍ଡିତ ।
ଭାରତବର୍ଷରେ ଯେଉଁଲୋକ ବ୍ରାହ୍ମଣଙ୍କୁ
ନିତ୍ୟ ଦାନ କରୁଥାଏ ସୁବର୍ଣ୍ଣ ଗାଈଙ୍କୁ ।
ଏହିପରି ଜୀବ ଥିବାଯାଏ କରେ ଯେବେ
ଅନ୍ତଃକାଳେ ବିଷ୍ଣୁପୁରେ ଗମଇ ସେ ତେବେ ।
ଗାଈଙ୍କ ଦେହରେ ଯେତେ ଲୋମ ଥାଏ ରହି
ତହିଁର ଦ୍ୱିଗୁଣ ବର୍ଷ ବାସକରେ ତହିଁ ।
ହରିଙ୍କ ସହିତ କ୍ରୀଡ଼ା କୌତୁକ ମଙ୍ଗଳ
ସମସ୍ତ ଯାପନ କରି ପୁଣି କେତେକାଳ ।
ଭାରତେ ଜନମି ରାଜରାଜେଶ୍ୱର ହୁଏ
ଧନବନ୍ତ ପୁତ୍ରବନ୍ତ ପଣ୍ଡିତ ବୋଲାଏ ।
ଯେଉଁଲୋକ ମିଷ୍ଟଦ୍ରବ୍ୟ ଭୁଞ୍ଜାଏ ଦ୍ୱିଜଙ୍କୁ
ଆବର ଦକ୍ଷିଣା ଦେଇ ତୋଷଇ ମନକୁ ।
ବିପ୍ରଦେହେ ଯେତେ ଲୋମ ସେତିକେ ବରଷ
ବିଷ୍ଣୁମନ୍ଦିରେ ବସଇ ହୋଇଣ ହରଷ ।
ସେ ଅନ୍ତରେ ମର୍ତ୍ତ୍ୟଲୋକେ ଜାତ ହୋଇକରି
ବିଷ୍ଣୁଙ୍କୁ ଭଜନ କରେ ଦିବସ ଶର୍ବରୀ ।

ନାରାୟଣ କ୍ଷେତ୍ରେ ସେହି ଦାନ କରିଥିଲେ
ତାର କୋଟିଗୁଣ ଫଳ ହୁଏ ଜାଣ ଭଲେ ।
ନାରାୟଣ କ୍ଷେତ୍ରରେ ଯେ କୋଟି ହରିନାମ
ଜପ କରିଥାଏ କିଛି ନ କରି ବିଳେମ ।
ସକଳ କଳୁଷ ତାର ଦୂର ହୋଇଯାଏ
ଜୀବନମୁକତ ହୋଇ ମର୍ତ୍ତ୍ୟରେ ସେ ରହେ ।
ଅନ୍ତଃକାଳେ ବିଷ୍ଣୁଲୋକେ ମହା ସୁଖ ପାଇ
କେତେଦିନ ପରେ ପୁଣି ସାରୂପ୍ୟ ଲଭଇ ।
ମୃତ୍ତିକା ଶଙ୍କରଲିଙ୍ଗ ବସାଇ ଯେ ଜନ
ବିଧି ଅନୁସାରେ ପୂଜା କରେ ପ୍ରତିଦିନ ।
ଶିବଙ୍କ ମନ୍ଦିରେ ବସେ ଯାବତ ଜୀବନ
ମୃତ୍ତିକାରେ ଯେତେ ଅଣୁ ଥାଏ ସେ ପ୍ରମାଣ ।
ବରଷ ଅନ୍ତରେ ପୁଣି ଭାରତକୁ ଆସି
ରାଜରାଜେଶ୍ୱର ହୋଇ ସୁଖେ ରହେ ବସି ।
ଯେଉଁ ଲୋକ ଶାଳଗ୍ରାମ ଶିଳା ଧୌତକରି
ଭକ୍ତିଭାବେ ନିତ୍ୟ ସେବା କରଇ ସେ ବାରି ।
ଆବର ସେହି ଶିଳାକୁ ପୂଜଇ ବରଷେ
ବ୍ରହ୍ମାଙ୍କ ଶତବତ୍ସର ବଇକୁଣ୍ଠେ ବସେ ।
ସେ ଅନ୍ତରେ ଜନ୍ମ ଲଭି ଶ୍ରୀହରିଙ୍କ ଭକ୍ତ
ହୁଅଇ ମାନବଲୋକେ ଅଟେ ଏହା ସତ୍ୟ ।
ପୁଣି ଦେହ ଅନ୍ତେ ଯାଏ ଶ୍ରୀକୃଷ୍ଣଙ୍କ ପୁରେ
ତାହାର ପତନ ନୁହେଁ କେବଣ କାଳରେ ।
ମହୀ ପ୍ରଦକ୍ଷିଣ କରି ସର୍ବତୀର୍ଥେ ସ୍ନାନ
ଉତ୍ସାହରେ ଥରେ ଅବା କରେ ଯେଉଁ ଜନ ।
ମୁକତି ଲଭଇ ସେହି ସେତିକ ମାତ୍ରରେ
ଜନମ ନୁହଇ ଆଉ ମରତ ଲୋକରେ ।
ପୁଣ୍ୟକ୍ଷେତ୍ରେ ଭାରତରେ ଅଶ୍ୱମେଧ ଯାଗ
କରି ଯେଉଁଲୋକ ଦିଏ ଦେବତାଙ୍କୁ ଭାଗ ।
ଅଶ୍ୱର ଲୋମପ୍ରମାଣ ବର୍ଷକାଳ ସେହି
ଇନ୍ଦ୍ର ଅର୍ଦ୍ଧ ଆସନରେ ବସେ ସୁଖପାଇ ।
ରାଜସୂୟ ଯାଗକଲେ ତହୁଁ ଚାରିଗୁଣ
ଫଳଲାଭ ହୁଏ ଏହା ଶାସ୍ତ୍ରର ପ୍ରମାଣ ।
ନରମେଧ କଲେ ଅଶ୍ୱମେଧ ଅର୍ଦ୍ଧ ଫଳ
ହୁଅଇ ଏଥିରେ ଆଉ ନାହିଁ କିଛି ଭୁଲ ।
ମୂର୍ତ୍ତି ଯାଗ କଲେ ତହୁଁ ଅଧିକ ହୁଅଇ
ଆବର ଉତ୍ତମ ପୁତ୍ର କୁଳେ ଜାତ ହୋଇ ।

ଗୋମେଧ ଯଜ୍ଞର ଫଳ ଲାଙ୍ଗଳ ଯାଗରେ
ଆବର ବିପ୍ରୋଷ୍ଠି ବୃଦ୍ଧିଯାଗ ବିଧାନରେ ।
ପଦ୍ମଯୋଗେ ତାର ଅର୍ଦ୍ଧ ଫଳ ଲାଭ ହୁଏ
ବିଶୋକ ଯଜ୍ଞରେ ଶୋକଭୟ ଯେ ନ ଥାଏ ।
ବିଜୟ ଯାଗକୁ ଯେବେ କରଇ ରାଜନ
ସ୍ୱର୍ଗପୁରେ ବସିବାକୁ ହୁଅଇ ଭାଜନ ।
ପ୍ରାଜାପତ୍ୟ ଯଜ୍ଞ କଲେ ଉତ୍ତମ ସନ୍ତତି
ଏ ବାହାରେ ରାଜ୍ୟ ଧନ ଲଭଇ ନୃପତି ।
ଇହଲୋକେ ରାଜ୍ୟକୁଳେ ଯଶୋବନ୍ତ ହୋଇ
ପଦଯାଗ ଅର୍ଦ୍ଧଫଳେ ସ୍ୱର୍ଗରେ ବସଇ ।
ଋଷି ଯାଗ କଲେ ସ୍ୱର୍ଗ ଅଇଶ୍ୱର୍ଯ୍ୟ ମିଳେ
ମୁକ୍ତହୁଏ ପୁଣି ଲୋକ ପଦ୍ମ ଯାଗ ଫଳେ ।
ସକଳ ଯଜ୍ଞରେ ବିଷ୍ଣୁ ଯଜ୍ଞଟି ପ୍ରଧାନ
ପୂର୍ବେ ଏହା କରିଥିଲେ କମଳ ଆସନ ।
ଯେତେବେଳେ ଶିବ ଦକ୍ଷ ପ୍ରଜାପତିଙ୍କର
କଳହ ହୋଇଲା ଆଗୋ ରମଣୀଙ୍କ ବର ।
କ୍ରୋଧଭରେ ବିପ୍ରଗଣ ନନ୍ଦିକେଶ୍ୱରଙ୍କୁ
ଶାପ ଦେଲେ ପୁଣି ନନ୍ଦୀ ସେ ବିପ୍ରଗଣଙ୍କୁ ।
ସେ ସମୟେ ମହାଦେବ ଦକ୍ଷଙ୍କର ଯାଗ
ଭଙ୍ଗ କରିଥିଲେ ମନେ ବହି ମହାରାଗ ।
ସେହି ବିଷ୍ଣୁଯାଗ କରି ଦକ୍ଷ ପ୍ରଜାପତି
ଖଣ୍ଡନ କରଇ ଥିଲେ ଅଶେଷ ଦୁର୍ଗତି ।
ସ୍ୱାୟମ୍ଭୁବ ମନୁ ତାଙ୍କ ସୁତ ପ୍ରିୟବ୍ରତ
କଶ୍ୟପ ଯେ ଧର୍ମଶେଷ କର୍ଦ୍ଦମ ସୁବ୍ରତ ।
ଶଙ୍କର କପିଳ ଧ୍ରୁବ ସନତକୁମାର
ଏହି ଯାଗ କଲେ ପୂର୍ବେ ହୋଇ ତତପର ।
ଶତେ ରାଜସୂୟ ଯାଗ ସମ୍ଭାର ଯୋଗରେ
ଗୋଟିଏ ବୈଷ୍ଣବ ଯାଗ ପୂର୍ଣ୍ଣ ହୋଇପାରେ ।
ତହୁଁ ଶତେ ରାଜସୂୟ ଯଜ୍ଞଫଳ ଲାଭ
ହୁଅଇ ଏଥିରେ ସତ୍ୟ ଅନ୍ୟଥା ନ ଭାବ ।
ସବୁଠାରୁ ବିଷ୍ଣୁଯଜ୍ଞ ଉତ୍ତମ ଅଟଇ
ଏହାଠାରୁ ବଳି ଆଉ କର୍ମ କିଛି ନାହିଁ ।
ଏ ଯାଗ ଫଳରେ ଲୋକ ଚିରଜୀବୀ ହୁଏ
ଆବର ଜୀବନ୍ତ ମୁକ୍ତ ଜଗତେ ବୋଲାଏ ।
ଜ୍ଞାନ ତପ ଅଇଶ୍ୱର୍ଯ୍ୟେ ବିଷ୍ଣୁଙ୍କ ସମାନ
ହୁଅଇ ନିଶ୍ଚୟ ଏଥି ସନ୍ଦେହ ନ ଘେନ ।

ଦେବଙ୍କ ମଧ୍ୟରେ ବିଷ୍ଣୁ ଅଟନ୍ତି ଯେସନ
ବଇଷ୍ଣବଙ୍କ ମଧ୍ୟରେ ଯେହ୍ନେ ନିସ୍ତୁର ।
ଶାସ୍ତ୍ରମାନଙ୍କରେ ବେଦ ଯେରୂପେ ଉତ୍ତମ
ସକଳ ଆଶ୍ରମେ ଯଥା ଅଟନ୍ତି ବ୍ରାହ୍ମଣ ।
ଅଶେଷ ତୀର୍ଥରେ ଯେହ୍ନେ ମୁଖ୍ୟ ମନ୍ଦାକିନୀ
ପବିତ୍ର ଗୁଣରେ ଯଥା ବୈଷ୍ଣବଙ୍କୁ ସେବା ।
ବ୍ରତଗଣେ ଏକାଦଶୀ ପୁଷ୍ପରେ ତୁଳସୀ
ଜ୍ୟୋତିଷ୍କଗଣରେ ସୂର୍ଯ୍ୟ ନକ୍ଷତ୍ରେ ଶଶୀ ।
ଆଧାରେ ପ୍ରଭୃତି ସ୍ତ୍ରୀଗଣରେ ପ୍ରକୃତି
ଚଞ୍ଚଳ ଇନ୍ଦ୍ରିୟଗଣେ ଯେଉଁରୂପେ ମତି ।
ପ୍ରଜାପତିଗଣେ ବ୍ରହ୍ମା ସକଳ ବନରେ
ଉତ୍ତମ ଅଟଇ ବୃନ୍ଦାବନ ସେ ପ୍ରକାରେ ।
ବର୍ଷରେ ଭରତବର୍ଷ ସୌନ୍ଦର୍ଯ୍ୟରେ ଶ୍ରୀ
ଜ୍ଞାନବନ୍ତ ମଧ୍ୟେ ସରସ୍ୱତୀ ଯେଉଁପରି ।
ପତିବ୍ରତାଗଣେ ଦୁର୍ଗା ସୌଭାଗ୍ୟେ ରାଧିକା
ଅଟନ୍ତି ଯେଉଁ ପ୍ରକାରେ ସବୁଠାରୁ ଠିକା ।
ସେହିପରି ସବୁଯଜ୍ଞେ ବିଷ୍ଣୁଯଜ୍ଞ ସାର
ତହିଁରୁ ଅଧିକ ଯାଗ ନାହିଁ ଏ ସଂସାର ।
ଯେଉଁ ଲୋକ ଦଶଶତ ଅଶ୍ୱମେଧ କରେ ।
ଇନ୍ଦ୍ରପଦ ଲଭି ତାର ହୁଏ କଷ୍ଟସ୍ୱରେ ।
ସକଳ ତୀର୍ଥରେ ସ୍ନାନ ନାନାବିଧ ଯାଗ
ବ୍ରତ ଉପବାସେ ଶୁଭଫଳ ହୁଏ ଭୋଗ ।

ଏ ବାହାରେ ସୁରବେଦ ପାଠ ଅଧ୍ୟୟନ
ଆଚ୍ଛିନ୍ନ ଭାବେ ସବମହୀ ପ୍ରଦକ୍ଷିଣ ।
ଏ ସମସ୍ତ କାର୍ଯ୍ୟେ ଫଳ ହୁଅଇ ଯାପନ
କିନ୍ତୁ କୃଷ୍ଣଭକ୍ତି ବିନା ନ ମିଳଇ ମୁକ୍ତି ।
ବେଦ ପୁରାଣରେ ଇତିହାସେ ନିରୂପିତ
ହୋଇଛି ଶ୍ରୀକୃଷ୍ଣ ଭକ୍ତି ଉତ୍ତମ ସତତ ।
ତାହାଙ୍କ ବର୍ଣ୍ଣନା ନାମ ଗୁଣ ସଂକୀର୍ତ୍ତନ
ସ୍ତୋତ୍ର ସ୍ମରଣ ଆଉର ଜପକର୍ମ ଧ୍ୟାନ ।
ନୈବେଦ୍ୟ ଗ୍ରହଣ ପଦ୍ମ ପାଦୋଦକ ସେବା
କଲେ ଯେଉଁ ପୁଣ୍ୟ ତାହା କହିବ କେବା ।
ଏ ସକାଶୁ ଆରୋଗ୍ୟ ମହାସତୀ ଏକମନେ
ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥାଅ ପ୍ରତିଦିନେ ।
ଆପଣା ସ୍ୱାମୀଙ୍କୁ ସଙ୍ଗେ ନେଇ ଏବେ ଯାଅ
ଧର୍ମ ଆଚରଣ କରି ସୁଖେ ଦିନ ନିଅ ।
କର୍ମବିପାକ ବିଷୟ ସକଳ ତୋଠାରୁ
ଶୁଣିଲ ତ ଆଜ ମନେ ନୋହୁ କିଛି ଖରୁ ।
ପତିଙ୍କୁ ଶୁଶ୍ରୂଷା କରି ଆପଣା ମନ୍ଦିରେ
ସୁଖେ ଥାଅ ମୁହିଁ ଯାଉଅଛୁ ନିଜପୁରେ ।
ଏହିରୂପେ କହି ଯମ ମଉନ ରହିଲେ
ଶ୍ରୀହରି ସୁମରି ଗୀତେ କ୍ଷେତ୍ରବାସୀ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀଙ୍କ ଆଗରେ ଯମରାଜାଙ୍କ ଦ୍ୱାରା କର୍ମବିପାକଉକ୍ତି ସବିଶେଷ ବର୍ଣ୍ଣନେ ନାମ ଅଷ୍ଟବିଂଶୋଽଧ୍ୟାୟଃ ।

—✳—

## ଊ ନ ତ୍ରିଂ ଶ ଅ ଧ୍ୟା ୟ

## ଭକ୍ତିଭରେ ଯମଙ୍କ ଅଗ୍ରତେ ସାବିତ୍ରୀଙ୍କର ସ୍ତୋତ୍ର ପଠନ

ନାରାୟଣ କୋଇଲେ ହେ ଶୁଣ ମୁନିବର
ଯମଙ୍କଠାରୁ ସାବିତ୍ରୀ ଶୁଣି ହରଷିତ ।
ପୁଲକିତ ଅଙ୍ଗେ ନେତ୍ରେ ଅଶ୍ରୁଧାର ବହି
କହିଲେ ତାହାଙ୍କୁ ପୁଣି ଶିରେ କର ଦେଇ ।
କୋହିଲେ ହେ ଧର୍ମରାଜ ଆଜ ତୁମଠାରେ
କେତେକ ଉତ୍ତମ ଧର୍ମକଥା ଶୁଣିବାରୁ

ପରମ ଆନନ୍ଦ ଲଭୁଅଛି ମୋ ହୃଦୟ
ଆପଣ ଅଟନ୍ତି ସାକ୍ଷାତରେ ଧର୍ମମୟ ।
ମୁଣି ଶ୍ରୀକୃଷ୍ଣଙ୍କ କଥା କହୁଛନ୍ତି ମୁଖେ
ମୁଁ ଏଠାରେ ଉଜ୍ଜ୍ୱ ହୋଇଅଛି ସୁଖେ ।
ଶ୍ରୀକୃଷ୍ଣଙ୍କ ସଂକୀର୍ତ୍ତନ ପରମ ସୁକୃତ
ଲୋଭ ର କରଇ ପାପ ମୁଖରୁ ନିବୃତ୍ତ ।

ବକ୍ତା ଶ୍ରୋତା ଦୁହିଙ୍କର ଜନ୍ମ ମୃତ୍ୟୁ ରୋଗ
ଜରାବସ୍ଥା ଆଦି କିଛୁ ନ ହୁଅଇ ଶୋକ ।
ବାନପ୍ରସ୍ଥ ତପସିଦ୍ଧି ବେଦ ଅଧ୍ୟୟନ
ଯୋଗ ବିଷ୍ଣୁ ଉପାସନା ମୁକ୍ତି ବ୍ରହ୍ମଜ୍ଞାନ ।
ଅମରତ୍ୱ ଆଦି ଯେତେ ସିଦ୍ଧି ଜଗତରେ
ଶ୍ରୀକୃଷ୍ଣ ସେବାରେ ସମ ସେ ନୁହେ ତହିଁରେ ।
ସେ ପ୍ରଭୁ ପରମ ଆତ୍ମା ପରମ ପୁରୁଷ
କି ପ୍ରକାରେ ସେବା କଲେ ହୋଇବ ସନ୍ତୋଷ ।
ପ୍ରକୃତରେ ଅବଳା ମୁଁ ମହାମୂଢ଼ମତି
କିରୂପେ ଜାଣିବି ତାହା ଆହେ ପିତୃପତି ।
ବିସ୍ତାକରି ମୋରଠାରେ କହନ୍ତୁ ବତାଇ
ତାହା ହେଲେ କୃତକାର୍ଯ୍ୟ ହେବ ଜନ୍ମେ ମୁହିଁ ।
ଆପଣଙ୍କ ପ୍ରସାଦରୁ ଶୁଭକର୍ମମାନ
ଶୁଣିବାରୁ ଆନନ୍ଦିତ ହେଉଅଛି ମନ ।
ଅଶୁଭ କର୍ମ ବିଷୟ ଶୁଣିବା ପାଇଁକି
ଏବେ କର୍ଣ୍ଣପଥେ ଆସି ରହିଅଛି ଟାକି ।
ବିସ୍ତାରି କହନ୍ତୁ ତାହା ଆହେ ମହାବାହୁ
ଏମନ୍ତ ସୁଯୋଗ ମୋତେ ମିଳିବ କି ଆଉ ।
ଏରୂପେ ବୋଲନ୍ତେ ସତୀ ଭକ୍ତିଭରେ କର
ଯୋଡ଼ି ଉଭା ହୋଇ ଯମରାଜାଙ୍କ ଛାମୁର ।
ବେଦଉକ୍ତ ସ୍ତବ ପଢ଼ି ସ୍ତୁତି ଆରମ୍ଭିଲେ
ନମସ୍ତେ ନମସ୍ତେ ଧର୍ମ ସ୍ୱରୂପ ବୋଇଲେ ।
ଆବର ବୋଇଲେ ପୂର୍ବେ ପୁଷ୍କର ତୀର୍ଥରେ
ତପକରି ଦିବାକର ଧର୍ମଙ୍କର ବରେ ।
ଧର୍ମଅଂଶେ ସୁତରୂପେ ଯାହାଙ୍କୁ ପାଇଲେ
ପ୍ରଣାମ କରୁଛି ମୁହିଁ ତାଙ୍କ ପାଦତଳେ ।
ସମତା ଅଛଇ ସର୍ବଭୂତେ ଯାହାଙ୍କର
ସାକ୍ଷୀ ସେ ଅଟନ୍ତି ତିନିଜଗତ ଲୋକର ।
ସେ ହେତୁ ଯାହାଙ୍କ ନାମ ହୋଇଛି ଶମନ
ତାଙ୍କ ପାଦପଦ୍ମେ ମୁହିଁ କରୁଛି ପ୍ରଣାମ ।
ନିଜ କର୍ମ ଅନୁସାରେ ସକଳ ଜୀବର
ଅନ୍ତ କରନ୍ତି ଯେଉଁକାଳେ ହୋଇ ତତପର ।
ସେ ଅନ୍ତକ ଦେବଙ୍କର ପାଦ ଯୁଗଳରେ
ନମସ୍କାର କରୁଅଛି ଭକତି ଭାବରେ ।
ଦଣ୍ଡଯୋଗେ ପାପୀଙ୍କର ଦେହ ଶୁଦ୍ଧପାଇଁ
ଭ୍ରମଣ କରନ୍ତି ଯେହୁ କାଳଦଣ୍ଡ ବହି ।
ସେ ସକାଶୁ ଦଣ୍ଡଧର ବୋଲନ୍ତି ସଂସାରେ
ପ୍ରଣାମ କରୁଛି ମୁହିଁ ତାଙ୍କ ଶ୍ରୀପଦରେ ।
ସଂସାର ଜୀବଙ୍କ ମଧ୍ୟେ ଆୟୁଷ କଳନା
କରୁଛନ୍ତି ସନ୍ତତରେ ଯେଉଁ ମହାମନା ।
ସେ ସକାଶୁ କାଳନାମେ ବିଖ୍ୟାତ ଅଟନ୍ତି
ତାଙ୍କ ପାଦତଳେ ମୋର ଅଶେଷ ପ୍ରଣତି ।
ତେଜସ୍ୱୀ ବୈଷ୍ଣବଧର୍ମୀ ଶୁଦ୍ଧ ଜିତେନ୍ଦ୍ରିୟ
ଜୀବଙ୍କୁ ଯେ କର୍ମଫଳ ଦିଅନ୍ତି ନିଶ୍ଚୟ ।
ସେହି ଯମ ନାମଧାରୀ ଦେବଙ୍କ ପାଦରେ
ପ୍ରଣାମ କରୁଛି ମୁହିଁ ଅତି ଭକ୍ତିଭରେ ।
ପୁଣ୍ୟବନ୍ତ ଲୋକଙ୍କର ଅଟନ୍ତି ଯେ ମିତ୍ର
ସର୍ବଦା ଯାହାଙ୍କ ଦେହ ଅଟଇ ପବିତ୍ର ।
ପାପୀଙ୍କର କ୍ଲେଶଦାତା ଯେ ମହାପୁରୁଷ
ସେ ପୁଣ୍ୟତପିଙ୍କୁ ମୁହିଁ ନମଇଁ ବିଶେଷ ।
ବ୍ରହ୍ମାଙ୍କ ବଂଶରେ ଅଟେ ଯାହାଙ୍କ ଜନମ
ଉଜ୍ଜ୍ୱଳ ପବିତ୍ର ଯାହାଙ୍କର ବ୍ରହ୍ମଧାମ ।
ପରମ ବ୍ରହ୍ମଙ୍କୁ ଧ୍ୟାନ କରନ୍ତି ଯେ ନିତ୍ୟେ
ପ୍ରଣାମ କରୁଛି ମୁହିଁ ତାଙ୍କ ପଦାଗ୍ରତେ ।
ଏରୂପେ କହି ସାବିତ୍ରୀ ପୁଣି ସେ ଯମଙ୍କୁ
ପ୍ରଣାମ କଲେ ମହୀରେ ଲଗାଇ ଶିରକୁ ।
ତାହା ଦେଖି ଧର୍ମରାଜ ପ୍ରୀତି ବହି ମନେ
ବିଷ୍ଣୁଙ୍କ ଭଜନ ତାଙ୍କୁ କହିଲେ ସ୍ୱମନେ ।
ସାବିତ୍ରୀ ପଠିତ ଏହି ଯମଙ୍କ ଅଷ୍ଟକ
ପ୍ରାତଃକାଳରେ ପଠନ କରେ ଯେଉଁ ଲୋକ ।
ଯମଠାରୁ ତାର ଭୟ ନୁହଇ କଦାପି
ସକଳ ପାପରୁ ମୁକ୍ତ ହୁଏ ସେ ସତ୍ୱରେ ।
ମହାପାପୀ ଯେବେ ଏହା ଭକ୍ତିରେ ପଢ଼ଇ
ଧର୍ମରାଜାଙ୍କର ଦୟା ତାଠାରେ ହୁଅଇ ।
ତାହାର ଦେହକୁ ଶୁଦ୍ଧ କରନ୍ତି ସେ ଭଲେ
ବିପଦ ନ ଆସେ ତା ପାଶକୁ କେତେବେଳେ ।
କହଇ କ୍ଷେତ୍ର ମୋହନ ଆହେ ସାଧୁଜନେ
ଧର୍ମରାଜଙ୍କୁ ସ୍ମରଣ କର ସବୁଦିନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଭକ୍ତିଭରେ ଯମଙ୍କୁ ସାବିତ୍ରୀଙ୍କର ସ୍ତୋତ୍ର ପଠନେ ନାମ ଊନତ୍ରିଂଶୋଽଧ୍ୟାୟଃ ।

# ତ୍ରିଂଶ ଅଧ୍ୟାୟ

## ସାବିତ୍ରୀ ଅଗ୍ରତେ ଯମରାଜାଙ୍କର ନରକ ସଂଖ୍ୟା ବର୍ଣ୍ଣନ

ଏଥି ଅନନ୍ତରେ ପୁଣି କୃଷ୍ଣ ନାରାୟଣ
ନାରଦଙ୍କ ମୁଖ ଚାହିଁ କହନ୍ତି ବଚନ ।
ମନ ଦେଇକରି ଶୁଣ ଆହେ ମହାସତୀ
ସାବିତ୍ରୀଙ୍କୁ ବିଷ୍ଣୁମନ୍ତ୍ର ଦେଲେ ଯମପତି ।
ସେ ଅନ୍ତେ ଅଶୁଭ କର୍ମବିପାକ କାହାଣୀ
କହିବାପାଇଁ ଆରମ୍ଭ କଲେ ସେହିକ୍ଷଣି ।
ବୋଇଲେ ଗୋ ପତିବ୍ରତା ମସ୍ତକମଣ୍ଡନା
ଶୁଣିଲ ତ ଶୁଭ କର୍ମବିପାକ ବର୍ଣ୍ଣନା ।
ଅଶୁଭ କର୍ମବିପାକ କହୁଅଛି ଏବେ
ମନଦେଇ ଶୁଣ ଇଚ୍ଛା ହେଉଅଛି ଯେବେ ।
ନିଜ କର୍ମବଳେ ଜୀବ ନାନା ସ୍ୱର୍ଗସ୍ଥାନ
ଭୋଗକରେ ଏ ବାହାରେ ଭୋଗ ଦୁଃଖମାନ ।
କୁତ୍ସିତ କରମ ଯେବେ କରଇ ଯେ ନର
ନରକ କୁଣ୍ଡରେ ପଡ଼ ହେଉଥାଏ ଘୋର ।
ନରକକୁଣ୍ଡ ଅଛଇ ବିବିଧ ପ୍ରକାରେ
ବିଖ୍ୟାତ ହୋଇଛି ନାନା ପୁରାଣ ଶାସ୍ତ୍ରରେ ।
ବିସ୍ତୃତ ଗମ୍ଭୀର ପୁଣି ମହାଭୟଙ୍କର
କଷ୍ଟଦ ଅଟନ୍ତି ପାପୀ ଜୀବମାନଙ୍କର ।
ତାହାଙ୍କର ସଂଖ୍ୟା ଅଟେ ଛୟାଅଶୀ ଜାଣ
ସଞ୍ଜମନୀ ପୁରେ ସବୁ ପାଇଛନ୍ତି ସ୍ଥାନ ।
ଯେଉଁ ଯେଉଁ ନାମରେ ସେ ପ୍ରସିଦ୍ଧ ଅଟନ୍ତି
କହୁଅଛି ତାହା ଏବେ ଶୁଣ ମହାସତୀ ।
ବହ୍ନିକୁଣ୍ଡ ତପ୍ତକୁଣ୍ଡ କ୍ଷାରକୁଣ୍ଡ ଘୋର
ପୁରୀଷ ମୂତ୍ରଜ ଶ୍ଳେଷ୍ମକୁଣ୍ଡ ଯେ ଆବର ।
ଗରଳକୁଣ୍ଡ ବସାକୁଣ୍ଡ ଦୂଷିକା ଆଶ୍ରୟ
ଶୁକ୍ରକୁଣ୍ଡ ରକ୍ତକୁଣ୍ଡ ଅଶ୍ରୁଜଳମୟ ।
କୁତ୍ସିତକୁଣ୍ଡ ନାମରେ ଅଛଇ ନରକ
ପୂର୍ଣ୍ଣ ହୋଇଥାଏ ତହିଁ ଦେହମଳଯାକ ।
କର୍ଣ୍ଣମଳକୁଣ୍ଡ ପୁଣି ମଜ୍ଜାମାଂସ କୁଣ୍ଡ
ଆବର୍ଜନା ହୋଇଥାଏ ସେହିଠାରେ ରୁଣ୍ଡ ।
ନଖଲୋମ କୁଣ୍ଡ ପୁଣି କେଶଅସ୍ଥି କୁଣ୍ଡ
ଭାସୁଥାଏ ତହିଁ ଶୁଷ୍କମଳ ଖଣ୍ଡ ଖଣ୍ଡ ।
ତାମ୍ରକୁଣ୍ଡ ଲୌହକୁଣ୍ଡ ତପତ ଅଟଇ
ପଡ଼ିଲେ ଜନଙ୍କୁ ମହାକଷ୍ଟ ସେ ଦିଅଇ ।
ତୀକ୍ଷ୍ଣ କଣ୍ଟକ ନାମରେ ଅଛି କୁଣ୍ଡଟାଏ
ତାହାର ପାଖରେ ବିଷକୁଣ୍ଡ ଦେଖାଯାଏ ।
ଘର୍ମକୁଣ୍ଡ ତପ୍ତସୁରାକୁଣ୍ଡ ଦୁଇଗୋଟି
ପରସ୍ପର ନିକଟରେ ରହିଛନ୍ତି ଗୋଟି ।
ତପ୍ତତୈଳକୁଣ୍ଡ ଦଂଶକୁଣ୍ଡ ସୁଦୁଃସହ
କ୍ରିମିଗର୍ତ୍ତ ପୂୟକୁଣ୍ଡ ସର୍ପକୁଣ୍ଡ ନୟ ।
ମଶଦଂଶ ଭୟଙ୍କର ଲବଣର କୁଣ୍ଡ
ମହାପାପୀ ଜନେ ତହିଁ ପଡ଼ଥାନ୍ତି ଦଣ୍ଡ ।
ବଜ୍ରଦଂଷ୍ଟ୍ର ବୃଶ୍ଚିକରେ ପୂର୍ଣ୍ଣ ହୋଇକରି
ଦୁଇଗୋଟି କୁଣ୍ଡ ପୁଣି ଅଛି ଗୋ ସୁନ୍ଦରୀ ।
ଶରକୁଣ୍ଡ ଶୂଳକୁଣ୍ଡ ଖଡ୍ଗକୁଣ୍ଡ ବୋଲି
ତିନୋଟି ନରକ ମଧ୍ୟ ଅଛି କଷ୍ଟଦେଲ ।
ଗୋଳ ନଳ କାଳ ଏହି ତିନୋଟି କୁଣ୍ଡରେ
ଶୋକ କରୁଥାନ୍ତି ପାପୀ ପଡ଼ ନରକରେ ।
ସଞ୍ଚାଣକୁଣ୍ଡ ଯେ ବାଜକୁଣ୍ଡ ବଜ୍ରକୁଣ୍ଡ
ଦେଖିବାକୁ ଅଟନ୍ତି ସେ ଅତ୍ୟନ୍ତ ପ୍ରଚଣ୍ଡ ।
ତପତ ପାଷାଣକୁଣ୍ଡ ତୀକ୍ଷ୍ଣ ଗ୍ରୀବାଧାର
ତହିଁରେ ତପତ ତୀକ୍ଷ୍ଣ ପାଷାଣ ଅପାର ।
ଲାଳମୟୀ ଚୂର୍ଣ୍ଣକୁଣ୍ଡ ଭୟଙ୍କର ରୂପ
କ ଅବା କହିବ ସେହି ତିନିଙ୍କ ପ୍ରତାପ ।
ଚନ ବନ କୂର୍ମ ଏହିପରି କୁଣ୍ଡ ତିନି
ଅଳପ ଅଳପ ଦୂରେ ରହିଛନ୍ତି ପୁଣି ।
ଜ୍ୱାଳାକୁଣ୍ଡ ଭସ୍ମକୁଣ୍ଡ ପୂତିକୁଣ୍ଡ ପର
ନ ଥିବ କଦର୍ଯ୍ୟ ସ୍ଥାନ ଜାଣ ଗୋ ସୁନ୍ଦରୀ ।
ତପ୍ତଶୂର୍ମୀ ଅସିପତ୍ର କ୍ଷୁରଧାର ପୁଣି
ସୂଚୀମୁଖ ଗୋଧାମୁଖ ନକ୍ରମୁଖ ତିନି ।
ଗଜଦନ୍ତ ଗୋମୁଖ ଯେ କୁମ୍ଭୀପାକ ନଦ
କାଳସୂତ୍ର ଅଶମର୍ଦ ତପ୍ତ ଅରୁନ୍ତୁଦ ।
ପାଂଶୁଭୋଜ ପାଶବେଷ୍ଟ ଶୂଳ ପ୍ରୋତ ପାଶେ
ପ୍ରକମ୍ପନ ଉଲ୍କାମୁଖ ଅନ୍ଧକୂପ ଦଶେ ।

ବେଷ୍ଟନ ଦଣ୍ଡ ତାଡ଼ନ ଜାଲବନ୍ଧ ବେଦ
ଚୂର୍ଣ୍ଣ ଦଳନ ଶୋଷଣ କଷ୍ଟଭସ୍ମାବଦ ।
ସୂର୍ପଜ୍ୱାଳାମୁଖ କୁଣ୍ଡ ଧୂମାନ୍ଧ ଆବର
ନାଗବେଷ୍ଟନ ନାମରେ ଯେ ନରକ ଘୋର ।
ତାହା କରଣରେ ପାପୀ କର୍ମ ଅନୁସାର
ପୁଣ୍ୟବନ୍ତ ଜନ ପାଇଁ ନୁହଇ ସେହି ପୁର ।
ଏରୂପେ ନରକଗଣ ଭିନ୍ନ ଭିନ୍ନ ହୋଇ
ରକ୍ଷକଗଣ ଦର୍ଶକଙ୍କୁ ଭୟ ଜନ୍ମାଇ ।
ରକ୍ଷିତ ଅଟନ୍ତି ସଦା କିଙ୍କର ଗଣରେ
ପ୍ରବେଶ ନ କରେ କେହି ଅନ୍ୟ ସେହିଠାରେ ।
ମହାଭୟଙ୍କର ଅଟେ ରୂପ ତାହାଙ୍କର
ହସ୍ତେ ଧରିଥାନ୍ତି ଦଣ୍ଡ ଶୂଳ ଧନୁଶର ।
ଆବର ଶକ୍ତି ଗଦା ପାଶ ଧରିଥାନ୍ତି
କାହାରିକୁ ହେଲେ ମନେ ଭୟ ନ କରନ୍ତି ।
ଦାରୁଣ ସମସ୍ତ କ୍ରୋଧୀ ନିର୍ଦ୍ଦୟ ନିଷ୍ଠୁର
ଅନିବାର୍ଯ୍ୟ ଗଣ୍ଡଶକ୍ତ ଦୁର୍ଦ୍ଧର୍ଷ ଆବର ।
ଅତ୍ୟନ୍ତ ତେଜସ୍ୱୀ ତାମ୍ର ପିଙ୍ଗଳ ଲୋଚନ
ଯୋଗଯୁକ୍ତ ସଦାନନ୍ଦ ନାନାରୂପ ବର୍ଣ୍ଣ ।
ନିକଟେ ହେବାକୁ ଥାଏ ମରଣ ଯାହାର
ସେ ଏକା ଦେଖି ପାରଇ ସ୍ୱରୂପ ତାଙ୍କର ।
ମାତ୍ର ଯେ ସାତ୍ତ୍ୱିକ ହୋଇଥିବ ସେ ଦେଖିବେ
ଧାର୍ମିକ ଲୋକ ପାଶକୁ ସେମାନେ ନ ଯିବେ ।
ସେମାନେ ଅଟନ୍ତି ନିଜ କର୍ମରେ ନିରତ
ଶିବ ଶକ୍ତି ସୂର୍ଯ୍ୟ ଗଣପତିଙ୍କର ଭକ୍ତ ।
ସିଦ୍ଧଯୋଗୀ ଆଦି ପୁଣ୍ୟ କର୍ମୀଙ୍କ ଦୃଷ୍ଟିରେ
ସେହିମାନେ ନ ପଡ଼ନ୍ତି କେବେହେଲେ ଥରେ ।
ନିଜ ଧର୍ମନିରତ ଯେ ବିରତ ସ୍ୱତନ୍ତ୍ର
ଆବର ଯେ ଜପୁଥାନ୍ତି ବିଷ୍ଣୁଙ୍କର ମନ୍ତ୍ର ।
ସେମାନଙ୍କୁ ସ୍ୱପନରେ ଦେଖା ନ ଦଅନ୍ତି
କେବଳ ପାପୀଙ୍କୁ ଦଣ୍ଡ ଦେବାପାଇଁ ଥାନ୍ତି ।
ପାପ ଅନୁରୂପେ ଦଣ୍ଡ ଦଅନ୍ତି ଯେ ଘୋରେ
ତିଳେ ଦୟା ଉପରୋଧ ନ ଥାଏ ସେଠାରେ ।
ଆଗୋ ମହାସତୀ ଏହିପରି ସଂଯମନୀ
ନଗର ଅଟଇ ନାମେ ଯମ ରାଜଧାନୀ ।
ଏବେ ତ ନରକ କଥା କହିଲି ବିସ୍ତାରି
ପଡ଼ନ୍ତି ଯହିଁରେ ଜୀବେ ଯେ ପାପ ଆଚରି ।
ଯେ ପାପରେ ଭୋଗ ହୁଏ ଯେଉଁଣ ନରକ
କହୁଅଛୁ ଶୁଣ ସେହି ସବୁ କଥାଯାକ ।
ଏହିଠାରେ ଯମଙ୍କର ନରକ ବର୍ଣ୍ଣନ
କ୍ଷେତ୍ର ମୋହନ ଗୀତରେ କଲେ ସମ୍ପୂର୍ଣ୍ଣ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀ ଅଗ୍ରତେ ଯମରାଜାଙ୍କର ନରକସଂଖ୍ୟା ବର୍ଣ୍ଣନେ ନାମ ତ୍ରିଂଶୋଽଧ୍ୟାୟଃ ।

———

## ଏକତ୍ରିଂଶ ଅଧ୍ୟାୟ

### ସାବିତ୍ରୀ ଅଗ୍ରେ ଯମରାଜା ପାପୀମାନଙ୍କର ନରକ ଭୋଗ ବର୍ଣ୍ଣନା କରିବା

ସାବିତ୍ରୀଙ୍କ ମୁଖ ଦୃଷ୍ଟି ପ୍ରେତ ଅଧିପତି
ବୋଇଲେ ଶ୍ରବଣ କର ଧୀରେ ଆଗୋ ସତୀ ।
ସନ୍ନ୍ୟାସୀ ଅଥବା ଯୋଗୀ ସିଦ୍ଧ ସତ୍ୟବ୍ରତ
ଯେ ଅବା ସର୍ବଦା ବିଷ୍ଣୁ ସେବାରେ ନିଯୁକ୍ତ ।
ତପସ୍ୱୀ ଆବର ହେଉ ବ୍ରହ୍ମଚାରୀ ଜନ
ନ କରେ ସେ କେବେହେଁ ନର୍କକୁଣ୍ଡ ଦରଶନ ।
ଯେଉଁ ଲୋକ କଟୁକଥା କହି ବାନ୍ଧବଙ୍କୁ
କଳହ ସୃଷ୍ଟି କରଇ ମୋ ଦୂତେ ତାହାକୁ
ଅନ୍ତକାଳେ ଅଗ୍ନିକୁଣ୍ଡେ ନିକ୍ଷେପ କରନ୍ତି
ତା ଦେହ ଅଙ୍ଗରେ ଥାଏ ଯେତେ ଲୋମ ପନ୍ତି ।
ସେତେ କାଳଯାଏ ହୁତାଶନେ ସେ ପଡ଼ଇ
ତଦନ୍ତେ ପଶୁ ଯୋନିରେ ଜନମ ଲଭଇ ।
ରୌଦ୍ରତାପ ସହ୍ୟକରି ଶତକୋଟି ବର୍ଷ
ବହୁତ କଷ୍ଟରେ କାଳ କଟାଏ ସେ ମୂର୍ଖ ।
ତୃଷିତ ବ୍ରାହ୍ମଣେ ଯେହୁ ଜଳ ନ ଦଅଇ
କି ତାହାଙ୍କୁ ଯେହୁ ଅବା ସେବା ନ କରଇ ।
ନଫଳ କୁଣ୍ଡରେ ସଦା ସେହୁ ପଡ଼ିଥାଏ
ଏଥିର ତିଳେହେଁ ମିଥ୍ୟା ନାହିଁ ଆଗୋ ମାଏ ।
ଯେ ଅନ୍ତେ ଅନଳ ସମ ତପତ ବେଶରେ
ପଛ ରୂପେ ଜାତହୋଇ କଷ୍ଟଭୋଗ କରେ ।

ସପତ ଜନମ ପର୍ଯ୍ୟନ୍ତେ ଏହାପରେ
ସନ୍ତପ୍ତ ହୁଅଇ ନିଜ କର୍ମକୁ ଆଦରି ।
ରହିବାରେ ଶ୍ରମ ବାସ୍ୟା ସନ୍ତାନ୍ତ ବନରେ
ଯେଉଁଲୋକ କ୍ଷାରଯୋଗ କରଇ ବସ୍ତ୍ରରେ ।
ମୃତ୍ୟୁପରେ କ୍ଷାରକୁଣ୍ଡେ ପଡ଼ି ସେହି ଜନ
ଦୁଃଖଭୋଗ କରେ ସେହି ନାନା ନର୍ଯ୍ୟାତନ ।
ତା ଅନ୍ତେ ସପ୍ତ ଜନ୍ମ ରଜକ ଯୋନିରେ
ଜନ୍ମ ହୋଇ ଜନ ନିଏ ବସ୍ତ୍ର ଧୋଇବାରେ ।
ନିଜଦଣ୍ଡ ଦେଇ ଅବା ପରଦତ୍ତ ନେଇ
ବ୍ରାହ୍ମଣର ବୃତ୍ତି ଚ୍ଛେଦ କରଥ ଏ ସେହୁ ।
ମଳ ଆଉ ରକ୍ତ କୁଣ୍ଡେ ଷାଠିଏ ସହସ୍ର
ବରଷ ପଡ଼ିଣ କଷ୍ଟ ଭୋଗଇ ଅଶେଷ ।
କ୍ଷୁଧା ହେଲେ ସେହି ମଳ ଭୋଜନ କରଇ
ସେ ଅନ୍ତରେ ମର୍ତ୍ତ୍ୟଲୋକେ ଜନମ ହୁଅଇ ।
ପୁଣି ଷାଠିଏ ସହସ୍ର ବରଷ ମଳରେ
କୃମି ହୋଇ ପୁନଃପୁନ କଷ୍ଟଭୋଗ କରେ ।
ପରକୀୟ ତଡ଼ାଗରେ ଯେବେ ଅନ୍ୟ ଜନ
ତଡ଼ାଗ ରଚିବା ପାଇଁ ବ୍ୟୟ କରେ ଧନ ।
ତେବେ ସେ ଦଇବଯୋଗେ ମୂତ୍ରକୁଣ୍ଡେ ଯାଇ
ରେଣୁ ସମାନ ବରଷ ପଡ଼ି ରହିଥାଇ ।
ସେ ଅନ୍ତେ ଭାରତବର୍ଷେ ଗୋଧି ଜନ୍ମ ପାଏ
ସାତଜନ୍ମ ଯାଏ ସେହିପରି ହେଉଥାଏ ।
ବହୁତ ଲୋକଙ୍କ ମଧ୍ୟେ ଯେଉଁ ମୂର୍ଖ ଜନ
ଭୋଜନ କରଇ ନିଜେ ମିଷ୍ଟଦ୍ରବ୍ୟମାନ ।
ଶତେ ସମ୍ବତ୍ସର ସେହି ଶ୍ଳେଷ୍ମକୁଣ୍ଡେ ରହେ
ସେ ଅନ୍ତେ ଭାରତବର୍ଷେ ପ୍ରେତଜନ୍ମ ପାଏ ।
ସେହିରୂପେ ଶତବର୍ଷ ଶ୍ଳେଷ୍ମ ମୂତ୍ର ଖାଏ
ଅସ୍ଥିର ଭାବରେ ଏଣେତେଣେ ଭ୍ରମୁଥାଏ ।
ପିତା ମାତା ଗୁରୁପତ୍ନୀ ତନୟ ଦୁହିତା
ଆବର ଅନାଥ ବନ୍ଧୁ ନିଜ ଭଗ୍ନୀ ଭ୍ରାତା ।
ସମର୍ଥ ହୋଇ ଏହାଙ୍କୁ ନ ପୋଷଇ ଯେହୁ
ସହସ୍ରେ ବରଷ ଗର କୁଣ୍ଡରେ ପଡ଼ଇ ।
ସେ ଅନ୍ତରେ ଭୂତ ହୋଇ ଶତେବର୍ଷ କାଳ
ଭ୍ରମଣ କରେ କ୍ଷୁଧାରେ ହୋଇଣ ଆକୁଳ ।
ଅତିଥିଙ୍କୁ ଦେଖି ଆଗେ ଯେ ନିର୍ଦ୍ଦୟ ଜନ
ପଳାଏ ତା ହାର ପାଶୁ ଫେରାଇ ନୟନ ।

ସେ ମହାପାତକୀଠାରୁ ଦେବ ପିତୃଗଣ
ବିମୁଖ ହୁଅନ୍ତି ଜଳ ନ କରି ଗ୍ରହଣ ।
ବ୍ରହ୍ମହତ୍ୟା ଆଦିକରି ଯେତେକ ପାତକ
ଇହଲୋକେ ଲଭ କରିଥାଏ ସେହି ଲୋକ ।
ଅନ୍ତଃକାଳେ ଯମଦୂତେ ନେଇ ତାକୁ ମାଡ଼ି
ପକାନ୍ତି ଦୂଷିକାକୁଣ୍ଡେ ବାନ୍ଧି ହାତ ଗୋଡ଼ ।
ଶତେ ବର୍ଷଯାଏ ତହିଁ କରଇ ସେ ବାସ
କ୍ଷୁଧା ହେଲେ ସେ ଦୂଷିକା ଦ୍ରବ୍ୟ କରେ ଗ୍ରାସ
ସେ ଅନ୍ତେ ମନୁଷ୍ୟ ଲୋକେ ଜନମ ହୁଅଇ
ସାତଜନ୍ମ ଯାଏ ଅନ୍ନବସ୍ତ୍ର ନ ମିଳଇ ।
ବ୍ରାହ୍ମଣକୁ ଦେଇଥିବା ଦ୍ରବ୍ୟ ପୁଣି ନେଇ
ଯେଉଁ ଲୋକ ଅନ୍ୟପାଶେ ପ୍ରଦାନ କରଇ ।
ପଡ଼ଇ ସେ ବସାକୁଣ୍ଡେ ସହସ୍ର ବରଷ
ତାପରେ ଚଣ୍ଡାଳ ଜନ୍ମ ଲଭଇ ଅବଶ୍ୟ ।
ସେହିପରି ତିନିଜନ୍ମ ଗଲା ପରେ ପୁଣି
କୁଳକଳୁଷ ହୁଏ ନିଜ କର୍ମଦୋଷ ଘେନି ।
ସେ ଅନ୍ତେ ଭାରତବର୍ଷେ ମନୁଷ୍ୟ ହୁଅଇ
ଦରିଦ୍ର ଅଳ୍ପାୟୁ ଧନ ହୀନ ହୋଇଥାଇ ।
ଅଜ୍ଞାନରେ ଯେଉଁ ଲୋକ ଭ୍ରୂଣଘାତ କରେ
ପଡ଼ଇ ସହସ୍ର ବର୍ଷ ସେ ଭ୍ରୂଣକୁଣ୍ଡରେ ।
ସେ ଅନ୍ତେ ମହୀରେ ଯୋନି କୃମି ଜନ୍ମ ପାଏ
ଶତେ ବରଷ ଅନ୍ତରେ ଶୁଚିମନ୍ତ ହୁଏ ।
ଗୁରୁ ଅବା ବ୍ରାହ୍ମଣଙ୍କ ଦେହରୁ ରକତ
ବାହାର ଯେ କରେ ତାଙ୍କୁ କରିଣ ଆହତ ।
ସେ ଲୋକ ରକତକୁଣ୍ଡେ ଶତେ ସମ୍ବତ୍ସର
ପଡ଼ିଥାଏ କରି ନିତ ରକତ ଆହାର ।
ତା ପରେ ସହସ୍ରେ ଜନ୍ମ ବ୍ୟାଘ୍ରରୂପ ହୋଇ
ଭାରତବରଷେ ଜନ୍ମି ବନରେ ବୁଲଇ ।
କ୍ରମେ କ୍ରମେ ପାପଅଂଶ ଖଣ୍ଡିତ ହୋଇଲେ
ମନୁଷ୍ୟ ଜନମ ଲଭ କରେ ତହୁଁ ଭଲେ ।
ଶ୍ରୀକୃଷ୍ଣ ଚରିତ ଗାଇ ଯେଉଁ ଭକ୍ତ ଜନ
କରୁଥାଏ ଆନନ୍ଦରେ ଅଶ୍ରୁ ବରଷଣ ।
ତାକୁ ଦେଖି ହାସ୍ୟ କରେ ଯେବଣ ମନୁଷ୍ୟ
ଅଶ୍ରୁକୁଣ୍ଡରେ ପଡ଼ଇ ଶତେକ ବରଷ ।
ସେ ଅନ୍ତେ ଚଣ୍ଡାଳ ହୋଇ ତିନିଜନ୍ମ ଯାଏ
ଶୁଦ୍ଧି ଲଭ କରେ କର୍ମଦୋଷ ଟଳେ କ୍ଷୟେ ।

ଯେଉଁ ଲୋକ ଖଳପଣେ ଅଶୁଦ୍ଧ ଆଚାର
ପ୍ରକାଶ କରଇ ମନେ ନ କରି ବିଚାର ।
ଗାତ୍ରମଳ କୁଣ୍ଡରେ ସେ ଦଶବର୍ଷ ରହେ ।
ତହୁଁ ଶତଜନ୍ମ ଯାଏ ଅଧ ହୋଇଥାଏ
ଶୃଗାଳ ହୁଅଇ ପୁଣି ଜନ୍ମ ଶତଗୋଟି
ଭୋଜନ କରଇ ଶବ ମାଉଁସ ରେକଟି ।
ବଧିର ଲୋକକୁ ଯେହୁ କରେ ଉପହାସ
କର୍ଣ୍ଣମଳ କୁଣ୍ଡରେ ସେ ପଡ଼ଇ ଦଶବର୍ଷ ।
ସବୁବେଳେ ସେହି ମଳ ଭୁଞ୍ଜୁଥାଏ ତହିଁ
ସେ ଅନ୍ତେ ବଧିର ଦୁଃଖୀ ଜନମ ଲଭଇ ।
ସପ୍ତଜନ୍ମ ଯାଏ ପୁଣି ହୁଏ ଅଙ୍ଗହୀନ
ପାପ ନଷ୍ଟ ହେଲେ ଶୁଦ୍ଧି ଲଭିଥାଏ ଜାଣ ।
ଆପଣାର ସୁଖପାଇଁ ଅନ୍ୟ ଜୀବଙ୍କର
ଜୀବନ ହରଣ କରେ ଯେଉଁ ମୂର୍ଖ ନର ।
ତାକୁ ନେଇ ଲକ୍ଷାକୁଣ୍ଡେ ଯମଙ୍କର ଦୂତ
ପକାଇ ରଖନ୍ତି ଲକ୍ଷେବର୍ଷ ପର୍ଯ୍ୟନ୍ତ ।
ସେ ଅନ୍ତେ ଶଶକ ମୀନ ମୃଗରୂପ ହୋଇ
ସପତ ଜନମ ଯାଏ ଦୁଃଖରେ ପଡ଼ଇ ।
ପାପ କ୍ଷୟ ହେଲେ ଶୁଦ୍ଧି ଲଭ କରେ ଜାଣ
ଏମନ୍ତ ଅଟଇ ଜୀବ ବଧ ପାପଗୁଣ ।
ଧନଲୋଭେ ଯେଉଁ ଲୋକ ଆପଣାର କନ୍ୟା
ବିକ୍ରୟ କରଇ ମନେ ନ କରି ଶୋଚନା ।
କନ୍ୟା ଅଙ୍ଗେ ଯେତେଗୋଟି ଲୋମ ରହିଥାଏ
ସେତେବର୍ଷ ଯାଏ ମାଂସ କୁଣ୍ଡରେ ସେ ରହେ ।
ସେ ମାଂସ ଭୋଜନେ ପୂର୍ଣ୍ଣ କରଇ ଉଦର
ତୃଷା ହେଲେ ପାନ କରେ ପୂୟ ରକ୍ତଧାର ।
ହସ୍ତେ ଲୌହଦଣ୍ଡ ଧରି ଯମଦୂତଗଣ
ଅଙ୍ଗରେ ପ୍ରହାର କରୁଥାନ୍ତି ପୁନଃପୁନଃ ।
ସେ ଅନ୍ତେ ଭାରତବର୍ଷେ କନ୍ୟାର ମଳରେ
ଜନମ ହୁଅଇ ଆସି କୃମି ସ୍ୱରୂପରେ ।
ଷାଠିଏ ସହସ୍ର ବର୍ଷ ଗଲା ପରେ ପୁଣି
ସପ୍ତଥର ଜନ୍ମ ହୁଏ ବ୍ୟାଧରୂପ ଘେନି ।
ସେ ଅନ୍ତରେ ଛଅଥର ବରାହ ହୁଅଇ
କୁକୁର ଯୋନୀରେ ସାତଥର ଜନ୍ମ ହୋଇ
ସାତ ସାତ ଜନ୍ମ ପୁଣି ବେଙ୍ଗ ଯୋକ ହୁଏ
ସେ ଅନ୍ତରେ ସାତଥର କାକ ଜନ୍ମ ପାଏ ।

ଏରୂପେ ବହୁତ କାଳେ ସେ ଘୋର ପାତକ
ନଷ୍ଟ ହେଲେ ଶୁଦ୍ଧି ଲାଭ କରେ ସେହି ଲୋକ ।
ବ୍ରତ ଉପବାସ ଶ୍ରାଦ୍ଧକର୍ମ କଲାବେଳେ
ଯେ ଲୋକ କ୍ଷଉର କର୍ମ ସମ୍ପାଦଇ ହେଳେ ।
ନଖ କେଶ କୁଣ୍ଡରେ ସେ ପଡ଼ଇ ଅବ୍ଦଶତ
କ୍ଷୁଧା ତୃଷା ହେଲେ ଭୁଞ୍ଜୁଥାଏ ମଳମୂତ୍ର ।
ତାକୁ ଯମଦୂତଗଣ ହସ୍ତେ ଦଣ୍ଡ ଧରି
ପିଟୁଥାନ୍ତି ଶୃଗାଳରେ ଶବକୁ ଯେପରି ।
ମୃତ୍ତିକା ଶଙ୍କର ଲିଙ୍ଗ ପୂଜା ଯେ କରଇ
ତହିଁରେ ସେ ଲିଙ୍ଗେ ଯେବେ କେଶ ମିଶିଥାଇ ।
କେଶ କୁଣ୍ଡେ ରେଣୁ ତୁଲ୍ୟ ବରଷ ତାହାର
ପତନ ହୁଅଇ ଜାଣ ରମଣୀଙ୍କ ବର ।
ସେ ଅନ୍ତେ ଯବନ କୁଳେ ଜନମ ହୁଅଇ
ଶତେକବର୍ଷ ପରେ ତାର ଦେହ ଶୁଦ୍ଧ ହୋଇ ।
ଯେଉଁମାନେ ବିଷ୍ଣୁପଦେ ପିତୃଙ୍କର ପିଣ୍ଡ
ନ ଦିଅନ୍ତି ତାଙ୍କୁ ଭୋଗହୁଏ ଅସ୍ଥି କୁଣ୍ଡ ।
ଆପଣା ଲୋମ ସମାନ ବରଷ ତହିଁରେ
କଷ୍ଟଭୋଗକରି ପୁଣି ଜନ୍ମନ୍ତି ମହୀରେ ।
ସାତଜନ୍ମ ଯାଏ ଖଞ୍ଜ ବଧିର ହୁଅନ୍ତି
ମହା ଦରିଦ୍ର ଅବସ୍ଥା ଭୋଗ ସେ କରନ୍ତି ।
ବୟସରେ ଯେଉଁସ୍ତ୍ରିୟ ହୋଇଥାଏ ଜ୍ୟେଷ୍ଠ
ତାର ସହବାସ କରେ ଯେ ମହାପାପିଷ୍ଠ ।
ସେ ପ୍ତତାମ୍ରକୁଣ୍ଡରେ ଶତବର୍ଷ କାଳ
ପଡ଼ି କ୍ଲେଶ ଭୋଗକରେ ହୋଇଣ ବିକଳ ।
ଋତୁମତୀ ସ୍ତ୍ରିୟ ହସ୍ତୁ ଅନ୍ନ ଯେ ଭୁଞ୍ଜଇ
ଶତ ସମ୍ବତ୍ସର ତପ୍ତ ଲୌହକୁଣ୍ଡେ ରହି ।
ରଜକ କୁମାର କୁଳେ ସାତ ସାତ ଥର
ଜନମ ହୁଅଇ କ୍ରୁଣୀ ଦରିଦ୍ର ଆକାର ।
ଦେବଭୋଗ୍ୟ ପଦାର୍ଥ ଯେ ସ୍ୱେଦହସ୍ତେ ଛୁଏଁ
ଶତବର୍ଷ ଘର୍ମକୁଣ୍ଡେ ପଡ଼ି ରହିଥାଏ ।
ଶୂଦ୍ର ଆଦେଶରେ ଦ୍ୱିଜ ଖାଇଲେ ତା ଅନ୍ନ
ଶତବର୍ଷ ଯାଏ ତପ୍ତ ସୁରାକୁଣ୍ଡେ ସ୍ଥାନ ।
ସେ ଅନ୍ତରେ ସାତଜନ୍ମେ ଶୂଦ୍ରର ଯାଜକ
ହୋଇଣ ଭୁଞ୍ଜଇ ଶୂଦ୍ରଶ୍ରାଦ୍ଧ ଦ୍ରବ୍ୟ ପାକ ।
ଏତେ କାଳ ଅନ୍ତେ ତାର ଦେହ ଶୁଦ୍ଧ ହୁଏ
କହନ୍ତି ସାବିତ୍ରୀ ଆଗେ ଜଳୁଙ୍କର ସ୍ୱୟେ ।

ଯେଉଁ ସ୍ତ୍ରୀ ଆପଣରେ ପ୍ରିୟ ଭରତାକୁ
ଦୁଷ୍ଟବାକ୍ୟ କହି ବ୍ୟଥାଦିଏ ତା ମନକୁ ।
ତୀକ୍ଷ୍ଣ କଣ୍ଟକ କୁଣ୍ଡରେ ପଡ଼ଇ ସେ ଯହିଁ
ମୋର ଦୂତମାନେ ତାକୁ ପିଟନ୍ତି ନଠାଇ ।
ସାତଥର ଯାଏ ତହୁଁ ଗଧ ଜନ୍ମ ପାଏ
ପାପ କ୍ଷୟ ହେଲେ ତାର ଦେହ ଶୁଦ୍ଧ ହୁଏ ।
ବିଷଦେଇ ଜୀବହତ୍ୟା କରେ ଯେ ପାମର
ବିଷକୁଣ୍ଡରେ ପଡ଼ଇ ସହସ୍ରେ ବତ୍ସର ।
ସେ ଅନ୍ତରେ ସାତ ଜନ୍ମେ ବ୍ରଣୀ କୁଷ୍ଠୀ ହୁଏ
କେତେକାଳ ଅନ୍ତେ ପୁଣି ଶୁଦ୍ଧ ହୋଇଥାଏ ।
ପୁଣ୍ୟକ୍ଷେତ୍ର ଭାରତରେ ଯେଉଁ କୃଷିବଳ
ନିଜେ ଅବା ଭୃତ୍ୟ ହସ୍ତେ ବାହୁଥାଏ ହଳ ।
ଦଣ୍ଡହେନ ବୃଷଭଙ୍କୁ ନିର୍ଦ୍ଦୟ ଭାବରେ
ତାଡ଼ନ କରଇ ଭୂମି ଖନନ କାଳରେ ।
ସେ ମହାପାତକୀ ଦେହ ଅନ୍ତେ ଚାରିଯୁଗ
ତପ୍ତତୈଳ କୁଣ୍ଡେ ପଡ଼ି କରେ ଦୁଃଖ ଭୋଗ ।
ସେ ଅନ୍ତରେ ବୃଷଭର ଲୋମତୁଲ୍ୟ ବର୍ଷ
ବୃଷଜନ୍ମ ପାଇ ପୁଣି ଭୋଗକରେ କ୍ଲେଶ ।
ଦନ୍ତରେ ଲୌହରେ ଅବା ବଡ଼ିଶ କଣ୍ଟାରେ
ଯେଉଁ ଲୋକ ଜନ୍ତୁଙ୍କର ଜୀବ ନାଶ କରେ ।
ଅଯୁତେ ବରଷ କାଳ ପଡ଼େ ଦନ୍ତକୁଣ୍ଡେ
ପିଟୁଥାନ୍ତି ଯମଦୂତେ ବେଢ଼ି ଲୌହଦଣ୍ଡେ ।
ସେ ଅନ୍ତେ ଆପଣା କୁଳେ ଜନମ ହୁଅଇ
ଜନ୍ମରୁ ଉଦର ବ୍ୟାଧି ତାହାକୁ ଘୋଟଇ ।
ଗୋଟିଏ ଜନ୍ମରେ ମାତ୍ର ଶୁଦ୍ଧି ଲଭକରେ
ଯେବେ ଆଉ ପାପ ନ କରଇ ସେ ଜନ୍ମରେ
ଯେଉଁ ଲୋକ ଅସଂସ୍କୃତ ମାଂସକୁ ଭୁଞ୍ଜଇ
ଅଥବା ଯେବଣ ବିପ୍ର ମତ୍ସ୍ୟ ଖାଉଥାଇ ।
ହରିଙ୍କୁ ପୂଜା ନ କରି ଭୁଞ୍ଜଇ ଯେ ଅନ୍ନ
ଏ ତିନହେଁ ପରସ୍ପରେ ଅଟନ୍ତି ସମାନ ।
ଅନ୍ତଃକାଳେ କୃମିକୁଣ୍ଡେ ପଡ଼ନ୍ତି ଏମାନେ
ସ୍ୱଲୋମ ସମାନ ବସିଥାନ୍ତି ସେହିସ୍ଥାନେ ।
ସେ ଅନ୍ତରେ ତିନି ଜନ୍ମ ମ୍ଲେଚ୍ଛଙ୍କର ଘରେ
ଜାତହୋଇ ପ୍ରବର୍ତ୍ତନ୍ତି କୁତ୍ସିତ କର୍ମରେ ।
ଯେଉଁ ବିପ୍ର ଶୂଦ୍ରଯଜ୍ଞ କରୁଥାଇ ନିତ୍ୟ
ଭୁଞ୍ଜୁଥାଇ ଶୂଦ୍ରଶ୍ରାଦ୍ଧ ଅନ୍ନ ତୋଷଚିତ୍ତେ ।

ଶୂଦ୍ରଙ୍କର ଶବଦାହ କରାବାକୁ ଯାଏ
ଅନ୍ତଃକାଳେ ପୂୟକୁଣ୍ଡେ ପଡ଼େ ସେ ନିଶ୍ଚୟେ ।
ତାଡ଼ନା କରନ୍ତି ତାକୁ ମୋର ଦୂତମାନେ
ଏରୂପେ ସହସ୍ର ବର୍ଷ ଦଣ୍ଡ ସେହି ସ୍ଥାନେ ।
ଭାରତବରଷେ ଶୂଦ୍ର ଯୋନିରେ ସେ ପୁଣି
ଜନମ ହୁଅଇ ସାତଥର ଥାଅ ଜାଣି ।
ଦରିଦ୍ର ବିଶ୍ୱାସଘାତୀ ନିଷ୍ଠୁର ହୁଅନ୍ତି
ବହୁତ କାଳ ଅନ୍ତରେ ଶୁଦ୍ଧି ଲଭିଥାନ୍ତି ।
ମସ୍ତକରେ କୃଷ୍ଣପଦ ଥାଏ ଯେ ସର୍ପର
ତାହାର ଜୀବନ ନାଶକରେ ଯେଉଁ ନର ।
ସ୍ୱଲୋମ ପ୍ରମାଣ ବର୍ଷ ସର୍ପକୁଣ୍ଡେ ପଡ଼େ
ଚୋବାଇ ଥାଆନ୍ତି ସର୍ପେ ବେଢ଼ି ଚାରିଆଡ଼େ ।
ମୋର ଦୂତମାନେ ମଧ୍ୟ ଅପରାଧ ନ ଭଷି
ମାରନ୍ତି ଆଣୁଆ ବିଧା ଖନ୍ଦା ଲେଣ୍ଡା ମୁଷି ।
ସର୍ପଙ୍କର ମଳ ଖାଇ ପଡ଼ି ପଡ଼ି ତହିଁ
ପୁଣି ସର୍ପକୁଳେ ଆସି ଜନମ ହୁଅଇ ।
କେତେଦିନ ଅନ୍ତେ ଯାଇଁ ମନୁଷ୍ୟ ଯୋନିରେ
ଜନମ ହୁଅଇ ନୀଚ ଲୋକଙ୍କ ବଂଶରେ ।
ଅଳପ ଆୟୁଷ ପୁଣି ଦରିଦ୍ର ହୁଅଇ
ଅନ୍ତଃକାଳେ ସର୍ପ ଘାତେ ମରଣ ଲଭଇ ।
ଯେଉଁଲୋକ କ୍ଷୁଦ୍ରଜନ୍ତୁ ବଧକରେ ନିତ୍ୟ
ଦଂଶମଶା କୁଣ୍ଡରେ ସେ ପଡ଼ଇ ନିଶ୍ଚିତେ ।
ଯେତେ ଜନ୍ତୁ ମାରିଥାଏ ତେତେ ସମ୍ବତ୍ସର
ହୋଇ ନ ପାରଇ ସେହି କୁଣ୍ଡରୁ ବାହାର ।
ପ୍ରତ୍ୟେକ ଅଙ୍ଗରେ ମଶା ରହିଥାନ୍ତି ବେଢ଼ି
ଅନାହାରେ ବଳକରେ ଗୁଡ଼ୁଥାଏ ରଡ଼ି ।
ହାତ ଗୋଡ଼ ବାନ୍ଧି ତାଙ୍କୁ ମୋର ଦୂତଗଣେ
ପ୍ରହାର କରନ୍ତି ପୁନଃ ପୁନଃ ଅତିଟାଣେ ।
ସେ ଅନ୍ତରେ କ୍ଷୁଦ୍ରଜନ୍ତୁ ରୂପେ ଜନ୍ମ ହୁଏ
ପୁଣି କେତେକାଳ ନର ଜନମକୁ ପାଏ ।
ମଧୁମାଛିଙ୍କର ଜୀବ ଘେନି ଯେଉଁ ଜନ
ତାହାର ସଞ୍ଚିତ ମଧୁ କରଇ ଗ୍ରହଣ ।
ଯେତେ ମଧୁମାଛି ମାରିଥାଏ ସେତେ ବର୍ଷ
ଗରଳକୁଣ୍ଡ ମଧ୍ୟରେ କରଇ ଯାଇ ବାସ ।
ଗରଳରେ ଦଗ୍ଧହୋଇ ମୋର ଦୂତଙ୍କର
ତାଡ଼ନା ଭର୍ତ୍ସନା ବାକ୍ୟ ଲଭଇ ଅପାର ।

ସେ ଅନ୍ତେ ମତ୍ସ ରୂପରେ ଜନମ ହୁଅଇ
ପୁଣି କେତେ କାଳପରେ ଶୁଦ୍ଧି ସେ ଲଭଇ ।
ଧନଲୋଭେ ଯେଉଁ ରାଜା ପରଜାଙ୍କୁ ଦଣ୍ଡେ
ପଡ଼ଇ ଅସଂଖ୍ୟ ବର୍ଷ ସେ ବୃଶ୍ଚିକ କୁଣ୍ଡେ ।
ସେ ଅନ୍ତେ ବୃଶ୍ଚିକ ବଂଶେ ଜନମ ହୁଅଇ
ସାତ ଜନ୍ମପାଏ ଏହିପରି ହେଉଥାଇ ।
ତାହାପରେ ନରଜନ୍ମ ଲଭଇ ଭାରତେ
ଅଙ୍ଗହୀନ ବ୍ୟାଧିଯୁକ୍ତ ହୋଇଥାଏ ସତ୍ୟେ ।
ଯେଉଁ ବିପ୍ର କେବେହେଲେ ସନ୍ଧ୍ୟା ନ କରଇ
ଶ୍ରୀହରିଙ୍କ ନାମ କେବେ ସୁମରୁ ନ ଥାଇ ।
ସ୍ୱେ ସେନ କରେ ଅନ୍ୟ ପନ୍ଥରେ ଗମନ
ସରକୁଣ୍ଡେ ପଡ଼େ ଲୋମ ସମ ବର୍ଷ ଜାଣ ।
ସେ ଅନ୍ତରେ ପାପ ତେଜି ଶୁଦ୍ଧ ହୁଏ ଯେବେ
ମନୁଷ୍ୟ ଲୋକରେ ଜନ୍ମ ହୁଅଇଟି ତେବେ ।
ଯେଉଁ ରାଜା ଅଳ୍ପ ଦୋଷେ ପରଜାଙ୍କୁ ନେଇ
ବନ୍ଧଘରେ ଅନ୍ଧକାରେ ବାନ୍ଧଣ ରଖଇ ।
ଗୋଳକୁଣ୍ଡେ ପଡ଼ଇ ସେ ଦେହ ଅନ୍ତକାଳେ
ଯେଉଁ କୁଣ୍ଡ ଅନ୍ଧକାର ପୂର୍ଣ୍ଣ ସବୁବେଳେ ।
ଷଣ୍ଢ ଦେଳ କୀଟଗଣ ସେ ମଧ୍ୟରେ ଥାଇ
ଖେଦାଇ ଥାଆନ୍ତି ତାର ଅଙ୍ଗକୁ ଭୁଞ୍ଜାଇ ।
ପ୍ରଜାଦେହେ ଯେତେ ଲୋମ ଥାଏ ତେତେବର୍ଷ
ତହିଁରେ ସେ ମୂର୍ଖ ରାଜା କାଳପରେ ବାସ ।
ପ୍ରଜାଭୃତ୍ୟ ହୋଇ ଲୋକ ଜନମ ଲଭଇ
ସେ ଅନ୍ତରେ ଶୁଦ୍ଧି ଲଭ କରେ ତେବେ ଯାଇ ।
ସରୋବରେ ଯେଉଁ ନକ୍ର ଭାସୁଥାଏ ସୁଖେ
ତାହାକୁ ଧରାଏ ଯେଉଁ ଲୋକ ମୃତ୍ୟୁ ମୁଖେ ।
ନକ୍ର ପୁଚ୍ଛେ ଯେତେଗୋଟି କଣ୍ଟା ଥାଏ ରହି
ସେତେକ ବରଷ ନକ୍ର କୁଣ୍ଡେ ପଡ଼ଇ ।
ସେ ଅନ୍ତରେ ନକ୍ର ହୋଇ ଜନ୍ମେ ବାସକରେ
ତେବେ ଶୁଦ୍ଧହୋଇ ଜନ୍ମେ ଆପଣା ବଂଶରେ ।
କାମରେ ଆତୁର ହୋଇ ପରକାମିନୀର
ସ୍ତନ ମୁଖ ନିରୀକ୍ଷଣ କରେ ଯେଉଁ ନର ।
ଆବର ନିତମ୍ବ ବକ୍ଷସ୍ଥଳୀ କଟି ଶ୍ରେଣୀ
ଦେଖିବାକୁ ନେତ୍ର ଡ଼ାଳି ରହିଥାଏ ପୁଣି ।
ସ୍ୱଲୋମ ସମାନ ବର୍ଷ ପଡ଼େ କାକ କୁଣ୍ଡେ
କାକମାନେ ଚକ୍ଷୁ କର୍ଣ୍ଣ ଖୋଳୁଥାନ୍ତି ତୁଣ୍ଡେ ।

ସେ ଅନ୍ତରେ ଜନ୍ମାନ୍ଧ ଅନ୍ଧ ହୋଇ କରି
ଭାରତବରଷେ ଜାତ ହୁଏ ଦେହଧରି ।
ସୁନା ଚୋରି କରେ ଯେହୁ ଦେବ ଦ୍ୱିଜଙ୍କର
ସଞ୍ଚାଣ କୁଣ୍ଡରେ ଯାଇ ପଡ଼େ ସେହି ନର ।
ସଞ୍ଚାଣ ତାହାର ଚକ୍ଷୁ ଖୋଳିଣ ଖାଆନ୍ତି
ମୋର ଦୂତମାନେ ଆଣ୍ଡେ ପ୍ରହାର କରନ୍ତି ।
ସେଠାରୁ ବହୁତକାଳ ଅନ୍ତେ ପୁଣି ଯାଇ
ଜନମ ହୁଅଇ ଲୋକ ଅନ୍ଧ ଶ୍ରେଷ୍ଠା ହୋଇ ।
ଏହିପରି ତିନିଜନ୍ମ ଭୋଗ ହେବା ପରେ
ଦରିଦ୍ର ହୁଅଇ ତହୁଁ ସପତ ଜନ୍ମରେ ।
ପୁଣି ସ୍ୱର୍ଣ୍ଣକାର କୁଳେ ଜନମ ହୁଅଇ
ସ୍ୱର୍ଣ୍ଣ ବ୍ୟବସାୟ କରି ପାପ ଅରଜଇ ।
ଯେଉଁ ଲୋକ ଭାରତରେ ତାମ୍ର ଲୌହ ବେନି
ଚୋରାଇ ଗୃହକୁ ଘେନିଯାଏ ହୋଇ ଭୁନି ।
ଦ୍ରବ୍ୟ ସମାନ ବରଷ ବାଳକୁଣ୍ଡେ ରହେ
ଖୋଜୁଥାନ୍ତି ବାଳଗଣ ତା ନେତ୍ରକୁ କୋହେ ।
ବାଳମଳ ଖାଇ ଘୋର କଷ୍ଟ ସହ୍ୟ କରେ
ତଡ଼ିତ ହୁଅଇ ମୋର ଦୂତଙ୍କ ହାତରେ ।
ସେ ଅନ୍ତରେ ପାପ ନାଶ ହେଲେ ଭାରତରେ
ଜନମ ହୁଅଇ ଆସି ମନୁଷ୍ୟ ଯୋନିରେ ।
ଦେବତା ପ୍ରତିମା ଚୋରିକରେ ଯେ ମନୁଷ୍ୟ
ଅଥବା ଦେବତା ଦ୍ରବ୍ୟ କରେ ଆସି ଗ୍ରାସ ।
ଦୁସ୍ତର ବଜ୍ରକୁଣ୍ଡରେ ପଡ଼ଇ ସେ ଯାଇ
ଦଗ୍ଧ ହୁଏ ଅନାହାରେ ବଜ୍ରମାଡ଼ ଖାଇ ।
ମୋର ଦୂତମାନେ ତାକୁ ତାଡ଼ନା କରନ୍ତି
ସେ ଅନ୍ତରେ ଶୁଦ୍ଧି ଲଭ କରେ ଆଗୋ ସତି ।
ଦେବତା ବ୍ରାହ୍ମଣଙ୍କର ସୁନାରୁପା ଧାନ
ବସ୍ତ୍ର ଆଦି ଚୋରି କରୁଥାଏ ଯେଉଁ ଜନ ।
ସ୍ୱଲୋମ ସମାନ ବର୍ଷ ତପତ ପାଷାଣ
କୁଣ୍ଡରେ ପଡ଼ଇ ଅନ୍ତଃକାଳରେ ସେ ଜାଣ ।
ତିନିଗୋଟି ଜନ୍ମ ତହୁଁ ବକଜନ୍ମ ପାଏ
ପୁଣି ତିନିଜନ୍ମେ ଶ୍ୱେତ ହଂସରୂପ ହୁଏ ।
ଗୋଟିଏ ଜନମ ପୁଣି ହୁଏ ଶଙ୍ଖଚିଲ
ଶ୍ୱେତ ପକ୍ଷୀରୂପେ ତହୁଁ ରହେ କେତେକାଳ ।
ତାହାପରେ ନରଜନ୍ମ ହୁଅଇ ତାହାର
ରକ୍ତପିତ ଶୂଳରୋଗେ କଷ୍ଟ ପାଏ ଘୋର ।

ସପ୍ତ ଜନ୍ମଯାଏ ଅଳ୍ପ ଆୟୁଷ ହୁଅଇ
ତେବେ ଯାଇ ଶୁଦ୍ଧି ଲଭ କରନ୍ତି ସେହି ।
ଚୌର୍ଯ୍ୟଭାଂଶ ପାପ ଯେହୁ ଦେବ ବିପ୍ରଙ୍କର
ହରଣ କରଇ ମନେ ନ କରି ବିସ୍ମର ।
ତୀକ୍ଷଣ ପାଷାଣ କୁଣ୍ଡରେ ହୁଏ ତାର ବାସ
ଆପଣା ଦେହର ଲୋମ ସମାନ ବରଷ ।
ସାତ ଜନ୍ମଯାଏ ତହୁଁ ଅଶ୍ୱ ଜନ୍ମ ପାଏ
ସେ ଅନ୍ତେ ମନୁଷ୍ୟକୁଳେ ଜାତ ହୋଇଥାଏ ।
କୁଳଟା ହସ୍ତରୁ ଯେହୁ ଭୋଜନ କରଇ
ଅଥବା କୁଳଟା ଦ୍ରବ୍ୟ ଚୋରିକରି ନେଇ ।
ମହାକଷ୍ଟ ଭୋଗକରେ ଲାଳକୁଣ୍ଡେ ପଡ଼ି
ପିଟନ୍ତି ତାହାକୁ ମୋର ଦୂତଗଣ ବେଢ଼ି ।
ବହୁତ ସମୟେ ପରେ ନରଜନ୍ମ ପାଏ
ଶୂଳରୋଗୀ ହୋଇ ଜନ୍ମାନ୍ତରେ ଶୁଦ୍ଧ ହୁଏ ।
ଭାରତବରଷେ ଯେହୁ ମ୍ଲେଚ୍ଛ ସେବା କରେ
ଅଥବା ଜୀବନ ପୋଷେ ମ୍ଲେଚ୍ଛ ସମ୍ପଦରେ ।
ଦେହ ଅନନ୍ତରେ ତପ୍ତ ମଣିକୁଣ୍ଡେ ପଡ଼ି
ସ୍ୱଲୋମ ସମାନ ବର୍ଷ ରହିଥାଏ ବୁଡ଼ି ।
ମୋ ଦୂତଙ୍କଠାରୁ ସହି ବହୁତ ତାଡ଼ନା
କର୍ମଫଳ ଭୁଞ୍ଜୁଥାଏ ହୋଇଣ ବିମନା ।
ସେ ଅନ୍ତରେ କେତେକାଳ ଗତ ହୋଇଯାନ୍ତେ
କୃଷ୍ଣବର୍ଣ୍ଣ ପଶୁ ହୋଇ ଜନ୍ମଇ ଭାରତେ ।
ତିନିଜନ୍ମ ଯାଏ ପୁଣି ଛାଗ ରୂପ ହୁଏ
ପୁଣି ତିନିଥର କୃଷ୍ଣସର୍ପ ରୂପ ବହେ ।
ସେ ଜନ୍ମ ଶେଷରେ ତାଳ ଗଛ ହୋଇକରି
ଶୁଦ୍ଧି ଲଭ କରେ ତହୁଁ ଜାଣ ଗୋ ସୁନ୍ଦରି ।
ଦେବ ଦ୍ୱିଜଙ୍କର ଧାନ୍ୟ ତାମ୍ବୁଳ ଯେ ଲୋକ
ହରଣ କରଇ ମନୁ ଛାଡ଼ିଦେଇ ଦକ ।
ଆବର ଆସନ ଶଯ୍ୟା ଚୋରିକରି ଯାଇ
ଅନ୍ତଃକାଳେ ଚୂର୍ଣ୍ଣକୁଣ୍ଡ ମଧ୍ୟରେ ପଡ଼ଇ ।
ଶତ ସମ୍ବତ୍ସର ତହିଁ ପଡ଼େ ନିଶିଦିନ
ଯଷ୍ଟି ଘେନି ମୋର ଦୂତେ କରନ୍ତି ତାଡ଼ନ ।
ସେ ଅନ୍ତରେ ତିନିଜନ୍ମ ମେଣ୍ଢାରୂପ ହୁଏ
କୁକ୍କୁଟ ରୂପରେ ପୁଣି ତିନି ଜନ୍ମଯାଏ ।
ସପ୍ତମ ଜନ୍ମରେ ଯାଇ ହୁଅଇ ମନୁଷ୍ୟ
ପିଲହନ୍ତୁ କାଶରୋଗ କରେ ତାଙ୍କୁ ଗ୍ରାସ ।

ବାମନ ଦରିଦ୍ର ବଂଶହୀନ ସେ ହୁଅଇ
ବହୁତ କାଳରେ ଶୁଦ୍ଧି ଲଭ କରିଥାଇ ।
ବ୍ରାହ୍ମଣ ପଦାର୍ଥ ଯେହୁ ଭୋଗ କରେ ବଳେ
ଅଥବା ହରଣ କରି ନିଏ ସେ କୌଶଳେ ।
ଶତ ସମ୍ବତ୍ସର କାଳ ତମକୁଣ୍ଡେ ପଡ଼େ
କଷ୍ଟ ପାଉଥାଏ ମୋର ଦୂତଙ୍କର ମାଡ଼େ ।
ସେ ଉତ୍ତରେ ଜନ୍ମ ଲଭେ ଭାରତବର୍ଷରେ
ଆଗ ତିନିଥର ଯାଏ ତେଳକାରୁ ଘରେ ।
ବ୍ୟାଧିଯୁକ୍ତ ହୋଇ ଘରୁ ଉଠି ନ ପାରଇ
ପାଣି ଦେବାକୁ ଟି ନ ରହନ୍ତି ତାର କେହି ।
ଶୁଦ୍ଧି ଲଭଥାଏ ସେହି ଜନମର ଅନ୍ତେ
ମନ ଦେଇ ଶୁଣ ଆଗୋ ସତୀ ପତିବ୍ରତେ ।
ଦ୍ୱିଜଠାରେ ଅବା ପ୍ରିୟ ବନ୍ଧୁଜନଠାରେ
କପଟ କରଇ ଯେଉଁଲୋକ ନିରନ୍ତରେ ।
ବହ୍ନିକୁଣ୍ଡେ ପଡ଼ି ସେହି ତିନିଗୋଟି ଯୁଗ
ବିବିଧ ଯନ୍ତ୍ରଣା ମଧ୍ୟ କରେ ସେହୁ ଭୋଗ ।
ସେ ଅନ୍ତରେ ବହ୍ନିଅଙ୍ଗ ହୀନଅଙ୍ଗ ହୋଇ
ସପତଥର ମାନବ ଯୋନିରେ ଜନ୍ମଇ ।
ଦରିଦ୍ର ନିର୍ବଂଶ ପୁଣି ଭାର୍ଯ୍ୟାହୀନ ହୁଏ
ଦୁରିତ ଖଣ୍ଡନ ହେଲେ ଶୁଦ୍ଧଭାବ ପାଏ ।
କୂର୍ମ ମାଛ ତାର ମାଂସ ଖାଏ ଯେ ବ୍ରାହ୍ମଣ
କୂର୍ମକୁଣ୍ଡେ ପଡ଼େ ଶତବର୍ଷ ପରିମାଣ ।
ତୀକ୍ଷ୍ଣ ଦନ୍ତରେ କୂର୍ମଗଣ ତା ଦେହକୁ
ଉଡ଼ୁଥାନ୍ତି ଖଣ୍ଡ ଖଣ୍ଡ କରି ମାଉଁସକୁ ।
ସେ ଅନ୍ତରେ କୂର୍ମ ହୋଇ ଜନ୍ମେ ତିନିଥର
ଆବର ତିନିଜନ୍ମରେ ହୁଅଇ ଶୂକର ।
ବିଡ଼ାଳ ମୟୂର ରୂପେ ତିନି ତିନି ଜନ୍ମ
ହୁଅଇ ଆଦରି ନିଜ ପୂର୍ବ କଲକର୍ମ ।
ଦେବ ଦ୍ୱିଜଙ୍କର ଘୃତ ତୈଳ ଯେ ଚୋରାଏ
ଜ୍ୱାଳାକୁଣ୍ଡ ଭସ୍ମକୁଣ୍ଡ ତାହାପାଇଁ ଥାଏ ।
ଶତବର୍ଷ କାଳ ତହିଁ ଯାପନ କରଇ
ଅସର୍ପା ରୂପରେ ତହୁଁ ମର୍ତ୍ତ୍ୟେ ଜନ୍ମ ହୋଇ ।
ଯେ ଅନ୍ତରେ ମାଛରଙ୍କା ମୂଷାଜନ୍ମ ପାଏ ।
ସାତଜନ୍ମ ଗଲେ ପୁଣି ଶୁଚିମନ୍ତ ହୁଏଁ ।
ପୁଣ୍ୟଭୂମି ଭାରତରେ ସୁର ବିପ୍ରଙ୍କର
ଗନ୍ଧଦ୍ରବ୍ୟ ହରି ନିଏ ଯେଉଁ ମୂଢ଼ ନର ।

ମୂର୍ଖାଧ କୁଣ୍ଡରେ ସେହୁ ନିଃସ୍ଥୁଲ୍ୟ କର୍ଷ
ବାସକରେ ଜାଣ ଆଗୋ ନାଗ୍ଭଗଣ ଧଣ ।
ସାତଜନ୍ମ ଦୁର୍ଗନ୍ଧିକା ହୁଏ ସେ ଅନ୍ତରେ
ମୂତନାଦ୍ଧ ହୋଇ ପୁଣି ତିନଜନ୍ମ ସରେ ।
ସୁଗନ୍ଧିକା ହୁଏ ପୁଣି ଆଉ ସାତଥର
ଅଷ୍ଟମ ଜନ୍ମରେ ନର ରୂପ ହୁଏ ତାର ।
ବଳରେ ବା ଖଳପଣେ ଉନମତ୍ତ ହୋଇ
ପରପିତାର୍ଜିତ ଭୂମି ଯେ ଦିଏ ଛଡ଼ାଇ ।
ତପତ ଶୂଳରେ ତାକୁ ମୋର ଦୂତମାନେ
ପକାଇ ରଖନ୍ତି ଦିନରାତି କ୍ରୋଧ ମନେ ।
ଯେଉଁରୂପେ ତପ୍ତେ ତୈଳେ ଦ୍ରବୁଥିଲେ ଜୀବ
ଛଟପଟ ହୋଇ ବିକଳରେ ଡେଉଁଥିବ ।
ସେହିପରି କଷ୍ଟଭୋଗ ହୁଅଇ ତାହାର
ବିନଷ୍ଟ ନୁହଇ ଜାଣ କଦାପି ଶରୀର ।
ସପ୍ତ ମନ୍ୱନ୍ତର ତହିଁ ସନ୍ତପ୍ତ ଭାବରେ
ରହି ମାଡ଼ଖାଇ ଡାକ ପକାଏ ଉଚ୍ଚରେ ।
ସେ ଅନ୍ତେ ଭାରତେ ଷଷ୍ଠି ସହସ୍ର ବରଷ
ମଳକୃମିରୂପ ହୋଇ ଜନମେ ଅବଶ୍ୟ ।
ବଞ୍ଚନ୍ତି ସମସ୍ତ ଅନ୍ତେ ମନୁଷ୍ୟ ହୁଅଇ
ଦରିଦ୍ର କୁତ୍ସିତ ତାହାପରି କେ ନ ଥାଇ ।
ସେ ଜନ୍ମ ଅନ୍ତରେ ନିଜ କୁଳେ ଜାତ ହୁଏ
ତହୁଁ ଶୁଦ୍ଧି ଲଭ କରି ଧାର୍ମିକ ବୋଲାଏ ।
ଦାରୁଣ ପଣରେ ଯେହୁ ଖଡ଼ଗ ପ୍ରହାର
ମନୁଷ୍ୟ ଆଦି ଜୀବଙ୍କ ଜୀବ ନିଏ ହରି ।
ଅସିପତ୍ର କୁଣ୍ଡରେ ସେ କରଇ ନିବାସ
ଭୋଗ ହେବା ପର୍ଯ୍ୟନ୍ତେ ଇନ୍ଦ୍ର ଚତୁର୍ଦ୍ଦଶ ।
ବ୍ରାହ୍ମଣ ଘାତକ ଯେବେ ହୋଇଥାଏ ସେହି
ଶତେ ମନ୍ୱନ୍ତର ଭୋଗ କରଇଟି ତହିଁ ।
ସବୁବେଳେ ଖଡ଼ଗରେ ତାହାର ଶରୀର
ଖଣ୍ଡ ଖଣ୍ଡ ହୋଇ ବହି ପଡ଼ଇ ରୁଧିର ।
ମୋର ଦୂତଙ୍କ ତାଡ଼ନା ସହି ନ ପାରଇ
ବଲୁଆ ପରି ଉଚ୍ଚରେ ରଡ଼ି କରୁଥାଇ ।
ମଣ୍ଡୂକ ହୁଅଇ ଶତଜନ୍ମ ସେ ଅନ୍ତରେ
ଶତେଜନ୍ମ ବୁଲେ ପୁଣି ଶୂକର ରୂପରେ ।
କୁକୁର ଶୃଗାଳ ସାତ ସାତ ଜନ୍ମେ ହୁଏ
ବ୍ୟାଘ୍ର ବୃକ ହୋଇ ତିନ ଜନମ କଟାଏ ।
ଯେଉଁ ଲୋକ ପରଠାରେ ହିଂସା ମନେ ବହି
ଅନଳ ଲଗାଏ ଗ୍ରାମେ ନଗରେ ବା ନେଇ ।
ତୀକ୍ଷ୍ଣ କ୍ଷୁର ଧାରପରି ତିନଯୁଗ ଯାଏ
ବସାଇ ସେ ଛଟପଟ ହୋଇ ଅନ୍ତଶଯ୍ୟେ ।
ସେ ଅନ୍ତରେ ଅଗ୍ନି ମୁଖ ପ୍ରେତଜନ୍ମ ହୋଇ
ପୃଥିବୀ ମଧ୍ୟରେ ଏଣେ ତେଣେ ଭ୍ରମୁଥାଇ ।
ଅମେଧ୍ୟ ଭୋଜନ କରି ପୁଣି ସାତଜନ୍ମ
ଯାପନ କରଇ ସେହି ମନୁଷ୍ୟ ଅଧମ ।
ଜୁଳୁଜୁଳା ପୋକ ହୋଇ ଜନ୍ମେ ସାତଥର
ସେ ଅନ୍ତରେ ନରଜନ୍ମ ହୁଅଇ ତାହାର ।
ସାତ ଜନ୍ମଯାଏ ପୁଣି ଶୂଳ କୁଷ୍ଠ ରୋଗ
ସେ ମହାପାତକ ଯୋଗେ କରିଥାଏ ଭୋଗ ।
ଯେଉଁଲୋକ ପର କାନ ପାଶେ ମୁଖଦେଇ
ପରନିନ୍ଦା କଥାମାନ ଗୁପତେ କହଇ ।
ଜ୍ଞାନବନ୍ତ ହୋଇଥାଏ ପରଙ୍କ ଦୋଷରେ ।
ଦେବ ବ୍ରାହ୍ମଣଙ୍କୁ ସବୁବେଳେ ନିନ୍ଦାକରେ ।
ସୂଚିମୁଖ କୁଣ୍ଡେ ପଡ଼େ ଯୁଗ ତିନଗୋଟି
ତୀକ୍ଷ୍ଣ ସୂଚୀ ବାଜି ଅଙ୍ଗ ଯାଉଥାଏ ଫୁଟି ।
ସେ ଅନ୍ତରେ ସାତଜନ୍ମ ବୃଶ୍ଚିକ ହୁଅଇ
ସର୍ପରୂପେ ପୁଣି ଜନ୍ମ ସାତଗୋଟି ଯାଇ ।
ବଜ୍ରକୀଟ ପୁଣି ଆଉ ସାତଜନ୍ମ ହୁଏ
ଭସ୍ମକୀଟ ରୂପେ ସେ ଅନ୍ତରେ ଜନ୍ମପାଏ ।
ମନୁଷ୍ୟ ଜନମ ପାଏ ପୁଣି କେତେକାଳେ
ଶୂଳିମନ୍ତ ହୁଏ ପୂର୍ବ ପାପ ନଷ୍ଟ ହେଲେ ।
ଯେଉଁଲୋକ ଗୃହୀଙ୍କର ଗୃହ ଭେଦକରି
ଧାନ୍ୟତ ପଦାର୍ଥ ଚୋରିକରି ନ ଡରିର ।
ଆବର ମନ୍ଦବୁଧି ଗାଈ ମେଷ ଚୋରିକରେ
ଗୋଧା ମୁଖ କୁଣ୍ଡରେ ସେ ପଡ଼େ ନିଷ୍ଠୁରରେ ।
ସେ ଅନ୍ତେ ସପତ ଜନ୍ମ ଗୋରୂପ ହୁଅଇ ।
ତିନଜନ୍ମ ଭୋଗକରେ ମେଷ ରୂପ ବହି ।
ଛାଗରୂପ ବହେ ତହୁଁ ତିନୋଟି ଜନ୍ମରେ
ତା ପରେ ମନୁଷ୍ୟ ହୁଏ ଭାରତବର୍ଷରେ ।
ବାଲ୍ୟକାଳୁ ନାନାରୋଗ ହୁଏ ତା ଦେହରେ
ଭିକ୍ଷା ମାଗୁଥାଏ ନିତ ବୁଲି ଦ୍ୱାରେ ଦ୍ୱାରେ ।
ସନ୍ତାନ ବାନ୍ଧବହୀନ ହୁଏ ପୁଣି ସେହି
ଶୁଚିମନ୍ତ ହୁଏ ତହୁଁ ନାନାକଷ୍ଟ ସହି ।

ସାମାନ୍ୟ ପଦାର୍ଥ ମ୍ଲେଚ୍ଛଙ୍କରେ ଯେଉଁ ଜନ
ନକ୍ରମୁଖ ନରକକୁ ହୁଏ ସେ ଭାଜନ ।
ସହସ୍ରେ ବରଷ ଅନ୍ତେ ନରଜନ୍ମ ପାଏ
ଘର କରିଥାନ୍ତି ନାନାରୋଗ ତାର ଦେହେ ।
ଗୋ ମନୁଷ୍ୟ ମୃଗ ଶଶା ଗଜ ଭୁଜଙ୍ଗମ
ବଧ କରଥାଏ ଯେଉଁ ମନୁଷ୍ୟ ଅଧମ ।
ସେ ମହାପାତକୀ ଗଜଦନ୍ତ ନରକରେ
ତିନଯୁଗ ଯାଏ ନାନାକଷ୍ଟ ଭୋଗକରେ ।
ଗଜଦନ୍ତ ସଦୃଶ ଯେବେ ମୋର ଦୂତଗଣ
ପିଟୁଥାନ୍ତି ମହାକ୍ରୋଧେ ତରଟି ନୟନ ।
ତିନଜନ୍ମ ଯାଏ ସେହୁ ଗଜମୂର୍ଖ ହୁଏ
ପୁଣି ତିନଥର ଅଶ୍ୱ ଜନମକୁ ପାଏ ।
ଗୋଜାତି ଅନ୍ତରେ ପୁଣି ହୁଏ ମ୍ଲେଚ୍ଛଜାତି
ତା ପରେ ଶୁଦ୍ଧ ହୁଅଇ ଜାଣ ଆଗୋ ସତୀ ।
ତୃଷିତ ଗାଈଙ୍କୁ ଜଳପିଇବା କାଳରେ
ଯେଉଁଲୋକ ମୂର୍ଖପଣେ ନିବାରଣ କରେ ।
ଗାଈଙ୍କ ଶୁଶ୍ରୂଷା କରୁ ନ ଥାଏ ସେ ଯେବେ
ଗୋମୁଖ ନରକ ମଧ୍ୟେ ପଡ଼ଇଟି ତେବେ ।
ଗୋମୁଖ ଆକୃତି ଅଟେ ସେ ମହା ନରକ
ସର୍ବରେ କୃମିସଙ୍କୁଳ ତପତ ଉଦକ ।
ଏକ ମନ୍ୱନ୍ତର ଶେଷ ହେବାଯାଏ ତହିଁ
ସନ୍ତାପ ଭୋଗ କରଣ ପଡ଼ି ରହିଥାଇ ।
ସେ ଅନ୍ତେ ମନୁଷ୍ୟ ଜନ୍ମେ ମହାରୋଗୀ ହୁଏ
ଦରିଦ୍ର କୃପଣ ଭାବେ ଜନେ ନେଉଥାଏ ।
ସାତଜନ୍ମ ଯାଏ ପୁଣି ଚଣ୍ଡାଳ ଯୋନିରେ
ଜନ୍ମ ହୋଇ ଶୁଦ୍ଧିଲାଭ କରେ ସେ ଅନ୍ତରେ ।
ଉକ୍ତ ଗୋହତ୍ୟା ବ୍ରହ୍ମହତ୍ୟା ଯେହୁ କରେ
ଅଗମ୍ୟ ଗମନ କରି ଯେବା ଦାନ ହରେ ।
ସନ୍ଧ୍ୟାହୀନ ଅଟେ ଅବା ଯେବଣ ବ୍ରାହ୍ମଣ
ଅପାକ୍ଷିତ ହୋଇ ରହିଥାଏ ସେହୁ ପୁଣ ।
ଭିକ୍ଷୁହତ୍ୟା ଭ୍ରୂଣହତ୍ୟା ଦୁଇଟି ପାତକ
ଅରଜନ କରଥାଏ ଯେଉଁ ମୂଢ଼ଲୋକ ।
ଏମାନଙ୍କଠାରୁ ବଳି ପାତକୀ ପଣରେ
ଜନମ ନୋହିବ କେହି ତିନି ଭୁବନରେ ।
ଏ ବାହାରେ ତୀର୍ଥପ୍ରତିଗ୍ରାହୀ ଯେ ଅଟଇ
ଗ୍ରାମ ଯାଜକ ରୂପରେ ଯେ[illegible] ଧନ ନେଇ ।

କେବଳ ଅଟଇ ଯେଉଁ ବ୍ରାହ୍ମଣକୁମର
ଯେଉଁଦ୍ୱିଜ ଅଟେ ଅବା ଶୂଦ୍ର ସୂପକାର ।
ବୃଷଳୀ ପତି ଅଟଇ ଅବା ଯେ ବ୍ରାହ୍ମଣ
ମହାପାତକୀଗଣରେ ଲେଖା ସେହୁ ଜାଣ ।
ଗୋରୁ ହତ୍ୟା ବ୍ରହ୍ମହତ୍ୟା ସ୍ତ୍ରୀହତ୍ୟା କରେ
ନ ରଖେ ଭକତ ପ୍ରୀତି ମାନ୍ୟଲୋକଠାରେ ।
ଏମାନେ ଶରୀର ଅନ୍ତେ କୁମ୍ଭୀପାକେ ବାସ
କରନ୍ତି ଯାବତ ହୁଏ ଇନ୍ଦ୍ର ଚତୁର୍ଦ୍ଦଶ ।
ତାଡ଼ନା କରନ୍ତି ତାଙ୍କୁ ମୋର ଦୂତମାନେ
ଏହିରୂପେ ମହାଦୁଃଖ ସହି କେତେଦିନେ ।
ସେ ସ୍ଥାନରୁ ଯାଇ ଅଗ୍ନି କୁଣ୍ଡରେ ପଡନ୍ତି
କଣ୍ଟକ ଉପରେ କେତେବେଳେ ବସୁଥାନ୍ତି ।
ତପତ ତୈଳରେ ପୁଣି ତପତ ଜଳରେ
କେତେବେଳେ ପଡ଼ି ରହୁଥାନ୍ତି ବଡକରେ ।
ତପତ ଲୌହର ପରେ ବସୁଥାନ୍ତି କ୍ଷଣେ
ସେ ଅନ୍ତେ ବହନ୍ତି ଯାଇ ତପତ ପାଷାଣେ ।
କୋଟିଏ ସହସ୍ର ଜନ୍ମ ଶାଗୁଣା ହୁଅନ୍ତି
ଶୂକର ରୂପରେ ଶତେ ଜନମ କଟାନ୍ତି ।
ପୁଣି ସାତଜନ୍ମ ଯାଏ ହୁଅନ୍ତି କାପୁସ
ସର୍ପରୂପେ ସାତଜନ୍ମ ଭବଥାନ୍ତି ଶେଷେ ।
ଷାଠିଏସହସ୍ର ବର୍ଷ ମଳକୃମି ହୋଇ
ବୃଷଳୀ ଯୋନିରେ ତହୁଁ ଜନମନ୍ତି ଯାଇ ।
ଦରିଦ୍ର ଚସ୍କର ମୂର୍ଖ ନିଷ୍ଠୁର ହୁଅନ୍ତି
ଯକ୍ଷ୍ମା ରୋଗରେ ବହୁତ କ୍ଳେଶ ଭୋଗୁଥାନ୍ତି ।
ପୁତ୍ର ଭାର୍ଯ୍ୟାଙ୍କ ମୁଖ ଦର୍ଶନ ନ କରି
ଏହିରୂପେ କଷ୍ଟରେ ପଡ଼ି ଯାଆନ୍ତି ସେ ମରି ।
ଯେଉଁ ଅନ୍ତରେ ଶୁଚିମନ୍ତ ହୁଅନ୍ତି ଜାଣ
ଏମନ୍ତେ ଭୋଗ କରନ୍ତି ପାପ ଫଳମାନ ।
ତା ଶୁଣି ପାର୍ବତୀଦେବୀ ଆଶ୍ଚର୍ଯ୍ୟ ହୋଇଲେ
କରଯୋଡ଼ି ପୁଣି ଧର୍ମରାଜାଙ୍କୁ ପୁଚ୍ଛିଲେ ।
କହିଲେ ହେ ଧର୍ମରାଜ ଜନ୍ତୁଙ୍କ ଈଶ୍ୱର ।
ଆଉ କେତେଗୋଟି କଥା କହ ମୋ ଆଗର
ଉକ୍ତ ଗୋହତ୍ୟା ବ୍ରହ୍ମହତ୍ୟା ବୋଲି ଯାହା ।
କହିଲ ମୁଁ ଭଲରୂପେ ନ ବୁଝିଲି ତାହା ।
ଅଗମ୍ୟଗମନ ବୋଲି ବୋଲନ୍ତି କାହାକୁ
ସନ୍ଧ୍ୟାହୀନ ବୋଲି [illegible] ଲକ୍ଷଣକୁ ।

ଯେଉଁଲୋକ ଅଗ୍ନିହୋତ୍ର ଅଟଇ ଜଗତେ
ତୀର୍ଥସ୍ନାନଶ୍ରାଦ୍ଧ ଧାମ ହୁଏ କ ନ୍ୟାନେ ।
ଯେଉଁ ଦ୍ୱିଜ ଗ୍ରାମଯାଜୀ ଦେବଳ ଅଟଇ
ଶୂଦ୍ର ପରକାର ଯେଉଁ ମାନବଙ୍କୁ କହି ।
ବୃଷଳୀପତି ନାମରେ ଅଟେ କ ବିଦିତ
ଏହାର ଲକ୍ଷଣ କହ ମୋ ଆଗେ ବ୍ୟକତ ।
ତାହା ଶୁଣି ଯମରାଜ ବୋଇଲେ ସୁନ୍ଦରୀ
କହୁଅଛୁ ଏବେ ସବୁ ଶୁଣ ଚିତ୍ତ କରି ।
ଶ୍ରୀକୃଷ୍ଣଙ୍କଠାରେ ଅବା ତାହାଙ୍କ ପୂଜାରେ
କି ଅବା ମୂର୍ତ୍ତିକାମୟୀ ପ୍ରକୃତିଙ୍କ ଠାରେ ।
ଶିବଲିଙ୍ଗଠାରେ ପୁଣି ତାଙ୍କ ଅର୍ଚ୍ଚନାରେ
ନୋହିଲେ ବା ସୂର୍ଯ୍ୟ ସୂର୍ଯ୍ୟମଣିଙ୍କ ମଧ୍ୟରେ ।
ସେହିପରି ଗଣନାଥ ଦେବଙ୍କ ପୂଜାରେ
ଯେଉଁଲୋକ ମୂର୍ଖପଣେ ଭେଦବୁଦ୍ଧି କରେ ।
ବ୍ରହ୍ମ ହତ୍ୟା ପାତକଟି ହୁଅଇ ତାହାର
ଅନ୍ତଃକାଳେ ଭୋଗକରେ ସେ ନରକ ଘୋର ।
ନିଜଗୁରୁ ଇଷ୍ଟଦେବ ପିତାମାତା ଦୁଇ
ଏହାଙ୍କଠାରେ ଯେ ଭେଦବୁଦ୍ଧି ବିସ୍ତରଇ ।
ସେହିଲୋକ ବ୍ରହ୍ମହତ୍ୟା ଲଭଇ ନିଶ୍ଚୟ ।
ଏଥିରେ ସନ୍ଦେହ ମନେ ନ କର ହୃଦୟ ।
ବୈଷ୍ଣବ ତୁଲେ ଅନ୍ୟ ଦେବତା ଭକ୍ତଙ୍କୁ
ଅଥବା ବ୍ରାହ୍ମଣ ସଙ୍ଗେ ଇତର ଲୋକଙ୍କୁ ।
ସମାନ ରୂପେ ଗଣନା କରେ ଯେଉଁ ଜନ
ବ୍ରହ୍ମହତ୍ୟା ପାତକରୁ ହୁଏ ସେ ଭାଜନ ।
ଯେଉଁଲୋକ ବିଷ୍ଣୁଙ୍କର ନୈବେଦ୍ୟ ଦ୍ରବ୍ୟକୁ
ଅନ୍ୟ ନୈବେଦ୍ୟ ସଙ୍ଗେ କରେ ତୁଳନାକୁ ।
ସେ ଲୋକର ବ୍ରହ୍ମହତ୍ୟା ପାତକ ହୁଅଇ
ଏଥିରେ ସନ୍ଦେହ ନାହିଁ ଜାଣ କହୁଅଛି ।
ସେହିପରି ଶ୍ରୀହରିଙ୍କ ପାଦଧୁଆ ଜଳ ।
ଅନ୍ୟ ପାଦୋଦକ ସଙ୍ଗେ କରଇ ଯେ ମେଳ ।
ବ୍ରହ୍ମହତ୍ୟା ପାପ ତାର ହୁଅଇ ନିଶ୍ଚିତ
ଏମନ୍ତ ଅଟଇ ବେଦ ଶାସ୍ତ୍ରର ସମ୍ମତ ।
ସର୍ବମୟ ବିଜଗତ କାରଣ ଈଶ୍ୱର
ଅଧିପତି ଅଟନ୍ତି ସେ ସର୍ବ ଦେବଙ୍କର ।
ସକଳ ଆଦ୍ୟ ପୁରୁଷ ସିଦ୍ଧ ସନାତନ
ମାୟାମୟ ଏକରୂପ ଦେବ ନିରଞ୍ଜନ ।

ଏମନ୍ତ ଅଟନ୍ତି ଯେଉଁ ପ୍ରଭୁ ଦାମୋଦର
ତାଙ୍କଠାରେ ଅନ୍ୟଦେବ ସମାନ ବିସ୍ତର ।
କରଇ ଯେ ବ୍ରହ୍ମହତ୍ୟା ପାପ ତାର ହୁଏ
ଏରୂପେ ଶାସ୍ତ୍ରରେ କହିଅଛନ୍ତି ମୁନିଏ ।
ପୂର୍ବରୁ ପ୍ରସିଦ୍ଧଯେଉଁ ପିତୃ ଦେବାର୍ଚ୍ଚନ
ତାହାକୁ ନିଷେଧ କରେ ଯେଉଁ ଦୁଷ୍ଟଜନ ।
ବ୍ରହ୍ମହତ୍ୟା ପାପ ତାର ନିଶ୍ଚୟ ହୁଅଇ
ଯେ ଅବା ପରମ ଆତ୍ମା ହରିଙ୍କୁ ନିନ୍ଦଇ ।
ନୋହିଲେ ଶ୍ରୀବିଷ୍ଣୁ ମନ୍ତ୍ର ଉପାସନା କଲେ
ଯେଉଁ ଲୋକ ତାର ନିନ୍ଦା କରୁଥାଏ ଭଲେ ।
ସେମାନେ ହୁଅନ୍ତି ବ୍ରହ୍ମହତ୍ୟାର ଭାଜନ
ଶୁଣ ଆଗୋ ଅଶ୍ୱପତିସୁତା ଦେଇ ମନ ।
ବିଷ୍ଣୁଙ୍କର ମାୟାରୂପା ପ୍ରକୃତି ଦେବତା
ବିଷ୍ଣୁଭକ୍ତି ପ୍ରଦ ସ୍ୱାମୀ ତ୍ରୈଲୋକ୍ୟ ପୂଜିତା ।
ତାଙ୍କୁ ନିନ୍ଦା କଲେ ଲୋକ ବ୍ରହ୍ମହତ୍ୟା ପାଏ
ବିଷ୍ଣୁଦ୍ରୋହୀ ବୋଲି ଜଗତରେ ଖ୍ୟାତ ହୁଏ ।
କୃଷ୍ଣ ଜନ୍ମାଷ୍ଟମୀ ରାମ ନବମୀ ଦିନରେ ।
ଶିବରାତ୍ରି ଏକାଦଶୀ ଆଦିତ୍ୟ ବାସରେ ।
ଏହିପରି ପଞ୍ଚକୋଟି ପର୍ବ ଯେଉଁମାନେ
ନ କରନ୍ତି ଅଟନ୍ତି ସେ ଚଣ୍ଡାଳ ସମାନେ ।
ବ୍ରହ୍ମହତ୍ୟା ପାତକଟି ହୁଏ ତାହାଙ୍କର
ଯଥାର୍ଥ ଅଟଇ ଏହା ବୋଲି ମନେ କର ।
ଅମ୍ବୁବାଚୀ ଜଳରେ ଯେ ଶଉଚ କରଇ ।
ଅଥବା ତାହାକୁ ଯେତେ ଶସ୍ୟ ବୁଣିଥାଇ ।
ବ୍ରହ୍ମହତ୍ୟା ପାତକ ସେ ଲଭଇ ନିଶ୍ଚିତ
ଏ ବାହାରେ ଗୁରୁ ମାତା ପିତା ଭାର୍ଯ୍ୟା ସୁତ ।
ଦୁହିତା ରକ୍ଷିତ ସ୍ତ୍ରୀ ଆଶ୍ରିତ ସେବକ
ଏହାଙ୍କୁ ପୋଷିଣ ନ ରଖଇ ଯେଉଁ ଲୋକ ।
ବ୍ରହ୍ମହତ୍ୟା ତାହାରଟି ହୋଇଥାଏ ଜାଣ
ଦେହଅନ୍ତେ କୁମ୍ଭୀପାକ ହୁଏ ତାର ସ୍ଥାନ ।
ବିବାହ ଯେ ନୁହେ ଯେହୁ ନ ଦେଖଇ ସୁତ
ଶ୍ରୀହରିଙ୍କଠାରେ ନ ରହଇ ଯାର ଚିତ୍ତ ।
ଏମନ୍ତ ଲୋକ ଅଟନ୍ତି ବ୍ରହ୍ମହତ୍ୟା ଦୋଷୀ
ତାହାଙ୍କୁ ଛୁଇଁଲେ ପାପ ଗ୍ରାସକରେ ଆସି ।
ବ୍ରତଦିନ ବିଷ୍ଣୁଙ୍କୁ ଯେ ପୂଜା ନ କରଇ
ନୈବେଦ୍ୟ ନ କରି ଖାଦ୍ୟ ପଦାର୍ଥ ଭୁଞ୍ଜଇ ।

ଅଥବା ପାର୍ଥିବ ଲିଙ୍ଗ ନ କରେ ପୂଜନ
ବ୍ରହ୍ମହତ୍ୟା ପାପ ତାକୁ କରେ ଆକ୍ରମଣ ।
ଆହାର ବା ଜଳପାନ କଲାବେଳେ ଗାଈ
ଯେଉଁ ଲୋକ ଯାଇ ତାକୁ କରେ ନିବାରଣ ।
ଗୋ ବ୍ରାହ୍ମଣ ମଧ୍ୟରେ ଯେ କରଇ ଗମନ
ଗୋହତ୍ୟା ପାତକ ତାର ହୁଅନ୍ତି ଜାଣ ।
ଯେଉଁ ଦ୍ୱିଜ ବାଡ଼ଧରି ଗୋରୁଙ୍କୁ ପିଟଇ
ଯେ ଅବା ବୃଷଭ ଯୋତି ହଳ ବାହୁଥାଇ ।
ପ୍ରତିଦିନ ଗୋହତ୍ୟା ହୁଏ ତାହାଙ୍କର
ଚଣ୍ଡାଳରୁ ହୀନ ବୋଲି ତାଙ୍କୁ ମନେ କର ।
ଉଚ୍ଛିଷ୍ଟ ଖୁଆଏ ନେଇ ଗୋରୁଙ୍କୁ ଯେ ଜନ
ଯେ ଅବା କରଇ ବୃଷବାହ ଯଜମାନ ।
ବୃଷବାହଠାରୁ ଅନ୍ନ ଭୁଞ୍ଜଇ ବା ଯେହୁ
ଗୋହତ୍ୟା ପାପଲାଭ କରଇଟି ସେହୁ ।
ବୃଷଳୀପତିର ଯଜମାନ କର୍ମ କଲେ
ଅଥବା ତାହା ହସ୍ତରୁ ଅନ୍ନକୁ ଭୁଞ୍ଜିଲେ ।
ଶତେ ଗୋହତ୍ୟା ତାର ହୁଅଇ ନିଶ୍ଚୟ
ଏଥିରେ କଦାପି ଚିତ୍ତେ ନ ରଖ ସଂଶୟ ।
ଗୋରୁଙ୍କ ଉପରେ ପାଦ ପ୍ରହାର ଯେ କରେ
ଯେ ଅବା ଚରଣ ଢାଳେ ଅଗ୍ନିଙ୍କ ଉପରେ ।
ସ୍ନାନାନ୍ତେ ପାଦ ନ ଧୋଇ ଆସେ ଯେ ଗୃହକୁ
ଗୋହତ୍ୟା ଆକ୍ରମଣ କରଇ ତାହାକୁ ।
ଅଧୁଆ ପାଦରେ ଯେବା ଭୋଜନ କରଇ
ଓଦା ଚରଣରେ ଶଯ୍ୟା ଉପରେ ଶୁଅଇ ।
ସୂର୍ଯ୍ୟ ଥାଉ ଥାଉ ଯେବା ଭୁଞ୍ଜେ ଦୁଇଥର
ଗୋହତ୍ୟା ପାତକ ନିଶ୍ଚେ ହୁଅଇ ତାହାର ।
କୁଳଟା ହସ୍ତରୁ ଅନ୍ନ ଖାଏ ଯେ ବ୍ରାହ୍ମଣ
ଅଥବା ବେଶ୍ୟା ଗୃହରେ ଯାଉଥାଏ ଜନ ।
କେତେବେଳେ ହେଲେ ସନ୍ଧ୍ୟା ନକରଇ ଥରେ
ଆକ୍ରାନ୍ତ ହୁଅଇ ବ୍ରହ୍ମହତ୍ୟା ପାତକରେ ।
ପର୍ବରେ ପିତୃଙ୍କୁ ତଥାକାଳେ ଦେବତାଙ୍କୁ
ଅଥବା ଆଗତ ହେବା ଅତିଥି ଜନଙ୍କୁ ।
ଯେଉଁ ଲୋକ ପୂଜାସେବା ନ କରଇ ମୋହେ
ଗୋହତ୍ୟା ପାପକୁ ସେ ଲଭଇ ନିଶ୍ଚୟେ ।
ଶ୍ରୀକୃଷ୍ଣଙ୍କଠାରେ ଅବା ନିଜ ଇଷ୍ଟଠାରେ
ଯେଉଁ ସ୍ତ୍ରୀ ସେ ମୂର୍ଖପଣେ ଭିନ୍ନବୁଦ୍ଧି କରେ ।
ପତିକୁ ଭର୍ତ୍ସନା କରେ କଟୁକଥା କହି
ସେ କାମିନୀ ଗୋହତ୍ୟା ପାତକ ଲଭଇ ।
ଗୋଚର ଭୂମିରେ ଯେହୁ ଶସ୍ୟ ବୁଣିଥାଏ
ନିଶ୍ଚୟ ସେ ଗୋହତ୍ୟା ପାପଭାଗୀ ହୁଏ ।
ଦେବପଣ ଜଳାଶୟ ସ୍ଥାନରେ ବା ତାର
ଉପରେ ଭୂମିରେ ଶସ୍ୟ ବୁଣଇ ଯେ ନର ।
ସେ ମଧ୍ୟ ଗୋହତ୍ୟା ପାପ ନିଶ୍ଚୟ ଲଭଇ
ସଂଶୟ ହୋଇ ଏଥିରେ କେଉଁ କଥ ନାହିଁ ।
ଗୋ ବଧର ପ୍ରାୟଶ୍ଚିତ୍ତ କରିବା କାଳରେ
ଧନଲୋଭେ ଯେଉଁ ଲୋକ ବ୍ୟତିକ୍ରମ କରେ ।
ଅଥବା ଅଜ୍ଞାନ ହେତୁକରି ନ ଜାଣଇ
ଗୋହତ୍ୟା ପାପକୁ ସେହି ନିଶ୍ଚୟ ଲଭଇ ।
ଗୋରୁ ରକ୍ଷି ଯେଉଁ ଲୋକ ନ କରେ ପାଳନା
ଅକାରଣେ ନିର୍ଦ୍ଦୟରେ କରଇ ତାଡ଼ନା
ନୋହିଲେ ବା ନାନାମତେ କଷ୍ଟ ଦେଉଥାଏ
ଗୋହତ୍ୟା ପାତକ ସେହୁ ନିଶ୍ଚୟରେ ପାଏ ।
ଦେବତା ଅର୍ଚ୍ଚନା କରୁଥାଏ ଯେଉଁଲୋକ
ତାକୁ ମନା କରେ ଯାଇ ଯେଉଁ ଅବିବେକ ।
ଗୋହତ୍ୟା ପାତକ ସେହୁ ଲୋକଟି ଲଭଇ
ଶୁଣ ଆଗୋ ପତିବ୍ରତେ ମନକର୍ଣ୍ଣ ଦେଇ ।
ପ୍ରଶସ୍ତ କଥାକୁ ଯେବା ନାହିଁ ବୋଲି କହେ
ମିଥ୍ୟାବାଦୀ ଠକପଣ କରି ଜନ ନଏ ।
ଦେବତା ଗୁରୁଙ୍କଠାରେ ନ କରେ ଭକତି
ଗୋହତ୍ୟା ପାପକୁ ବହେ ଜାଣ ଆଗୋ ସତୀ ।
ଗୁରୁ ବ୍ରାହ୍ମଣ ଆବର ଦେବତାମାନଙ୍କୁ
ପ୍ରଣାମ ନ କରେ ଯେହୁ ଦେଖିଣ ତାହାଙ୍କୁ ।
ପୁଣି ମାନ୍ୟଗଣଙ୍କୁ ବି ନ କରେ ଜୁହାର
ଗୋହତ୍ୟା ପାତକେ ଲିପ୍ତ ହୁଏ ସେହୁ ନର ।
ଶତ୍ରୁ କିବା ମିତ୍ର ହେଉ ସେ ସମ୍ମାନ କରେ
ଦଣ୍ଡ ପ୍ରଣାମ କରଇ ତାହାର ପଦରେ ।
ତାହାକୁ ନରକ ଦଣ୍ଡ କେବେ ନ ଲଗଇ
ବଇକୁଣ୍ଠ ଭୁବନରେ ସେହୁ ବିଶ୍ରାମଇ ।
ଯେଉଁ ଦ୍ୱିଜ ସଦା କ୍ରୋଧ ଆଚରଣ କରେ
ତାହାର ଅଙ୍ଗେ ଗୋହତ୍ୟା ପାପ ବାସକରେ ।

ବଧ୍ୟଅଛି ଜନଙ୍କୁ ଯେହୁ ନ ଦଏ ତାର
ଗୋହତ୍ୟା ପାପରେ ନଷ୍ଟେ ସେ ଲଗି ହୁଅଇ ।
ଏହିରୂପେ ଗୋହତ୍ୟା ବ୍ରହ୍ମହତ୍ୟା ହୁଏ
ପିତା ମୋତେ କହିଥିଲେ ଶୁଣ ଆଗୋ ମାଏ ।
ପଚାରିଲେ ଯାହା ତାହା କଲି ବଖାଣ
ଆଉ ଯାହା ଇଚ୍ଛା ପୁଚ୍ଛ ମୋର ସନ୍ନିଧାନ ।
ଅଧମ କ୍ଷେତ୍ର ମୋହନ କହେ ଯୋଡ଼କର
ସତ୍ୟ ଧର୍ମେ ମନ ଦେଇ ଏ ସଂସାରୁ ତର ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀ ଆଗରେ ଯମରାଜାଙ୍କ ପାପୀମାନଙ୍କର ନରକ ଭୋଗ କର୍ତ୍ତନେ ନାମ ଏକତ୍ରିଂଶୋଽଧ୍ୟାୟଃ ।**

—ଃ—*—ଃ—

## ଦ୍ୱାତ୍ରିଂଶ ଅଧ୍ୟାୟ

### ସାବିତ୍ରୀଙ୍କ ଅଗ୍ରତେ ଯମରାଜାଙ୍କ ଦ୍ୱାରା ଗୋହତ୍ୟା ପାପର ବର୍ଣ୍ଣନା

କରଯୋଡ଼ ପୁଣି ସତୀ ସାବିତ୍ରୀ ସୁନ୍ଦରୀ
ସେ ଧର୍ମରାଜଙ୍କୁ ପଚାରିଲେ ଦେଖୁକରି ।
ବୋଇଲେ ହେ ଦେବ ଜନ୍ତୁଗଣ ଅଧୀଶ୍ୱର
ସାମାନ୍ୟ ଜଳେ ପଦ ପୂର୍ଣ୍ଣ ଯେ ଆକର ।
ନଉନ ଅଧିକ ଜଳ ଅଛି ଯେ ତହିଁରେ
ସେ କଥା ବିସ୍ତାରି କହ ମୋହର ଆଗରେ ।
ବାସ୍ତବ ଯେ ଅତଦେଶ ବୋଲି ଯାକୁ କହ
ତହିଁରେ କି ଅବା ଭେଦଭାବ ଅଛି ରହ ।
ଯମରାଜା ବୋଇଲେ ତା କହୁଅଛୁ ଏବେ
ଶୁଣ ମନଦେଇ ଶ୍ରଦ୍ଧା ଜାତ ହୁଏ ଯେବେ ।
ସାମାନ୍ୟ ଯେ ତାର ନାମ ଅଟଇ ବାସ୍ତବ
ଜଳକୁ ଅତଦେଶ ବୋଲିଣ ବୁଝିବ ।
ବାସ୍ତବ ଅଟଇ କେଉଁ ସ୍ଥାନରେ ଅଧିକ
ନଉନ ଯେତାରେ ଅଟେ ଯେ ଅତଦେଶିକ ।
କେବଣ ସ୍ଥାନେ ବାସ୍ତବ ନଉନ ଅଟଇ
ଅତଦେଶିକ ଅଧିକ ହୁଅଇଟି ତହିଁ ।
କେଉଁଠାରେ ଅବା ଦୁହେଁ ଅଟନ୍ତି ସମାନ
ସେହୁପରି ବେଦଶାସ୍ତ୍ର ମତ ଅଛି ଜାଣ ।
ତହିଁରେ ଆସ୍ଥାନ କରେ ଯେବଣ ମାନବ
ଗୁରୁହତ୍ୟା ମହାପାପ ଲଭଇ ସେ ଧ୍ରୁବ ।
ପୂର୍ବକାଳୁ ପରଚିତ ଦ୍ୱିଜ ବଂଶପୂରେ
ବିଦ୍ୟାମନ୍ତ୍ରଦାତା ଯେଉଁ ଗୁରୁ ତାଙ୍କଠାରେ ।
ଆପଣା ପିତା ସମାନ ଅଟେ ଯେଉଁ ଭାବ
ଶ୍ରେଷ୍ଠପୂର୍ଣ୍ଣ ଅଟେ ତାର ନାମଟି ବାସ୍ତବ ।
ପିତାଠାରୁ ଶତଗୁଣେ ଅଟଇ ଜନନୀ
ତହୁଁ ଶତଗୁଣେ ବିଦ୍ୟା ମନ୍ତ୍ରଗୁରୁ ପୁଣି ।
ଗୁରୁଠାରୁ ଗୁରୁପତ୍ନୀ ଅଧିକ ପୂଜିତା
ଯେଉଁରୂପେ ଇଷ୍ଟଦେବୀ ଅଭୀଷ୍ଟ ଦେବତା ।
ଶୁଚିମନ୍ତ ଦ୍ୱିଜଠାରେ ଶିବଙ୍କ ସମାନ
ଧାର୍ମିକ ରାଜନଠାରେ ବସ୍ତୁ ତୁଲ୍ୟ ଜ୍ଞାନ ।
କଲେଟି ତାହାକୁ ଅତଦେଶରୁ ଅଧିକ ।
ବାସ୍ତବ ପୂଜ୍ୟ କହନ୍ତି ଜ୍ଞାନବନ୍ତ ଲୋକ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ ଜଳାଶୟମାନ
ସାକ୍ଷାତରେ ପୁଣ୍ୟଜଳା ଗଙ୍ଗାଙ୍କ ସମାନ ।
ସକଳ ବ୍ରାହ୍ମଣେ ଯେହ୍ନେ ବ୍ୟାସ ମହାମୁନି
ଏରୂପେ ଭାବନା ଯାହା କରଯାଏ ପୁଣି ।
ସେହିଠାରେ ଦୁହିଙ୍କର ସମତା ହୁଅଇ
ବେଦ ଶାସ୍ତ୍ରମତ ଏହା ଯଥାର୍ଥ ଅଟଇ ।
ପୁଣ୍ୟର ବିଷୟ ଏହି ଅଟେ ଗୋ ସୁନ୍ଦରୀ
ପାପର ବିଷୟ ଶୁଣ ମନ ଦେଇକରି ।
ଅତଦେଶ ହତ୍ୟାଠାରୁ ବାସ୍ତବ ଯେ ପାପ
ସ୍ୱଶଗୁଣରେ ଅଧିକ ତାହାର ସ୍ୱରୂପ ।
ଯେ ଅତଦେଶର ଭେଦ କହୁଅଛୁ ଆଗେ
ଆବର ଯେ ଫଳାଫଳ ହୁଏ ତାହା ଯୋଗେ ।

ମନୁଷ୍ୟମାନଙ୍କର ଯେ ଅଗମ୍ୟ ଅଟଇ ।
ସେ କଥା କହିବି ଏବେ ଶୁଣ ମନଦେଇ ।
ଯେବଣ ସ୍ତ୍ରୀଙ୍କୁ ନିଜ ଇଚ୍ଛା ଅନୁସାରେ
ବିବାହ କରଇ ଲୋକ ବିଧାନ ପ୍ରକାରେ ।
ଗମନଯୋଗ୍ୟା ସେ ସବୁମତରେ ଅଟଇ
ତାହାଠାରେ ପ୍ରବେଶ କଲେ ଦୋଷ ନ ହୁଅଇ ।
ତାହାଠାରୁ ଅନ୍ୟ ଯେତେ ଭିନ୍ନ ସ୍ତ୍ରୀମାନେ
ଅଗମ୍ୟ ବୋଲି ତାହାଙ୍କୁ ଜାଣିଥାଅ ମନେ ।
ଅତ୍ୟନ୍ତ ଅଗମ୍ୟ ଯେଉଁ କାମିନୀ ଅଟନ୍ତି
ତାହାଙ୍କର କଥା ଏବେ ଶୁଣ ମହାସତୀ ।
ଅତ୍ୟନ୍ତ ଅଗମ୍ୟ ଅଟେ ଶୂଦ୍ରର ବ୍ରାହ୍ମଣୀ ।
ଯେପରି ବ୍ରାହ୍ମଣପକ୍ଷେ ବୃଷଳି କାମିନୀ ।
ପ୍ରବେଶ କଲେ ଶୂଦ୍ର ଦ୍ୱିଜ ସ୍ତ୍ରୀଠାରେ
ଶତେ ବ୍ରହ୍ମହତ୍ୟାକୁ ସେ ଲଭେ ନିଶ୍ଚୟରେ ।
ବ୍ରାହ୍ମଣୀର ପାପ ମଧ୍ୟ ସେହିପରି ହୁଏ
କୁମ୍ଭୀପାକ ନରକରେ ପଡନ୍ତି ଉଭୟେ ।
ଶୂଦ୍ର କାମିନୀକୁ ଦ୍ୱିଜ କରନ୍ତେ ରମଣ
ବୃଷଳୀପତି ଜଗତେ ବୋଲାଏ ସେ ଜଣ ।
ବ୍ରାହ୍ମଣ ଜାତିରୁ ସେହି ଭ୍ରଷ୍ଟ ହୋଇଯାଏ
ଚଣ୍ଡାଳୁ ଅଧମ ତାକୁ ବୋଲନ୍ତି ସର୍ବେ ।
ବିଷ୍ଠା ସମାନ ଅଟଇ ପିଣ୍ଡ ତା ହସ୍ତର
ମୂତ୍ରର ତୁଲ୍ୟ ହୁଅଇ ତରପଣ ତାର ।
ଦେବତା ପିତୃଏ ତାକୁ ଗ୍ରହଣ ନ କରି
ଘୃଣି ପଳାଅନ୍ତି ଖଣ୍ଡେ ଦୂରୁ ଦେଖିକରି ।
କୋଟିଏ ଜନ୍ମରେ ସନ୍ଧ୍ୟା ପୂଜା ତପକରି
ସଞ୍ଚିତ ହୋଇଣ ଥାଏ ଯେ ପୁଣ୍ୟ ତାହାର ।
ବୃଷଳୀ ପ୍ରଭାବ ହେତୁ ସବୁ ନାଶଯାଏ
ସଂଶୟ ବୋଲି ଏଥିରେ ନାହିଁ ସେ ଟିକଏ ।
ସୁରାପାନ ବିଷ୍ଠାହାର ବୃଷଳୀ ଗମନ
ଶ୍ରୀହରି ବାସରେ ଉପବାସ ବର୍ଜନ ।
ଏ ସବୁ କରଇ ଯେ ବ୍ରାହ୍ମଣ ମୂରଖ
କୁମ୍ଭୀପାକ ମଧ୍ୟେ ବଡ଼ ଭୋଗ କରେ ଦୁଃଖ ।
ଗୁରୁପତ୍ନୀ ରାଜପତ୍ନୀ ମାତାର ସପତ୍ନୀ
ମାତା ସୁତା ପୁତ୍ରବଧୂ ଶ୍ୱଶ୍ରୂ ସେ ଭଗିନୀ ।
ସୋଦର ଭାଇର ପତ୍ନୀ ମାତୁଳ କାମିନୀ
ପିତାମାତା ଦୁହିଙ୍କର ଅଟେ ଯେ ଜନନୀ ।
ମାଉସୀ ପିଉସୀ ପୁଣି ଭ୍ରାତାର ତନୟା ।
ଭଗିନେୟୀ ପତ୍ନୀଶିଷ୍ୟା ଶିଷ୍ୟର ଯେ ଜାୟା ।
ଶାଳକଙ୍କର ପୁତ୍ରବଧୂ ଏ ସମସ୍ତ ଜାଣ
ଅଗମ୍ୟ ଅଟନ୍ତି ଏହା ଶାସ୍ତ୍ରର ପ୍ରମାଣ ।
ଏହିପରି କହିଛନ୍ତି ବେଦ ପ୍ରଜାପତି
ଏହାଙ୍କୁ ଧର୍ଷଣ କରେ ଯେଉଁ ମୂଢ଼ମତି ।
ମାତୃହରଣ ବୋଲନ୍ତି ହୁଅଇ ତାହାର
କୁମ୍ଭୀପାକ ନରକରେ ପଡଇ ସେ ଘୋର ।
ଶତେ ବ୍ରହ୍ମହତ୍ୟା ପାପ ବନ୍ଧୁପତ୍ନୀ ଯାଇ
ପ୍ରବେଶ କରନ୍ତି ତାହାଠାରେ ଭ୍ରଷ୍ଟ ହୋଇ ।
ଲୋକରେ ବେଦରେ ସେହୁ ଅଟଇ ନିନ୍ଦିତ
ତାହାକୁ ଛୁଇଁଲେ ଅଙ୍ଗ ହୁଏ କଳୁଷିତ ।
ଯେଉଁ ବ୍ରାହ୍ମଣ ନ କରେ ସନ୍ଧ୍ୟା ବନ୍ଦନ
ଅଶୁଦ୍ଧ ରୂପରେ ମନ୍ତ୍ର କରେ ବା ପଠନ ।
ତାହାକୁଟି ସନ୍ଧ୍ୟାହୀନ ଦ୍ୱିଜ ବୋଲି କହି
ତାହାଠାରୁ ବଳି ପାପୀ ଜଗତରେ ନାହିଁ ।
ବୈଷ୍ଣବ ଶୈବ ସୌର ସାକ୍ତ ଗାଣପତ୍ୟ
ଏହିପରି ପଞ୍ଚଦେବ ମନ୍ତ୍ର ଯେ ଜପନ୍ତେ ।
ଅହଙ୍କାରପଣେ ଯେବା ଗ୍ରହଣ ନ କରେ
ଅଦୀକ୍ଷିତ ବୋଲି ଖ୍ୟାତ ହୁଏ ସେ ଲୋକରେ
ନଗପୁଣ କୁରୁକ୍ଷେତ୍ରେ ବଦରୀ ଆଶ୍ରମେ
ଗଙ୍ଗା ବାରାଣସୀ ଗଙ୍ଗାସାଗର ସଙ୍ଗମେ ।
ପୁଷ୍କର ଭାସ୍କର କ୍ଷେତ୍ରେ ପ୍ରଭାସ ତୀର୍ଥରେ
ରାସମଣ୍ଡଳ କେଦାର ସୋମ ହରିଦ୍ୱାରରେ ।
ବଦରୀ ପାବନେ ସରସ୍ୱତୀ ନଦୀତଟେ
ପୁଣ୍ୟମୟ ବୃନ୍ଦା ନାମ ବିପିନ ନିକଟେ ।
ଗୋଦାବରୀ କଉଶିକୀ ତ୍ରିବେଣୀ ତୀର୍ଥରେ
ଆଉରି ପୁଣ୍ୟ ସକଳ ହିମାଳୟଠାରେ
ଏମାନଙ୍କୁ ଆଦିକରି ଯେତେ ପୁଣ୍ୟସ୍ଥାନ
ତହିଁରେ ଯେ ଲୋକକରି ଯେଉଁଛନ୍ତି ଧନ ।
ତୀର୍ଥ ପ୍ରତିଗ୍ରାହୀ ନାମ ଅଟଇ ତାହାର
କୁମ୍ଭୀପାକେ ପଡଇ ସେ ଛୁଡ଼ନ୍ତେ ଶରୀର ।
ଶୂଦ୍ରଙ୍କ ବିନା ଯେ ଅନ୍ୟ ଯଜମାନ କରେ
ଗଣନା ହୁଏ ସେ ଗ୍ରାମଯାଜୀଙ୍କ ମଧ୍ୟରେ ।
ଦେବତା ଦ୍ରବ୍ୟରେ ଯେହୁ ଜୀବିକା କରଇ
ଦେବଳ ମୁନି ତାହାଠାରେ ପ୍ରବର୍ତ୍ତଇ ।

ଶୂଦ୍ରର ରନ୍ଧନ କାର୍ଯ୍ୟ କରୁ ଥାନ୍ତି ଯେତ
ସେହିମାନେ ଆପଣାର ଉଦର ପୋଷନ୍ତି ।
ଶୂଦ୍ରକାର ବୋଲିକରି ଜାଣିବ ତାହାଙ୍କୁ
ପୂଜିବ ନ ସ୍ପର୍ଶେ କେବେ ତାଙ୍କର ଦେହକୁ ।
ଧନଲୋଭେ ଅନ୍ୟକୁ ଯେ କରେ ଅପମାନ
ଅନ୍ତମରେ ନର୍କକୁଣ୍ଡ ହୁଏ ତା ପତନ ।
ସନ୍ଧ୍ୟାପୂଜା ମନ୍ତ୍ରହୀନ ଅଟେ ଯେ ବ୍ରାହ୍ମଣ
ପତିତ ଅଟଇ ଧର୍ମଶାସ୍ତ୍ରେ ଏ ପ୍ରମାଣ ।
ବୃଷଳିପତି ଲକ୍ଷଣ ପୂର୍ବେ ଯେ ପ୍ରକାରେ
କହିଅଛୁ ଭିନ୍ନ କରି ନାହିଁ ଯେ ତୋହରେ ।
ଏମାନେ ମହାପାତକୀ ଅଟନ୍ତି ଗୋ ଜାଣ
ଅନ୍ତଃକାଳେ କୁମ୍ଭୀପାକେ ପାଇଥାନ୍ତି ସ୍ଥାନ ।
ଆଉ ଅନ୍ୟକୁଣ୍ଡେ ଯେଉଁ ପାପୀଏ ପଡ଼ନ୍ତି
କହିବି ତା ମନଦେଇ ଶୁଣ ମହାସତୀ ।
ନରକ ବୃତ୍ତାନ୍ତ କଥା ଯମ ରାଜାଙ୍କର ।
ସମ୍ପୂର୍ଣ୍ଣ ହୋଇଲା ଗୀତେ କହେ କ୍ଷେମ ସ୍ମର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀଙ୍କ ପ୍ରତି ଯମରାଜାଙ୍କ
ଦ୍ୱାରା ଗୋହତ୍ୟା ପାପର ବର୍ଣ୍ଣନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—+*—*+—

# ତ୍ରୟୋବିଂଶ ଅଧ୍ୟାୟ

## ସାବିତ୍ରୀଙ୍କ ଆଗରେ ଯମଙ୍କର ନରକ କୁଣ୍ଡ ବର୍ଣ୍ଣନା

ଶୁଣ ଆହେ ସୁଜ୍ଞଜନେ ଅପୂର୍ବ ଚରିତ
ଯାହା ଶ୍ରବଣରେ କର୍ଣ୍ଣ ହୋଇବ ପବିତ୍ର ।
ତାହାପରେ ଜନ୍ମପତି ବୋଇଲେ ସାବିତ୍ରୀ
ଆନ ନର୍କ ଗାଥାମାନ ଶୁଣ ଦେଇ ମତି ।
ହରି ସେବା ବିନାପାପ ଖଣ୍ଡନ ନୁହଇ
କୁତ୍ସିତ କରମ କଲେ ନରକ ମିଳଇ ।
ପୁଂଶ୍ଚଳୀ ହାତରୁ ଅନ୍ନ ଯେ କରେ ଭକ୍ଷଣ
ନେ ହଲେ ବା ବେଶ୍ୟାଘରେ କରଇ ରମଣ ।
ବ୍ରାହ୍ମଣ ସେ ହୋଇଥିଲେ କାଳସୂତ୍ରେ ଯାଇ
ଶତବର୍ଷ ପର୍ଯ୍ୟନ୍ତେ ପଡ଼ିଣ ରହଇ ।
ସେ ଅନ୍ତରେ ଶୂଦ୍ରଜନ୍ମ ହୁଅଇ ନିଶ୍ଚିତ
ଶୁଦ୍ଧ ହୁଏ କେତେକାଳ ହେଲା ପରେ ଗତ ।
ଗୋଟିଏ ପତିର ଯେହୁ ପତ୍ନୀ ହୋଇଥାଏ
ପତିବ୍ରତା ବୋଲି ତାକୁ ବୋଲନ୍ତି ସର୍ବେ ।
ଦୁଇଗୋଟି ପତି କଲେ କୁଳଟା ବୋଲାଏ
ତୃତୀୟରେ ଧର୍ଷିଣୀ ନାମକୁ ସେ ବହେ ।
ଚାରିଗୋଟି ପତି ଯାର ହୁଅନ୍ତି ଯେ ସ୍ତ୍ରୀର
ପୁଂଶ୍ଚଳୀ ବୋଲାଏ ଲୋକେ ଜାଣ ଗୋ ସୁନ୍ଦରୀ
ପଞ୍ଚମ ଷଷ୍ଠ ହୋଇଲେ ବେଶ୍ୟାନାମ ବହେ
ସପ୍ତରେ ସେ ଯୁଗ୍ମୀ ବୋଲି ଖ୍ୟାତ ହୋଇଥାଏ
ସେହୁପରି ହୁଏ ମଧ୍ୟ ସପ୍ତମ ଅଷ୍ଟମେ
ତହୁଁ ବଳିଲେ ବିଖ୍ୟାତ ମହାବେଶ୍ୟା ନାମେ ।
ସକଳ ଜାତିରେ ସେହୁ ଅସ୍ପୃଶ୍ୟ ଅଟଇ
ତା ମୁଖ ଚାହିଁଲେ ଅନୁକୂଳ ଭଙ୍ଗ ହୋଇ ।
ଯେଉଁ ଦ୍ୱିଜ କୁଳଟା ବା ଧର୍ଷିଣୀ ପୁଂଶ୍ଚଳୀ
ଏହାଙ୍କ ସଙ୍ଗରେ ଯେବେ କରେ କାମକେଳି ।
ସେହୁପରି ଯୁଗ୍ମୀ ବେଶ୍ୟା ମହାବେଶ୍ୟା ପାଶେ
ପ୍ରବେଶ ହୋଇଣ ପ୍ରବର୍ତ୍ତଇ ରତିରସେ ।
ଅବଟୋଦ ନରକରେ ପଡ଼ଇ ସେ ଯାଇ
କୁଳଟାକୁ ରମିଥିଲେ ଶତବର୍ଷ ରହି ।
ଧୃଷ୍ଟ କାମିନୀକୁ ଯେବେ ଭୋଗକରିଥାଏ
ତାର ଚାରିଗୁଣକାଳ ସେ ନରକେ ରହେ ।
ପୁଂଶ୍ଚଳୀ ଗମନ କଲେ ହୁଏ ଛଅଗୁଣ
ଆଠଗୁଣ ଭୋଗେ ବେଶ୍ୟା କରେ ଯେ ରମଣ ।
ଯୁଗ୍ମୀ ଭୋଗ କରିଥିଲେ ଦଶଗୁଣ ହୁଏ
ମହାବେଶ୍ୟା କାମୁକ ଯେ ଶତଗୁଣ ପାଏ ।

ସର୍ବଗାମୀ ହେଲେ ସବୁ ସଂଖ୍ୟା ଅନୁସାରେ
ଦୀର୍ଘକାଳ ଯାଏ ପଡ଼ି ରହେ ନରକରେ ।
ମୋହର ଦୂତଙ୍କଠାରୁ ପାଇକରି ମାଡ଼
ଭାଙ୍ଗିଯାଏ ମେରୁଦଣ୍ଡ ଚଖା ପିଠି ହାଡ଼ ।
ଜନ୍ମାନ୍ତରେ ଯେଉଁରୂପ ହୁଅନ୍ତି ସେମାନେ
ଏମନ୍ତରେ କହୁଛୁ ତାହା ଶୁଣ ସାବଧାନେ ।
ଲୁଚକଟାଗାମୀ ଯେ ଲୋକ ତତ୍ତ୍ୱିର ହୁଅଇ
ବାୟସ ରୂପକୁ ବହେ ଧୃଷ୍ଟ ଗାମୀ ସେହୁ ।
କୋକିଳ ସ୍ୱରୂପ ହୁଏ ପୁଂଶ୍ଚଳୀ କାମୁକ
ବେଶ୍ୟାଅଙ୍ଗ ଭୋଗୀ ସେହୁ ହୁଅଇ ଯେ ବୃକ ।
ସୁଗ୍ରୀସ୍ତ୍ରୀଶି ସଙ୍ଗ କରିଥାଏ ଯେ ମନୁଷ୍ୟ
ଶୂକର ରୂପରେ ସାତ ଜନ୍ମ କରେ ଶେଷ ।
ମହାବେଶ୍ୟା କାମୁକ ଯେ ଶ୍ମଶାନ ଭୂମିରେ
ଜାତ ହୁଅଇ ଶାଳ୍ମଳୀ ବୃକ୍ଷ ସ୍ୱରୂପରେ ।
ଚନ୍ଦ୍ରସୂର୍ଯ୍ୟ ଗ୍ରହଣରେ ଭୋଜନ ଯେ କରେ
ପଡ଼ଇ ସେ ଅରୁନ୍ତୁଦ ନରକ କୁଣ୍ଡରେ ।
ଦ୍ୱାଦଶ ବରଷ ତହିଁ କରେ କଷ୍ଟଭୋଗ
ସେ ଅନ୍ତେ ଲଭେ ମନୁଷ୍ୟ ଦେହର ସୁଯୋଗ ।
ତଥାପି ଉଦର ଗୁଲ୍ମ ବ୍ୟାଧି ତା ଦେହରେ
ଜାତହୋଇ କ୍ଳେଶ ଦେଉଥାନ୍ତି ସତତରେ ।
କନ୍ୟା ଦେବାପାଇଁ ଆଗେ ସତ୍ୟକରି ଥିବ
ସେ କନ୍ୟାକୁ ଯେବେ ଅନ୍ୟଲୋକ ହସ୍ତେ ଦେବ
ପାଂଶୁଭୋଜ ନରକରେ ଶତବର୍ଷଯାଏ
ସେହୁ ପାଂଶୁ ଭୁଞ୍ଜି ପଡ଼ି ରହିବାକୁ ହୁଏ ।
ଦେଇଥିବା ଦ୍ରବ୍ୟକୁ ଯେ ଅପହୃତ କରେ
ଶତବର୍ଷ ପଡ଼େ ପାଶବେଷ୍ଟ ନରକରେ ।
ଶରଶଯ୍ୟା ପରେ ତହିଁ କରଇ ଶୟନ
ମୋର ଦୂତମାନେ ମିଳି ପିଟୁଥାନ୍ତି ପୁଣ ।
ପାର୍ଥିବ ଶିବଲିଙ୍ଗକୁ ନ କରେ ଯେ ପୂଜା
ତା ପ୍ରତି ହୋଧ ହୁଅନ୍ତି ଶଙ୍କର ଗିରିଜା ।
ସେ ହେତୁ ସେ ଶଳପ୍ରୋତ ସୁଦାରୁଣ କୁଣ୍ଡେ
ଶତବର୍ଷଯାଏ ପଡ଼ି ରହିଥାଏ ଦଣ୍ଡେ ।
ସେ ଅନ୍ତରେ ସାତଜନ୍ମେ ହୁଅଇ କୁକୁର
କେବଳ ଜନମ ପୁଣି ଲଭେ ସାତଥର ।
ବ୍ରାହ୍ମଣକୁ ଅକାରଣେ ଦଣ୍ଡ ଯେ [illegible]
ତାହାକୁ ଦେଖିଲେ ବହୁ ଜନ୍ମେ ଲ[illegible]ପ ।

ସ୍ୱକର୍ମନ ନରକରେ ଅନ୍ତଃକାଳେ ପଡ଼ି
ବପ୍ରଲୋମ ପରିମାଣ ବରଷ ପଡ଼ଇ ।
ଯେଉଁ ନାରୀ ମୋହଭରେ ଅନାଇଁ ପରଙ୍କୁ
କମ୍ପିତ କରଣ ମୁଖ ଗାଳିଦିଏ ତାଙ୍କୁ ।
ଉଲ୍କାମୁଖ ନରକରେ ପଡ଼େ ଅନ୍ତଃକାଳେ
ଜଳବଳ ହୁଏ ଦେହ ଉଲ୍କା ଅଗ୍ନିଜାଳେ ।
ମୋର ଦୂତମାନେ ଉଲ୍କା ଘେନିଣ ହସ୍ତରେ
ନିକ୍ଷେପ କରନ୍ତି ନେଇ ତାହାର ମୁଖରେ ।
ଦଣ୍ଡ ଘେନି ତାର ମୁଣ୍ଡ ପିଟନ୍ତି ନଠଇ
ଏହିରୂପେ ଶତବର୍ଷ ଗତ ହୁଏ ତହିଁ ।
ସେ ଅନ୍ତେ ମାନବ ଜନ୍ମ ହୁଅନ୍ତେ ତାହାର
ବିଧବା ସେ ହୁଏ ସାତଜନ୍ମ ବାରମ୍ବାର ।
ବ୍ୟାଧିଯୁକ୍ତ ହୋଇ ମହାକଷ୍ଟ ଭୋଗକରେ
ଶୁଦ୍ଧମନ୍ତ ହୁଏ ତହୁଁ ଜନମ ଅନ୍ତରେ ।
ଯେବଣ ବ୍ରାହ୍ମଣୀ ତ୍ୟାଗେ ନିଜ ପତି
କାଳ ନେଇଥାଏ ଶୂଦ୍ର ଜାର ସଙ୍ଗେ ମାତି ।
ଅନ୍ଧକୂପେ ତପ୍ତ ଶୌଚ କୁଣ୍ଡରେ ସେ ଯାଇ
ଅନବରତ ପଡ଼ି କଷ୍ଟ ଭୋଗ କରୁଥାଇ ।
ମୋର ଦୂତଗଣେ ତାକୁ ପିଟନ୍ତି ସତତ
ଚତୁର୍ଦ୍ଦଶ ଇନ୍ଦ୍ରକାଳ ହେବାଯାଏ ଗତ ।
ସେ ଅନ୍ତେ ସହସ୍ର ଜନ୍ମ କାକପ୍ରିଶ ହୁଏ
ଶୂକର ରୂପରେ ଶତେଜନ୍ମ ତାର ଯାଏ ।
କୃନୁଗ୍ରି ହୁଅଇ ପୁଣି ଶତେକ ଜନମ
ଶୃଗାଳୀ ରୂପରେ ସାତଜନ୍ମ ଯାଏ ପୁଣ ।
ସେହ୍ନପର ଧାସ୍ୱବଣି ବାନରୀ ରୂପରେ
ସାତ ସାତ ଜନ୍ମ ଭୋଗକରେ ସେ ଅନ୍ତରେ ।
ଭାରତ ବରଷେ ପୁଣି ଚଣ୍ଡାଳ କାମିନୀ
ହୁଅଇ ସେ ଆପଣାର କର୍ମଦୋଷ ଘେନି ।
ସେ ଅନ୍ତେ ରଜକୀ ହୋଇ ଯକ୍ଷ୍ମାରୋଗ ପାଏ
ଅପର ଜନ୍ମରେ ପୁଣି ପୁଂଶ୍ଚଳୀ ସେ ହୁଏ ।
ତୈଳକାର ହୋଇ ପୁଣି ଅନ୍ୟ ଜନମରେ
କୁଷ୍ଠରୋଗ ଯୋଗେ ମହାକଷ୍ଟ ଭୋଗକରେ ।
ଅନ୍ତଃକାଳେ କସେ ବେଶ୍ୟା ବେଧନକୁଣ୍ଡରେ
ଲୋଷ୍ଟ୍ରଯଣ [illegible] ସେ ଯୁଗ୍ମୀବର୍ଷ ତାଡ଼ନରେ ।
ଜା[illegible]ବନ୍ଧକ ରେଣ୍ଡେ ଯାଇ ପଡ଼େ ମହାବେଶ୍ୟା
ଭୁଞ୍ଜନା [illegible]ଇଇ ଦେହଚୂର୍ଣ୍ଣ କରେ ଦପା ।

ସ୍ୱୈରିଣୀ କରଇ ବାସ ବଳନ କୁଣ୍ଡରେ
ଧୃଷ୍ଟା ଯେ ଶୋଷଣ କୁଣ୍ଡେ ଦୁଃଖଭୋଗ କରେ ।
ସେଠାରେ ଯାତନା ଭୋଗ ହୁଅଇ ଅପାର
ତାଡ଼ନା କରନ୍ତି ମୋର ଦୂତେ ନିରନ୍ତର ।
ଏକ ମନ୍ୱନ୍ତର ଯାଏ ମଳମୂତ୍ର ଖାଇ
ସେହିଠାରେ ବାସକରି ଥାଆନ୍ତି ରହି ।
ଲକ୍ଷେକ ବରଷ ମଳକୃମି ତହୁଁ ହୋନ୍ତି
ଶୁଚିଭାବେ ତହୁଁ ନବରୂପେ ଜନମନ୍ତି ।
ଆପଣା ଭାର୍ଯ୍ୟା ବିନା ଆପଣା ଜାତିରେ
ପ୍ରବେଶ କରଇ ଯେହୁ ଅନ୍ୟସ୍ତ୍ରୀଠାରେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ହୋଇ ଅବା
ପରଦାରହାରୀ ତାକୁ କର୍ପା ନ ବୋଲିବା ।
ସେହି ଲୋକ କଷକୁଣ୍ଡେ ଜାରପତ୍ନୀ ଭୁଲେ
ଦ୍ୱାଦଶ ବରଷ ପଡ଼ି ରହିଥାଏ ଭଲେ ।
ସେ ଅନ୍ତରେ ଶୁଦ୍ଧିଲାଭ କରଇନ୍ତି ଜାଣ
ବେଦଶାସ୍ତ୍ର ପୁରାଣରେ ଏ ଅଟେ ପ୍ରମାଣ ।
ସ୍ତ୍ରୀଗଣମାନେ ମଧ୍ୟ ଶୁଚି ହୁଅନ୍ତି ଯେପରି
ଭଜିହନ୍ତି ଏହିରୂପେ ଦେବ କୁଶଧାରୀ ।
କ୍ଷତ୍ରିୟ ବଇଶ୍ୟ ଅବା ବ୍ରାହ୍ମଣୀର ସଙ୍ଗେ
ପ୍ରବର୍ତ୍ତିତ ହୁଏ ଯେବେ ରତିରସ ଭୋଗେ ।
ମାତୃହରଣ ପାତକ ହୁଅଇ ତାହାର
ଶୂଳକୁଣ୍ଡେ ବସେ ଅନ୍ତଃକାଳେ ସେହି ନର ।
ବ୍ରାହ୍ମଣୀ ସଙ୍ଗରେ ତହିଁ ରହିଥାଏ ପଡ଼ି
ସୂର୍ଯ୍ୟାକାରେ କୃମିଗଣ ଖାଉଥାନ୍ତି ବେଢ଼ି ।
ମୋର ଦୂତମାନେ ମିଳି କରନ୍ତି ତାଡ଼ନା
ଚତୁର୍ଦ୍ଦଶ ଇନ୍ଦ୍ରକାଳ ଭୋଗେ ସେ ଯାତନା ।
ସପତ ଜନମଯାଏ କବହ ହୁଅଇ
ଏ ବାହାରେ ସାତଥର ଛେଳଜନ୍ମ ପାଇ ।
ତୁଳସୀ ହସ୍ତରେ ଧରି ଶପଥ ଯେ କରେ
ତାହାକୁ ଯେବେ ପାଳନ କରି ସେ ନ ପାରେ ।
ନୋହିଲେ ମିଛ କଥାରେ ପ୍ରମାଣ କରଇ
ଜ୍ୱାଳାମୁଖ ନରକରେ ଯାଇ ସେ ପଡ଼ଇ ।
ଗଙ୍ଗାଜଳ ଧରି ଯେହିଁ ପ୍ରତିଜ୍ଞା କରିବ ।
ତାହାକୁ ପାଳନା କରି ଯେବେ ନ ପାରିବ ।
କି ଅବା ଶାଳଗ୍ରାମକୁ ଛେନ କରିବେଶେ
କରିଥିବା ଶପଥ ଯେ ଲଙ୍ଘେ ଅବିଶ୍ୱାସେ ।

ସେହିମାନେ ଅନ୍ତଃକାଳେ ମୋ ପୁରକୁ ଯାଇ
ଜ୍ୱାଳାମୁଖ ନରକରେ ପଡ଼ିଥାନ୍ତି ରହି ।
ମିତ୍ରଦ୍ରୋହୀ କୃତଘ୍ନ ଯେ ବିଶ୍ୱାସଘାତକ
ଆଉରି ଯେ ମିଥ୍ୟାସାକ୍ଷୀ ଶଠ ପ୍ରତାରକ ।
ଜ୍ୱାଳାମୁଖ ନରକରେ ପଡ଼ନ୍ତି ଏମାନେ
ଚତୁର୍ଦ୍ଦଶ ଇନ୍ଦ୍ରକାଳ ରହନ୍ତି ସେ ସ୍ଥାନେ ।
ମୋର ଦୂତମାନଙ୍କର ତୀବ୍ର ଦଣ୍ଡାଘାତ
ସହ୍ୟ କରୁଥାନ୍ତି ସର୍ବବେଳେ ଆଟୋ ମାତ ।
ଚଣ୍ଡାଳ ଯୋନିରେ ତହୁଁ ଜନ୍ମି ସାତଥର
ଶୁଚିମନ୍ତ ହୋଇଥାନ୍ତି ବୋଲି ମନେକର ।
ଶାଳଗ୍ରାମ ଛୁଇଁ ଶପଥ ଯେ କରିଥାଏ
ସାତଜନ୍ମ ଯାଏ ମଳକୃମି ରୂପ ହୁଏ ।
ବକ୍ଷ ହସ୍ତ କାଟା ଯେହୁ ସପତ ଜନ୍ମରେ
ବ୍ରଣକୃମି ରୂପେ ଜାତହୋଇ ସେ ଅନ୍ତରେ ।
ମନୁଷ୍ୟ ଜାତିରେ ହସ୍ତହୀନ ହୋଇ କରି
ଜନମ ଲଭ କରଇ ଜାଣ ଗୋ ସୁନ୍ଦରୀ ।
ମିଥ୍ୟାବାଦୀ ଦେବାଳୟେ ଦେବଳ ହୁଅଇ
ପ୍ରତିଦେବ ଛୁଇଁ ପ୍ରମାଣ ଯେ କରିଥାଇ ।
ଅଗ୍ରଦାନୀ ସ୍ୱରୂପରେ ହୁଏ ସେହି ଜାତ
ଏଥୁ ଅନନ୍ତରେ ତିନି ଜନମ ଯାବତ ।
ମୂକ ଚକ୍ଷୁହୀନ ପୁଣି ବଧିର ହୁଅନ୍ତି
ପୁତ୍ର ଭାର୍ଯ୍ୟାଙ୍କ ମୁଖ କେବେ ନ ଦେଖନ୍ତି ।
ମିତ୍ରଦ୍ରୋହୀ ଅନ୍ୟ ଜନ୍ମେ ହୁଅଇ ନକୁଳ
କୃତଘ୍ନ ହୁଏ ଭଲ୍ଲୁକ ନୋହିଲେ ବା ବ୍ୟାଳ ।
ବିଶ୍ୱାସଘାତକ ଲୋକ ବ୍ୟାଘ୍ର ଜନ୍ମପାଏ
ସେହିପରି ହୁଅଇ ସେ ସାତ ଜନ୍ମଯାଏ ।
ମିଥ୍ୟାସାକ୍ଷୀ ଦେବା ଲୋକ ସେହିପରି ସାତ
ଜନମ ଯାଏ ଭଲ୍ଲୁକରୂପେ ହୁଏ ଜାତ ।
ସେ ଅନ୍ତେ ମନୁଷ୍ୟ ହୋଇ ପୂର୍ବ ପରଲୋକ
ବିନାଶ କରି ବୋଲଏ ମୂର୍ଖ ଅବିବେକ ।
ଯାହାର ବେଦ ବାକ୍ୟରେ ନ ଥାଏ ବିଶ୍ୱାସ
ସ୍ମୃତି ପୁରାଣରେ ଯେବା କରେ ଉପହାସ ।
ବ୍ରତ ଉପବାସ କର୍ମ କିଛି ନ କରଇ
ପରନିନ୍ଦା କଥାଟିକୁ ଭଲ ପାଉଥାଇ ।
ତେମନ୍ତ ଲୋକକୁ ଶଠବୋଲି କହି ଜାଣ
ବ୍ରହ୍ମନରକ କୁଣ୍ଡରେ ମିଳେ ତାକୁ ସ୍ଥାନ ।

ସମରେ ଯେ ଜନ୍ମାନ୍ତରେ ଶତେ ଥର ଯାଏ
କୁମ୍ଭୀରାଦି ଜଳଜନ୍ତୁ ଜନମକୁ ପାଏ
ଶେଷରେ ମନୁଷ୍ୟ ହୋଇଣ କେ ବର୍ତ୍ତି ହସ୍ତରେ
ମରଣ ପାଇଲେ ତହୁଁ ସ୍ୱର୍ଗ ଲାଭ କରେ ।
ଦେବତା ବ୍ରାହ୍ମଣ ଧନ ହରଇ ଯେ ଜାଣି
ପୂର୍ବ ପର ଦଶ ଦଶ ପୁରୁଷଙ୍କୁ ଆଣି ।
ନରକେ ପକାଏ ସେହି ଦୁର୍ବୁଦ୍ଧି ପାମର
ନିଜେ ଧୂମ ଅନ୍ଧକୂପେ କରେ ଯାଇ ଘର ।
ସ୍ୱରଗୋଟି ଯୁଗ ତହିଁ ଧୂମପାନ କରି
ଛଟପଟ ହୋଇ କଷ୍ଟ ମନେ ନିଏ ହରି ।
ଭାରତବର୍ଷରେ ତହୁଁ ଶାତଥର ପ
କ୍ଷୁଦ୍ର ମୂଷିକ ଯୋନରେ ଜନମକୁ ପାଏ ।
ସେ ଅନ୍ତରେ ନାନାବଧ ପକ୍ଷୀଜାତି ହୁଏ ।
ପୁଣି କୃମିରୂପେ କେତେ ସମୟକୁ ନିଏ ।
ବନସ୍ତରେ ବୃକ୍ଷରୂପ ହୁଏ କେତେଦିନ
ନରରୂପେ ଜନ୍ମି ତହୁଁ ହୁଏ ବଂଶହୀନ ।
ନାନା ବ୍ୟାଧି ଆକ୍ରମଣ କରନ୍ତି ତାହାକୁ
ବିଶ୍ୱାସ ମନରେ ନ କରଇ ଯେ ତାହାକୁ ।
ଶବର ସୁବର୍ଣ୍ଣକାର ସୁବର୍ଣ୍ଣ ବଣିକ
ଗଣକ ବ୍ରାହ୍ମଣ ପୁଣି ଯବନ ସେବକ ।
ବୈଦ୍ୟଙ୍କ ଔଷଧଜୀବୀ କୁଚକ୍ରଜୀବୀ
ରସ ବ ବସ୍ତ୍ରୀ ଲାକ୍ଷା ଲୌହ ବ୍ୟବହାରୀ ।
ଏହିରୂପେ କେତେଥର ହୁଅଇ ଜନମ
ତେବେ ମଧ୍ୟ ସବୁ ପାପ ନ ହୁଏ ଖଣ୍ଡନ ।

ସେ ଅନ୍ତରେ ପୁଣି ନାଗବେଷ୍ଟନ କୁଣ୍ଡରେ
ପଡ଼ଇ ଦଂଶିତ ହୋଇ ସର୍ପଙ୍କ କୁଣ୍ଡରେ ।
ଶୁକ୍ଲୋମ ସମାନ ବର୍ଷ ସେହିଠାରେ ରହି
ଗଣକ ବଇଦ୍ୟ ରୂପେ ଜାତ ହୁଏ ମହୀ ।
ଏପରି ଜନମ ଅନ୍ତେ ଗେପ କର୍ମକାର
ଜାତିରେ ଉତ୍ପନ୍ନ ହୁଏ ପୁଣି ସେହି ନର ।
ଶଙ୍ଖକାର ଜନ୍ମ ତହୁଁ ହୋଇ ଗୋ ସୁନ୍ଦରୀ
ଶୁଚିମନ୍ତ ହୋଇଯାଏ ଜାଣ ଏହିପରି ।
ଏହିରୂପେ ସମସ୍ତ ପୂରେ ଯେତେ କୁଣ୍ଡ
ପାପୀଙ୍କୁ ଦଣ୍ଡିବାପାଇଁ ହୋଇଛନ୍ତି ସୃଷ୍ଟ ।
ତହିଁରୁ କେତେକ ମୁହିଁ କହିଲି ବିସ୍ତାରି
କ୍ଷୁଦ୍ର କ୍ଷୁଦ୍ର କେତେ କୁଣ୍ଡ ଅଛି ଏହିପରି ।
ସକଳ ବର୍ଣ୍ଣନା କରେ ସିଦ୍ଧ ପୁରୀ ବସି
କେବଣ ମୁହିଁ ଠିକେ ସିନା କହିଲି ବୁଝାଇ ।
ନିଜକର୍ମ ଅନୁସାରେ ପାପୀଗଣ ତହିଁ
ଦଣ୍ଡ ଭୋଗ କରୁଛନ୍ତି ଅନ୍ତକାଳେ ଯାଇ ।
ପୁଣି ନାନା ଯୋନରେ ସେ ଜନ୍ମ ହେଉଛନ୍ତି
ଶୁଣିଲ ତ ସବୁ ଏବେ ତେ ସନ୍ନତ ମତି ।
ଅଧିକ ବିଷୟ ଆଉ ଶୁଣିବାକୁ ମନ
ଥିଲେ ପୁଚ୍ଛାକର ତାହା କହିବା ବଚନ ।
ଏହିରୂପେ ସାବିତ୍ରୀଙ୍କୁ ଜନୁ ଅଧୀଶ୍ୱର
କହି ତୁନହେଲେ ଗୀତେ ଭଣେ କ୍ଷେତ୍ରବର ।

—✳—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀଙ୍କର ଆଗରେ ଯମଙ୍କର
ନରକ କୁଣ୍ଡ ବର୍ଣ୍ଣନେ ନାମ ତ୍ରୟସ୍ତ୍ରିଂଶୋଧ୍ୟାୟଃ ।

## ଚତୁସ୍ତ୍ରିଂଶ ଅଧ୍ୟାୟ

### ସାବିତ୍ରୀଙ୍କ ଆଗରେ ଯମଙ୍କ କର୍ତ୍ତୃକ ଶରୀରତତ୍ତ୍ୱ କଥନ

ସାବିତ୍ରୀ ବୋଇଲେ ଆହେ ସୂର୍ଯ୍ୟଙ୍କ ତନୁଜ
ଆପଣଙ୍କଠାରୁ କେତେ କଥା ଶୁଣି ଆଜ ।
ଅତିଶୟ ହେଉଅଛି ମୋ ମନ ଉତ୍ସୁକ
ଆପଣ ଅନ୍ତ୍ୟସତ୍ୟପଥ ପ୍ରଦର୍ଶକ ।

ବେଦତତ୍ତ୍ୱ ଜାଣିବାରେ ଆପଣଙ୍କ ପର
ନ ଥିବଟି ବୋଲି ଜ୍ଞାନ ହେଉଛି ମୋହର ।
ଆଜକଥା ଶୁଣିବାକୁ ମୋହର ମାନସ
ହେଉଅଛି ତାହା ଦେବ କରନ୍ତୁ ପ୍ରକାଶ ।

କଳିକାଳରେ ପବିତ୍ର ଅଟେ ଯେଉଁ କର୍ମ
ଯାହାକୁ ସକଳ ଲୋକେ ବୋଲନ୍ତି ଉତ୍ତମ ।
ଯାହାଯୋଗେ ଅନ୍ୟ କର୍ମ ନ ପାରଇ ଗ୍ରାସି
ବର୍ଦ୍ଧିତ ହୁଅଇ ଧର୍ମ ଯଶ ସୁଖରାଶି ।
ଯେଉଁ କର୍ମ କଲେ ଲୋକ ଯମଙ୍କ ନଗର
ନ ଦେଖଇ ନ ଲଭଇ ତହିଁ ଦୁଃଖ ଘୋର ।
ଏ ବାହାରେ ନ କରଇ ନରକ ଦର୍ଶନ
କେତେବେଳେ ହେଲେ ତହିଁ ନୁହଇ ପତନ ।
ଜନମ ମରଣ କ୍ଲେଶ ନୁହଇ ଆବର
ଏମନ୍ତ ଯେ କର୍ମ ତାହା କହ ମୋ ଆଗର ।
ଆଉ ଯେତେ କୁଣ୍ଡ ଅଛି ଅଟଇ କପର
ସତ୍ରନ୍ତ ତହିଁରେ ଲୋକ କେଉଁ କର୍ମ କରି ।
ଆପଣାର ଦେହଗୋଟି ହେଲେ ଭସ୍ମସାତ
କେଉଁରୂପେ ଆଉ ଥରେ ହୁଏ ପୁଣି ଜାତ ।
କେବଣ ଦେହରେ ଶୁଭାଶୁଭ ଫଳମାନ
ଅନୁଭବ କରିଥାଏ ଜନ୍ମାନ୍ତରେ ଜନ ।
ଯେଉଁ ଦେହ ନାନାବିଧ ଦଣ୍ଡ ଭୋଗୁଥାଇ
କିରୂପେ ସେ ଦେହଗୋଟି ବିନଷ୍ଟ ନୁହଇ ।
କେଉଁ ଉପାଦାନରେ ସେ ଅଟଇ ଗଠିତ
ଏ ସମସ୍ତ କଥାମୋତେ କହ ସତ୍ୟବ୍ରତ ।
ଏହିରୂପେ ସାବିତ୍ରୀଙ୍କ ବଚନକୁ ଶୁଣି
ଆଶ୍ଚର୍ଯ୍ୟ ହୋଇଣ ଯମ ଜନ୍ତୁଙ୍କର ମଣି ।
ଶ୍ରୀହରିଙ୍କୁ ମନ ମଧ୍ୟେ ସୁମରଣା କଲେ
ଗୁରୁଙ୍କୁ ପ୍ରଣାମ କରି କହି ଆରମ୍ଭିଲେ ।
ବୋଇଲେ ଶୁଣ ଗୋ ବତ୍ସେ ମନଦେଇ କରି
ପବିତ୍ର ଯାହା ତାହା ଅଟେ ଯେଉଁପରି ।
ବ୍ରହ୍ମବୈବ ଧର୍ମଶାସ୍ତ୍ର ସଂହିତା ଗ୍ରନ୍ଥରେ
ପଞ୍ଚବିଧ ଇତିହାସ ପୁରାଣ ଗଣରେ ।
ଏ ବାହାରେ ବେଦଅଂଶ ଆଦ ଯେତେ ଶାସ୍ତ୍ର
ତହିଁରେ ଶ୍ରୀକୃଷ୍ଣ ସେବା ଅତ୍ୟନ୍ତ ପବିତ୍ର ।
ଶୁଭପ୍ରଦ ବୋଲି ଲେଖା ହୋଇଅଛି ଜାଣ
କରଇ ସେ ଜନ୍ମ ମୃତ୍ୟୁ ସନ୍ତାପ ହରଣ ।
ସକଳ ମଙ୍ଗଳରୂପ ଆନନ୍ଦର ହେତୁ ।
ସର୍ବ ଅଭିଳାଷ ସିଦ୍ଧି ସମୁଦ୍ରର ସେତୁ ।
ଭକ୍ତିବୃକ୍ଷ ବୀଜର ଅଙ୍କୁରକାରକ
ଫାସ ରଜ କର୍ମବୃକ୍ଷ ମୂଳ ବିନାଶକ ।

ଗୋଲୋକ ମାର୍ଗ ସୋପାନ ପୁଣ୍ୟ ଦାନକାରୀ
ସାଲୋକ୍ୟାଦି ଚାରମୁକ୍ତି ଅଟଇ ସେପରି ।
ଯମ ମମଦୂତ ଯମ କିଂକର ନରକ
ଏମାନଙ୍କୁ ନ ଦେଖଇ ଶ୍ରୀକୃଷ୍ଣ ସେବକ ।
ଯେଉଁମାନେ ଶ୍ରୀହରିଙ୍କ ବ୍ରତ ଆଚରନ୍ତି
ଶ୍ରୀହରି ତୀର୍ଥରେ ଯାଇ ସ୍ନାହାନ କରନ୍ତି ।
ଶ୍ରୀହରି ବାସରେ ଅନ୍ନ ନ କରନ୍ତି ଗ୍ରାସ ।
ନିତ୍ୟ ହରି ଭଜନରେ ଦିଅନ୍ତି ମାନସ ।
ଧାର୍ମିକ ମଧ୍ୟରେ ସେହି ଅଟନ୍ତି ପ୍ରଧାନ
ନ କରନ୍ତି ସଂଯମନୀ ପୁରକୁ ଦର୍ଶନ ।
ଯେଉଁ ଦ୍ୱିଜ ତିନିକାଳେ ସନ୍ଧ୍ୟା କରୁଥାଇ
ଆପଣାର ଧର୍ମ ସଦାଚାରକୁ ପାଳଇ ।
ନ ଯାନ୍ତି ସେ ଅନ୍ତଃକାଳେ ଯମଙ୍କ ନଗରେ
ହୁଅଇ ଶ୍ରୀହରିଙ୍କର ଦୟା ତାହାଠାରେ ।
ଏ ବାହାରେ ଆଉ ଯେତେ ଦେବ ଉପାସକ
ସାମାନ୍ୟ ଲୋକଙ୍କଠାରୁ ଅଟନ୍ତି ଅଧିକ ।
ସେହିମାନେ ସ୍ୱର୍ଗ ମର୍ତ୍ତ୍ୟ ଉଭୟ ମଧ୍ୟରେ
ଗତାଗତ ହେଉଥାନ୍ତି ପ୍ରତ୍ୟେକ ଜନ୍ମରେ ।
ଶ୍ରୀକୃଷ୍ଣଙ୍କ ସେବା ବିନା ଜନମ ମରଣ
କେତେବେଳେ ଛିନ୍ନ ହୋଇ ନ ପାରଇ ଜାଣ
ମୋହର କିଙ୍କର ମାନେ ସହଜେ ଦୁର୍ଦ୍ଧର୍ଷ
ଯେତେବେଳେ ମର୍ତ୍ତ୍ୟଲୋକେ ହୁଅନ୍ତି ପ୍ରବେଶ
ଶ୍ରୀକୃଷ୍ଣ ଭକ୍ତକୁ ଯେବେ ଦେଖନ୍ତି ଆଗରେ
ପଳାନ୍ତି ସେ ସ୍ଥାନଟିକୁ ଛାଡ଼ି ଖଣ୍ଡେ ଦୂରେ ।
ଗରୁଡ଼କୁ ସର୍ପଗଣ ଭୟ କଲାପରି
ଶ୍ରୀକୃଷ୍ଣ ଭକ୍ତକୁ ମୋର ଦୂତେ ଥାନ୍ତି ଡରି ।
ପାଶହସ୍ତ ହୋଇ ମୋର ପ୍ରଧାନ ଯେ ଦୂତ
ଯାହା କରେ ତାକୁ କହୁଥାଏ ମୁଁ ଏମନ୍ତ ।
ହରିଭକ୍ତ ଆଶ୍ରମକୁ ଛାଡ଼ିକରି ତୁମ୍ଭେ
ସକଳ ସ୍ଥାନକୁ ଯିବ କହୁଅଛୁ ଆମ୍ଭେ ।
ଶ୍ରୀକୃଷ୍ଣ ମନ୍ତ୍ର ଯେ ଉପାସନା କରେ ତାର
ନାମ ଯେବେ ଥାଏ ଆମ୍ଭ ପଞ୍ଜିକା ମଧ୍ୟର ।
ତାହାକୁ କାଟିଲାବେଳେ ମନ୍ତ୍ରୀ ଚିତ୍ରଗୁପ୍ତ
ପ୍ରଣାମ କରନ୍ତି ଆଠ ଯୋଡ଼ ବେତ୍ରହସ୍ତ ।
ସେହିମାନେ ଅନ୍ତଃକାଳେ ବ୍ରହ୍ମଲୋକ ଡେଇଁ
ଗୋଲୋକକୁ ଗଲାବେଳେ ବିମାନ ଆରୋହି ।

ମଧୁପର୍କ ଯେଣ ବ୍ରହ୍ମା ଅନେକ ପ୍ରକାର
କରନ୍ତି ତାହାଙ୍କୁ ଆଗୋ ରମଣୀଙ୍କ ବର ।
ଜଳନ୍ତା ଅଗ୍ନିରେ ଯେସନ୍ତେ ଶୁଷ୍କତୃଣ ପଡ଼ି
ମୁହୂର୍ତ୍ତେ ମଧ୍ୟରେ ଭସ୍ମ ହୋଇଯାଏ ପୋଡ଼ି ।
ସେହିପରି କୃଷ୍ଣଭକ୍ତ ଦେହ ଦରଶନେ
ସକଳ ପାତକ ନାଶ ହୁଏ କ୍ଷଣକରେ ।
ତାହାଙ୍କୁ ଦେଖିଲେ ମୋହ ଭୟରେ ପଳାଏ
କାମ ଯାଇ କାମୀ ଲୋକଙ୍କର ଆଶା ନଏ ।
ଲୋଭ ମୋହ ମୃତ୍ୟୁ ରୋଗ ଜରା ଶୋକ ଭୟ
ହରଷ ବିଷାଦ ଶୂନ୍ୟ ଅଶୁଭ ଜନୟ ।
ଏମାନେ ତାହାର ପାଶେ ପଶି ନ ପାରନ୍ତି
ଦେଖିଲେ ଦୂରରୁ ମନେ ଜାତ ହୁଏ ଭୀତି ।
ଆଗୋ ମହାସତୀ ଏବେ ମନଦେଇ ଶୁଣ
କହୁଅଛି ଯେଉଁରୂପେ ଦେହ ବିବରଣ ।
ପୃଥିବୀ ବାୟୁ ଆକାଶ ତେଜ ପୁଣି ଜଳ
ଏହି ପାଞ୍ଚଦ୍ରବ୍ୟ ଦେହ ସୃଷ୍ଟିର ସମ୍ବଳ ।
ସରଜନା କଲାବେଳେ ବ୍ରହ୍ମା ପ୍ରଜାପତି
ଏ ପାଞ୍ଚ ପଦାର୍ଥ ଯତ୍ନ କରଣ ରଖନ୍ତି ।

ତହିଁରେ ସେ ଦେହମାନ କରନ୍ତି ନିର୍ମାଣ
କୃତ୍ରିମ ନଶ୍ୱର ବୋଲି ସେମାନଙ୍କୁ ଜାଣ ।
ବୃଦ୍ଧ ଅଙ୍ଗୁଷ୍ଠ ପ୍ରମାଣ ଆକୃତିକ ଧରି
ସେ ମଧ୍ୟରେ ଜୀବାତ୍ମା ରହେ ବାସକରି ।
ଜୀବନ୍ତ ଦେହକୁ ଯତ୍ନେ ରଖିଥାଏ ସେହି
ନାନାସୁଖ ଦୁଃଖ ଭୋଗ କରିବାର ପାଇଁ ।
ସେ କୃତ୍ରିମ ଶରୀରଟି ଯାବେ ଭସ୍ମ ହୁଏ
ତାହାକୁ ସେ ଜୀବାତ୍ମା ଧରି ରହିଥାଏ ।
ପ୍ରଚଣ୍ଡ ଅଗ୍ନିରେ ତାହା ନୁହଇ ଦହନ
ଅଥବା ଜଳ ମଧ୍ୟରେ ନ ଯାଏ ମରଣ ।
ଯେତେ ପ୍ରହାରିଲେ ମଧ୍ୟ ଖଣ୍ଡ ନ ହୁଅଇ
ତୀକ୍ଷ୍ଣ ଅସ୍ତ୍ର ଶସ୍ତ୍ର ତା ଦେହରେ ନ ଭେଦଇ ।
ତପତ ଲୌହ ପାଷାଣ ଉତ୍ତପ୍ତଦ୍ରବ୍ୟ ଯେତେ
ତାଙ୍କୁ ନଷ୍ଟକରି ନ ପାରନ୍ତି କଦାଚିତେ ।
ତପତ ପ୍ରତିମା ନେଇ ଦେହେ ଲଗାଇଲେ
ବଳ୍ପା ନ ହୁଅଇ ତାର ଯେମନ୍ତ ଏ ଦେଲେ ।
ଏହିଠାରେ ସମସ୍ତଙ୍କ ଶରୀର ବିଜ୍ଞାନ
ଶେଷକଲେ ଭଣେ ନୀତେ ଷୋଡ଼ଶବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀଙ୍କ ଆଗରେ ଯମଙ୍କ ଶରୀରତତ୍ତ୍ୱ କଥିକ କଥନେ ନାମ ଚତୁର୍ବିଂଶୋଽଧ୍ୟାୟଃ ।

---

## ପଞ୍ଚବିଂଶ ଅଧ୍ୟାୟ
## ସାବିତ୍ରୀଙ୍କ ଆଗରେ ଯମଙ୍କର କୁଣ୍ଡ-ସ୍ୱରୂପ ବର୍ଣ୍ଣନ

ସାବିତ୍ରୀଙ୍କ ମୁଖ ଚାହିଁ ପୁଣି ଜଳପତି
ବୋଇଲେ ଶରୀର ତତ୍ତ୍ୱ ଶୁଣିଲ ତ ସତୀ ।
କୁଣ୍ଡ ବିଷୟରେ ଏବେ ଯେ ସମସ୍ତ କଥା
କହୁଅଛି ଶୁଣ ମନଦେଇଣ ସର୍ବଥା ।
ସବୁ କୁଣ୍ଡ ପୂର୍ଣ୍ଣଚନ୍ଦ୍ର ମଣ୍ଡଳ ସମାନ ।
ବର୍ତ୍ତୁଳ ଭାବରେ ଗଢ଼ା ହୋଇଛନ୍ତି ଜାଣ ।
ଅତ୍ୟନ୍ତ ଗଭୀର ପୁଣି ଘୋର ପାଷାଣରେ ।
ଚିକ୍କଣ ପଥର ବନ୍ଧା ହୋଇଛନ୍ତି ଯତ୍ନରେ ।
ଈଶ୍ୱର ଇଚ୍ଛାରେ ସବୁ ଅଟନ୍ତି ନିର୍ମିତ
ମହାପ୍ରଳୟରେ ମଧ୍ୟ ନୁହନ୍ତି ବିକ୍ଷତ ।

ପାତକୀ ଜୀବମାନଙ୍କୁ କ୍ଳେଶ ଦେବାପାଇଁ
ପ୍ରକାଶିତ ହୋଇଛନ୍ତି ନାନାରୂପ ବହି ।
ଜଳୁଅଛି ଯା ଗର୍ଭରେ ପ୍ରଚଣ୍ଡ ଅନଳ
ଶତହସ୍ତ ଯାଏ ଶିଖା ଉଠେ ମାଳ ମାଳ ।
କୋଟିଶ ଲମ୍ବ ପୁଣ କୋଶେ ଓସାର ଅଟଇ
ବହ୍ନିକୁଣ୍ଡ ବୋଲି ନାମ କହୁଅଛି ସେହି ।
କେତେ କେତେ ମହାପାପୀ ସେ ମଧ୍ୟରେ ପଡ଼ି
ପୁଣ୍ଡୁଛନ୍ତି ବଳକରେ ଭୟଙ୍କର ରଡ଼ି ।
ଶୂଳ ଦେଇ ଜଗି ତାଙ୍କୁ ଘୋର ଦୂତଗଣ
ପ୍ରହାର କରନ୍ତି ଯଷ୍ଟି ଧରି ପୁନଃ ପୁନଃ ।

ତାତଲ ଜଳରେ ପୂର୍ଣ୍ଣ ଅଟେ ଯେଉଁ କୁଣ୍ଡ
ପୁଣି ହିଂସ୍ର ଜନ୍ତୁ କେତେ ହୋଇଛନ୍ତି ରୁଣ୍ଡ ।
ମହାଘୋର ଅନ୍ଧାରରେ ନ ଦିଶଇ ପଥ
ପୂର୍ଣ୍ଣହୋଇ ରହିଛନ୍ତି ଅଧାର୍ମିକ ଯଥ ।
ସହି ନ ପାରଣ ମୋର ଦୂତଙ୍କ ପ୍ରହାର
କରୁଛନ୍ତି କ୍ଷଣେ କ୍ଷଣେ ଜଳେ ହାହାକାର ।
ଅଧକୋଶ ପରିମାଣ ଅଟଇ ତାହାର
ତପ୍ତୋଦକ କୁଣ୍ଡ ବୋଲି ତାକୁ ମନେକର ।
ତପ୍ତ କ୍ଷାର ଜଳରେ ଅଟଇ ପୂରିତ
ଏ ବାହାରେ ଭୟଙ୍କର କୁମ୍ଭୀର ବେଷ୍ଟିତ ।
ଏମନ୍ତ ଯେ କୁଣ୍ଡ ତହିଁ ପାପୀଜନମାନେ
ଆର୍ତ୍ତନାଦ କରୁଛନ୍ତି କଠୋର ତାଡ଼ନେ ।
ତାହାର ପାଶରେ ଏକକୋଶ ପରିମିତ
ଅତ୍ୟନ୍ତ ଦୁର୍ଗନ୍ଧ ମଳ ମୂତ୍ରରେ ପୂରିତ ।
କୁତ୍ସିତ ବହୁସ୍ତ ମଳକୁଣ୍ଡ ବର୍ତ୍ତ୍ୟମାନ
ତହିଁରେ ପଡ଼ିଅଛନ୍ତି କେତେ ପାପୀଜନ ।
ମୋର ଦୂତଙ୍କରେ ସେ ତାଡ଼ନ ହୁଅନ୍ତି
ଅନାହାରେ ଉଚ୍ଚସ୍ୱରେ ଡାକ ଦେଉଥାନ୍ତି ।
ସେ ସମସ୍ତେ ସୂଚୀମୁଖ ମଳକୀଟ ଦଳ
ଝେଦାନ୍ତେ ଦେଉଥାଆନ୍ତି ଅତି କଲବଲ ।
ତା ପାଶରେ ମୂତ୍ରକୁଣ୍ଡ ମୂତ୍ରଜଳେ ପୂରି
ଅଛଇ ମୂତ୍ରକୀଟରେ ପୂର୍ଣ୍ଣ ହୋଇକରି ।
ମହାପାପୀଗଣ ତହିଁ ପଡ଼େ ଘୋର ଦୁଃଖେ
ଦଂଶିତ ହୁଅନ୍ତି ସବୁବେଳେ କୀଟମୁଖେ ।
ଦୁଇକୋଶ ପରିମାଣ ଅଟଇ ତାହାର
ଆବରଣ କରିଥାଏ ଘୋର ଅନ୍ଧକାର ।
ତହିଁରେ କାହାକୁ କଏ ଦେଖି ନ ପାରନ୍ତି
ଭ୍ରାନ୍ତି ହୋଇ ସକଳେ ରଡ଼ କରୁଥାନ୍ତି ।
ମୋର ଦୂତମାନେ ହସ୍ତେ ଲୌହଦଣ୍ଡ ଧରି
ପିଟୁଥାନ୍ତି ନିର୍ଦ୍ଦୟରେ ରେରେକାର କରି ।
ଶ୍ଳେଷ୍ମପୂର୍ଣ୍ଣ କୁଣ୍ଡ ଅଟେ କୋଶେ ପରିମାଣ
ତହିଁରେ ପାପୀଙ୍କୁ ବେଢ଼ିଥାନ୍ତି କୀଟଗଣ ।
ଶ୍ଳେଷ୍ମ ଭକ୍ଷଣ କରଣ ସେ ମହାପାପୀଏ
ଛଟଛଟ ହେଉଥାନ୍ତି ଦୂତଙ୍କର ଭୟେ ।
ବିଷମୟ ଗର କୁଣ୍ଡ କୋଶେକ ବିସ୍ତୃତ
ବିଷଭୋଗୀ ମହାପାପୀଗଣରେ ସେ ଯୁକ୍ତ ।

ଗରକୀଟଗଣ ତାଙ୍କୁ ଚିକ୍କୁଥାନ୍ତି ଆସେ
ପ୍ରହାର କରନ୍ତି ମୋର ଦୂତେ ପିଠିପଟେ ।
ଶୁଷ୍କ ହୋଇବାରୁ କଣ୍ଠ ଓଷ୍ଠ ତାହାଙ୍କର
ଡାକନ୍ତି ବୋଲନ୍ତି ଆଉ ନ ମାର ନ ମାର ।
ନୟନମଳ ପୂର୍ଣ୍ଣ ପୁଣି କୋଶାର୍ଦ୍ଧ ବିସ୍ତୃତ
ସେହିପରି ମଳକୀଟଗଣରେ ଆବୃତ ।
ପାପୀଜନଙ୍କରେ ସେହି ଅଟଇ ସଙ୍କୁଳ
ସବୁବେଳେ ସେ ପାପୀଏ ଖାଉଥାନ୍ତି ମଳ ।
ବସାରସେ ପୂର୍ଣ୍ଣ ଅଟେ ଯେଉଁ କୁଣ୍ଡଗୋଟି
ଗୃହକୋଶ ପରିମାଣ ହୋଇ ସେ ଅଛନ୍ତି ।
ତାହା ଭୁଞ୍ଜି ପାପୀଗଣ ପୂର୍ଣ୍ଣ ହୋଇଛନ୍ତି
ମୋର ଦୂତଙ୍କ ହାତରେ ପରାଭବ ପାନ୍ତି ।
ଶୁକ୍ରମୟ କୁଣ୍ଡ ବ୍ୱରକୋଶ ପ୍ରମାଣରେ
ରହିଛନ୍ତି ପୂର୍ଣ୍ଣହୋଇ ଶୁକ୍ରକୀଟଙ୍କରେ ।
ରୋଦନ କରନ୍ତି ପାପୀମାନେ ପଡ଼ି ତହିଁ
ମୋର ଦୂତେ ନିର୍ଦ୍ଦୟରେ ପିଟନ୍ତି ନଠାଇ ।
ଦୁର୍ଗନ୍ଧ ରକ୍ତପୂର୍ଣ୍ଣ ବାପୀ ପରିମାଣ
ରୁଧିର କୁଣ୍ଡ ଅଟଇ ପାପୀଗଣେ ପୂର୍ଣ୍ଣ ।
ବାପୀ ଅର୍ଦ୍ଧ ପରିମାଣେ ନେତ୍ରାଶ୍ରୁ କୁଣ୍ଡ
କହୁଛି ପାତକୀ ତହିଁ ପାଉଥାନ୍ତି ଦଣ୍ଡ ।
କ୍ଷୁଧା ତୃଷା ହେଲେ ଅଶ୍ରୁ ଭକ୍ଷଣ କରନ୍ତି
କୀଟଙ୍କ ଯନ୍ତ୍ରଣା ଯୋଗେ କୋବାଳ ଛାଡ଼ନ୍ତି ।
ମୋହର ଦୂତଙ୍କଠାରୁ ଗାଳମାଡ଼ ଖାଇ
କ୍ଷଣେ କ୍ଷଣେ ଡାକୁଥାନ୍ତି ବୋଲି ବାପ ଭାଇ ।
ଏ ବାହାରେ ଗାତ୍ରମଳ କୁଣ୍ଡ ଅଛି ତହିଁ
ପାପୀଗଣେ ପଡ଼ିଛନ୍ତି ମହାକଷ୍ଟ ପାଇ ।
କର୍ଣ୍ଣମଳ କୁଣ୍ଡ ମଧ୍ୟ ଅଟେ ସେହିପରି
ବ୍ୱରକୋଶ ପରିମାଣ ଅଟଇ ତାହାରି ।
ପାପୀଜନେ ପଡ଼ି ତହିଁ ଭୟଙ୍କର ମନେ
ରକ୍ଷା କର ବୋଲି ଡାକୁଥାନ୍ତି ଉଚ୍ଚସ୍ୱନେ ।
ନଖ ଆଦି କୁଣ୍ଡ ଅଛି ବ୍ୱରଗୋଟି ପୁଣ
ତାର ପରିମାଣ ଅଟେ ବାପୀ ବ୍ୱରଗୁଣ ।
ପାତକୀଜନରେ ସେହି ଅଟଇ ସଙ୍କୁଳ
ସବୁବେଳେ ଶୁଣାଯାଉଥାଏ ମୁଖଗୋଳ ।
ତପତ ତାମ୍ରକୁଣ୍ଡ ଯେ ଅତି ଭୟଙ୍କର
ଅନଳ ଯେ ଗତେ ତାମ୍ର ଦିଶେ ଜର ଜର ।

ସ୍ୱରପାଶେ ରହି ତାମ୍ର ପ୍ରତିମା ବହୁତ
ସାକ୍ଷାତେ ଅଗ୍ନି ପରାୟେ ହୋଇଥାନ୍ତି ତପ୍ତ ।
ସେ ପ୍ରତିମା ଦେହ ସଙ୍ଗେ ପାପୀଙ୍କ ଶରୀର
ମିଶାଇଲ ପରି ବାନ୍ଧ ଦୂତଗଣେ ମୋର ।
ତାଡ଼ିଲ ଲୌହଦଣ୍ଡରେ ପିଟୁଥାନ୍ତି ଆଣେ
କାନ୍ଦନ୍ତି ପାପିଏ ପଡ଼ି ବଡ଼ମ ସଙ୍କଟେ ।
ଦୁଇକୋଶ ପରିମାଣ ଅଟଇ ତାହାର
ତା ପାଶରେ ରହିଅଛି ତପ୍ତଲୌହଧାର ।
ଜଳନ୍ତା ଅଙ୍ଗାର ପୂର୍ଣ୍ଣ ହୋଇ ସେହି କୁଣ୍ଡ
ଆବର ତପତ ଲୌହ ଘଟେ ପରଚଣ୍ଡ ।
ଲକ୍ଷେକ ଲୌହ ପ୍ରତିମା ତହିଁରେ ଅଛନ୍ତି
ଅନଳ ସମାନେ ଘଟେ ତାହାଙ୍କ ଆକୃତି ।
ସେ ପ୍ରତିମା ସ୍ୱରପଟେ ପାତକୀ ଜନଙ୍କୁ
ବାନ୍ଧନ୍ତି ମୋହର ଦୂତେ ନ କରି ଦୟାକୁ ।
ଏ ବାହାରେ ଆଗେ ରହି ମୁଖ ନାସା ମୁଣ୍ଡେ
ପ୍ରହାର କରନ୍ତି ଲୌହ ଦଣ୍ଡ ଅତି ଗୁଣ୍ଡେ ।
ସେ କୁଣ୍ଡର ପରିମାଣ ଅଟେ ଦୁଇକୋଶ
ଘୋର ଅନ୍ଧକାର ତହିଁ କରିଅଛି ବାସ ।
ଘର୍ମକୁଣ୍ଡ ତପ୍ତ ସୁରକୁଣ୍ଡ ଦୁଇଗୋଟି
ଅର୍ଦ୍ଧକ୍ରୋଶ ପରିମିତ ହୋଇ ଅଛନ୍ତିଟି ।
ଭକ୍ଷଣ କରଣ ତାହା ପାପୀଏ ତହିଁରେ
ମାଡ଼ ଖାଉଛନ୍ତି ମୋର ଦୂତଙ୍କ ହାତରେ ।
ଶାଲ୍ମଳୀ ବୃକ୍ଷତଳରେ ଅଛି ଏକ କୁଣ୍ଡ
ତୀକ୍ଷଣ କଣ୍ଟକ ସମ ସେ ଅତି ପରଚଣ୍ଡ ।
ସେ ବୃକ୍ଷ ଅଟଇ ଲକ୍ଷେ ପୁରୁଷ ଉନ୍ନତ
ଏକକୋଶ ପରଯନ୍ତେ ପୁଣି ସେ ବିସ୍ତୃତ ।
ଧନୁ ଆକୃତିରେ କେତେ ସୁତୀକ୍ଷ୍ଣ କଣ୍ଟକ
ଆବୃତ କରିଅଛନ୍ତି ତାର ଦେହଯାକ ।
ପ୍ରତ୍ୟେକ କଣ୍ଟାରେ ଫୋଡ଼ି ପାପୀଙ୍କର ଦେହ
ଝୁଲାଇଥାନ୍ତି ମୋହର ଦୂତେ ବହି କୋହ ।
ମାଡ଼ଘାତେ କେତେ ପାପୀ ସେ କଣ୍ଟାରୁ ଖସି
ଛେଚା ହୋଇ ମହୀତଳେ ପଡ଼ୁଥାନ୍ତି ଆସି ।
କଣ୍ଠତାଳୁ ଶୁଷ୍କ ହୋଇ ଯିବାରୁ ସେ ଅତି
ଜଳମନେ ଦିଅ ବୋଲି ଡାକ ପାଡ଼ୁଥାନ୍ତି ।
ତା ପାଶରେ କାଳକୂଟ ବିଷ ପୂର୍ଣ୍ଣ ହୋଇ
କୋଶ ପରିମାଣେ ଏକ କୁଣ୍ଡ ଅଛି ରହି ।

ସେହି ବିଷ ପାନକରି କେତେ ମହାପାପୀ
ମୋ ଦୂତଙ୍କ ପ୍ରହାରରେ ହେଉଥାନ୍ତି ତାପୀ ।
ତପତ ତଇଳ କୁଣ୍ଡ ନାଟ ଧ୍ୱନିର୍ଣ୍ଣିତ
ପଡ଼ିଥାନ୍ତି ପାପୀମାନେ ତହିଁରେ ବହୁତ ।
କ୍ଷୁଧା ତୃଷା ହେଲେ ସେହି ତଇଳ ଖାଆନ୍ତି
ପ୍ରହାର ନ ସହି ଜଳରେ ଉଡ଼ୁଥାନ୍ତି ।
ସ୍ୱରକୋଶ ପରିମାଣ ଅଟେ ସେ କୁଣ୍ଡର ।
ଭୟଙ୍କର ମଧ୍ୟରେ ସେ ଅତି ଭୟଙ୍କର ।
ଶସ୍ତ୍ରଧାର ନାମେ ଦୁଇ କୁଣ୍ଡ ଦୁଇକୋଶ
ପରିମାଣେ ରହିଅଛି ସେ କୁଣ୍ଡର ପାଶ ।
ନାନା ଶସ୍ତ୍ରଗଣ ପୂରିଅଛନ୍ତି ସେଠାରେ
ବେଷ୍ଟିତ ସେ ହୋଇଛନ୍ତି ପାତକୀ ଜନରେ ।
ନାନା ଶସ୍ତ୍ର ବାଜି ତାଙ୍କ ଦେହ ଖଣ୍ଡ ଖଣ୍ଡ
ହୁଏ ପୁଣି ମୋର ଦୂତେ ପ୍ରହାରନ୍ତି ଦଣ୍ଡ ।
ସାଧାରଣ ସର୍ପପରି କୀଟଗଣ ଆସି
ଘେରାଉଥାନ୍ତି ଭୀଷଣ ରୂପ ପରକାଶି ।
ଅନ୍ଧକାରେ ପୂର୍ଣ୍ଣହୋଇ ଥିବାରୁ ସେ ସ୍ଥାନ
କାହାକୁ ଦେଖି ନ ପାରେ କାହାର ନୟନ ।
ସେ ସ୍ଥାନରୁ ପାପିଜନ ମହାଭୟ ପାଇ
କ୍ରନ୍ଦନ କରନ୍ତି ଉଚ୍ଚେ ଅସହାୟ ହୋଇ ।
ଉପହାସ କରି ମୋର ଦୂତଗଣେ ଯାଇ
ବାଧା ସ୍ୱଷ୍ଟି ଶେଲ ଆଦି ମାରନ୍ତି ଭୁଶାଇ ।
ତା ପାଶରେ ପୂୟକୁଣ୍ଡ ଅତ୍ୟନ୍ତ ଦୁର୍ଗନ୍ଧ
କୋଶେ ପରିମାଣ ତାର ସ୍ୱରବିଷ ସନ୍ଧ ।
ତାହାକୁ ଭକ୍ଷଣକରି ପାପୀମାନେ ତହିଁ
ପଡ଼ିଥାନ୍ତି ମୋ ଦୂତଙ୍କ ହାତେ ମାଡ଼ଖାଇ ।
ସ୍ୱରକୋଶ ପରିମାଣ ମୂତ୍ରଜଳ କୁଣ୍ଡ
ଭୟଙ୍କର ସର୍ପ ତହିଁ ହୋଇଥାନ୍ତି ଛିଣ୍ଡ ।
ତାଳଗଛ ପରି ଅଟେ ତାଙ୍କର ଶରୀର
ଦଂଶନ କରନ୍ତି ଅଙ୍ଗ ପାପୀମାନଙ୍କର ।
ସେ କୁଣ୍ଡରେ ପାପୀଗଣ ପଡ଼ିଲେ ଗାଧ
କମ୍ପୁଥାନ୍ତି ପବନରେ ଯେସନେ ରମ୍ଭାପତ୍ର ।
ଏ ବାହାରେ ମଶାକାଦ ଅଛି ତନକୁଣ୍ଡ
କେତେ ପାପୀଲୋକ କଟୁଛନ୍ତି ତହିଁ ବଣ୍ଡ ।
ଅର୍ଦ୍ଧକୋଶ ଯାଏ ଅଟେ ସବୁର ପ୍ରମାଣ
କେତେ ପାତକୀଙ୍କୁ ବାନ୍ଧି ମୋର ଦୂତଗଣ ।

ତୀକ୍ଷ୍ଣ ଶୂଳରେ ମାରି ଅଙ୍ଗକୁ ଫୋଡ଼ାନ୍ତି
ପକାନ୍ତି ତହିଁରେ ନେଇ ମହାକ୍ରୋଧ କରି ।
ତାହାପରେ ଶବଦ ସେ କରନ୍ତେ ବଳନେ
ଶୁଣିବା ପାପୀଙ୍କ ଯହିଁ ନ ଯାନ୍ତି କେହୁ ଦେବେ ।
ବଜ୍ର ବୃଷ୍ଟି କରଣରେ ଦୁର୍ଗନ୍ଧ କୁଣ୍ଡ ଦୁଇ
ବନ୍ଧୁଅଛି ଅର୍ଦ୍ଧ ବାପୀ ପରମାଣେ ତହିଁ ।
ପାତକଗଣ ତହିଁରେ ଅଛନ୍ତି ପଡ଼ି
ଖାଉଛନ୍ତି ବଜ୍ରଦଂଷ୍ଟ୍ର କୀଟେ ତାଙ୍କୁ ଘୂରି ।
ସେ ଅନ୍ତରେ ଶର ଆଦି ତପ୍ତକୁଣ୍ଡ ଅଛି
ମହାପାତକୀଗଣରେ ପୂରିତ ହୋଇଛି ।
ତା ପାଶରେ ଗୋଳକୁଣ୍ଡ ତପ୍ତ ପଙ୍କ ପୂର୍ଣ୍ଣ
ଶ୍ଳେଷ୍ମ ମଳମୂତ୍ର ଖାନ୍ତି ତହିଁ ପାପୀଜନ ।
ସେ ପାପୀଙ୍କ ଶରୀରରୁ କାକମାନେ ଉଡ଼ି
ଛିଣ୍ଡାଉଥାନ୍ତି ମାଂସ ଥଣ୍ଟ ମୁନେ ଭିଡ଼ି ।
ସଞ୍ଚାଣ ବାଜ କଲୁରେ ପୂର୍ଣ୍ଣ ହୋଇ କରି
ଦୁଇଟି କୁଣ୍ଡ ସେଠାରେ ଅଛି ଭୟଙ୍କର ।
ଆର୍ତ୍ତନାଦ କରି ମହା ପାପୀଗଣ ତହିଁ
ପଡ଼ିଥାନ୍ତି ଅନ୍ଧକାରେ ଘୋର କଷ୍ଟ ସହି ।
ଧନୁଶତ ବଜ୍ରମୟ କୁଣ୍ଡ ତା ପାଶରେ
ରହିଅଛି ପୂର୍ଣ୍ଣ ପାପିଜନମାନଙ୍କରେ ।
ବାପୀ ପରିମାଣ ତପ୍ତ ପ୍ରସ୍ତର ନିର୍ମିତ
ଜ୍ୱଳନ୍ତ ଅଙ୍ଗାରମୟ ଅଛି ଏକ ଗର୍ତ୍ତ ।
ତହିଁରେ କେତେକ ପାପୀ ବିଚଳିତ ହୋଇ
ରହିଥାନ୍ତି ନାନାବିଧ ଗାଳି ମାଡ଼ ଖାଇ ।
କ୍ଷୁରଧାର ପାଷାଣରେ କୁଣ୍ଡ ଏକ ଗୋଟି
ଅଛି ଯହିଁ ପଡ଼ିଥାନ୍ତି ପାପୀ କୋଟି କୋଟି ।
ପାଷାଣ ବାଜିଣ ତାଙ୍କ ଅଙ୍ଗୁ ରକ୍ତଧାର
ବହିବାରୁ ସ୍ଥାନେ ସ୍ଥାନେ ଦିଶଇ ସେ ଘୋର ।
ତହିଁ ଏକ କୁଣ୍ଡ ପୁଣି ଲାଳ ପରିପୂର୍ଣ୍ଣ
ଭକ୍ଷଣ କରନ୍ତି ତାହା ମହାପାପୀଗଣ ।
ଯେ ଦୂତଙ୍କଠାରୁ ସହି ଅତ୍ୟନ୍ତ ଯାତନା
ପଡ଼ି ରହିଥାନ୍ତି ଆଗୋ ହସ୍ତିଙ୍କ ମଣ୍ଡନା ।
କୋଶେ ପରିମାଣ ଅଟେ ତାର ପାର୍ଶ୍ୱ ପ୍ରତି
ତାହାକୁ ଦେଖିଲେ ଜାତ ହୁଏ ମହାଭୀତି ।
ଏ ବାହାରେ ତପ୍ତ ତୋୟମୟ ଯେଉଁ କୁଣ୍ଡ ।
ଅଛଇ ପୂରିଛି ତହିଁ ସହସ୍ର କୋଦଣ୍ଡ ।
ଉଞ୍ଚ ବରନ ତାହା ମହା ଭୟାନକ
ପଡ଼ିଥାନ୍ତି ତା ମଧ୍ୟରେ ପାତକୀ ଅନେକ ।
କୁଟିଳ ଚକ୍ର ପଲ୍ଲବେ ଅଛି ଏକ କୁଣ୍ଡ
ଘୂର୍ଣ୍ଣିତ ହେବାରୁ ଦିଶୁଥାଏ ସେ ପ୍ରଚଣ୍ଡ ।
ସୂକ୍ଷ୍ମ ତୀକ୍ଷ୍ଣ ଷୋଡ଼ଶ ଗୋଟି ଅର ତହିଁ ଥାଇ
ଖଣ୍ଡ ଖଣ୍ଡ କରୁଥାଏ ପାପୀଙ୍କର ଦେହି ।
ଅତିଶୟ ବକ୍ର ଗଭୀର କୋଶ ପରିମାଣ
କନ୍ଦର ଆକୃତିରେ ଯେ ହୋଇଛି ନିର୍ମାଣ ।
ତପତ ଜଳ ସଙ୍କୁଳ ଅଟେ ସେ କୁଣ୍ଡଟି
ଜଳଜନ୍ତୁଗଣ ତହିଁ ହୋଇଛନ୍ତି ଗୋଟି ।
ପାପୀଙ୍କର ଗୋଡ଼ ହାତ ମୁଣ୍ଡ ଆଦି କରି
ଚୋବାଇ ଖାଆନ୍ତି ଘୋର ଦନ୍ତେ ସେ ଘୋର ।
ଆବର ବକ୍ରତାକାର କଚ୍ଛପ ବହୁତ
ସେ ମହାପାପୀଙ୍କ ଅଙ୍ଗ କରନ୍ତି ବିକ୍ଷତ ।
ଆଉ ଏକ କୁଣ୍ଡ ଅଗ୍ନିଜ୍ୱାଳାରେ ନିର୍ମିତ
ଏକ କୋଶ ପରିମାଣ ହୋଇଣ ବିସ୍ତୃତ ।
ପାପୀଏ ତହିଁରେ ପଡ଼ି କୃମି ଦଂଶନରେ
କୋଳାହଳ ଗ୍ରହନ୍ତି ଉଚ୍ଚେ ବିକଳ କଣ୍ଠରେ ।
ତପତ ଭସ୍ମ ନିର୍ମିତ କୋଶେ ପରିମାଣ
ଅତ୍ୟନ୍ତ ଘୋର ଯେଉଁ କୁଣ୍ଡ ତହିଁ ଜାଣ ।
ସବୁବେଳେ ଭସ୍ମ ଖାଇ ପଡ଼ି ରହିଥାନ୍ତି
ବର୍ଣ୍ଣନା କରିବ କିବା ତାହାଙ୍କ ଅଶାନ୍ତି ।
ତପତ ପଥର ଟେକା ଭରି ହୋଇ ପୁଣି
ତହିଁରେ ପଡ଼ିଥାଆନ୍ତି ମହାପାପୀଶ୍ରେଣୀ ।
ତପତ ବାଲି ଶରୀର ପୋଡ଼େ ହାଉ ହାଉ
କଣ୍ଠ ଓଷ୍ଠ ଶୁଖି କଥା ନ ସ୍ଫୁରଇ ଆଉ ।
ଆବର କୋଶେ ପ୍ରମାଣେ ମହା ଅନ୍ଧକାରେ
ଆବୃତ ହୋଇଛି ଯେଉଁ କୁଣ୍ଡ ତା ମଧ୍ୟରେ ।
ରହିଛନ୍ତି ପାପିଗଣ ମହାଦୁଃଖ ପାଇ
ବିଗନ୍ଧ କୁଣ୍ଡ ନାମଟି ତାହାର ଅଟଇ ।
ତପ୍ତ କ୍ଷାର ଜଳମୟ ଲବଣ ବେଷ୍ଟିତ
ନାନା ଭୟଙ୍କର ଜଳଜନ୍ତୁ ସମନ୍ୱିତ ।
ଲକ୍ଷକୋଶ ପରିମାଣ ଗଭୀର ଅପାର
ଏମନ୍ତ ଯେ କୁଣ୍ଡ ତହିଁ କେତେ ପାପୀ ନର ।
କଷ୍ଟଭୋଗ କରୁଥାନ୍ତି କରମ ସୁମରି
ଗ୍ରେବନ୍ତି ତାହାଙ୍କୁ ଜଳ ଜନ୍ତୁ ବେଢ଼ି କରି ।

ତପତ ଉର୍ମିକା କୁଣ୍ଡ ଅଛି ଆଉ ଏକ ।
ନିବିଡ଼ ଅନ୍ଧାର ଯେବେ ଦିଶେ ଭୟାନକ ।
ତା ପାଶରେ ଅଛି ଅତି ଉଚ୍ଚ ତାଳବୃକ୍ଷ
ଖଣ୍ଡାଧାର ପରି ତାର ପତ୍ର ଅଟେ ତୀକ୍ଷ୍ଣ ।
ସେ ବୃକ୍ଷ ତଳରେ ଅର୍ଦ୍ଧକୋଶ ପରିମାଣ
କୁଣ୍ଡଟିଏ ଅଛି ପାପୀ ରକତରେ ପୂର୍ଣ୍ଣ ।
ସେ ତାଳ ପତ୍ର ମଧ୍ୟରେ ପାତକୀଙ୍କୁ ନେଇ
ମୋର ଦୂତମାନେ ବାନ୍ଧି ଦିଅନ୍ତି ଓହଳାଇ ।
ପବନରେ ହଲଚଲ ହେଲାବେଳେ ଅଙ୍ଗ
ପତ୍ର ବାଜି ରକତରେ ହୋଇଯାଏ ରଙ୍ଗ ।
ସେ ସକାଶୁଁ ଆକୁଳରେ ରଖ ରଖ ବୋଲି
ଡାକଇ କେ କେ ବୋଲଇ ଗଲି ମଲି ମଲି ।
ଅସିପତ୍ର କୁଣ୍ଡ ଅଟେ ତଳରେ ତାହାର
ଯେଉଁ କୁଣ୍ଡ ଅଛି ବୋଲି କହିଲି ଆଗର ।
ଶତେ ଧନୁ ପରିମାଣ ତୀକ୍ଷ୍ଣ ଅସ୍ତ୍ରଯୁତ
ପୂରିଛି ତହିଁରେ ମଧ୍ୟ ପାପୀଙ୍କ ରକତ ।
ସେହିପରି ସୂଚିଶ୍ରେଣି ଅସ୍ତ୍ରରେ ସଙ୍କୁଳ
ଅଛି ଏକ କୁଣ୍ଡ ରକ୍ତ ଲଙ୍ଘେ ତାର କୂଳ ।
ପଞ୍ଚଶ ଧନୁ ସମାନ ବିସ୍ତୃତ ଅଟଇ
ପାତକୀ ଲୋକଙ୍କୁ ମହାକଷ୍ଟ ସେ ଦିଅଇ ।
ଗୋଧା ନାମ ଜନ୍ତୁଟିର ମୁଖପରି ହୋଇ
ବିଂଶତି ଧନୁ ପ୍ରମାଣ କୁଣ୍ଡ ଯେ ଅଟଇ ।
କୂପ ପର୍ଯ୍ୟନ୍ତ ଗଭୀର ଅଟଇ ସେ ଜାଣ
ଦୁରାଚାର ପାପୀଙ୍କର ସେହି ବାସ ସ୍ଥାନ ।
ସୂଚିମୁଖ କୀଟଗଣ ଦେହପାଶେ ବେଢ଼ି
ଖାଉଥାନ୍ତି ଶରୀରରୁ ରକତକୁ କାଢ଼ି ।
ଷୋହଳ କୋଟି ଧନୁର ସମାନ ଆୟତ
ଗଭୀର କୂପ ପର୍ଯ୍ୟନ୍ତ ଅଛି ଏକ ଗର୍ତ୍ତ ।
ସବୁକାଳେ ପାପୀମାନେ ପଡ଼ିଥାନ୍ତି ତହିଁ
ତା ପାଶରେ ସୁବିସ୍ତୃତ ପ୍ରାନ୍ତର ଅଟଇ ।
ବଡ଼ ବଡ଼ ହସ୍ତୀମାନେ ଅଛନ୍ତି ସେଠାରେ
ଘେରିକି ଥିବାରୁ ଦିଶେ କୁଣ୍ଡ ପରକାରେ ।
ସେ ମଧ୍ୟରେ ମୋର ଦୂତେ ପାତକୀଙ୍କୁ ନେଇ
ହାତ ଗୋଡ଼ ବାନ୍ଧି ବଳେ ଦିଅନ୍ତି ପକାଇ ।
ଗଜମାନଙ୍କର ତୀକ୍ଷ୍ଣ ଦନ୍ତ ଆଘାତରେ
ପାପୀଙ୍କ ଦେହରୁ ରକ୍ତ ବହୁତ ବାହାରେ ।

ଯେଉଁ ରକ୍ତରେ ଅନେକ ପଙ୍କ ଜାତହୋଇ
ଅନ୍ୟ ପାପୀଙ୍କ ଦେହକୁ ପକାନ୍ତି ଡୁବାଇ ।
ଶତେ ଧନୁ ପରିମାଣ ଯେ କୁଣ୍ଡ ବିସ୍ତୃତ
ଗଜ ଦଂଶନ ନାମରେ ଅଟଇ ବିଖ୍ୟାତ ।
ବିଂଶ ଧନୁ ସମାନ ଗୋମୁଖ ଆକୃତି
ଗୋମୁଖ କୁଣ୍ଡ ଦେଖିଲେ ଜାତହୁଏ ଭୀତି ।
ଦ୍ୱିକୋଶ ପ୍ରମାଣରେ କୁଣ୍ଡର ସମାନ
ଅନ୍ଧକାରମୟ ଏକ କୁଣ୍ଡ ଅଛି ଜାଣ ।
ଆଉ ଏକ ସ୍ଥାନେ ଲକ୍ଷେ ମନୁଷ୍ୟ ଗଭୀର
ତପତ ତଇଳ କୁଣ୍ଡ ଅତ୍ୟନ୍ତ ନିଷ୍ଠୁର ।
ଅଛନ୍ତି ତହିଁରେ ପାପୀଗଣ ସବୁବେଳେ
ଛଟପଟ ହେଉଥାନ୍ତି ପଡ଼ିଣ ବିକଳେ ।
ଯେଉଁଠାରେ ତପ୍ତ ଲୌହ ତାମ୍ର କୁଣ୍ଡ ଅଛି
ଜ୍ୱଳନ୍ତ ଅନଳ ପ୍ରାୟ ନେତ୍ରକୁ ଦିଶୁଛି ।
ପ୍ରଧାନ ପାତକୀମାନେ ପଡ଼ନ୍ତି ତହିଁରେ
ଯମ ଦୂତଙ୍କ ହାତେ ମାଡ଼ ଖାଇ ସନ୍ତତରେ ।
ଅନ୍ଧାର ହେଉଛି ପରସ୍ପରର କେ କାହାକୁ
ନ ଦେଖି କାତରେ ଗ୍ଳାନ କରନ୍ତି ମନକୁ ।
ଯେଉଁସ୍ଥାନେ ମୋର ଦୂତେ ପାତକୀଙ୍କୁ ଧରି
ମାରନ୍ତି ବିବିଧ ମାଡ଼ ଭର୍ତ୍ସନା କରି ।
କେତେକ ପାପୀଙ୍କୁ ଉଚ୍ଚସ୍ଥାନେ ଟେକାନେଇ
କଚାଡ଼ି ଦିଅନ୍ତି ତଳେ ଦୂରୁ ଫିଙ୍ଗି ଦେଇ ।
ସକଳ ନରକ କୁଣ୍ଡ ଯେତେ ପାପୀଜନ
ଅଛନ୍ତି କୁମ୍ଭୀପାକରେ ତାର ଦ୍ୱିଗୁଣ ।
ସନ୍ତତରେ ବଡ଼ ରୋଗ ନାନା କଷ୍ଟ
ଭୋଗୁଛନ୍ତି ସୁମରିଣ ଆପଣା ଅଦୃଷ୍ଟ ।
କୁମ୍ଭୀପାକ ଅଟେ ସବୁ କୁଣ୍ଡରେ ପ୍ରଧାନ
କାଳସୂତ୍ରରେ ନିବଦ୍ଧ ଯେଉଁ ପାପୀଗଣ ।
ସର୍ବଦା ଯେ କୁଣ୍ଡ ମଧ୍ୟ ରହିଥାନ୍ତି ବୁଡ଼ି
ପାଶରେ ଥାଆନ୍ତି ମୋର ଦୂତଗଣେ ବେଢ଼ି ।
କେତେବେଳେ ଥରେ ଥରେ ଉପରକୁ ଟେକି
ପୁଣି ବୁଡ଼ାଇ ଦିଅନ୍ତି ଧରିଣ ଚୁଟିକି ।
ରୋଗ ଦେହରେ ପାପୀଏ କଷ୍ଟ ପାଉଥାନ୍ତି
ସେ ଦେହ ବିନଷ୍ଟ ହୁଏ ନାହିଁ ଗୋ ସୁଦନ୍ତୀ ।
ବିକଳରେ ଉଚ୍ଚେ ଡାକ ଦିଅନ୍ତି ସେ ଯେବେ
ମୁଦ୍ଗରରେ ମୋର ଦୂତେ ପିଟନ୍ତି ତେବେ ।

ରୁଧିର ଉଦକ ପୂରିଥାଏ ସେ କୁଣ୍ଡରେ
କାଳସୂତ୍ର ନାମେ ଖ୍ୟାତ ଅଟଇ ଲୋକରେ ।
ଅବଟ ନାମରେ କୂପ ଆକୃତିକ ଧରି
କୁଣ୍ଡଟିଏ ଅଛି ତପ୍ତ ଉଦକରେ ପୂରି ।
ସହସ୍ର ଧନୁ ପ୍ରମାଣ ତାହାର ଆୟତ
ସର୍ବଦା ପାପୀଏ ସେହି କୁଣ୍ଡେ ପଡ଼ିଥାନ୍ତି ।
ମୋହର ଦୂତଙ୍କଠାରୁ ତାଡ଼ନାକୁ ସହି
କ୍ରନ୍ଦନ କରନ୍ତି ଉଚ୍ଚସ୍ୱରେ ଦୁଃଖୀ ହୋଇ ।
ଧନୁଶତ ଆକୃତିରେ ଆଉ ଏକ ଗର୍ତ୍ତ
ଅଛି ପାପୀଗଣ ତହିଁ ପଡ଼ନ୍ତି ନିୟତ ।
ତହିଁରେ ଥିବା ଜଳକୁ ଛୁଇଁବାର କ୍ଷଣେ
ପ୍ରବେଶ କରନ୍ତି ଆସି ଦେହେ ବ୍ୟାଧିଗଣେ ।
ଅରୁନ୍ତୁଦ ନାମେ ଆଉ ଅଛି ଏକ କୁଣ୍ଡ
ପାତକି ପାଆନ୍ତି ତହିଁ ଘୋରତର ଦଣ୍ଡ ।
ବିବିଧ ବ୍ରଣ ଯୋଗରେ ବ୍ୟଥା ପାଉଥାନ୍ତି
କ୍ଷଣେ କ୍ଷଣେ ହାହାକାର ଶବଦ ଶୁଣନ୍ତି ।
ଜ୍ୱଳନ୍ତ ଅନଳ ତପ୍ତ ପାଉଁଶରେ ପୂର୍ଣ୍ଣ
ପାଂଶୁଭୋଜ ନାମେ ଯେଉଁ କୁଣ୍ଡ ଅଛି ଜାଣ ।
ତହିଁରେ ପାପୀଏ ପଡ଼ି ପାଉଁଶକୁ ଭକ୍ଷି
ଆରତେ ନାଦ କରନ୍ତି ହୋଇ ନଷ୍ଟମାକ୍ଷ ।
କ୍ରୋଶେ ଆୟତନ ପାଶ ବେଷ୍ଟନ ନାମରେ
ଯେଉଁ କୁଣ୍ଡ ଗୋଟି ଅଛି ତାହାର ମଧ୍ୟରେ ।
ପଡ଼ିଲେ ପାତକୀ ପାଶେ ବଦ୍ଧହୋଇ କରି
କାନ୍ଦୁଥାନ୍ତି ବିକଳରେ କରମ ସୁମରି ।
ପଡ଼ିବା ମାତ୍ରକେ ଯେଉଁ କୁଣ୍ଡେ ପାପୀଜନ
ଶୂଳରେ ବିଦାରି ହୋଇଯାଏ ଅଙ୍ଗମାନ ।
ସହସ୍ର ଧନୁ ପ୍ରମାଣ ଅଟଇ ସେ ଜାଣ
ଶୂଳପ୍ରୋତ ବୋଲି ତାର ହୋଇଅଛି ନାମ ।
ଯହିଁରେ ପଡ଼ିଲେ ପାପୀ ତୁଷାର ଜଳରେ
ବୁଡ଼ିଯିବାରୁ ଶରୀର କମ୍ପେ ଥରହରେ ।
ଅର୍ଦ୍ଧ କୋଶ ପରମାଣ ସେ କୁଣ୍ଡ ଅଟଇ
ପ୍ରକମ୍ପନ ବୋଲିକରି ନାମ ଅଛି ବହି ।
ଉଲ୍କାଗଣ ପୂର୍ଣ୍ଣ ହୋଇ ସହସ୍ର ଧନୁର
ପରମାଣେ ଅଛି ଏକ କୁଣ୍ଡ ଭୟଙ୍କର ।
ଲକ୍ଷ ପୁରୁଷ ପ୍ରମାଣ ଗଭୀର ଅଟଇ
ଧନୁଶତ ଆୟତନ ସେ କୁଣ୍ଡ ଅଛଇ ।
ନାନା ପ୍ରକାର କ୍ରିମିରେ ଅଛଇ ସେ ଯୁକ୍ତ
ଦେଖିଲେ ମନ ମଧ୍ୟରେ ଭୟ ହୁଏ ଜାତ ।
ଅତ୍ୟନ୍ତ ଅନ୍ଧାରମୟ ବର୍ତ୍ତୁଳ ଆକୃତି
କୂପପରି ଯେଉଁ କୁଣ୍ଡ ଅଛି ତାହା କତି ।
ତହିଁରେ ପାତକୀଗଣ ପଡ଼ି ପରସ୍ପରେ
ଦେଖାହୋଇ ନ ପାରନ୍ତି ଘୋର ଅନ୍ଧକାରେ ।
ତାତିଲା ଜଳରେ ଦେହ ଯାଉଥାଏ ପୋଡ଼ି
ଚକ୍ଷୁପାଶୁ କୀଟଗଣ ଖାଉଥାନ୍ତି ଭିଡ଼ି ।
ତାହାକୁହିଁ ଅନ୍ଧକୂପ ବୋଲିକରି ଜାଣ
ପାପୀଙ୍କୁ ଦଣ୍ଡିବା ପାଇଁ ହୋଇଛି ନିର୍ମାଣ ।
ଯହିଁରେ ଅନେକ ଶସ୍ତ୍ର ଆଘାତକୁ ପାଇ
ପୀଡ଼ା ପାଉଥାନ୍ତି ପାପୀଗଣେ ଦୁଃଖୀ ହୋଇ ।
ସହସ୍ର ଧନୁ ପ୍ରମାଣ ବେଧନ ତା ନାମ
ତାହାକୁ ଦେଖିଲେ ହୋଇଯାଏ ମତିଭ୍ରମ ।
ଦଣ୍ଡ ତାଡ଼ନ ନାମରେ ଅଛି କୁଣ୍ଡଟାଏ
ଷୋଡ଼ଶ ଧନୁ ପ୍ରମାଣ ହେବ ତାର କାୟେ ।
ତହିଁରେ ପାପୀଙ୍କୁ ନେଇ ପକାଇ ମୋ ଦୂତେ
ଦଣ୍ଡ ହସ୍ତେ ଘେନି ପିଟୁଥାନ୍ତି ଅବିରତେ ।
ଜାଲରେ ପଡ଼ିଲା ପରି କ୍ଷୁଦ୍ର ମତ୍ସ୍ୟକୁଳ
ଯହିଁରେ ପଡ଼ି ପାପୀଏ ହୁଅନ୍ତି ଆକୁଳ ।
ବିଂଶତି ଧନୁ ପ୍ରମାଣ ସେ କୁଣ୍ଡ ଅଟଇ
ଜାଲବନ୍ଧ ବୋଲି କରି ନାମ ଅଛି ବହି ।
ଯେଉଁ ନରକ କୁଣ୍ଡରେ ପାପୀଙ୍କ ଶରୀର
ଚୂର୍ଣ୍ଣ ହୁଏ ବାଜି ମୋର ଦୂତଙ୍କ ପ୍ରହାର ।
କୋଟିଏ ପୁରୁଷ ଅଟେ ତାହାର ପ୍ରମାଣ
ତା ମଧ୍ୟରେ ରହିଥାନ୍ତି ଲୌହ ବେଦୀମାନ ।
ପୁରଅଛି ପୁଣି ତହିଁ ନିଷ୍ଟୁ ଅନ୍ଧାର
ଦେହ ଚୂର୍ଣ୍ଣକୁଣ୍ଡ ବୋଲି ନାମ ଅଟେ ତାର ।
ଯହିଁରେ ମୋ ଦୂତଙ୍କର ମୂଷଳ ଆଘାତ
ପାତକୀଙ୍କ ଦେହସବୁ କରଇ ଦଳିତ ।
ଦଳନକୁଣ୍ଡ ନାମଟି ବହିଅଛି ସେହି
ଷୋଡ଼ଶ ଧନୁ ପ୍ରମାଣ ବିସ୍ତୃତ ଅଟଇ ।
ଆଉ ଏକ କୁଣ୍ଡ ତାର ପାଶେ ଅଛି ରହି
ତପତ ବାଲୁକାପୂର୍ଣ୍ଣ ହୋଇଅଛି ତହିଁ ।
ପାପୀଗଣ ସେ କୁଣ୍ଡରେ ପଡ଼ିବା ମାତ୍ରରେ
ନିସ୍ତୁ ହୁ କଣ୍ଠ ତାଳୁ ଜଳନ୍ତି ସନ୍ତାପରେ ।

ଶତପୁରୁଷ ପ୍ରମାଣ ଅଟଇ ତାହାର
ଅତ୍ୟନ୍ତ ଅନ୍ଧାର ପୁଣି ବିଶେଷ ଘୋର ।
ଆହାର ପାନ ସକାଶେ ନ ମିଳଇ କିଛି
ସେହିଟି ଶୋଷଣ କୁଣ୍ଡ ନାମକୁ ବହିଛି ।
ସର୍ବରେ ପୂର୍ଣ୍ଣ ହୋଇଛି ଚର୍ମଧୂଆ ନୀର
ମଳମୂତ୍ର ପୂର୍ଣ୍ଣ ହୋଇ ରହିଛି ଆବର ।
ଅତ୍ୟନ୍ତ ଦୁର୍ଗନ୍ଧ ସେହି ଘୃଣିତ ଆକୃତି
ଲକ୍ଷ ଲକ୍ଷ ପାପୀ ସେହି କୁଣ୍ଡେ ପଡ଼ିଥାନ୍ତି ।
ଜସକୁଣ୍ଡ ତାର ନାମ ଅଟଇଟି ଜାଣ
ଚଉକୋଶ ପରିଯନ୍ତେ ଅଟଇ ତା ପ୍ରମାଣ ।
ସର୍ପାକାର ମୁଖ ଧନୁ ଦ୍ୱାଦଶ ବିସ୍ତୃତ
ତପତ ଲୌହ ବାଲୁକା ଅଛଇ ବହୁତ ।
ଏ ବାହାରେ ମଧ୍ୟଗତ ଅନଳ ଶିଖରେ
ପୂରି ରହିଥାଏ ଯାର ମୁଖ ନିରନ୍ତରେ ।
ବିଂଶତି ଧନୁ ପ୍ରମାଣ ସେ କୁଣ୍ଡ ଅଟଇ
ମହାପାପୀମାନେ ଦଣ୍ଡ ପାଉଥାନ୍ତି ତହିଁ ।
ଜ୍ୱାଳା ମୁଖ ବୋଲି ନାମ ଅଟଇ ତାହାର
ତାହାକୁ ଦେଖିଲେ ଚିତ୍ତ ହୁଏ ଥରହର ।
ଦେଖିଲା ମାତ୍ରକେ ପାପୀ ମୂର୍ଚ୍ଛା ହୋଇଯାଏ
ମୁହୂର୍ତ୍ତିକ ମଧ୍ୟେ ଅଙ୍ଗ ତାର ଦଗ୍ଧ ହୁଏ ।

ଆଉ ଏକ କୁଣ୍ଡ ତାର ପାଶେ ଅଛି ରହି
ଜିହ୍ମକ କୁଣ୍ଡ ବୋଲିଣ ତା ନାମ ଅଟଇ ।
ଅନ୍ଧକାର-କୂପ ପରି ଅଟଇ ସେ ତହିଁ
ପାପୀମାନେ ପଡ଼ି ତହିଁ ହେଉଥାନ୍ତି ବ୍ୟସ୍ତ ।
ସର୍ବଦା ଧୂମରେ ଅନ୍ଧ ହୋଇଥାନ୍ତି ସେହି
ନିଶ୍ୱାସ ମାରିବାପାଇଁ ସ୍ଥାନ ନ ମିଳଇ ।
ଧୂମ୍ରକୁଣ୍ଡ ବୋଲି ନାମ ଅଟଇ ତାହାର
ଶତକୋଟି ଧନୁ ପରିମାଣେ ଲମ୍ବ ତାର
ଅଗଣିତ ବିଷଧର ସର୍ପ ଛନ୍ତି ରହି
ଶତଧନୁ ପରିମାଣେ ତା ଲମ୍ବ ଅଟଇ ।
ତହିଁରେ ପାତକମାନେ ଯଦ୍ୟପି ପଡ଼ନ୍ତି
ବିଷଧର ସର୍ପମାନେ ତାହାଙ୍କୁ ବାନ୍ଧନ୍ତି ।
ନାଗବେଷ୍ଟନ ବୋଲିଣ ନାମ ଅଟଇ ତାର
ଯନ୍ତ୍ରଣା ବଖାଣିଲେ ସାବିତ୍ରୀ ଅଗର ।
ଏହିପରି ଛୟାଅଶି କୁଣ୍ଡର ବୃତ୍ତାନ୍ତ
ବିସ୍ତାରି ତୁମ୍ଭ ଆଗରେ କହିଲି ସମସ୍ତ ।
ଆଉ କିଛି ଶୁଣିବାକୁ ଯେବେ ଅଛି ମନ
ପଚାର ତୁମ୍ଭ ଅଗ୍ରତେ କରିବି ବଖାଣ ।
ଏମନ୍ତ କହିଣ ଯମ ମଉନ ହୋଇଲେ
ଅଧମ କ୍ଷେତ୍ର ମୋହନ ଗୀତେ ଭାବି ବୋଲେ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସାବିତ୍ରୀଙ୍କ ଆଗରେ ଯମଙ୍କର କୁଣ୍ଡ ସ୍ୱରୂପ ବର୍ଣ୍ଣନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।**

—*—

## ଷଡ଼୍‌ବିଂଶ ଅଧ୍ୟାୟ

### ଯମଙ୍କର ଶ୍ରୀକୃଷ୍ଣ ମାହାତ୍ମ୍ୟ ବର୍ଣ୍ଣନ ଓ ସ୍ୱପୁରକୁ ଗମନ କରିବା

ସାବିତ୍ରୀ ବୋଇଲେ ବେଦ ଧର୍ମ ଅବତାର
ସକଳ କାମନା ପୂର୍ଣ୍ଣ ହୋଇଲା ମୋହର ।
ଦୟାକରି ଏବେ ମୋତେ ଶ୍ରୀକୃଷ୍ଣ ଭକତି
ପ୍ରଦାନ କର ଆପଣ ଘେନ ମୋ ବିନତି ।
ଆଉ ଅନ୍ୟ ବର ଇଚ୍ଛା କରୁ ନାହିଁ ମୁହିଁ
ଶ୍ରୀକୃଷ୍ଣ ଗୁଣ କୀର୍ତ୍ତନ କହନ୍ତୁ ବିଚାରି ।
ପ୍ରଧାନ ଅଟଇ ଯାହା ସକଳ ଧର୍ମରେ
ନୁହଇ ନରକ ଭୋଗ ଯାହା ଭବବନ୍ଧରେ ।

ସର୍ବ ଅମଙ୍ଗଳ ନିବାରକ ଯେ ଅଟଇ
ଆବର ମୁକତିଯାର କାରଣକୁ ଦିଅଇ ।
ଯାହା ହେଲେ କର୍ମବୃକ୍ଷ ହୁଅଇ ବିନାଶ
ଏ ବାହାରେ ତାରଲୁତ ପାପ ହୁଏ ଧ୍ୱଂସ ।
କେତେ ପ୍ରକାର ମୁକତି ଅଛି ଜଗତରେ
ତହିଁର ଲକ୍ଷଣ ଅବା କେଉଁ ପ୍ରକାରେ ।
ହରିଭକ୍ତି ଯୋଗେ ଲୋକ କେଉଁ ମୁକ୍ତି ପାଏ
ବତାଇଣ ତାହା ମୋତେ କହ କୃପାମୟେ ।

ସ୍ତ୍ରୀଜନରେ ପତିବ୍ରତା ନମ୍ରଜ୍ଞାନପ୍ରଦ
ଜାଣି ନ ପାରଇ ଭଲ ମନ୍ଦ କଥାମାନ ।
କେଉଁ ଜ୍ଞାନ ପତିବ୍ରତାପକ୍ଷେ ଅଟେ ସାରଭୂତ
ଯେ କଥା ମଧ୍ୟ ମୋ ଆଗେ କହ ଧର୍ମଯୁତ ।
ସର୍ବଦାନ ଉପବାସ ତୀର୍ଥସ୍ନାନ ତପ
ଏଥିରେ ଖଣ୍ଡିତ ହୋଇଥାଏ ପୂର୍ବପାପ ।
କିନ୍ତୁ ଯେ ଅଜ୍ଞାନ ଲୋକେ କରେ ଜ୍ଞାନଦାନ
ଅନ୍ୟ ଧର୍ମ ନ ହୁଅଇ ତାହାର ସମାନ ।
ପିତାଠାରୁ ଶତଗୁଣେ ଅଧିକ ଜନନୀ
ମାତାଙ୍କଠାରୁ ଅଧିକ ଜ୍ଞାନଦାତା ପୁଣି ।
ଏ ସକାଶୁ ଆପଣଙ୍କ ପାଦପଦ୍ମେ ମୁହିଁ
ପ୍ରଣାମ କରୁଛି ଜ୍ଞାନ ଦିଅ ତୋଷ ବହି ।
ଏହିରୂପେ ପାର୍ବତୀଙ୍କ ବଚନକୁ ଶୁଣି
ହରଷରେ ପଞ୍ଚାନନ ପ୍ରକାଶିଲେ ବାଣୀ ।
ବୋଇଲେ ଗୋ ପତିବ୍ରତା ସତୀ ଶିରୋମଣି
ତୁମ୍ଭର ଉକତମୟ ଭାବ ମନେ ଗୁଣି ।
ଯେଉଁ ଯେଉଁ ବର ତୁମ୍ଭେ କରିଥିଲ ଇଷ୍ଟ
ପୂର୍ବରୁ ଦେଇଛି ସବୁ ନାହିଁ ଅବଶିଷ୍ଟ ।
ଏବେ ଯେବେ ଶ୍ରୀକୃଷ୍ଣଙ୍କ ଗୁଣ ସଂକୀର୍ତ୍ତନ
ଶୁଣିବାକୁ ପୁଣି ବଳୁଅଛି ତୁମ୍ଭ ମନ ।
ତେମନ୍ତ ହେଲେ ମୁଁ ତାହା କହିବି ନିଶ୍ଚୟ
ସାକ୍ଷାତରେ ଅଟଇ ସେ ସୁଧାରସମୟ ।
ସହସ୍ର ମୁଖରେ ଶେଷଦେବ ଯେଉଁ କଥା
କହିବାକୁ ସମରଥ ନୁହଇ ସର୍ବଥା ।
ସେହିପରି ପଞ୍ଚମୁଖେ ଦେବ ତ୍ରିଲୋଚନ
ବର୍ଣ୍ଣନା କରିବାପାଇଁ ନୁହଇ ଭାଜନ ।
ଜଗତ ବିଧାନକର୍ତ୍ତା ବ୍ରହ୍ମା ପ୍ରଜାପତି
ଚାରିମୁଖେ ଗାଇବାକୁ ସମର୍ଥ ନୁହନ୍ତି ।
ସର୍ବ ଜ୍ଞାନମୟ ବିଷ୍ଣୁ ଶଙ୍ଖ ଚକ୍ରଧାରୀ
ସମ୍ପୂର୍ଣ୍ଣରୂପେ ବର୍ଣ୍ଣନା ନ ପାରନ୍ତି କରି ।
ଷଡ଼ମୁଖେ କାର୍ତ୍ତିକେୟ ଦିନରାତି ଘୋଷି
ଶେଷ କରି ନ ପାରନ୍ତି ଯେଉଁ ଗୁଣରାଶି ।
ଆଉ ଯେ ଗଣପତି ଯୋଗୀଗଣଗୁରୁ
କହି ନ ପାରନ୍ତି ଯାହେ ଶତେକ ଭାଗରୁ ।
ସକଳ ଶାସ୍ତ୍ରରେ ସାର ଚାରିଗୋଟି ବେଦ
ତହିଁରେ ତ ନାହିଁ ଶ୍ରୀକୃଷ୍ଣଙ୍କ ଗୁଣଭେଦ ।

ତିନି ଭୁବନରେ ଯେତେ ଅଛନ୍ତି ପଣ୍ଡିତ
ସମସ୍ତ ଭାବରେ ତାହାଙ୍କର ଅବିଦିତ ।
ବହୁତ ପ୍ରଯତ୍ନ କରି ଦେବୀ ସରସ୍ୱତୀ
ଯହିଁରୁ କିଞ୍ଚିତ ମାତ୍ର କହି ନ ପାରନ୍ତି ।
ସନତ୍କୁମାର ଧର୍ମଋଷି ସନାତନ
ସନନ୍ଦ ସନକ ଆଦି ବ୍ରହ୍ମଋଷିଗଣ ।
ବର୍ଣ୍ଣିବାକୁ ସମରଥ ନୁହନ୍ତି ଯେ ସେହି
ଅନ୍ୟଲୋକେ ଅବା କାହୁଁ ପାରିବେ ତା କହି ।
ସିଦ୍ଧ ମହାଯୋଗୀ ମୁନି ଋଷି ଅଗୋଚର
ଅଟଇ ତ ଆମ୍ଭେ ଅବା କେତେକ ମାତର ।
ତଥାପି ଯା ଗୁରୁମୁଖୁଁ ଶୁଣିଅଛି ମୁହିଁ
କହିବି ଯେତିକ ମାତ୍ର ଶୁଣ ମନଦେଇ ।
ବ୍ରହ୍ମା ବିଷ୍ଣୁ ଶିବଆଦି ଦେବତା ଏ ନିତି
ଯେଉଁ ଗୁଣକୁ ସର୍ବଦା ଧ୍ୟାନ କରୁଥାନ୍ତି ।
କେବଳ ସେ ପ୍ରଭୁଙ୍କର ଭକ୍ତ ଯେଉଁମାନେ
ସେହି ଏକା ସାଧିକରି ପାରନ୍ତି ଯତନେ ।
ଅନ୍ୟ ଲୋକଙ୍କ ମଧ୍ୟରେ କେତେ ଯତି ବ୍ରତୀ
କିଞ୍ଚିତ ମାତ୍ରକ ବୁଝି ପାରନ୍ତି ଗୋ ସତୀ ।
କେତେକ ପୁଣି ତହିଁରୁ ଅଧିକରେ ବ୍ରହ୍ମା
ଜାଣି ପାରିଛନ୍ତି ସେ ତ ମହତ ମହିମା ।
ତହିଁରୁ ଅଧିକ କିଛି ଜାଣନ୍ତି ଗଣେଶ
ସେ ସକାଶୁ ଅଟନ୍ତି ସେ ଜ୍ଞାନୀଗଣଈଶ ।
ସମସ୍ତଙ୍କଠାରୁ ଶିବ ବହୁତ ଜାଣନ୍ତି
ଶ୍ରୀକୃଷ୍ଣଙ୍କଠାରୁ ପୂର୍ବେ ଶୁଣି ସେ ଅଛନ୍ତି ।
ଏକଦିନେ ଗୋଲୋକରେ ରାସମଣ୍ଡଳରେ
ପରମ ପୁଣ୍ୟଦ ରମ୍ୟ ଏକାନ୍ତ ସ୍ଥାନରେ ।
ଶିବଙ୍କ ଆଗରେ ନିଜେ ପ୍ରଭୁ ରାଧାପତି
କଲେ ଆପଣାର ଗୁଣ କୀର୍ତ୍ତନ ବିବୃତି ।
କୈଳାସ ଭବନେ ମହାଦେବ ତ୍ରିପୁରାରି
ଧର୍ମଙ୍କ ଆଗରେ ତାହା କହିଲେ ବିସ୍ତାରି ।
ପୁଷ୍କର ତୀର୍ଥରେ ଧର୍ମ ସୂର୍ଯ୍ୟଙ୍କ ଆଗରେ
କହିଲେ ପୁଣି ସେ କଥା ଅତି ସାଦରରେ ।
ଆରାଧନା କରି ତାହା ମୋର ପିତା ମୋତେ
ପୁତ୍ର ସ୍ୱରୂପ ପାଇଲେ କେତେଦିନ ଅନ୍ତେ ।
ଜନମକାଳରୁ ମୋର ବିଷୟ ଭୋଗରେ
ଆସକ୍ତ ନ ହେଲା ମନ କେଉଁଣ ପ୍ରକାରେ ।

ଯେ ସକାଶୁଁ ଗୃହ ତେଜି ତପ କରିବାକୁ
ଯିବାପାଇଁ ବାହାରିଲି ଅରଣ୍ୟ ମଧ୍ୟକୁ ।
ଯେ ସମୟେ ପିତା ମୋତେ ଦୟାନ୍ତେ ପାଶରେ
ଶ୍ରୀକୃଷ୍ଣ ଗୁଣ କୀର୍ତ୍ତନ କଲେ ତୋଷରେ ।
ଯେଉଁରୂପେ ତାଙ୍କଠାରୁ କରିଛୁ ଶ୍ରବଣ
ଆମୂଳ କର କହିବ ମନଦେଇ ଶୁଣ ।
ସେ ପ୍ରଭୁ ପରମବ୍ରହ୍ମ ପରମ ପୁରୁଷ
ତାହାଙ୍କର ଗୁଣରାଶି ଅଟଇ ଅଶେଷ ।
ତାହାକୁ ସେ ନିଜେ ମଧ୍ୟ ଜାଣି ନ ପାରନ୍ତି
ଆଉ ଅବା ଜାଣିବାକୁ କାହାର ଶକତି ।
ସକଳ ଅମ୍ଭୁରେ ସେହି ରହିଛନ୍ତି ପରି
ସମସ୍ତ କାରଣ ହେତୁ ଅଟନ୍ତି ସେଥର ।
ସର୍ବେଶ୍ୱର ଆନନ୍ଦମୂଳ ସର୍ବରୂପଧର
ନିତ୍ୟରୂପୀ ନିତ୍ୟଦେହୀ ପ୍ରକୃତି ରୂପର ।
ନିରଙ୍କୁଶ ଶଙ୍କାହୀନ ନିର୍ଗୁଣ ସ୍ୱରୂପୀ
ନିର୍ଲିପ୍ତ ସକଳସାକ୍ଷୀ ସର୍ବାଧାର ରୂପ ।
ପ୍ରକୃତି ଅଟନ୍ତି ତାଙ୍କ ଅଙ୍ଗରୁ ସମ୍ଭୂତ
ଆବର ଯେ ପ୍ରାକୃତିକ ଅନନ୍ତ ଜଗତ ।
ଭକ୍ତଙ୍କର ମନୋରଥ ସଂପାଦିବା ପାଇଁ
ପ୍ରକାଶିତ ହୁଅନ୍ତି ସେ ନାନାରୂପ ବହି ।
ଅତ୍ୟନ୍ତ ସୁନ୍ଦର ଦେହ ମନୋହର ଛବି
ସମାନ ନୋହିବେ ତେଜେ କୋଟିକୋଟି ରବି ।
ନବ ଜଳଧର ପ୍ରାୟେ ଶ୍ୟାମଳ ବରନ
କିଶୋର ବୟସ ଗୋପବେଶ ଶୋଭନ ।
ଝଲସି ପଡ଼ଇ କୋଟି କନ୍ଦର୍ପ ଲାବଣ୍ୟ
ଲୀଳାମୟ ସୁରେଶ୍ୱର ଜଗତ ପାବନ ।
ଶରତ ମଧ୍ୟାହ୍ନକାଳ ପଦ୍ମପତ୍ର ପରି
ଦିଶଇ ନୟନଯୁଗ ବିଶେଷ ମାଧୁରୀ ।
ଶରତ ପାର୍ବଣଚନ୍ଦ୍ର ଶୋଭାରୁ ଅଧିକ
ବଦନ ମଣ୍ଡଳ ପ୍ରଭା ଦିଶେ ଜକ ଜକ ।
ଅମୂଲ୍ୟ ରତ୍ନ ନିର୍ମିତ ଦିବ୍ୟ ଅଳଙ୍କାର
ପୂର୍ଣ୍ଣ ହୋଇବାରୁ ଅଙ୍ଗ ଅତି ମନୋହର ।
ସୁରଙ୍ଗ ଅଧରେ ଶୋହେ ଶୁଭ୍ର ମନ୍ଦହାସ
କଟିତଟେ ବିରାଜିତ ଝୀନ ପୀତବାସ ।
ପରମବ୍ରହ୍ମ ସ୍ୱରୂପ ଦେବ ଦଇତ୍ୟାରି
ବ୍ରହ୍ମତେଜ ବିରାଜିତ ସର୍ବ ଅଙ୍ଗେ ପୂରି ।

ସ୍ୱକୃଶ୍ୟ କାନ୍ତମୂରତି ରାଧିକା ଦର୍ପିତ
ମୁଦିତ ଗୋପ ରମଣୀ ଗଣରେ ବେଷ୍ଟିତ ।
ରାସମଣ୍ଡଳ ମଧ୍ୟରେ ରତ୍ନ ସିଂହାସନେ
ବିଜୟେ ଶ୍ରୀ ଗୋପୀନାଥ ପାର୍ଷଦ ଗହଣେ ।
ଦୂରଲମ୍ବ ବନମାଳା ବିଭୂଷିତ ଅଙ୍ଗ
ମଧୁର ବାଦନ ବଂଶୀ ବେଣୁଓଷ୍ଠ ସଙ୍ଗ ।
କଉସ୍ତୁଭ ମଣିଯୋଗେ ରମ୍ୟ ବକ୍ଷସ୍ଥଳ
କର୍ପୂର ଚନ୍ଦନ ଲାଗି ଶ୍ରୀଅଙ୍ଗ ଉଜ୍ଜ୍ୱଳ ।
ସୁଗନ୍ଧ ଚମ୍ପକମାଳା ହୃଦୟରେ ସାଜେ
ତା ସଙ୍ଗେ ମାଳତୀ ମାଳା ଶୋଭାରେ ବିରାଜେ ।
ଏମନ୍ତ ରୂପକୁ ଭକ୍ତଗଣ ବସି ନିତି
ଆନନ୍ଦିତ ହୋଇ ମନେ ଭାବନା କରନ୍ତି ।
ଯାହାଙ୍କ ଭୟରେ ବ୍ରହ୍ମା ସୃଷ୍ଟି ସରଜନ
କରନ୍ତି ଆବର କର୍ମଫଳକୁ ପ୍ରଦାନ ।
ପାଳନା କରନ୍ତି ବିଷ୍ଣୁ ଯାହାଙ୍କ ଆଜ୍ଞାରେ
ସଂହାରନ୍ତି କାଳଅଗ୍ନି ରୁଦ୍ର ସେ ପ୍ରକାରେ ।
ଆବର ସେ ମୃତ୍ୟୁଞ୍ଜୟ ଦେବ ତ୍ରିଲୋଚନ
ଯାହାଙ୍କଠାରୁ ଅଭ୍ୟାସ କଲେ ବ୍ରହ୍ମଜ୍ଞାନ ।
ଜଗତରେ ସିଦ୍ଧେଶ୍ୱର ଯୋଗୀ ବୋଲାଇଲେ
ଦିବ୍ୟ ଭକତି ବୈରାଗ୍ୟ ଗୁଣକୁ ପାଇଲେ ।
ଯାହାଙ୍କ ପ୍ରସାଦେ ବାତ ଶୀଘ୍ରଗାମୀ ହୋଇ
ପ୍ରାଣରୂପେ ସଂଜୀବିତ କରୁଅଛି ମହୀ ।
କିରଣ ଦିଅଇ ସୂର୍ଯ୍ୟ ଯାହାଙ୍କ ଭୟରେ
ବରଷା କରନ୍ତି ଇନ୍ଦ୍ର ଯଥାର୍ଥ କାଳରେ ।
ମୃତ୍ୟୁ ଯାହାଙ୍କର ଆଜ୍ଞା ପାଳିବାର ପାଇଁ
ତ୍ରିଲୋକ ନିରନ୍ତରେ ଭ୍ରମଣ କରଇ ।
ଯାହାଙ୍କର ଆଦେଶରେ ଦାହ କରେ ଅଗ୍ନି
ସୁଶୀତଳ ହୁଏ ଜଳ ଯାହା ଆଜ୍ଞା ଘେନି ।
ଦିଗପାଳମାନେ ଦଣ୍ଡଧରକୁ ଆବୋରି
ରହିଥାନ୍ତି ସବୁବେଳେ ଜଗୁଆଳ ପରି ।
ଆକାଶରେ ଗ୍ରହସଙ୍ଗେ ନକ୍ଷତ୍ରମଣ୍ଡଳ
ଭ୍ରମଇ ଯାହାଙ୍କ ବୋଲେ ଜାଣି ନ ଲବେକ ।
ବୃକ୍ଷମାନ ଯାହାଙ୍କର ଭୟେ ପୁଷ୍ପଫଳେ
ପୂର୍ଣ୍ଣ ହୁଅନ୍ତି ସମସ୍ତ ଅବନୀମଣ୍ଡଳେ ।
ପେକ୍ଷପଣି ଫଳସବୁ ଖାଇଣ ପଡ଼ନ୍ତି
ଅଶେଷ ଜୀବଙ୍କର ସେ ମଙ୍ଗଳ କରନ୍ତି ।

କେତେକ ପାଦପ ମଧ୍ୟ ହୁଅନ୍ତି ନମ୍ରକ
ସୁସ୍ୱାଦୁ ହୁଅଇ କେଉଁ ବୃକ୍ଷଙ୍କର ମୂଳ ।
ଯାହାଙ୍କ ଆଜ୍ଞାରେ ଜଳେ ସ୍ଥଳଚର ଜୀବ
ରହି ନ ପାରନ୍ତି କେତେବେଳେ କାହିଁ ଠାବ ।
ସେହିପରି ଜଳଚର ଜନ୍ତୁମାନେ ଭାଇଁ
ସ୍ଥଳେ ବାସକରି କେବେ ନ ପାରନ୍ତି ରହି ।
ଧର୍ମ ଅଧର୍ମ ବିଚାର କରିବାକୁ ମୁହିଁ
ବସିଅଛି ଯାହାଙ୍କର ଆଜ୍ଞା ଶିରେ ବହି ।
ଜୀବଗଣଙ୍କର ଆୟୁ ଶେଷ ହେଲକ୍ଷଣି
ଯାହାଙ୍କ ଆଜ୍ଞାରେ କାଳ ନେଉଅଛି ଟାଣି ।
ଆୟୁଷ ଥିବା ଲୋକଙ୍କୁ ଯାହାଙ୍କ ଉପରେ
ପାଶକୁ ଯାଇ କଦାପି ଛୁଇଁ ସେ ନ ପାରେ ।
ଜ୍ୱଳନ୍ତ ଅନଳ ଥିବା ସମୁଦ୍ର ଭିତରେ
କି ଅବା ବୃକ୍ଷରେ ପୁଣି ପର୍ବତ କନ୍ଦରେ ।
ତୀକ୍ଷ୍ଣ ଖଡ଼ଗ ଆଗରେ ସର୍ପଙ୍କର ମୁଖେ
ଥୋଇଲେ ବା ଯୁଦ୍ଧକାଳେ ଶତ୍ରୁର ସମ୍ମୁଖେ ।
କୋମଳ କୁସୁମଶଯ୍ୟା କୋଳରେ ବା ଯେବେ
ଅବସ୍ଥାନ କରିଥାନ୍ତି ଯେଉଁ ଯେଉଁ ଜୀବେ ।
ତାହାଙ୍କ ଆୟୁଷ ଶେଷ ହେବାର ସମୟେ
କବଳିତ କରେ କାଳ ଯାହାଙ୍କର ଭୟେ ।
ଜଳକୁ ଧାରଣ କରି ରଖିଛି ପବନ
ସେ ଜଳ ପୁଣି କୂର୍ମଙ୍କୁ କରିଛି ଧାରଣ ।
ଅନନ୍ତ ସର୍ପଙ୍କୁ କୂର୍ମ ଧରିଛନ୍ତି ରହି
ସେ ଅନନ୍ତ ମସ୍ତକରେ ରହିଅଛି ମହୀ ।
ସପତ ସମୁଦ୍ର ଭୂତଳେ ପର୍ବତ ନିକର
ଏ ବାହାରେ ନାନାରତ୍ନ ସୁବରନ ସାର ।
ସମସ୍ତ ଧାରଣ କରି ରହିଅଛି କ୍ଷିତି
ସେ ସକାଶୁଁ ତାର ନାମ ଅଟେ ବସୁମତୀ ।
ତାହାଠାରୁ ଚରାଚର ହୁଅଇ ସମ୍ଭୂତ
ଅନ୍ତଃକାଳେ ପୁଣି ତହିଁ ହୋଇଥାଏ ଅସ୍ତ ।
ଦିବ୍ୟ ଏକସ୍ତରି ଯୁଗ ଇନ୍ଦ୍ରଙ୍କ ଆୟୁଷ
ଏହିପରି ଅଷ୍ଟାବିଂଶ ଇନ୍ଦ୍ର ହେଲେ ଶେଷ ।
ବ୍ରହ୍ମାଙ୍କର ଏକଦିନେ ଏକରାତ୍ରି ଗତ
ହୁଅଇ ଏ କଥା ବେଦ ଶାସ୍ତ୍ରରେ ସମ୍ମତ ।
ପାଞ୍ଚଲକ୍ଷ ଆଠଶତ ପଞ୍ଚବିଂଶ ଯୁଗ
ଯେତେବେଳେ ନରଲୋକ ହୋଇଯାଏ ଭୋଗ ।

ଯେତେବେଳେ ଇନ୍ଦ୍ରଙ୍କର ଆୟୁଷ ସରଇ
ସଂଖ୍ୟାଜ୍ଞମା ଜନେ ଏହା ଶାସ୍ତ୍ରେ ଛନ୍ତି କହି ।
ମନୁଷ୍ୟ ଲୋକେ ଯେପରି ହୁଅଇ ଗଣନା
ତହିଁର ନିୟମକୁ ଏବେ ଶୁଣ ନୋହି ବଣା ।
ତ୍ରିଂଶ ଦିନରେ ଏକମାସ ଯେ ହୋଇଏ
ଦୁଇମାସକରେ ଋତୁ ହୁଅଇ ଗୋଟିଏ ।
ଛଅଋତୁ ପୂର୍ଣ୍ଣ ହେଲେ ହୋଇଏ ବରଷ
ଏହିପରି ଶତେ ବର୍ଷ ଯେବେ ହୁଏ ଶେଷ ।
ବ୍ରହ୍ମାଙ୍କ ବୟସ ଶେଷ ହୁଏ ତେବେ ଜାଣ
ଯେତେବେଳେ ପ୍ରଜାପତି ଲଭନ୍ତି ମରଣ ।
ବ୍ରହ୍ମାଙ୍କର ମୃତ୍ୟୁ ହେଲେ ଶ୍ରୀହରିଙ୍କ ନେତ୍ର
ଉନ୍ମୀଳିତ ହୋଇଥାଏ ଏକଥର ମାତ୍ର ।
ଶ୍ରୀହରିଙ୍କ ଚକ୍ଷୁ ନିମୀଳିତ ହେବାକାଳେ
ପ୍ରଳୟ ହୁଅଇ ଚରାଚର ସୃଷ୍ଟି ଭଲେ ।
ସକଳ ପ୍ରକାର ଜୀବେ ବ୍ରହ୍ମାଙ୍କ ଶରୀରେ
ବିଲୀନ ହୁଅନ୍ତି ସେହି ପ୍ରଳୟ ଜଳରେ ।
ସେମାନଙ୍କ ସହିତରେ ଦେବ ପ୍ରଜାପତି
ଶ୍ରୀହରିଙ୍କ ନାଭିପଦ୍ମେ ବିଲୀନ ହୁଅନ୍ତି ।
କ୍ଷୀର ସମୁଦ୍ର ମଧ୍ୟରେ ବିଜେ ଜନାର୍ଦ୍ଦନ
ବଟପତ୍ର ପୃଷ୍ଠରେ ସେ କରନ୍ତି ଶୟନ ।
ବଇକୁଣ୍ଠ ପୁରେ ଚତୁର୍ଭୁଜ ମୂର୍ତ୍ତି ଯେହି,
ଲୀନ ହୁଅନ୍ତି ଶ୍ରୀକୃଷ୍ଣ ବାମପାର୍ଶ୍ୱେ ଯାଇ ।
ରୁଦ୍ର ଭଇରବ ଆଦି ଯେତେ ଶିବଗଣ
ଜ୍ଞାନାନନ୍ଦ ଶିବାଙ୍ଗରେ ହୁଅନ୍ତି ବିଲୀନ ।
ଶ୍ରୀକୃଷ୍ଣଙ୍କ ଜ୍ଞାନଅଧିଦେବତା ଯେ ହର
ଖଣ୍ଡକେ ଲୀନ ହୁଅନ୍ତି ଜ୍ଞାନରେ ତାଙ୍କର ।
ବିଷ୍ଣୁମାୟା ସ୍ୱରୂପିଣୀ ଦୁର୍ଗା ମହାମାୟୀ
ତାଙ୍କଠାରେ ଦେବୀଗଣ ଯାନ୍ତି ଲୀନ ହୋଇ ।
ଶ୍ରୀକୃଷ୍ଣଙ୍କ ବୁଦ୍ଧି ଅଧିଦେବତା ତ ସେହି
ବୁଦ୍ଧିରେ ଲୀନ ହୁଅନ୍ତି ଯେତକ୍ଷଣି ଯାଇ ।
କାର୍ତ୍ତିକେୟ ନାରାୟଣ ଅଂଶରେ ସମ୍ଭବ
ହେବାରୁ ତାହାଙ୍କ ବକ୍ଷେ କରନ୍ତି ସେ ଠାବ ।
ଶ୍ରୀକୃଷ୍ଣଙ୍କ ଅଂଶେ ଜାତ ଗଣ ଅଧୀଶ୍ୱର
ଲୀନ ହୋଇଯାନ୍ତି ବେନି ବାହୁରେ ତାଙ୍କର ।
ସର୍ବାଙ୍କ ଅଂଶରେ ଯେଉଁ ଋଷିଗଣ ଜାତ
ସେମାନେ ତାହାଙ୍କ ଦେହେ ହୁଅନ୍ତି ଟି ସ୍ଥିତ ।

ରାଧାଙ୍କ ଦେହରେ ପଦ୍ମା ବିଲୀନ ହୁଅନ୍ତି
ଆଉର ଯେତେକ ଦେବୀ ଜଗତରେ ଥାନ୍ତି ।
ଏବାହାରେ ଗୋପୀଗଣ ଗୋଲୋକରେ ଯେତେ
ସେ ମଧ୍ୟ ରାଧିକା ଅଂଶେ ମିଳନ୍ତି ସମସ୍ତେ ।
କୃଷ୍ଣଙ୍କର ପ୍ରାଣ ଅଧିଦେବୀ ବୋଲି ସେହି
ତାହାଙ୍କ ପ୍ରାଣରେ ତହିଁ ଯାନ୍ତି ଲୀନହୋଇ ।
ସବସ୍ତ୍ରୀଙ୍କ ଦେହରେ ବେଦମାତା ଭୁଲେ
ସାବିତ୍ରୀ ଦେବୀ ବିଲୀନ ହୁଅନ୍ତି ଭଲେ ।
ଶ୍ରୀକୃଷ୍ଣଙ୍କ ଜିହ୍ୱାଗ୍ରରେ ଦେବୀ ସରସ୍ୱତୀ
ସେ କାଳରେ ଯାଇ ଲୀନ ହୋଇଣ ରହନ୍ତି ।
ଗୋଲୋକରେ ଯେତେ ଗୋପ କରିଥାନ୍ତି ବାସ
ଶ୍ରୀକୃଷ୍ଣଙ୍କ ଲୋମକୂପେ ହୁଅନ୍ତି ପ୍ରବେଶ ।
ତାହାଙ୍କର ଜୀବନରେ ଜନ୍ତୁଙ୍କ ଜୀବନ
ପ୍ରବେଶ କରେ ଜଠରାନଳେ ହୁତାଶନ ।
ହେନ୍ତୁପର ଜଳ ଯାଇ ରସନା ଅଗ୍ରରେ
ବିଲୀନ ହୁଅଇ କାଳ ଜାଣିଣ ବ୍ୟଗ୍ରରେ ।
ଶ୍ରୀକୃଷ୍ଣଙ୍କ ଭକ୍ତିରସ ପୀୟୁଷକୁ ପିଇ
ଦାନ ନେଇଥାନ୍ତି ଯେଉଁମାନେ ତୋଷ ବହି ।
ସେହି ଭକ୍ତଗଣ ତାଙ୍କ ପାଦ ପଙ୍କଜରେ
ଲୀନ ହୁଅନ୍ତି ସେପରି ପ୍ରଳୟ କାଳରେ ।
ମହାବୈକୁଣ୍ଠରେ ଯେ କ୍ଷୁଦ୍ର ବୈକୁଣ୍ଠ ପୁରୁଷ
ସେ ପୁଣି କୃଷ୍ଣଙ୍କ ଅଙ୍ଗେ ହୁଅନ୍ତି ପ୍ରବେଶ ।
ନିଖିଳ ଜଗତ ତାଙ୍କପ୍ରତି ରୋମକୂପେ
ପ୍ରବେଶ ହୋଇଣ ତହିଁ ରହନ୍ତି ନିଷ୍ଟବେ ।
ଯାହାଙ୍କର ନୟନରେ ନିମିଷେ ପଡ଼ିଲେ
ଗୋଟିଏ ମହାପ୍ରଳୟ ହୋଇଥାଏ ଭଲେ ।
ଉନ୍ମୀଳିତ ହେଲେ ପୁଣି ସୃଷ୍ଟି ଜାତ ହୁଏ
ରହଇ ସେ ବ୍ରହ୍ମାଙ୍କର ଶତବର୍ଷପାଏ ।
ସେ ଅନ୍ତରେ ପୁଣି ଲୟ ହୁଏ ଆଉ ଥରେ
ତହିଁର ଗଣନା କରି ନୁହେ ସହଜରେ ।
ପୃଥିବୀରେ କେତେ ଧୂଳିକଣା ଅଛୁ ରହି
ଯେରୂପେ ତହିଁର ସଂଖ୍ୟା କରି ନ ହୁଅଇ ।
ଯେଉଁ ଦେବଙ୍କର ଚକ୍ଷୁ ନିମିଷେ ପ୍ରଳୟ
ପୁଣି ଉନ୍ମୀଳନେ ସୃଷ୍ଟି ହୁଅଇ ଉଦୟ ।
ତାହାଙ୍କର ଗୁଣରାଶି ବର୍ଣ୍ଣି ... [illegible]
ସମର୍ଥ ହୋଇବ କେବା ମନକୁ ନ ଆସେ ।

କେବଳ ପିତାଙ୍କ ମୁଖୁଁ କଥିତ ମାତ୍ରରେ
ଶୁଣିଅଛୁ ପୂର୍ବେ ମୁହିଁ ଏକ ସମୟରେ ।
ବେଦରେ ଚତୁଃପ୍ରକାର ମୁକ୍ତି ନିରୂପିତ
ହୋଇଅଛି ଅଟେ ଯାହା ସକଳ ସମ୍ମତ ।
ସେ ମଧ୍ୟରେ ଶ୍ରୀହରିଙ୍କ ଭକତ ପ୍ରଧାନ
ମୁକ୍ତିଠାରୁ ହେଲେ ତାହା ଅଧିକଟି ଜାଣ ।
ହରିଙ୍କ ସାଲୋକ୍ୟଦାୟୀ ତହିଁରୁ ଗୋଟିଏ
ସାରୂପ୍ୟଦା ବୋଲି ଅନ୍ୟ ଗୋଟିଏ ବୋଲାଏ ।
ସାମୀପ୍ୟଦା ଅଟେ ଆଉ ଗୋଟିକର ନାମ
ଚତୁର୍ଥ ଅଟଇ ସେହି ବୋଲାଏ ନିର୍ବାଣ ।
ଭକ୍ତମାନେ ଶ୍ରୀକୃଷ୍ଣଙ୍କ ସେବା କର୍ମ ଛାଡ଼ି
ଏହି ଚାରି ମୁକତିକୁ ନ ବସନ୍ତି ନେଇ ।
ଯେଉଁ କୃଷ୍ଣ ସେବା ଅଟେ ଜନ୍ମମୃତ୍ୟୁହର
ଖଣ୍ଡନ କରଇ ଭୟ ଶୋକ ଯେ ଆଉର ।
ଦାସ୍ୟରୂପ ଧାରଣ ଯେ ନିର୍ବାଣ ଅଟଇ
ତହିଁରୁ ଅଧିକ ଆଉ କଥା କିଛି ନାହିଁ ।
ମୁକତି ପାଇଲେ ସେବା ନ ପାରଇ ରହି
ଭକ୍ତିଯୋଗେ ପୁନଃ ପୁନଃ ଅଧିକ ହୁଅଇ ।
ଭକ୍ତି ମୁକ୍ତି ଦୁଇଟିର ଏହି ଭେଦ ଜାଣ
ଶୁଣ ଏବେ ମନ ଦେଇ ନିଷେକ ଲକ୍ଷଣ ।
ଭୋଗ କରିବାର ଯେଉଁ କର୍ମର ଯେ ଫଳ
ନିଷେକ ବୋଲନ୍ତି ତାଙ୍କୁ ପଣ୍ଡିତ ସକଳ ।
ତାହାର ଖଣ୍ଡନକର୍ତ୍ତା ଶ୍ରୀକୃଷ୍ଣଙ୍କ ସେବା
ସନ୍ଧିଧର୍ମ ତାର ସତ ହେବ କାହୁଁ ଅବା ।
ଲୋକରେ ବେଦରେ ସାର ଏହି ତତ୍ତ୍ୱଜ୍ଞାନ
ବିଘ୍ନ ବିନାଶକ ଶୁଭପ୍ରଦ ଅଟେ ଜାଣ ।
ନିର୍ମଳରୂପେ ସବୁ ତ ଶୁଣିଲ ମୋଠାରୁ
ଏବେ ନିଜ ଭବନକୁ ଯାଅ ବତ୍ସ ତୁରୁ ।
ଏହା କହି ଧର୍ମରାଜ ସତ୍ୟବାନଙ୍କର
ଜୀବନ ସମର୍ପି ତାଙ୍କ ଶରୀର ମଧ୍ୟର ।
ସେ ଜାୟାପତିଙ୍କ ଶୁଭ ଆଶୀର୍ବାଦ କଲେ
ନିଜପୁରେ ଯିବାପାଇଁ ଉଦ୍ୟତ ହୋଇଲେ ।
ଯିବାର ଦେଖିଣ ତାଙ୍କୁ ସାବିତ୍ରୀ ସୁନ୍ଦରୀ
ରୋଦନ କଲେ ତାହାଙ୍କ ଚରଣକୁ ଧରି ।
... ଯନ୍ତ ନ ମାଗିଲେ ସନ୍ତତ ବେଦନା
ସାଧୁଙ୍କ ବିଚ୍ଛେଦ ଦୁଃଖପ୍ରଦ ହୁଏ ସିନା ।

ସାବିତ୍ରୀଙ୍କ ଶୋକ ଦେଖି ଦେବ ଧର୍ମରାଜ
ସେ ମଧ୍ୟ କ୍ରନ୍ଦନ କଲେ ଛାଡ଼ିଦେଇ ଧୈର୍ଯ୍ୟ ।
ସେ ଅନ୍ତେ ସନ୍ତୁଷ୍ଟ ହୋଇ ବୋଇଲେ ସୁବ୍ରତେ
ଲକ୍ଷେବର୍ଷ ସୁଖଭୋଗ କରିଣ ଭାରତେ ।
ଶେଷ ତେଜ ଗୋଲୋକରେ ଶ୍ରୀକୃଷ୍ଣଙ୍କ ପାଶେ
ବସିବ ପତିଙ୍କ ସଙ୍ଗେ ସେବିଣ ହରଷେ ।
ଗୃହକୁ ଯାଇଣ ଏବେ ସାବିତ୍ରୀଙ୍କ ବ୍ରତ
ଅନୁଷ୍ଠାନ କର ଧର୍ମେ ଦେଇକରି ଚିତ୍ତ ।
ଜ୍ୟେଷ୍ଠ କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ସେ ଦେବ
ଚଉଦ ବରଷଠାରେ ସମ୍ପୂର୍ଣ୍ଣ ହୋଇବ ।
ନାରୀମାନଙ୍କର ଶୁଭ ବ୍ରତ ଏ ଅଟଇ
ଧନଜନ ସଉଭାଗ୍ୟ ସମ୍ପଦ ବଢ଼ଇ ।
ସେହିପରି ଭାଦ୍ରମାସ ଶୁକ୍ଳ ଅଷ୍ଟମୀରେ
ମହାଲକ୍ଷ୍ମୀଙ୍କର ବ୍ରତ ହୁଅଇ ଲୋକରେ ।
ଷୋଡ଼ଶ ବରଷଯାଏ ପାଳିତ ହୁଅଇ
ଏ ବ୍ରତକୁ ଯେଉଁ ନାରୀ ସାଦରେ କରଇ ।
ଅନ୍ତଃକାଳେ ଶ୍ରୀହରିଙ୍କ ପୁରକୁ ସେ ଯାଏ
ଚିର କାଳଯାଏ ତହିଁ ବାସକରି ରହେ ।
ଇହଲୋକ ପତି ସୋହାଗିନୀ ସେ ହୁଅଇ
ବିଷ୍ଣୁଙ୍କ ପୁରେ ବସଇ ପରଲୋକେ ଯାଇ ।
ପଞ୍ଚୋପଚାର ଦ୍ରବ୍ୟକୁ ରଖିବ ସମ୍ପାଦ
ଧୂପ ଦୀପ ଗନ୍ଧପୁଷ୍ପ ନଇବେଦ୍ୟ ଆଦ ।
ପ୍ରତ୍ୟେକ ମଙ୍ଗଳବାରେ ମଙ୍ଗଳ-ଚଣ୍ଡୀଙ୍କୁ
ପୂଜା କରିବ ପ୍ରକାଶି ଭକତିଭାବକୁ ।
ପ୍ରତିମାସ ଶୁକ୍ଳପକ୍ଷ ଷଷ୍ଠୀଦିନ ଜାଣି
ଷଷ୍ଠୀଦେବୀଙ୍କର ପୂଜା କରୁଥିବ ପୁଣି ।
ଆଷାଢ଼ମାସରେ ଯେଉଁ ସଙ୍କ୍ରାନ୍ତି ପଡ଼ିବ
ସେହିଦିନ ମନସାଙ୍କୁ ପୂଜାରେ ତୋଷିବ ।
କାର୍ତ୍ତିକ ସଙ୍କ୍ରାନ୍ତି ଦିନ ରାଧିକା ଦେବୀଙ୍କୁ
ପୂଜା କରିବ ମନରେ ପ୍ରକାଶି ଭକ୍ତିକୁ ।
ପ୍ରତି ମାସ ଶୁକ୍ଳପକ୍ଷ ଅଷ୍ଟମୀ ଦିବସେ
ପୂଜିବ ଦୁର୍ଗାଦେବୀଙ୍କୁ ରହି ଉପବାସେ ।
ଦୁର୍ଗତିନାଶିନୀ ହେତୁ ବିଷ୍ଣୁ ମହାମାୟା
ସକଳ ବିଶ୍ୱରେ ପୂରିଅଛି ତାଙ୍କ କାୟା ।

ପ୍ରତିମା ଅଥବା ଯନ୍ତ୍ର ବସାଇ ବିଧିରେ
ଅର୍ଚ୍ଚନା କରିବ ନାନାବିଧ ଉପଚାରେ ।
ଏହିରୂପେ ଯେଉଁ ନାରୀ ବ୍ରତ ଅନୁଷ୍ଠାନ
କରଇ ଲଭିବା ପାଇଁ ପତି ପୁତ୍ର ଧନ ।
ସକଳ କାମନା ତାର ପୂରଣ ହୁଅଇ
ପତି ସୁଖେ ଇହକାଳ ଦିଏ ସେ କଟାଇ ।
ଭାଗ୍ୟବନ୍ତ ପୁତ୍ର କନ୍ୟା ଅତି ଭାଗ୍ୟବତୀ
ଜନ ମାନ ଯଶ ସବୁ ହୁଅଇ ପ୍ରାପତି ।
ଏହିପରି ଯମରାଜା କହି ସାବିତ୍ରୀଙ୍କୁ
ପ୍ରଶଂସା କରିଣ ଗଲେ ନିଜ ମନ୍ଦିରକୁ ।
ସାବିତ୍ରୀ ମଧ୍ୟ ପତିଙ୍କୁ ଘେନି ସଙ୍ଗତରେ
ଆପଣା ଗୃହକୁ ଯାତ୍ରା କଲେ ସେ ଅନ୍ତରେ ।
ସ୍ୱାମୀଙ୍କ ଆଗରେ ସବୁ ବୃତ୍ତାନ୍ତ କହିଲେ
ଅନ୍ୟ ବନ୍ଧୁ ବାନ୍ଧବଙ୍କୁ ମଧ୍ୟ ଜଣାଇଲେ ।
ତାଙ୍କ ପିତା ଅଶ୍ୱପତି କେତେ ଦିନ ପରେ
ଉତ୍ତମ ପୁତ୍ରଙ୍କୁ ପାଇ ରହିଲେ ସୁଖରେ ।
ଆଉରି ତାହାଙ୍କ ଶାଶୁ ଶ୍ୱଶୁର ସେ ଦୁଇ
ହରଷିତ ହୋଇଲେ ରାଜ୍ୟଧନ ଚକ୍ଷୁ ପାଇ ।
ସେମାନ ଦୁହେଁ ତ ଯମରାଜାଙ୍କର ବର
ସାବିତ୍ରୀ ଗର୍ଭରୁ ହେଲେ ବହୁତ କୁମର ।
ଏ ରୂପେ ସାବିତ୍ରୀ ପତି ପୁତ୍ରଙ୍କର ଭୂଲି
ଲକ୍ଷେବର୍ଷ ଭାରତରେ ସୁଖ ଭୋଗକଲେ ।
ଅନ୍ତଃକାଳେ ପତିସଙ୍ଗେ ଗୋଲୋକରେ ଯାଇ
ବସିଲେ ଶ୍ରୀହରିଙ୍କର ଦରଶନ ପାଇ ।
ସବିତାଙ୍କ ଅଧିଦେବୀ ମନ୍ତ୍ର ଅଧିପତି
ଆଉରି ବେଦଗଣର ଅଟନ୍ତି ସାବିତ୍ରୀ ।
ତେଣୁ ସେହି ସାବିତ୍ରୀ ବୋଲି ତାଙ୍କ ନାମ ହେଲା
ଜଗତ ମଧ୍ୟରେ ତାହା ପ୍ରକାଶ ପାଇଲା ।
ସାବିତ୍ରୀଦେବୀଙ୍କ ସବୁ ଚରିତ ବିସ୍ତାର
କହିଲି ମୁଁ ତୁମ୍ଭ ଆଗେ ଆହେ ତପସ୍ୱୀ ।
ଆଉ କି ଶୁଣିବାପାଇଁ ହେଉଥିଲେ ମନ
ପଚାର ସେ କଥା ଏବେ କହିବା ବଚନ ।
କ୍ଷେମମୋହନ କହଇ ଆହେ ସାଧୁଜନେ
ବ୍ରହ୍ମବୈବର୍ତ୍ତ ପୁରାଣ ଶୁଣ ତୋଷମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଯମଙ୍କର ଶ୍ରୀକୃଷ୍ଣ ମାହାତ୍ମ୍ୟ
ବର୍ଣ୍ଣନ ଓ ସ୍ୱପୁରକୁ ଗମନ କରିବା ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ।

# ସପ୍ତତ୍ରିଂଶ ଅଧ୍ୟାୟ

## ନାରାୟଣମୁନିଙ୍କ ଦ୍ୱାରା ଲକ୍ଷ୍ମୀ ଚରିତ ବର୍ଣ୍ଣନ

ନାରଦ ବୋଇଲେ ଆହେ ମୁନିଗଣଶ୍ରେଷ୍ଠ
ସାବିତ୍ରୀ ଯମ ସମ୍ବାଦ ଶୁଣି ହେଲି ତୋଷ ।
ଶ୍ରୀକୃଷ୍ଣ ସମ୍ବାଦ ଶୁଣି ଆପଣଙ୍କଠାରୁ
ସଂଶୟ ମୋଚନ ହେଲା ମୋହର ମନରୁ ।
ଏବେ ଲକ୍ଷ୍ମୀ ଉପାଖ୍ୟାନ ଶୁଣିବାକୁ ମୋର
ଇଚ୍ଛା ହେଉଅଛି କହ ଶୁଣ ମୁନିବର ।
ଆଦ୍ୟରେ ତାହାଙ୍କୁ ପୂଜା କରିଲା କେ ଜନ
ଏହାପରେ ତାହାଙ୍କର ପୂଜାର ବିଧାନ ।
କହ ବାରେ ମାତ୍ର ତୋଷ କର ମନ ମୋର
ଶୁଣିବା ପାଇଁକି ଇଚ୍ଛା ବଳିଛି ସତ୍ୱର ।
ତାହା ଶୁଣି ନାରାୟଣ ହୋଇ ତୋଷମନ
ବୋଇଲେ ଶୁଣିବା ହେଉ ଆହେ ତପୋଧନ ।
ସୃଷ୍ଟି ଆରମ୍ଭ କାଳରେ ପରମାତ୍ମାଙ୍କର
ବାମ ଅଙ୍ଗରୁ ଉଦ୍ଭବ ହେଲେ ନାରୀବର ।
ଅତ୍ୟନ୍ତ ସୁନ୍ଦରୀ ସେହି ସୁନ୍ଦରୀ ସୁମୂର୍ତ୍ତି
ଚମ୍ପକ ବରଣୀ ଧନୀ ପୂର୍ଣ୍ଣଚନ୍ଦ୍ର ମୂର୍ତ୍ତି ।
ଦ୍ୱାଦଶ ବୟସୀ ସେହୁ ଅତି ମନୋହର
ଶ୍ୱେତ ଚମ୍ପାପରି ଦିଶେ ବସନ ତାହାର ।
କଳାମେଘ ସମଅଟେ ତା ଘନ କୁନ୍ତଳ
ବିମ୍ବଫଳ ସମ ଓଷ୍ଠ ଦିଶଇ ସୁଢ଼ଳ ।
ଏମନ୍ତ ଯେ ଦେବୀ ସେହି ଈଶ୍ୱର ଇଚ୍ଛାରେ
ବେନିଭାଗ ହେଲେ ଏକ ମୁହୂର୍ତ୍ତ ମଧ୍ୟରେ ।
ସେ ଦୁହେଁ ରୂପ ବରନ ତେଜ ବୟସରେ
ଆଉର ଯଶ ବଚନ ଭୂଷଣ ଗୁଣରେ ।
ମନ୍ଦହସିତ ବଙ୍କିମ ବୀକ୍ଷଣ ଗମନ
ଅତ୍ୟନ୍ତ ବିନୟ ପୁଣି ତାର ଗୁଣମାନ ।
ଏ ସବୁ ଗୁଣରେ କିଛି ଭିନ୍ନ ନ ହୋଇଲେ
ସମାନ ରୂପରେ ଦୁଇମୂର୍ତ୍ତି ଦେଖାଗଲେ ।
ବାମଅଂଶ ମହାଲକ୍ଷ୍ମୀ ନାମେ ହେଲେ ଖ୍ୟାତ
ଦକ୍ଷିଣ ଭାଗ ରାଧିକା ନାମରେ ବିଦିତ ।

ଦ୍ୱିଭୁଜ କୃଷ୍ଣଙ୍କୁ ଆଗେ ରାଧିକା ବରିଲେ
ସେ ଅନ୍ତରେ ମହାଲକ୍ଷ୍ମୀ ପୁଣି ଇଚ୍ଛାକଲେ ।
ଶ୍ରୀକୃଷ୍ଣ ସେ କଥା ଜାଣି ଦୁଇଭାଗ ହେଲେ
ଦକ୍ଷଅଂଶେ ବେନିବାହୁ ପ୍ରକାଶିତ କଲେ ।
ବାମଅଂଶ ପୁଣି ପ୍ରକାଶିଲେ ଚତୁର୍ଭୁଜ
ଆପଣା ଇଚ୍ଛାରେ ପ୍ରଭୁ ଦେବ ଅଧିରାଜ ।
ଦ୍ୱିଭୁଜ ଲକ୍ଷ୍ମୀଙ୍କୁ କର ଧରି ସେହିକାଳେ
ନେଇଣ ଚତୁର୍ଭୁଜଙ୍କୁ ସମର୍ପଣ କଲେ ।
ଯେଉଁ ଦେବୀ ଜଗତକୁ ସ୍ନିଗ୍ଧ ଦୃଷ୍ଟି ଦେଇ
ଲକ୍ଷ୍ୟ କରନ୍ତି ସର୍ବଦା ଶୁଭ ମନେ ଧ୍ୟାୟି ।
ଆଉର ଦେବୀଙ୍କ ମଧ୍ୟେ ଅଟନ୍ତି ମହତ୍ତ
ସେ ହେତୁରୁ ମହାଲକ୍ଷ୍ମୀ ନାମ ବହିଛନ୍ତି ।
ରାଧିକା ଦେବୀଙ୍କ କାନ୍ତ ହୋଇଲେ ଦ୍ୱିଭୁଜ
ମହାଲକ୍ଷ୍ମୀ ପତି ପୁଣି ହେଲେ ଚତୁର୍ଭୁଜ ।
ଗୋପୀ ଗୋପିକାଗଣରେ ହୋଇଣ ଆବୃତ
ଗୋଲୋକେ ଦ୍ୱିଭୁଜ କୃଷ୍ଣ ହେଲେ ଅବସ୍ଥିତ ।
ଚତୁର୍ଭୁଜ ଘେନି ମହାଲକ୍ଷ୍ମୀଙ୍କ ସଙ୍ଗର
ହେଲେ ଯାଇ ବଇକୁଣ୍ଠପୁର ଅଧୀଶ୍ୱର ।
ସକଳ ଅଂଶରେ କୃଷ୍ଣ ନାରାୟଣ ଦୁହେଁ
ସମାନ ଅଟନ୍ତି ଊଣା ଅଧିକ କେ ନୁହେଁ ।
ଯୋଗବଳେ ମହାଲକ୍ଷ୍ମୀ ନାନାରୂପ ହେଲେ
ପ୍ରଧାନ ରୂପଟି ବଇକୁଣ୍ଠରେ ରହିଲେ ।
ଶୁଦ୍ଧସତ୍ତ୍ୱ ସ୍ୱରୂପିଣୀ ସୌଭାଗ୍ୟବତୀ
ସମସ୍ତ ରମଣୀ ମଧ୍ୟେ ମୁଖ୍ୟ ସେ ଅଟନ୍ତି ।
ସ୍ୱର୍ଗପୁରେ ଯେଉଁରୂପେ ବାସ କଲେ ସାଇଁ
ସ୍ୱର୍ଗଲକ୍ଷ୍ମୀ ବୋଲାଇଲେ ଇନ୍ଦ୍ରପାଶେ ରହି ।
ପାତାଳରେ ମର୍ତ୍ତ୍ୟପୁରେ ସମସ୍ତ ସ୍ୱରୂପେ
[illegible]ସ୍ଥିତା ହେଲେ ସେହି ରାଜାଙ୍କ ସମୀପେ ।
ରାଜଲକ୍ଷ୍ମୀ ନାମଟିକୁ ବହିଲେ ସେ ଜାଣ
ଯାଙ୍କୁ ପାଇ ଲକ୍ଷ୍ମୀବନ୍ତ ହେଲେ ନୃପଗଣ ।

ପ୍ରତ୍ୟେକ ଲୋକର ଗୃହେ ରହିଲେ ସେ ଅଂଶ
ହେଲ ଗୃହଲକ୍ଷ୍ମୀ ନାମ ତାଙ୍କର ପ୍ରକାଶ ।
ସମ୍ପଦ ଅଟନ୍ତି ସେହି ଗୃହୀମାନଙ୍କର
ଅଶେଷ ମଙ୍ଗଳ କରିଥାନ୍ତି ନିରନ୍ତର ।
ଗାଭୀମାନଙ୍କର ସେହି ପ୍ରସବକାରିଣୀ
ସୁରଭି ନାମରେ ଖ୍ୟାତ ହୋଇଛନ୍ତି ପୁଣି ।
ସେ ଅଟନ୍ତି ଲକ୍ଷ୍ମୀଙ୍କର ଅନ୍ୟତମ ରୂପ
ଯେ ପୁଣି ଯଜ୍ଞକାମିନୀ ଦକ୍ଷିଣା ସ୍ୱରୂପ ।
ସେହି ମଧ୍ୟ ମହାଲକ୍ଷ୍ମୀ କଳେ ପ୍ରକାଶିତା
କ୍ଷୀର ସମୁଦ୍ରର ସେହି ଅଟନ୍ତି ଦୁହିତା ।
ପଦ୍ମିନୀ ଅଙ୍ଗରେ ସେହି ଶୋଭାରୂପେ ଥାନ୍ତି
ଚନ୍ଦ୍ର ସୂର୍ଯ୍ୟଠାରେ ଶୋଭା ରୂପ ପ୍ରକାଶନ୍ତି ।
ନାନାବିଧ ଅଳଙ୍କାର ଫଳ ପୁଷ୍ପ ଜଳ
ଏମାନଙ୍କଠାରେ ଶୋଭା ସେ ଲକ୍ଷ୍ମୀ କେବଳ ।
ରାଜଭବନରେ ରାଜପତ୍ନୀଙ୍କର ଦେହେ
ପୁଣି ଦିବ୍ୟ କାମିନୀଙ୍କ ଅଙ୍ଗେ ପ୍ରତିଗୃହେ ।
ସକଳ ଶସ୍ୟରେ ସବୁ ବସ୍ତ୍ର ଭୂଷଣରେ
ଦେବତା ପ୍ରତିମା ପୂର୍ଣ୍ଣ କୁମ୍ଭର ଉପରେ ।
ମାଣିକ୍ୟ ମୁକୁତା ଦିବ୍ୟ କୁସୁମବାସର
ଇନ୍ଦ୍ରନୀଳ ଆଦି ମଣିଗଣରେ ଆବର ।
ଚନ୍ଦନ କ୍ଷୀର ମୃଣାଳ ନବ ଜଳଧରେ
ସୌନ୍ଦର୍ଯ୍ୟରୂପେ ରହନ୍ତି ଏସବୁ ଦ୍ରବ୍ୟରେ
ବୈକୁଣ୍ଠ ଭବନେ ତାଙ୍କୁ ଦେବ ନାରାୟଣ
ପ୍ରଥମେ ସନ୍ତୋଷଭାବେ ପୂଜାକଲେ ଜାଣ ।
ସେ ଅନ୍ତରେ ଭକ୍ତିଭରେ ପୂଜିଲେ ବିଧାତା
ତୃତୀୟେ ଶଙ୍କର ପୂଜା ଗ୍ରହି କଲେ ତାହା ।
ଆହେ ମୁନି ପୁଣ୍ୟକ୍ଷେତ୍ର ଭାରତବର୍ଷରେ
ବିଷ୍ଣୁ ପୂଜା କଲେ କ୍ଷୀର ସମୁଦ୍ର ମଧ୍ୟରେ
ସ୍ୱାୟମ୍ଭୁବ ମନୁ ପୁଣି ସର୍ବ ନରପତି
ମୁନି ଋଷି ସିଦ୍ଧ ସାଧୁ ବୈଷ୍ଣବ ଯତି ।
ଏ ସମସ୍ତେ ପୂଜାକଲେ ମନୁଷ୍ୟଲୋକରେ
ଦେବତା ଗନ୍ଧର୍ବଗଣ ପୂଜିଲେ ସ୍ୱର୍ଗରେ ।
ପାତାଳଲୋକରେ ପୂଜାକଲେ ନାଗଗଣ
ଏରୂପେ ପୂଜିତା ହେଲେ ମହାଲକ୍ଷ୍ମୀ ଜାଣ ।
ଭାଦ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ
ଅର୍ଚ୍ଚନା କରିଥିଲେ ବ୍ରହ୍ମା ସେ କାଳରେ ।
ଚୈତ୍ର ପୌଷ ଭାଦ୍ରମାସେ ଯେ ମଙ୍ଗଳବାର
ତହିଁରେ ପୂଜିଲେ ଦେବ ଶଙ୍ଖ ଚକ୍ରଧର ।
ତିନି ଭୁବନରେ ତାହା ପ୍ରକାଶିତ ହେଲା
ସେହିଦିନୁ ଲକ୍ଷ୍ମୀବାର ନାମ ସେ ବହିଲା ।
ବର୍ଷଶେଷେ ପୌଷମାସ ସଂକ୍ରାନ୍ତି ଦିବସେ
ବାହ୍ୟ ପ୍ରାଙ୍ଗଣରେ ଲକ୍ଷ୍ମୀଦେବୀଙ୍କୁ ହରଷେ ।
ଅର୍ଚ୍ଚନା କଲେ ମନୁ ଦିବ୍ୟ ଉପଚାରେ
ସେ ଦିନୁ ପ୍ରଚାର ତାହା ହୋଇଲା ଲୋକରେ
ମଙ୍ଗଳ ନୃପତି ତାଙ୍କୁ ମଙ୍ଗଳ ରୂପରେ ।
ସ୍ଥାପନ କରିଣ ପୂଜାକଲେ ସେ ଅନ୍ତରେ ।
ସର୍ବମଙ୍ଗଳା ନାମଟି ସେଦିନୁ ରହିଲା
ସେ ପୂଜା କରିଲା ତାର ସର୍ବଶୁଭ ହେଲା ।
ଆବର ସୁବଳ ବଳ କେଦାର ପ୍ରଭୃତି
ପୂଜା କରିଥିଲେ ତହୁଁ ତୋଷକରି ମତି ।
ଉତ୍ତାନପାଦ ସେ ଧ୍ରୁବ ଶକ୍ର ବଳିରାଜା
କଶ୍ୟପ ଦକ୍ଷ ଏମାନେ କଲେ ମଧ୍ୟ ପୂଜା ।
ପ୍ରିୟବ୍ରତ ନିଶାକର କୁବେର ପବନ
ଅନଳ ସମୁଦ୍ରପତି ପରେ ତ ବରୁଣ ।
ଏମାନଙ୍କୁ ଆଦିକରି ଯେତେ ମୁଖ୍ୟଦେବ
ସମସ୍ତେ ପୂଜିଲେ ମନେ ବହି ଭକ୍ତିଭାବ ।
ଏହିରୂପେ ଜଗତରେ ପୂଜିତା ସେ ହେଲେ
ସକଳ ସ୍ଥାନରେ ଲୋକେ ତହୁଁ ପୂଜାକଲେ ।
କ୍ଷେତ୍ରମୋହନ ଦ୍ୱାର ଏ ଗୀତରେ ଭଣଇ
ଏ ସଙ୍କଟରୁ ଉଦ୍ଧାର ହୋଇବାର ପାଇଁ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣ ମୁନିଙ୍କ ଦ୍ୱାରା ଲକ୍ଷ୍ମୀ ଚରିତ ବର୍ଣ୍ଣନେ ନାମ ସପ୍ତବିଂଶୋଽଧ୍ୟାୟଃ ।

———

## ଅଷ୍ଟତ୍ରିଂଶ ଅଧ୍ୟାୟ
## ମହାଲକ୍ଷ୍ମୀଙ୍କର ଜନ୍ମ ବୃତ୍ତାନ୍ତ ବର୍ଣ୍ଣନ

ନାରାୟଣଙ୍କୁ ଅନାଇ ବ୍ରହ୍ମାଙ୍କର ସୁତ
ପଚାରିଲେ ପୁଣି ଲକ୍ଷ୍ମୀ ଦେବୀଙ୍କ ବୃତ୍ତାନ୍ତ ।
ବୋଇଲେ ହେ ମୁନିବର ବେଦତତ୍ତ୍ୱଜ୍ଞାନୀ
ନାରାୟଣ ପ୍ରିୟା ଲକ୍ଷ୍ମୀ ବୈକୁଣ୍ଠବାସିନୀ ।
ବଇକୁଣ୍ଠ ଅଧିଷ୍ଠାନୀ ଦେବତା ତ ସେହି
କିରୂପେ ଜନ୍ମିଲେ ସିନ୍ଧୁକନ୍ୟାରୂପ ବହି ।
ମର୍ତ୍ତ୍ୟଲୋକେ କାହିଁପାଇଁ ହେଲେ ଅବତାର
ଏଥିରେ ସନ୍ଦେହ ଜାତ ହେଉଛି ମୋହର ।
ତାହାଙ୍କର ଧ୍ୟାନ ସ୍ତୋତ୍ର କବଚ ପୂଜନ
କିରୂପେ ଅଟଇ ତାହା କହନ୍ତୁ ବହନ ।
କିଏ ଅବା ପ୍ରଥମରେ କଲା ସଙ୍କଳିତ
କହ ଶୁଣିବାକୁ ମୋର ବଳୁଅଛି ଚିତ୍ତ ।
ନାରାୟଣ ଶୁଣିକରି ନାରଦଙ୍କ ଗିର
ବୋଇଲେ କହିବା ତାହା ଶୁଣ ହୋଇ ସ୍ଥିର ।
ପୂର୍ବକାଳେ ଦୁର୍ବାସାଙ୍କ ଶାପେ ପୁରନ୍ଦର
ହତଲକ୍ଷ୍ମୀ ହେଲେ ସର୍ବ ଦେବତା ଆଗର ।
ଏ ବାହାରେ ମର୍ତ୍ତ୍ୟଲୋକ ହେଲା ସେହିପରି
ତାହା ଜାଣି ତିନଲୋକ ତ୍ୟାଗ କଲେ ଶିରୀ ।
ଦୁଃଖିତ ହୋଇଣ ବଇକୁଣ୍ଠ ପୁରେ ଗଲେ
ମହାଲକ୍ଷ୍ମୀଙ୍କ ଅଙ୍ଗରେ ସମ୍ଭାଇ ରହିଲେ ।
ତା ଦେଖି ଦେବତାମାନେ ମହାଶୋକ କରି
ଗଲେ ଯହିଁ ସଭା କରିଥିଲେ କୁଶଧାରୀ ।
ତାଙ୍କ ଆଗେ ସବୁକଥା ବୁଝାଇ କହିଲେ
ଶୁଣିଣ ବିଧାତା ଅତି ଦୁଃଖିତ ହୋଇଲେ ।
ସମସ୍ତ ଦେବଙ୍କୁ ଘେନି ବଇକୁଣ୍ଠ ପୁରେ
ପରବେଶ ହେଲେ ଯାଇ ବିଷ୍ଣୁଙ୍କ ଛାମୁରେ ।
ପ୍ରଣାମ କରିଣ ତାଙ୍କୁ କଲେ ନିବେଦନ
ଶୁଣି ତାହାଙ୍କର ଦୁଃଖ ପ୍ରଭୁ ନାରାୟଣ ।
ଲକ୍ଷ୍ମୀଙ୍କୁ ଦେବଙ୍କ ପାଶେ ସମର୍ପଣ କଲେ
ଆନନ୍ଦରେ ଦେବେ ସ୍ୱର୍ଗପୁରେ ଫେରିଗଲେ ।
ସେହି ସେ କଳ ସବୁଙ୍କର ସମ୍ପଦରୂପିଣୀ
କାଳରେ ହୋଇଲେ କ୍ଷୀରସମୁଦ୍ର ଦୁଲଣୀ ।

ଅସୁରଙ୍କୁ ସଙ୍ଗେ ଘେନି ସକଳ ଦେବତା
କ୍ଷୀର ସମୁଦ୍ର ମନ୍ଥନ କଲେ ଗୂଢ଼ ଚିନ୍ତା ।
ସେହିଠାରୁ ଲକ୍ଷ୍ମୀ ନିଜ ରୂପେ ଜାତ ହେଲେ
ଦେବତାଙ୍କ ଇଚ୍ଛାମତେ ବରଦାନ କଲେ ।
କ୍ଷୀରୋଦଶାୟୀଙ୍କୁ ବରିଥିଲେ ସେ ଶ୍ରୀହରି
ତାଙ୍କୁ ମଧ୍ୟ ବର ଦେଲେ ଅନୁଗ୍ରହ କରି ।
ଲକ୍ଷ୍ମୀଙ୍କର ବରେ ଦେବେ ଅସୁରଙ୍କଠାରୁ
ପାଇଲେ ରାଜ୍ୟ ହରାଇ ଥିଲେ ସେ ଆଦ୍ୟରୁ ।
ସେ ଲକ୍ଷ୍ମୀଦେବୀଙ୍କୁ ସବୁଠାରେ ପୂଜା କଲେ
ସ୍ତୁତିପାଠ ଯୋଗେ ପୁଣି ତୋଷ କରାଇଲେ ।
ନାରଦ ବୋଇଲେ କିଆଁ ଦୁର୍ବାସା ମହର୍ଷି
ଶାପ ଦେଲେ ବାସବଙ୍କୁ ହୋଇ ମନୋରୋଷି ।
କି ଦୋଷ ବା ତାଙ୍କଠାରେ କଲେ ପୁରନ୍ଦର
କିପାଇଁ ମନ୍ଥିଲେ ସିନ୍ଧୁ ଦେବତା ଅସୁର ।
କିରୂପେ ମହାସମୁଦ୍ର ମନ୍ଥିତ ହୋଇଲା
କେଉଁ ସମୟେ ଲକ୍ଷ୍ମୀଙ୍କ ମୂର୍ତ୍ତି ଦେଖାଗଲା ।
କେଉଁ ସ୍ତୋତ୍ର ପାଠ କରି ସ୍ୱର୍ଗ ଅଧିପତି
ଲକ୍ଷ୍ମୀଙ୍କୁ ଦର୍ଶନ କଲେ କ୍ଷୀରସିନ୍ଧୁ କତି ।
ସେ ସକଳ ସମ୍ବାଦକୁ କହ ମୋ ଆଗର
ଆହେ ବେଦବିଜ୍ଞ ମୁନି ଋଷିଙ୍କର ବର ।
ତାହା ଶୁଣି ନାରାୟଣ ହୃଷ୍ଟ ହୋଇଲେ
ନାରଦଙ୍କ ଆଗେ ପୁଣି କହି ଆରମ୍ଭିଲେ ।
ବୋଇଲେ ପୁଚ୍ଛିବା କଥା ଶୁଣ ଏବେ ବସି
ଏକଦିନେ ସଙ୍ଗତରେ ଘେନି ରମ୍ଭା ସ୍ୱରୁକେଶୀ ।
ଦେବରାଜ ପୁରନ୍ଦର ମହା ଅରଣ୍ୟରେ
କ୍ରୀଡ଼ା କଲେ ଜର୍ଜରିତ ହୋଇ କାମଶରେ ।
ସୁରତି ଅନ୍ତରେ ଶ୍ରାନ୍ତ ଆସ୍ୱାସକୁ ପାଇ
ବସିଥିଲେ ରମ୍ଭା ସଙ୍ଗେ କଥାବାର୍ତ୍ତା ହୋଇ ।
ସେ ସମୟେ ମୁନିବର ଦୁର୍ବାସା ତପସ୍ୱୀ
ଯାଉଥିଲେ କୈଳାସକୁ ବୈକୁଣ୍ଠରୁ ଆସି ।
ତାହାଙ୍କ ଦେହରେ ବ୍ରହ୍ମତେଜର ବିକାଶ
ହୋଇଥିଲା ସମ୍ମୁଖ୍ୟ କରି ଦଶଦିଶ ।

ଗ୍ରୀଷ୍ମ ମଧ୍ୟାହ୍ନ ସୂର୍ଯ୍ୟକିରଣ ସମାନ
ତାହାଙ୍କ ତେଜ ପ୍ରଖର ହୋଇଥିଲା ପୁଣ ।
ତପତ କାଞ୍ଚନ ତୁଲ୍ୟ ସମୁଜ୍ଜ୍ୱଳ ଜଟା
ଦେଖା ଯାଉଥିଲା ଯେସନ୍ତେ ନରସିଂହ ସଟା ।
ଦଣ୍ଡ କମଣ୍ଡଳୁ ଶୁକ୍ଳ ଯଜ୍ଞ ଉପବୀତ
ଉଜ୍ଜ୍ୱଳ ତିଳକ ଚୀର ବିଭୂତି ଭୂଷିତ ।
ବେଦ ପାରଙ୍ଗମ ଶିଷ୍ୟ ବହୁତ ସଙ୍ଗରେ
ଅନନ୍ତ ଏରୂପେ ଆସି ମିଳିଲେ ସେଠାରେ ।
ତାହାଙ୍କୁ ଦେଖିଣ ଇନ୍ଦ୍ର ରମ୍ଭା ସଙ୍ଗତରେ
ଆସନୁ ଉଠି ପ୍ରଣାମ କରିଲେ ପଦ୍ମରେ
ଭ୍ରୂତି ଶିଷ୍ୟଙ୍କର ପାଦ ଧରି ହେଷ୍ଟପରି
ପ୍ରଣାମ କଲେ ସେକାଳେ ସୁର ଦଣ୍ଡଧାରୀ ।
ତା ଦେଖି ଦୁର୍ବାସା ମୁନି ଶିଷ୍ୟ ସଙ୍ଗତରେ
ପ୍ରୀତ ହୋଇ ଆଶୀର୍ବାଦ କଲେ ତାଙ୍କୁ ଧୀରେ
ଏ ବାହାରେ ବିଷ୍ଣୁ ଦତ୍ତ ପାରିଜାତ ଫୁଲ
ଦେଲେ ପୁଣି ଅଟଇ ଯାହା ଜଗତେ ଅତୁଲ୍ୟ ।
ଜରା ମୃତ୍ୟୁ ରୋଗ ଶୋକ ତାହା ପ୍ରସାଦରେ
ପ୍ରବେଶ କରି ନ ପାରେ ଶରୀର ମଧ୍ୟରେ ।
ଇନ୍ଦ୍ରତ ରାଜସମ୍ପଦ ମତ୍ତ ହୋଇଥିଲେ
ହସ୍ତୀର ମସ୍ତକ ପରେ ସେ ପୁଷ୍ପ ରଖିଲେ
ତାହାର ଚରଣ ମାତ୍ରେ ମତ୍ତଦନ୍ତୀ ବଳ
ଉତ୍ତମ ତେଜଗୁଣରେ ଦିଶିଲା ଉଜ୍ଜ୍ୱଳ ।
ବିଷ୍ଣୁଙ୍କ ସମାନ ବଳ ହୋଇଲା ତାହାର
ନିଃଶଙ୍କରେ ଚଳିଲା ସେ ବନସ୍ତ ମଧ୍ୟର ।
କେତେ ଯତ୍ନ କଲେ ହେଲେ ଦେବ ଶଚୀପତି
ସେ ଗଜକୁ ରଖି ନ ପାରିଲେ ନିଜ କତି ।
ତାର ତେଜଗୁଣ ଦେଖି ବିସ୍ମିତ ହୋଇଲେ
କି ଅଦ୍ଭୁତ କଥା ହେଲା ବୋଲି ବିଚାରିଲେ ।
ବାସବଙ୍କ ଏ ଚରିତ୍ର ଦେଖି ମୁନିବର
ଭାବିଲେ କି ମୂର୍ଖପଣ କଲା ପୁରନ୍ଦର ।
ସେ ଅନ୍ତରେ ମହାକ୍ରୋଧେ ନେତ୍ର ରଙ୍ଗ କରି
ଇନ୍ଦ୍ରଙ୍କୁ ଅନାଇ ଶାପ ଦେଲେ ତପସ୍ୱୀ ।
ବୋଇଲେ ରେ ବାସବ ତୁ କେଡ଼େ କର୍ମ କଲୁ
ସମ୍ପଦ ଗର୍ବରେ ମୋତେ ଅପମାନ ଦେଲୁ ।
ମୁଁ ଦେବା କୁସୁମ ଗୋଟି ଗଜ ମସ୍ତରେ
ଥୋଇଲୁ ବିଚାରି କିଛି ନ କରି ମନରେ ।

ବିଷ୍ଣୁଙ୍କର ନଇବେଦ୍ୟ ପୁଷ୍ପ ଫଳ ପତ୍ର
ଜଳ ଆଦି ଯାହା କିଛି ହୋଇଲେ ପ୍ରାପତ ।
ସେହିକ୍ଷଣି ତାହାକୁ ଯେ ନ କରେ ସେବନ
ବ୍ରହ୍ମହତ୍ୟା ପାପକୁ ସେ ହୁଅଇ ଭାଜନ ।
ତାହାର ଫଳରେ ଭ୍ରଷ୍ଟବୁଦ୍ଧି ଜ୍ଞାନ ହୋଇ
ହତଶ୍ରୀ ହୁଅଇ ଲୋକ ନ ଜାଣୁ କି ତୁହି ।
ମିଳିବା ତକ୍ଷଣେ ବିଷ୍ଣୁ ନଇବେଦ୍ୟ ଦ୍ରବ୍ୟ
ଯେଉଁ ଲୋକ ଭକ୍ତିଭରେ ସେବନ କରିବ ।
ସେ ନ ମୁକତ ଯେତୁ ହୁଅନ୍ତି ଜାଣ
ତାହାପରି ଭାଗ୍ୟବନ୍ତ ନାହିଁ ତ୍ରିଭୁବନ ।
ନିତ୍ୟଦିନ ବିଷ୍ଣୁଙ୍କର ସେବା ଯେ କରଇ
ଏ ବାହାରେ ସ୍ତୁତିପାଠ କରେ ତୋଷବନ୍ତ ।
ବିଷ୍ଣୁଙ୍କ ସଦୃଶ ସେହି ଅଟଇ ନିଶ୍ଚୟ
ଲବେମାତ୍ର ହେଲେ ଏଥି ନାହିଁଟି ସଂଶୟ ।
ଗଙ୍ଗା ଆଦି ତୀର୍ଥଗଣ ତାହା ପରଶରେ
ପବିତ୍ର ଭାବକୁ ପାଇଥାନ୍ତି ନିରନ୍ତରେ ।
ତାହାର ଉଦରଜରେ ପୂତ ହୁଏ ମହୀ
ସେପରି ଲୋକ ଜଗତେ ଦୁର୍ଲ୍ଲଭ ଅଟଇ ।
ଯେବଣ ମୂଢ଼ ଅଟଇ ଶୂଦ୍ରଙ୍କ ଯାଜକ
ଶୂଦ୍ର ଶ୍ରାଦ୍ଧାନ୍ନ ଭୋଜନ କରେ ଯେଉଁ ଲୋକ ।
ଅଥବା ପୁଂଶ୍ଚଳୀଅନ୍ନ ଭକ୍ଷଣ କରଇ
ବ୍ରାହ୍ମଣ ହେଲେହେଁ ଶୂଦ୍ର ବୋଲି ତାକୁ କହି
ଚିକିତ୍ସକ କେବଳ ଯେ କନ୍ୟାର ବିକ୍ରେତା
ବେଶ୍ୟାବୃତ୍ତି କରୁଥାଏ ଯାହାର ବନିତା ।
ଦ୍ୱିଜ ହୋଇ ଶୂଦ୍ରସ୍ତ୍ରୀ ଭୋଗ ଯେ କରଇ
ଧନ ନେଉଥାଏ ଅବା ବୃଷଳଙ୍କୁ ବାହି ।
ନୋହିଲେ ବା ଶୂଦ୍ରଙ୍କର ଶବଦାହ କରେ
ଇଷ୍ଟ ଦେବତାଙ୍କ ମନ୍ତ୍ର ଗ୍ରହଣ ନ କରେ ।
ଅଗମ୍ୟ ସ୍ଥାନରେ ବଳେ ହୁଏ ପରବେଶ
ମିତ୍ରବନ୍ଧୁଠାରେ କରେ ଦ୍ରୋହ ଅବିଶ୍ୱାସ ।
ମିଥ୍ୟାସାକ୍ଷ୍ୟ ଦେବାପାଇଁ ହୁଏ ଅଗ୍ରସର
ଏସବୁ ଦୋଷରୁ ଯେଉଁ ପାପ ହୁଏ ତାର ।
ବିଷ୍ଣୁଙ୍କର ନଇବେଦ୍ୟ ଭକ୍ଷଣ କରିଲେ
ସେ ପାପ ବିନାଶ ହୋଇଥାଏ ଜାଣ ଭଲେ ।
ସର୍ବଦା ଯେ ଅଟେ ବିଷ୍ଣୁ ସେବାରେ ତତ୍ପର
ଆପଣା ବଂଶକୁ ସେହି କରଇ ଉଦ୍ଧାର ।

ଯେଉଁ ଦ୍ୱିଜ ନ କରଇ ବିଷ୍ଣୁଙ୍କ ସେବନ
ଅଟଇ ସେ ଜଗତରେ ଅତ୍ୟନ୍ତ ଅଜ୍ଞାନ ।
ଆପଣାକୁ କଳ୍ମଷରୁ ଉଦ୍ଧାରିବା ପାଇଁ
କେବେହେଲେ ସମରଥ ହୋଇ ନ ପାରଇ ।
ବିଷ୍ଣୁଙ୍କ ନୈବେଦ୍ୟ ବୋଲି ଅଛି ଥିଲେହେଲେ
ଦଇବେ ଗ୍ରହଣ ଯେବା କରଇ ମିଳିଲେ ।
ସପତ ଜନମକୃତ ପାତକରୁ ସେହି
ମୁକତ ହୁଅଇ ଏଥେ ସନ୍ଦେହ ଯେ ନାହିଁ ।
ଜାଣି ଜାଣି କରି ଯେବେ ଗ୍ରହଣ କରିବ
କୋଟିଏ ଜନ୍ମର ପାପମୁକ୍ତ ହୋଇଯିବ ।
ମୁଁ ହେବାର ପୁଷ୍ପ ଗୋଟି ଫିଙ୍ଗିକରି ବୃଥା
ଗଜ ମସ୍ତକରେ ଯାହା ଥୋଇଦେଲୁ ନେଇ ।
ଏ ସକାଶୁଁ ସ୍ୱର୍ଗଲକ୍ଷ୍ମୀ ଗୃହ ଛେର ପଣ
ବଇକୁଣ୍ଠପୁରେ ଯାଇ ଜନ୍ମେ ହତ ସ ।
ନାରାୟଣଙ୍କର ମୁହିଁ ଅଟଇ ଭକତ
ବ୍ରହ୍ମା ଶଙ୍କରଙ୍କୁ ଡରେ ନାହିଁ ମୋର ଚିତ୍ତ ।
କାଳ ମୃତ୍ୟୁ ଜରା ରୋଗ ଶୋକ ଆଦିକରି
ମୋ'ର ନିକଟକୁ ଆସି ନ ପାରନ୍ତି ଡରି ।
ଆଉ କାହାଠାରେ ଅବା ଅଛି ମୋର ଭୟ
ଭୁ ଗୁରୁକ ଶକ୍ତିରୁ ମୁଁ ଅଟେ ବ୍ରହ୍ମମୟ ।
ତୋହର ତାତ ପଣ୍ଡିତ ଗୁରୁ ବୃହସ୍ପତି
ଏହାଙ୍କୁ ଅବା କାହିଁକି ଡରିବ ମୋ ମତି ।
ଶ୍ରୀହରିଙ୍କ ପ୍ରସାଦରେ ଏ ତିନି ଜଗତେ
କେ କରି ନ ପାରେ ମୋର ଅଶୁଭ କାହିଁତେ ।
ଏହି ପାରିଜାତ ପୁଷ୍ପ ଥିବ ଯ ମୁଣ୍ଡରେ
ପ୍ରଥମରେ ପୂଜା ସେହି ପାଇବ ଲୋକରେ ।
ଆହେ ମୁନି ଯେତେବେଳେ ଶିବ ଶିଶୁଙ୍କର
ମସ୍ତକ ଛେଦନ ହେଲା ସେ ସମସ୍ତେ ହର ।
ସେ ଗଜ ମସ୍ତକ ନେଇ ଯୋଗ କରାଇଲେ
ସେହି ଦିନୁ ଗଣପତି ଗଜମୁଖ ହେଲେ ।
ଦୁର୍ବାସାଙ୍କଠାରୁ ଶୁଣି ଏମନ୍ତ ବଚନ
ତାଙ୍କ ପାଦ ଧରି ଉଚେ କାନ୍ଦ ମଘବାନ ।
କହଇଲେ ହେ ମୁନିବର ନ ଦେନ ମୋ ଦୋଷ
କାମଭୋଗେ ଆସକତ ଥିଲା ମୋ ମାନସ ।
ତହିଁକି ଯେ ଶାପ ଦେଲେ ଅଟଇ ଉଚିତ
ଦୋଷ କଲେ ଦଣ୍ଡ ଭୋଗ କରିବା ନିଶ୍ଚିତ ।

ଏବେ ବେଲୁଅଛି ମୋର ସମ୍ପଦକୁ ହରି
ନେଇ ତ କହ୍ନ ଜ୍ଞାନ ଏଥ ବସ୍ତାକରି ।

**ଐଶ୍ୱର୍ଯ୍ୟ ଅଟେ ସବୁ ବିପଦ କାରଣ**

ଏ ବାହାରେ ଜ୍ଞାନ-ବୃକ୍ଷ-ମୂଳ ନିପାତନ ।
ଅର୍ଗଳ ଅଟଇ ମୁକ୍ତି ମାର୍ଗରେ ସେହି
ପୁଣି ହରିଭକ୍ତି ପ୍ରତିବନ୍ଧକ ଅଟଇ ।
ଜନ୍ମ ମୃତ୍ୟୁ ଜରା ରୋଗ ଶୋକ ସମ୍ପତରେ
ଆଶ୍ରୟ କରି ରହନ୍ତି ସମ୍ପଦ ପଟରେ ।
ସମ୍ପଦ ତିମିର ଅନ୍ଧ ଅଟେ ଯେ ମନୁଷ୍ୟ
ମୁକତି ମାର୍ଗ ତାହାର ନ ହୁଅଇ ଦୃଶ୍ୟ ।
ସମ୍ପଦରେ ଅବା ସୁରାପାନରେ ଯେ ମତ୍ତ
ସ୍ଥିର ହୋଇ ନ ପାରଇ କେବେ ତାର ଚିତ୍ତ
ବନ୍ଧୁବାନ୍ଧବେ ପାଶରେ ଥିଲେ ହେଁଲେ ସେହି
ନିକଟରେ ଦ୍ରୋହ କର୍ମମାନ ଆଚରଇ ।
ସମ୍ପଦ ବିଷୟମଦେ ହୋଇଲେ ଚଞ୍ଚଳ
ଲମ୍ପଟ୍ୟ ରଜସ ଗୁଣ କରଇ କବଳ ।
ବିଷୟ ଅନ୍ଧ ଅଟଇ ଦୁଇ ପରକାରେ
ରାଜସ ତାମସ ସେହି ଅଟନ୍ତି ନାମରେ ।
ଶାସ୍ତ୍ରଜ୍ଞ ନ ହୋଇଥିଲେ ବୋଲନ୍ତି ତାମସ
ଶାସ୍ତ୍ର ଜାଣିଥିଲେ ତାଙ୍କୁ ବୋଲନ୍ତି ରାଜସ ।
ଶାସ୍ତ୍ରରେ ଦୁଇ ପ୍ରକାର ମାର୍ଗ ଦେଖାଯାଏ
କହୁଅଛି ତାହା ଏବେ ଶୁଣ ଋଷିରାୟେ ।
ପ୍ରବୃତ୍ତି ବୀଜ ଅଟଇ ପ୍ରଥମର ନାମ
ଦ୍ୱିତୀୟଟି ଅଟେ ମୋହ ନିବୃତ୍ତି କାରଣ ।
ଦୁଃଖଦ ବିଷୟ ଯେଉଁ ପ୍ରବୃତ୍ତି ତହିଁରେ
ଧାଇଁଯାଇ କରନ୍ତି ଜୀବଗଣ ପ୍ରଥମରେ ।
ପ୍ରତିକ୍ଷଣ ମାନସକେ ତାହା ହୁଏ ସୁଖକର
ମାତ୍ର ପରିଣାମେ ଘଟିଥାଏ ଦୁଃଖ ଘୋର ।
ଜନ୍ମ ମୃତ୍ୟୁ ଜରା ବ୍ୟାଧି ତାହା ସଙ୍ଗେ ଥାନ୍ତି
ଯେ ଯାହା ସମସ୍ତ ଜାଣି ପୀଡ଼ାକୁ ଦିଅନ୍ତି ।
କ୍ରମେ ବହୁତ ଯୋନିରେ ଜନ୍ମ ଲଭି କରି
କେତେକାଳ ଯାଏ ନାନା ଅମିତ ଆଚରି ।
ଶ୍ରୀକୃଷ୍ଣଙ୍କ ଅନୁଗ୍ରହ ହୁଅନ୍ତି ଯେବେ
ମୋହ ନିବୃତ୍ତି କାରଣ ଭାବ ଆସେ ତେବେ ।
ସଜ୍ଜନ ସଙ୍ଗମ ଇଚ୍ଛା ହୁଏ ସେତେବେଳେ
କାଳ ଅତିକ୍ରମି ଯାଏ ସାଧୁଙ୍କର ମେଳେ ।

ସତ୍ତ୍ୱଗୁଣ-ଯୋଗ ଲୋକ ସାଧୁ ମହାମନ୍ତ
ମୋହ-ତମ ନାଶି ମୁକ୍ତି ମାର୍ଗକୁ ଦେଖନ୍ତି ।
ସେହି ସମୟରେ ଜୀବ ପାଇ ତତ୍ତ୍ୱଜ୍ଞାନ
ଯତ୍ନକରେ ଖଣ୍ଡିବାକୁ ସଂସାର ବନ୍ଧନ ।
ସହସ୍ର ଶତ ମଧ୍ୟରେ ଏହିପରି ଏକ
ଦେଖାଯାଇପାରେ ଆହେ ମୁନିଙ୍କ ନାୟକ ।
ଗୁରୁଙ୍କ ମୁଖରୁ ଏହା ଶୁଣିଥିଲି ମୁହିଁ
ପ୍ରସଙ୍ଗ ବଶରେ ତୁମ୍ଭ ଆଗେ ଦେଲି କହି ।
ଏଥିରୁ ଅଧିକ ଆଉ ପଣ୍ଡିତେ କିଛି
କହି ନ ପାରିବେ ଜାଣ ଆହେ ମୁନି ବର୍ଯ୍ୟ ।
ମୋର ଭାଗ୍ୟବଳେ ଆଜ ତୁମ୍ଭପରି ଜ୍ଞାନୀ
ଘଟାଇଲେ ପାଶେ ଆଣି ଦେବ ସତ୍‌ଯୋଗ ।
ସମ୍ପଦ ସ୍ୱରୂପ ଅଟେ ଏ ବିପଦ ମୋତ
ଏଥିଯୋଗେ ନିଶ୍ଚୟ ମୁଁ ପାଇବି ନିସ୍ତାର ।
ଆହେ ଦେବ ଦୟାମୟ ଜ୍ଞାନ ଅବତାର
କିଞ୍ଚିତ ଜ୍ଞାନ ଦେଇଣ ଅନୁଗ୍ରହ କର ।
ଏହିରୂପେ ପୁରନ୍ଦର ବଚନକୁ ଶୁଣି
ଜ୍ଞାନଗୁରୁ ସେ ଦୁର୍ବାସା ଋଷିକୁଳମଣି ।
ପ୍ରସନ୍ନ ଦୃଷ୍ଟିରେ ଚାହିଁ ଅଳପ ହସିଲେ
ଉତ୍ତମ ଜ୍ଞାନ କହିବାପାଇଁ ଆରମ୍ଭିଲେ ।
ବୋଇଲେ ହେ ଦେବରାଜ ତୁମ୍ଭର ବଚନ
ଶୁଣିକରି ପରିତୋଷ ହେଲା ମୋର ମନ ।
ଏବେ ଦିବ୍ୟଜ୍ଞାନ ମାର୍ଗ ଦେଖିବାକୁ ତୁମ୍ଭେ
ଇଚ୍ଛା କରିଅଛ ଏହା ଜାଣିଲୁଣି ଆମ୍ଭେ ।
ଯେଉଁ ଜ୍ଞାନ ଅପାତରେ ଅଟେ ଦୁଃଖହେତୁ
କିନ୍ତୁ ପରିଣାମେ ସୁଖ-ସମୁଦ୍ରର ସେତୁ ।
ଯାହାଯୋଗେ ଜନ୍ମ ମୃତ୍ୟୁ ଖଣ୍ଡିତ ହୁଅଇ
ରୋଗଶୋକ ଆଦି ପୀଡ଼ା ବାଧି ନ ପାରଇ ।
କର୍ମ ବୃକ୍ଷ ମୂଳକୁ ଯେ କରେ ଉତ୍ପାଟନ
ଆବର କରଇ ମନେ ସନ୍ତୋଷ ପ୍ରଦାନ ।
ସକଳ ମାର୍ଗର ସେହୁ ଅଟଇ ପ୍ରବର
ତାରଣ କରଇ ହେଲେ ସଂସାର ସାଗର ।
ଦାନ ତୀର୍ଥ ସ୍ନାନ ତପ ଉପବାସ କଲେ
ସ୍ୱର୍ଗ ସୁଖ ଭୋଗ ପରିମିତ ହୁଏ ଭଲେ
ସଂକଳ୍ପବିହୀନ ଅଟେ ଯେବଣ ତପସ୍ୟା
ମୋକ୍ଷବୀଜ ବୋଲି ତାକୁ ଜାଣ ମହାଯଶା ।

କାମନାଶୂନ୍ୟ ସାତ୍ତ୍ୱିକ କର୍ମ କରି ଯେହୁ
ଶ୍ରୀକୃଷ୍ଣଙ୍କ ପାଦେ ସବୁ ଅର୍ପଣ କରଇ ।
ତାକେ ଲୀନ ହୁଏ ସେହୁ ପରମ ବ୍ରହ୍ମରେ
ନ ପଡ଼ଇ ପୁଣି ଆଉ ସଂସାର ମଧ୍ୟରେ ।
ସାଂସାରିକ ଜୀବଙ୍କର ଏରୂପେ ନିର୍ବାଣ
ପ୍ରାପତ ହୁଅଇ ଆହେ ପୁରନ୍ଦର ଜାଣ ।
ବୈଷ୍ଣବମାନେ ଏହା ଇଚ୍ଛା ନ କରନ୍ତି
ଶ୍ରୀକୃଷ୍ଣ ସେବାରେ ଥାଏ ତାହାଙ୍କର ମତି ।
ଗୋଲୋକ ଭୁବନେ ଅବା ବୈକୁଣ୍ଠପୁରେ
ଉତ୍ତମ ଦେହ ଧାରଣ କରି ନିରନ୍ତରେ ।
ସେହି ପରମାତ୍ମାଙ୍କର ସେବା କାର୍ଯ୍ୟ କରି
ଆନନ୍ଦରେ ଦିବା ନିଶି ନେଉଥାନ୍ତି ହରି ।
ଜୀବନମୁକ୍ତ ଅଟନ୍ତି ବୈଷ୍ଣବଗଣ
ଶ୍ରୀକୃଷ୍ଣ ସେବା ତାଙ୍କର ଅଟଇ ନିର୍ବାଣ ।
ବିଷ୍ଣୁଙ୍କ ଅର୍ଚ୍ଚନ ଗୁଣ କୀର୍ତ୍ତନ ସ୍ମରଣ
ବନ୍ଦନ ସ୍ତବନ ନିତ୍ୟ ନୈବେଦ୍ୟ ଭକ୍ଷଣ ।
ପଦ ଉଦକ ସେବନ ଧ୍ୟାନ ମନ୍ତ୍ର ଜପ
ଏ ସବୁ ଅଟନ୍ତି ମୁକ୍ତି କାରଣ ସ୍ୱରୂପ ।
ସମସ୍ତ ଲୋକର ଇଷ୍ଟ ଅଟଇଟି ଏହା
ମନ ଦେଇ କରି ଶୁଣ ଆହେ ଶଚୀନାହା ।
ଏହି ମୃତ୍ୟୁଞ୍ଜୟ ଜ୍ଞାନ ଦେବ ମୃତ୍ୟୁଞ୍ଜୟ
ଦେଇଥିଲେ ପୂର୍ବେ ମୋତେ ହୋଇଣ ସଦୟ ।
ତାହାଙ୍କ ପ୍ରଧାନ ଶିଷ୍ୟ ଅଟଇଟି ମୁହିଁ
ସେ ସକାଶୁଁ କାହାଠାରେ ମୋର ଶଙ୍କା ନାହିଁ ।
ତିନିଲୋକରେ ଦୁର୍ଲ୍ଲଭ ଶ୍ରୀହରି ଭକତ
ଦାନ ଯେ କରଇ ମନେ ତୋଷ ବହି ଅତ ।
ସେହି ଏକା ଜନ୍ମଦାତା ଗୁରୁ ବନ୍ଧୁ ଶ୍ରେଷ୍ଠ
ଜଗତରେ ତାହାପରି ନାହିଁ କେ ଉତ୍କୃଷ୍ଟ ।
ଯେଉଁ ଲୋକ ହରିଭକ୍ତି ବିନା ଅନ୍ୟ ପଥ
ଦେଖାଏ ସେ ନାଶକର୍ତ୍ତା ଅଟଇ ନିଶ୍ଚିତ ।
ମଙ୍ଗଳ କାରଣ ଯେଉଁ ଶ୍ରୀକୃଷ୍ଣଙ୍କ ନାମ
ତାହାକୁ ସର୍ବଦା ହୃଦେ କରଇ ଯେ ଧ୍ୟାନ ।
କଲ୍ୟାଣ ଆୟୁଷ ବୃଦ୍ଧି ହୁଅଇ ତାହାର
ସ୍ତୁତି କରନ୍ତି ପ୍ରଭୁ ଗଙ୍ଗାଚନ୍ଦ୍ରଧର ।
ଜନ୍ମ ମୃତ୍ୟୁ ରୋଗ ଶୋକ ଯନ୍ତ୍ରଣା ଏମାନେ
ଭୟ କରି ନ ଯାଆନ୍ତି ତାର ସନ୍ନିଧାନେ ।

ଉତ୍ତମ ବ୍ରାହ୍ମଣ ହେଉ ହେଉ ବା ଚଣ୍ଡାଳ
ଶ୍ରୀକୃଷ୍ଣଙ୍କୁ ଉପାସନା କରଇ ଯେ ମୂଢ ।
ଦେହଅନ୍ତେ ବ୍ରହ୍ମଲୋକ ଅତିକ୍ରମ କରି
ଆନନ୍ଦରେ ଯାଏ ସେହି ଗୋଲୋକ ନଗରୀ ।
ମଧୁପର୍କ ଘେନି ବ୍ରହ୍ମା ପୂଜନ୍ତି ତାହାକୁ
ଆସନ୍ତି ଦେବତାଗଣ ସ୍ତୁତି କରିବାକୁ ।
ଯୋଗ ତପରୁ ଅଧିକ ଶ୍ରୀକୃଷ୍ଣ ସେବନ
ଏମନ୍ତ କହିଅଛନ୍ତି ଦେବ ବିଲୋଚନ ।
ଆହେ ଇନ୍ଦ୍ର ବ୍ରହ୍ମାଆଦି ତୃଣ ପର୍ଯ୍ୟନ୍ତେ
ସକଳ ଅଟଇ ମିଥ୍ୟା ଅନିତ୍ୟ ଜଗତେ ।
ସତ୍ୟସିଦ୍ଧ ପରଂବ୍ରହ୍ମ ଶ୍ରୀକୃଷ୍ଣ ମୂରତି
ତାଙ୍କଠାରେ ମନଯୋଗ କର ଶଚୀପତି ।
ଅଶେଷ ସୁଖଦ ଏହି ଭକ୍ତ ମୁକ୍ତିଦାତା
ସିଦ୍ଧ ବଇଷ୍ଣବଙ୍କର ଉପାସ୍ୟ ଦେବତା ।
ସବୁ ଲୋକଙ୍କର କର୍ମଭୋଗ ଥାଏ ରହି
ନାରାୟଣ ସେବାଯୋଗେ ଯାଏ ଧ୍ୱଂସ ହୋଇ ।
ଯେଉଁରୂପେ ଶୁଷ୍କକାଷ୍ଠ ଜ୍ୱଳନ୍ତ ଅନଳେ
ପଡ଼ିଲେ ପାଉଁଶ ହୋଇଥାଏ ତତକାଳେ ।
ସେହିପରି ପାପରାଶି ହୁଏ ଭସ୍ମୀଭୂତ
ସନ୍ଦେହ ନ କର ଆହେ ଶଚୀଦେବୀକାନ୍ତ ।
ଯମଦୂତମାନେ ଯେବେ ବିଷ୍ଣୁଭକତକୁ
ଦେଖନ୍ତି ନ ଯାନ୍ତି ଭୟେ ତାହାର ପାଶକୁ ।
ଯେତେଦିନ ଯାଏ କୃଷ୍ଣମନ୍ତ୍ରକୁ ମାନବ
ଉତ୍ତମ ଗୁରୁଙ୍କଠାରୁ ଘେନି ଯେ ନ ଥିବ ।
ସଂସାରସ୍ୱରୂପ ବନ୍ଦିଗୃହେ ସେତେ ଦିନ
ପଡ଼ି ଭୋଗ କରୁଥିବ ରୋଗ ଶୋକମାନ ।
ଶ୍ରୀକୃଷ୍ଣ ମନ୍ତ୍ର ଅଟଇ ସଂସାରରେ ସାର
କର୍ମଭୋଗ ବନ୍ଧନରୁ କରଇ ନିସ୍ତାର ।
ପୁଣି ମାୟା ମୋହଜାଳେ କରେ ଛିନ୍ନ ଭିନ୍ନ
ଗୋଲୋକ ମାର୍ଗରେ ହୁଏ ପ୍ରଶସ୍ତ ସୋପାନ ।
ନିସ୍ତାର-ବୀଜ ଯେ ପୁଣି ଭକ୍ତି ବୃକ୍ଷାଙ୍କୁର
ନିତ୍ୟବୃଦ୍ଧ ସବୁ ତପ ଯୋଗ ମଧ୍ୟେ ସାର ।
ବେଦପାଠ ବ୍ରତ ଦାନ ଯଜ୍ଞ ତୀର୍ଥ ସ୍ନାନ
ପୂଜା ଉପବାସ ଆଦି ଯେତେ କର୍ମମାନ ।
ସବୁଠାରୁ ବିଷ୍ଣୁଭକ୍ତି ଉତ୍ତମ ଅଟଇ
କହିଅଛନ୍ତି ଏରୂପେ ସାବର୍ଣୀଙ୍କ ସାଇଁ ।

ଯେଉଁ ଭକ୍ତ କରେ ବିଷ୍ଣୁମନ୍ତ୍ରକୁ ଗ୍ରହଣ
ଲକ୍ଷେ ପୂର୍ବପୁରୁଷଙ୍କୁ ସେହି କରଇ ତାରଣ ।
ସେହିପରି ମାତୃକୁଳେ ଶତେ ପୂର୍ବପୁରୁଷଙ୍କୁ
ନିସ୍ତାର କରଇ ଜାଣ କହିଲି ତୁମ୍ଭଙ୍କୁ ।
ଗୁରୁ ଗୁରୁପତ୍ନୀ ନିଜ କଳତ୍ର ତନୟ
ଦୁହିତା ବାନ୍ଧବ ଶିଷ୍ୟ ଭ୍ରାତୃବର୍ଗଚୟ ।
ଶ୍ୱଶୁର ଶ୍ୱଶ୍ରୂ ଆବର ଦାସଦାସୀ ଯେତେ
ଏହାଙ୍କୁ ମୁକ୍ତ କରଇ ଆପଣା ସଙ୍ଗତେ ।
ଜୀବନମୁକତ ସେହି ଅଟଇଟି ଜାଣ
ଅନ୍ତଃକାଳେ ଯାଏ ବିଷ୍ଣୁଭବନରେ ପୁଣ ।
ଗଙ୍ଗା ସରସ୍ୱତୀ ଆଦି ଯେତେ ପୁଣ୍ୟତୀର୍ଥ
ତା ଅଙ୍ଗ ପରଶମାତ୍ରେ ହୁଅନ୍ତି କୃତାର୍ଥ ।
ପୃଥିବୀ କୃତାର୍ଥ ହୁଏ ତା ପାଦଧୂଳିରେ
କରଣନ କଲେ ତାକୁ ମୁକ୍ତହୁଅନ୍ତି ନରେ ।
ବିଷ୍ଣୁମନ୍ତ୍ର ଦୀକ୍ଷାହୀନ ଅଟେ ଯେ ମନୁଷ୍ୟ
ବହୁତ ଜନ୍ମେ ଭ୍ରମଣ କରେ ମହୀଦେଶ ।
ସେ ଅନ୍ତରେ ପୁଣ୍ୟ ଶେଷ ହୁଅନ୍ତେ ତାହାର
ଜନ୍ମାନ୍ତରେ ଲଭେ ମନ୍ତ୍ର ଅନ୍ୟ ଦେବଙ୍କର
ଏହିପରି ସାତଜନ୍ମ ଅତୀତ ହୋଇଲେ
ସୂର୍ଯ୍ୟଙ୍କ ମନ୍ତ୍ର ଲଭଇ ନିଜ କର୍ମଫଳେ ।
ତିନୋଟି ଜନ୍ମ ସେବାକରି ଭାସ୍କରଙ୍କୁ
ଅପର ଜନ୍ମରେ ଲଭେ ଗଣେଶ ମନ୍ତ୍ରକୁ ।
ତାଙ୍କୁ ପୁଣି ତିନିଜନ୍ମ ଉପାସନା କରି
ନିର୍ବିଘ୍ନ ହୁଅଇ ଜାଣ ଆହେ ବଜ୍ରଧାରୀ ।
ବିଘ୍ନରାଜ ଗଣପତି ଅନୁଗ୍ରହ କଲେ
ଦିବ୍ୟଜ୍ଞାନ ପରାପ୍ତ ହୁଏ ଆସି ଭାଳେ ।
ସେହି ଦିବ୍ୟଜ୍ଞାନ ଦୀପ ଘେନି ତାର ମତି
ଅଜ୍ଞାନ ଅନ୍ଧାର ଦୂର କରଇ ଝଟତି ।
ଯେତେବେଳେ ପୁଣି ଦୁର୍ଗାଦେବୀଙ୍କୁ ଭଜନ
କରିବାକୁ ସେହି ଜାତ ହୁଅଇ ସୁଜନ ।
ପ୍ରକୃତିରୂପିଣୀ ସର୍ବ ଦୁର୍ଗତିନାଶିନୀ
ସିଦ୍ଧିଦା ସିଦ୍ଧିସ୍ୱରୂପ ପରମା ଯୋଗିନୀ ।
କୃଷ୍ଣପ୍ରିୟା ସରସ୍ୱତୀ ଲକ୍ଷ୍ମୀସ୍ୱରୂପିଣୀ
ଶୁଭଦାନୀ ମହାମାୟା ଜଗତଜନନୀ ।
ଏମନ୍ତ ଯେ ଦେବୀ ତାଙ୍କୁ ଶତେଜନ୍ମ ଯାଏ
ସେବାକରି ତାହାଙ୍କର ପ୍ରିୟଭକ୍ତ ହୁଏ ।

ତାଙ୍କ ଉପାସକଙ୍କ ପୁଣ୍ୟ ପାଇ ବୈରାଗ୍ୟଜ୍ଞାନ
ଜ୍ଞାନାନନ୍ଦଦେବଙ୍କୁ ସେ କରଇ ଭଜନ ।
ମହାଜ୍ଞାନ ସନାତନ ବ୍ରହ୍ମମୟ ସେହି
କୃଷ୍ଣଜ୍ଞାନ ଅଧିଷ୍ଠାତା ଦେବ ତାଙ୍କୁ କହି ।
ମଙ୍ଗଳ ମଙ୍ଗଳରୂପ କଲ୍ୟାଣଦାୟକ
ପରମ ଆନନ୍ଦ ଶାନ୍ତି ସୁଖ ବିଧାୟକ ।
ସକଳ ସମ୍ପଦ ମୁକ୍ତି ଦିଅନ୍ତି ସେ ଦେବ
ଦୀର୍ଘାୟୁଷ ଲଭି ହୁଏ ତାଙ୍କ କୃପାବଳେ ।
ଇନ୍ଦ୍ରଙ୍କ ଦେବତ୍ୱ ଆଦି ଦେଇ ସେ ତାଙ୍କୁ
ଆବର ଶ୍ରୀକୃଷ୍ଣଠାରେ ନିଶ୍ଚଳ ଭକତ ।
ଜନ୍ମଜନ୍ମ ଯାଏ ତାଙ୍କୁ ଉପାସନା କରି
ତାଙ୍କଠାରୁ ବର ଲାଭ କରଇ ସେପରି ।
ସେ ସମୟେ ସୁନର୍ମଳ ଜ୍ଞାନ ଜାତ ହୁଏ
ସାଂସାରିକ ବିଷୟର ତତ୍ତ୍ୱ ଜଣାଯାଏ ।
ବ୍ରହ୍ମଠାରୁ ଆଦିକରି ତୃଣ ପର୍ଯ୍ୟନ୍ତେ
ସବୁ ମିଥ୍ୟା ବୋଲି ଜଣା ଦେଉଛି ଚିତ୍ତେ ।
ସେ ଅନ୍ତେ ଶଙ୍କରଙ୍କୁ ସେବା କରେ ଯାଇ
ତାଙ୍କ ବରେ ଶ୍ରୀହରିଙ୍କ ମହିମା ଜାଣଇ ।
ଭକ୍ତିଭରେ ମନପ୍ରାଣ ଦେଇ ସେତେବେଳେ
ଶ୍ରୀହରିଙ୍କୁ ସୁମରଣା କରଇ ନିଶ୍ଚଳେ ।
ପରମ ଆନନ୍ଦେ ଏହିପରି କେତେ ଜନ୍ମ
ଗଲା ପରେ ଭାରତରେ ଜାତ ହୁଏ ପୁଣ ।
ବିଷ୍ଣୁଙ୍କ ମନ୍ତ୍ରଗ୍ରହଣ କରି ସେ ଦେହରେ
ନିଷ୍ପାପ ହୁଅଇ ସେହି ମନ୍ତ୍ର ପ୍ରଭାବରେ ।
ଆୟୁଷ ଶେଷରେ ପଞ୍ଚଭୂତ ଦେହ ତେଜି
ଦିବ୍ୟରୂପ ଧରି ଯାଏ ମୁକ୍ତିମାର୍ଗ ହେଜି ।
ଗୋଲୋକରେ ଅବା ବଇକୁଣ୍ଠ ଭୁବନରେ
ଶ୍ରୀହରିଙ୍କ ଦାସ ହୋଇ ରହେ ଆନନ୍ଦରେ ।
ଲୋଭ ମୋହଆଦି କେହି ନ ଯାନ୍ତି ତା ପାଶେ
ନିଶ୍ଚିନ୍ତରେ ଥାଏ ସେହୁ ବିଷ୍ଣୁଙ୍କ ପାର୍ଶ୍ୱେ ।
ସଂସାରେ ଜନମ ଆଉ ନୁହଇ ତାହାର
ମୋର କହିବାରୁ ଶୁଣ ଆହେ ସୁରେଶ୍ୱର ।
ବିଷ୍ଣୁମନ୍ତ୍ର ଉପାସନା ତୀର୍ଥଜଳେ ସ୍ନାନ
ସ୍ୱଧର୍ମପାଳନ ନିଜ ଆଶ୍ରମ ରକ୍ଷଣ ।
ଏହା ଯେ କରଇ ତାର ପୁନର୍ଜନ୍ମ ନାହିଁ ।
ବିଧାତା ଏରୂପେ ଧର୍ମଶାସ୍ତ୍ରେ ଛନ୍ତି କହି ।

ବିଷ୍ଣୁଙ୍କର ନାମମନ୍ତ୍ର ଜପ କରୁଥିବ
ତାହାଙ୍କ ସେବାରୁ କେବେ ବିରତ ନୋହିବ ।
ଏ ବାରରେ ବ୍ରତ ଉପବାସ ଆଦି ଯେତେ
ପାଳନ କରିବ ହେଳା ନ କରି କଦାଚିତେ ।
ଏମନ୍ତ ଅଟଇ ବିଷ୍ଣୁସେବକର ଧର୍ମ
ଏହା ନ କଲେ ବିଫଳ ହୁଏ ସବୁ କର୍ମ ।
ଉତ୍ତମ ଅନ୍ନରେ ଅବା ତୃଣ ଭୋଜନରେ
କି ଅବା ଲୋଷ୍ଟ୍ର ପାଷାଣ ସ୍ୱର୍ଣ୍ଣ ରତନରେ ।
ଯାହାର ସମାନ ବୁଦ୍ଧି ହୁଅଇଟି ଜାତ
ସନ୍ନ୍ୟାସୀ ବୋଲଣ ସେହୁ ଜଗତରେ ଖ୍ୟାତ ।
କଷାୟବସ୍ତ୍ର ପିନ୍ଧି ଦଣ୍ଡକମଣ୍ଡଳୁ ଧରି
ନିତ୍ୟ ଯେ ପ୍ରବାସୀ ହୁଏ ଗୃହ ତ୍ୟାଗ କରି ।
ସନ୍ନ୍ୟାସୀ ବୋଲାଏ ସେହି ଆରେ ପୁରନ୍ଦର
ବିଶ୍ୱାସ କରନ୍ତି ତାହାଠାରେ ସବୁ ନର ।
ଶୁଚିମନ୍ତ ଦ୍ୱିଜ ଗୃହେ ଭୋଜନ କରଇ
ଲୋଭ ମୋହ ଆଦି ସବୁ ଦୋଷ ଛାଡ଼ିଥାଇ ।
କାହାକୁ ହେଲେ କିଛି ଯେ ନ କରେ ଯତନ
ସନ୍ନ୍ୟାସୀ ବୋଲନ୍ତି ତାଙ୍କୁ ଜ୍ଞାନୀବନ୍ତ ଜନ ।
ଯେଉଁ ଲୋକ ସତବ୍ରତ ଆଳାପବର୍ଜିତ
ସର୍ବଦା ଦେଖଇ ବ୍ରହ୍ମମୟ ଏ ଜଗତ ।
ତାହାକୁ ସନ୍ନ୍ୟାସୀ ବୋଲି ଜାଣ ସୁରପତି
ଆବର ଯେ ହିଂସା ମାୟା ଦ୍ୱେଷ ନ ଜାଣନ୍ତି ।
ସବୁଠାରେ ସମବୁଦ୍ଧି କରନ୍ତି ପ୍ରକାଶ
ତାହାଙ୍କୁ ସନ୍ନ୍ୟାସୀ ବୋଲି ଜାଣ ସୁରଈଶ ।
ସଂସାର କାର୍ଯ୍ୟରୁ ଯେହୁ ବିରତ ହୁଅଇ
ବର୍ଣ୍ଣ ଆଶ୍ରମ ପାଳନେ ଶ୍ରଦ୍ଧା ଛାଡ଼ିଦେଇ ।
ସର୍ବଦା ନାରାୟଣଙ୍କୁ କରୁଥାଏ ଧ୍ୟାନ
ସନ୍ନ୍ୟାସୀ ଅଟଇ ସେହି ଆହେ ମଘବାନ ।
ଆପଣା ଇଚ୍ଛାରେ ଆସି ହୁଅଇ ପ୍ରବେଶ
ଯାହା ଦେଲେ ଆନନ୍ଦରେ କରେ ପୂର୍ଣ୍ଣଗ୍ରାସ ।
ଖାଇବା ପାଇଁ କାହାକୁ କିଛି ନ ମାଗଇ
ଏମନ୍ତ ଲୋକ ଜଗତେ ସନ୍ନ୍ୟାସୀ ବୋଲାଇ ।
ଯେଉଁଲୋକ କାମିନୀଙ୍କ ପାଶରେ ନ ରହେ
ଆବର କେବେ ତାହାଙ୍କ ମୁଖକୁ ନ ଚାହେଁ ।
ଆପଣା ଭାର୍ଯ୍ୟାକୁ ମଧ୍ୟ ନ କରେ ବରଣ
ଅପୂର୍ବ ନାମ ତାହାର ଜଗତେ ପ୍ରକାଶ ।

ଏହିରୂପେ ସନ୍ନ୍ୟାସୀଙ୍କ ଧର୍ମ ନିରୂପିତ
କରିଅଛନ୍ତି ଶାସ୍ତ୍ରରେ ବିଜ୍ଞଗତତାତ ।
ଏଥିରେ ଯେ ବିପରୀତ ଆଚରଣ କରେ
ଜନ୍ମ ମରଣ କଷ୍ଟକୁ ଭୋଗେ ସେ ସଂସାରେ ।
ପାପକର୍ମ କଲେ ପୁଣି ଯମପୁରେ ଯାଇ
ଦାରୁଣ ଅସହ୍ୟ କଷ୍ଟ ଭୋଗ କରୁଥାଇ ।
ଜନ୍ମକାଳେ ପୁଣି ମୃତ୍ୟୁ ଅନ୍ତେ ଯମପୁରେ
ଯେଉଁ କ୍ଳେଶ ହୁଏ ତାହା କହିଲେ ନ ସରେ ।
ଦେବତା ଯୋନିରେ ଅବା ଶୂକର ଯୋନିରେ
ଜନ୍ମ ହେଲେ କଷ୍ଟ ହୁଏ ସମାନ ପ୍ରକାରେ ।
ସେହିପରି ପଶୁ ପକ୍ଷୀ ଆଦି ଜୀବଙ୍କର
ଜନ୍ମ ସମୟରେ କଷ୍ଟ ହୁଏ ମନେ କର ।
ଗର୍ଭେ ଥିଲାବେଳେ ସବୁ ଜୀବଙ୍କ ମନରେ
ସ୍ମରଣ ହୁଅଇ ପୂର୍ବ କର୍ମ ଯଥାର୍ଥରେ ।
କିନ୍ତୁ ଜନ୍ମ ହେବାପରେ ସେ ସମସ୍ତ କଥା
ପାସୋର ହୁଏ ବିଷ୍ଣୁଙ୍କ ମାୟାରେ ସର୍ବଥା ।
ଦେବତାଠାରୁ ଆରମ୍ଭି କୀଟ ପର୍ଯ୍ୟନ୍ତେ
ଶରୀର ପାଳିବା ଯତ୍ନ କରନ୍ତି ସମସ୍ତେ ।
ସ୍ତ୍ରୀ ପୁରୁଷ ଦୁହିଙ୍କ ସଙ୍ଗମ କାଳରେ
ପୁରୁଷର ବୀର୍ଯ୍ୟପଡ଼େ କାମିନୀ ଗର୍ଭରେ ।
ଶୋଣିତ ସଙ୍ଗରେ ତାହା ହୁଅଇ ମିଳିତ
ତହୁଁ ଏକ ପିଣ୍ଡ ଗର୍ଭ ମଧ୍ୟେ ହୁଏ ଜାତ ।
ରକ୍ତ ଅଧିକ ହୋଇଲେ ମାତୃତୁଲ୍ୟ ହୁଏ
ଅଧିକ ବୀର୍ଯ୍ୟରେ ପିତା ଆକୃତିକି ପାଏ ।
ଯେଉଁ ଦିବସରେ ଭାର୍ଯ୍ୟା ହୁଏ ଋତୁମତୀ
ସେଠାରୁ ଯୁଗ୍ମ ଦିନରେ ସଙ୍ଗକଲେ ପତି ।
ତହିଁରୁ ପୁତ୍ର ଉତ୍ପନ୍ନ ହୁଏ ଯଥାକାଳେ
କନ୍ୟା ଜାତ ହୁଏ ଏଥୁ ବିପରୀତ ହେଲେ ।
ରାତ୍ରିର ପ୍ରଥମ ଯାମେ ହେଲେ ଗର୍ଭସ୍ଥ
ଅଳପ ଆୟୁଷ ଶିଶୁ ହୁଅଇ ନିଶ୍ଚୟ
ସେହିପରି ଦ୍ୱିତୀୟ ବା ତୃତୀୟ ପ୍ରହରେ
କିଞ୍ଚିତ ଅଧିକ ଆୟୁ ହୁଅଇ କ୍ରମରେ ।
ଚତୁର୍ଥ ପ୍ରହରେ ଜାତ ହେବାର ସନ୍ତାନ
ସୁଦୀର୍ଘ ଆୟୁଷ ଲାଭ କରଇଟି ଜାଣ ।
ପୂର୍ବ କର୍ମ ଅନୁସାରେ ସୁଖ ଦୁଃଖ ଭୋଗ
ଦେହ ଥିବାଯାଏ ଜୀବ କରୁଥାଏ ଭୋଗ ।

ଯେମନ୍ତ କ୍ଷଣରେ ଗର୍ଭ ସ୍ଥିର ହୋଇଥାଇ
ପ୍ରସବକାଳରେ ସେହି ମୁହୂର୍ତ୍ତ ଘଟଇ ।
ସେଥିପାଇଁ ବିଜ୍ଞଜନେ ସମ୍ପ୍ରତି କ୍ଷଣରେ
ନାନାବିଧ ଇଷ୍ଟଶାନ୍ତି କରନ୍ତି ଯତ୍ନରେ ।
ଆହେ ପୁରନ୍ଦର ଏବେ ଗର୍ଭର ଲକ୍ଷଣ
କହିବା ସାଦରେ ମନ ଦେଇକରି ଶୁଣ ।
ବୀର୍ଯ୍ୟ ପତନ ହେବାର ଏକଦିନ ପରେ
କଲ୍ଲୋଳ ହୁଅଇ ମିଶି ରକ୍ତ ସହିତରେ ।
ଚନ୍ଦ୍ରକଳା ପରି ସେହୁ ବଢ଼େ ଦିନୁଦିନ
ସାତଦିନ ପରେ ହୁଏ ବଦରି ସମାନ ।
ସମାପତ ଏକମାସ ହୋଇଲେ ସେ ପୁଣି
ଗେଣ୍ଡୁକ ସଦୃଶ ହୁଏ ବୋଲି ଥାଅ ଜାଣି ।
ତିନମାସେ ହୁଏ ତାହା ମାଂସ ପିଣ୍ଡୁଟାଏ
ହସ୍ତପାଦ ଆଦି କିଛି ତହିଁରେ ନ ଥାଏ ।
ପଞ୍ଚମ ମାସରେ ସବୁ ଅବୟବ ପୂର୍ଣ୍ଣ
ହୁଅଇ ମାତ୍ର ତହିଁରେ ନ ଥାଏ ଜୀବନ ।
ଯେତେବେଳେ ଛଅମାସ ହୁଏ ପୁଣି ଶେଷ
ଜୀବଆତ୍ମା ଆସି ତହିଁ କରେ ପରବେଶ ।
ତାହା ସଙ୍ଗେ ସଙ୍ଗେ ହୁଏ ଜ୍ଞାନର ସଞ୍ଚାର
ସଂସାର ବିଷୟ ପୁଣି ହୁଅଇ ଗୋଚର ।
ପିଞ୍ଜରା ଭିତରେ ଥାଏ ଯେଉଁ ରୂପେ ପକ୍ଷୀ
ସେରୂପେ ମାତାର ଗର୍ଭେ ରହେ ହୋଇ ଦୁଃଖୀ ।
ଜଳ ଭିତରେ ପୂର୍ଣ୍ଣ ଅଟେ ସେହି ସ୍ଥାନ
ତହିଁରେ ପଡ଼ି ସର୍ବଦା କରଇ କ୍ରନ୍ଦନ ।
ପ୍ରତିଦିନ ମାତା ଯାହା କରଇ ଆହାର
ସେଥିରେ ଜୀବନ ରକ୍ଷା ହୁଏ ଦୁହିଙ୍କର ।
ବିବିଧ ଯାତନା ଭୋଗକରି ଏ ପ୍ରକାରେ
ଈଶ୍ୱରଙ୍କୁ ଧ୍ୟାନ କରୁଥାଏ ସେ ମନରେ ।
ତହୁଁ ନବମାସ ଅନ୍ତେ ବାୟୁବଳ ଯୋଗେ
ଗର୍ଭରୁ ଖସିଣ ଆଶ୍ରେ କରଇ ଅବନୀ ।
ପୂର୍ବେ ଯେଉଁ ଜ୍ଞାନ ତାର ଥାଏ ହୃଦୟରେ
ଦୂର ହୋଇଯାଏ ବେଗେ ବିଷ୍ଣୁଙ୍କ ମାୟାରେ ।
ବାଳକ ଅବସ୍ଥା ପୂର୍ଣ୍ଣ ହେବା ପର୍ଯ୍ୟନ୍ତେ
ମଳମୂତ୍ରେ ପଡ଼ି ଘାଣ୍ଟି ହୁଏ ସେ ନିରତ ।
ଡାଆଁଶ ମଶାଏ ଆସି ଦୋବାଇଲା ବେଳେ
ଅଡ଼ାଇ ନ ପାରି ରହି ଗଡ଼ଇ ବିକଳେ ।

ତୃଷ୍ଣା ଯାମକର ଜୀବନ ଯେ ହେଲ
କଳ୍ପିଦେଲେ କରିବାକୁ ସମର୍ଥ ନୁହଇ ।
ଏ କାଳରେ ପୁଣି ପାଞ୍ଚ ବରଷ ପାଏ
ଭଲ ମନ୍ଦ କଥା ଜାଣି ନ ପାରଇ ଦେହେ ।
ବହୁତ ଯାତନା ଭୋଗ କରି ସେ କାଳରେ
ଭ୍ରମଣ କରଇ କ୍ଷୁଦ୍ର ବାଳକ ମେଳରେ ।
କେତେଦିନ ଅନ୍ତେ ପୁଣି ହେଲେ ଯଉବନ
ବିସ୍ମୃତ ହୁଅଇ ପୂର୍ବ କଷ୍ଟ କଥାମାନ ।
ଆହାର ମୈଥୁନ ନିଦ୍ରା ବଶବର୍ତ୍ତୀ ହୋଇ
ଧନ ପୁତ୍ର ଲଭିବାକୁ ଯତନେ ପାଳଇ ।
ତାହା କରିବାକୁ ଯେବେ ହୁଏ ସମରଥ
ଲୋକମୁଖେ ପରଶଂସା ଶୁଣଇ ବହୁତ ।
ଅସମର୍ଥ ହେଲେ ନିଜ ବନ୍ଧୁ ଆଦିକରି
ଭର୍ତ୍ସନା କରନ୍ତି ଶତ୍ରୁ ଭାବକୁ ଆଚରି ।
ଏହିପରି କେତେକାଳ ଗତହେଲା ପରେ
ଜରା ଆସି ପରବେଶ ହୁଅନ୍ତେ ଦେହରେ ।
କେଉଁ କାର୍ଯ୍ୟ କରିବାକୁ ନ ଲଗଇ ବଳ
ଅକର୍ମଣ୍ୟ ହୋଇଥାନ୍ତି ଇନ୍ଦ୍ରିୟ ସକଳ ।
ଅନ୍ଧ ବଧିର ଦସ୍ୟେ ଘରେ ରହି ବସି
କହି ନ ପାରଇ ଆଉ କଥା ପଦେ ହସି ।
ସାୟଂକାଳେ ପକ୍ଷୀଗଣ ବୃକ୍ଷେ ଗଲାପରି
ପ୍ରବେଶ ହୁଅନ୍ତି ଦେହେ ରୋଗ ଆସିକରି ।
ସେ ସମୟେ ଅନୁତାପ କରେ ସେ ବହୁତ
ବିଚାରଇ କେଡ଼େ ମନ୍ଦ ଅଟେ ମୋର ଚିତ୍ତ ।
ମୃତ୍ତିକା ଘଟର ରନ୍ଧ୍ର ବୁଜିବାର ପାଇଁ
ଦକ୍ଷିଣାବର୍ତ୍ତ ଶଙ୍ଖକୁ ଚୂର୍ଣ୍ଣକଲି ମୁହିଁ ।
କେବେ ହେଲେ ଶ୍ରୀହରିଙ୍କ ନାମ ନ ଭଜିଲି
ବିଷୟ ଭୋଗ ସୁଖରେ ଦିନ କଟାଇଲି ।
ତୀର୍ଥବ୍ରତ ଉପବାସ ସାଧୁଜନ ସଙ୍ଗ
ଥରେ ମାତ୍ର ଭୋଗକରି ନ ପାରିଲି ଅଙ୍ଗ ।
ଯେବେ ଆଉ ଥରେ ମୁହିଁ ଭାରତବର୍ଷରେ
ଜନମ ହୋଇବି ପୁଣି ମନୁଷ୍ୟ ଯୋନିରେ ।
ତୀର୍ଥସ୍ନାନ ଉପବାସ ବ୍ରତ ଆଚରିବି
ସବୁବେଳେ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥିବି ।
ଏହିରୂପେ ଭାବୁ ଭାବୁ କେତେଦିନ ଅନ୍ତେ
ମୃତ୍ୟୁକାଳ ଆସି ଉପସ୍ଥିତ ହୋଇଯାନ୍ତେ ।
ବିନାଶ ଉତ୍କଟ ବେଗ ଦେହ ଜାତ ହୁଏ
କେତେ ଯତ୍ନକଲେ ହେଲେ ଛାଡ଼ି ସେ ନ ପାଏ
ସେହିକାଳେ ଯମଦୂତ ଆଗେ ଆସି ତାର
ଉଭାହୁଏ ପାଶ ଦଣ୍ଡ ଘେନିଣ ସତ୍ୱର ।
ସରୋଷ ପିଙ୍ଗଳବର୍ଣ୍ଣ ବିକୃତ ଆନନ
ଅନିବାର୍ଯ୍ୟ ଭୟଙ୍କର ଆରକ୍ତ ଲୋଚନ ।
ଏମନ୍ତ ରୂପକୁ ଦେଖି ଭୟରେ ସେ ପ୍ରାଣୀ
ମଳମୂତ୍ର ବିସର୍ଜନ କରେ ସେହିକ୍ଷଣି ।
ଶୁହୁଁ ଶୁହୁଁ ପ୍ରାଣବାୟୁ ମୃତଦେହ ଛାଡ଼ି
ପିଞ୍ଜରାରୁ ପକ୍ଷୀ ପରି ଯାଏ ବେଗେ ଉଡ଼ି ।
ତାହା ଦେଖି ଯମଦୂତ ଅଙ୍ଗୁଷ୍ଠ ପ୍ରମାଣ
ପୁରୁଷକୁ ଘେନି ତହୁଁ କରଇ ପ୍ରୟାଣ ।
ଭୋଗ ଦେହରେ ସ୍ଥାପନା କରି ତାକୁ ପୁଣି
ଯମଙ୍କ ଆଗକୁ ବେଗେ ଘେନିଯାଏ ଟାଣି ।
ପରମ ଧାର୍ମିକ ଯେହୁ ପ୍ରେତଙ୍କ ରାଜନ
ପ୍ରତ୍ୟକ୍ଷରେ ତାଙ୍କ ଜୀବ କରଇ ଦର୍ଶନ ।
ଅମୂଲ୍ୟ ରତନ ସିଂହାସନେ ବିଜେ କରି
ବସିଥା'ନ୍ତି ପ୍ରଭାମୟ ମାରତଣ୍ଡ ପରି ।
ସସ୍ମିତ ସୁସ୍ଥିର ଧର୍ମ ବିଗ୍ରହ କୁଶଳ
ସର୍ବଜ୍ଞ ସ୍ୱରୂପ ମୂର୍ତ୍ତି ନିଜଗତପାଳ ।
ବିରାଜିତ ଅଙ୍ଗେ ନାନା ରତ୍ନ ଅଳଙ୍କାର
ଅଗ୍ନି ଶୁଦ୍ଧ ଝୀନ ରକ୍ତ ବସନ ଆବର ।
ଅନେକୋଟି ପାରିଷଦ ଦୂତ ଚାରିପାଶେ
ଘେରି ରହିଥାନ୍ତି ତାଙ୍କୁ ସର୍ବଦା ହରଷେ ।
ଶୁଦ୍ଧସ୍ଫଟିକ ମାଳିକା ହସ୍ତଦେଶେ ଘେନି
ଜପ କରନ୍ତି ସେ କୃଷ୍ଣ ନାମାକ୍ଷର ବେନି ।
ସର୍ବଦା ତାଙ୍କର ମନ ଶ୍ରୀକୃଷ୍ଣଙ୍କ ପଦେ
ନିବିଷ୍ଟ ହୋଇଣ ରହିଥାଏ ଅପ୍ରମାଦେ ।
ସର୍ବାଙ୍ଗରେ ଜାତ ହୁଏ ପୁଲକ-ଅଙ୍କୁର
ଭକ୍ତିଭରେ ପୁଣି ବହେ ନୟନରୁ ନୀର ।
ସୁନ୍ଦର ଶ୍ରୀଅଙ୍ଗ ନବଯୌବନ ବୟସ
ପ୍ରକାଶିତ କରନ୍ତି ଯେ ତେଜେ ଦଶଦିଶ ।
ଶରଦ ପାର୍ବଣ ଚନ୍ଦ୍ର ତୁଲ୍ୟ ଦେହ କାନ୍ତି
ପୁଣ୍ୟବନ୍ତ ଲୋକ ମନେ ଜନମାଏ ଶାନ୍ତି ।
ପାତକୀ ଲୋକଙ୍କୁ ଦିଶେ ମହା ଭୟଙ୍କର
ଯେରୂପେ ସର୍ପଙ୍କୁ ଦେଖନ୍ତି ଖଗେଶ୍ୱର ।

ଧର୍ମ ଅଧର୍ମ ବିଚାର କରିବା ସକାଶେ
ନିଯୁକ୍ତ ଅଟଇ ସେହି ଧାତାଙ୍କ ଆଦେଶେ ।
ପାଞ୍ଜି ଘେନି ଚିତ୍ରଗୁପ୍ତ ତାଙ୍କ ଆଗେ ବସି
କହୁଥାନ୍ତି ପ୍ରାଣୀଙ୍କର ପାପ ପୁଣ୍ୟରାଶି ।
ପୁଣ୍ୟବନ୍ତ ଯେତୁ ନର ନ ଥାଏ ତା ଡର
ଯମଙ୍କୁ ଦେଖିଲେ ମଣେ ସ୍ୱରୂପ ସୁନ୍ଦର ।
ପାପୀଲୋକ ଦେଖି ତାଙ୍କୁ ହୁଏ ଥରହର
ଯମତେଜେ ବୁଜ ହୋଇଯାଏ ଚକ୍ଷୁ ଧାର ।
ଜୀବ ସିଂହାସନ ପାଶେ ଉପନେହଲେ ଯାଇ
ପଚାରନ୍ତି ଧର୍ମରାଜ ଚିତ୍ରଗୁପ୍ତେ ସ୍ମରି ।
କହ କହ ଏହା ପାପ ପୁଣ୍ୟ ଅଛି କେତେ
ଚିତ୍ରଗୁପ୍ତ ବଖାଣନ୍ତି ସବୁ ବିଧିମତେ ।
ତାଙ୍କ ବିଚାର ପ୍ରକାରେ ଶୁଭାଶୁଭ ଫଳ
ଦିଅନ୍ତି ଉଚିତ ଯାହା ବୁଝି ତତକାଳ ।
ଆହେ ସୁରପତି ଏହିପରି ଜୀବଗଣ
ଗତାଗତ ହୋଇ ଶାନ୍ତି ନ ପାଆନ୍ତି ଜାଣ ।
ଶ୍ରୀକୃଷ୍ଣଙ୍କୁ ନ ସେବିଲେ ତହିଁରୁ ନିବୃତ୍ତି
ଲଭିବା ପାଇଁ କାହାର ନାହିଁ ସେ ଶକତି ।
ଯାହା ଇଚ୍ଛା କରିଥିଲ ଶୁଣିଲ ତ ସବୁ
କି ବର ମାଗୁଛ ଏବେ ମାଗ ଆମ୍ଭେ ଦେବୁ ।
ଆମ୍ଭର ଅସାଧ୍ୟ ହୋଇ ଜଗତ ମଧ୍ୟରେ
କେଉଁ କଥା ଅଛି ବୋଲି ନ ଭାବ ମନରେ ।
ଦୁର୍ବାସାଙ୍କ ମୁଖୁ ଶୁଣି ଏମନ୍ତ ବଚନ
ବିନୟେ କହିଲେ ତାଙ୍କୁ ତ୍ରିଦଶ ରାଜନ ।
ବୋଇଲେ ହେ ମୁନିବର ମୋର ଇନ୍ଦ୍ରପଦ
ଗଲାଯେବେ ଆଉ କିସ କରିବ ସମ୍ପଦ ।
କେବଳ ବୋଲୁଛି ମୁକ୍ତିମୟ ଯେଉଁ ସ୍ଥାନ
ସନ୍ତୋଷରେ ତାହା ମୋତେ କରନ୍ତୁ ପ୍ରଦାନ ।
ଦୁର୍ବାସା ବୋଇଲେ ଆହେ ସୁର ଅଧୀଶ୍ୱର
ଉତ୍ତମ କଥାରେ ମନ ବଳାଛି ତୁମ୍ଭର ।
କିନ୍ତୁ ତୁମ୍ଭ ପକ୍ଷେ ଏହା ନୁହଇ ସୁଲଭ
ବିଷୟୀ କିରୂପେ ମୁକ୍ତି ସ୍ଥାନକୁ ପାଇବ ।
ପ୍ରାକୃତ ଜଗତ ଲୟ ହେଲେ ମଧ୍ୟ ତୁମ୍ଭେ
ମୁକ୍ତିପାଇ ନ ପାରିବ ଜାଣୁଅଛୁ ଆମ୍ଭେ ।
ଯେଉଁରୂପେ ଜୀବଗଣ ଜାଗି ଦିବସରେ
ଶୟନ କରନ୍ତି ନିଶା ଆଗମ କାଳରେ ।

ସେହିପରି ସୃଷ୍ଟି କାଳେ ଜନ୍ମ ଲଭିଥିବ
ପ୍ରଳୟ କାଳରେ ପୁଣି ମରଣ ପାଇବ
ବିଷୟୀମାନଙ୍କ ସ୍ଥିତି ଅଟେ ସିନା ଏ
ରଥଚକ୍ର ଧାରାପ୍ରାୟେ ଭ୍ରମୁଥାନ୍ତି ସେହି ।
କହୁଅଛି ଏବେ କାଳ ସଂଖ୍ୟା ପରିମାଣ
ମନଦେଇ ଶୁଣ ଆହେ ଶଚୀଙ୍କ ରମଣ ।
ଷାଠିଏ ବିପଳ ଯୋଗେ ଏକ ପଳ ହୁଏ
ଷାଠିଏ ପଳରେ ଦଣ୍ଡ ହୁଅଇ ଗୋଟିଏ ।
ଦୁଇଦଣ୍ଡ ସମଷ୍ଟି ବୋଲାଏ ମୁହୂର୍ତ୍ତ
ତିରିଶ ମୁହୂର୍ତ୍ତେ ଦିନ ରାତି ହୁଏ ଜାତ ।
ପଞ୍ଚଦଶ ଦିନ ହିସେ ଏକ ପକ୍ଷ ହୁଏ
ଦୁଇ ପକ୍ଷରେ ଗୋଟିଏ ମାସ ଯେ ବୋଲାଏ ।
ପୁଣ ଏକ ଋତୁ ହୁଏ ଦୁଇଟି ମାସରେ ।
ଛଅ ମାସରେ ଅୟନ ହୁଏ ସେ ପ୍ରକାରେ ।
ଦୁଇ ଅୟନରେ ଏକ ବର୍ଷ ହୁଏ ଜାଣ
ଏହିରୂପେ ଅଟେ ବର୍ଷ ଗଣନା ପ୍ରମାଣ ।
ତେୟାଳିଶ ଲକ୍ଷ ବିଂଶ ସହସ୍ର ବରଷ
ଭୋଗ ହେଲେ ଚାରିଗୋଟି ଯୁଗ ହୁଏ ଶେଷ ।
ପଞ୍ଚାଶ ଷାଠିଏ ପଞ୍ଚତିରିଶ ଯୁଗରେ
ଶକ୍ର ପରମାୟୁ ଶେଷ ହୁଏ ଜାଣ ଭଲେ ।
ଦଶଲକ୍ଷ ଆଠସହସ୍ର ଇନ୍ଦ୍ରପାତ ହେଲେ
ବ୍ରହ୍ମାଙ୍କ ଆୟୁଷ ଶେଷ ହୁଏ ଜାଣ ଭଲେ ।
ଯେ ସମୟେ ପ୍ରାକୃତିକ ଲୟ ହୁଏ ଜାତ
କ୍ଷଣକ ମଧ୍ୟରେ ଧ୍ୱଂସ କରଇ ଜଗତ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ନିମେଷ ପତନ
ସେ କାଳରେ ହୋଇଥାଏ ଆହେ ମଘବାନ ।
କେତେକାଳ ଅନ୍ତେ ଚକ୍ଷୁ ଉନ୍ମୀଳନ ହେଲେ
ଆଉଥରେ ନବସୃଷ୍ଟି ଜାତ ହୁଏ ଭଲେ ।
ଏହିରୂପେ ବ୍ରହ୍ମସୃଷ୍ଟି ଲୟ ଉତ୍ପତ୍ତିର
ସଂଖ୍ୟା ହୋଇନାହିଁ ଶ୍ରୁତି ଶାସ୍ତ୍ରରେ ଗୋଚର ।
ତହିଁରେ ଯେତେକ ଜୀବ ଜାତ ହୋଇଥାନ୍ତି
କୃଷ୍ଣସେବା ବିନା ନାହିଁ ତାଙ୍କର ମୁକତି ।
ଯେତେ ଜୀବ କୃଷ୍ଣସେବା ନ ଜାଣନ୍ତି ମୋହେ
ଆତଯାତ ହେଉଥାନ୍ତି ମାୟା ମୋହ ଦେହେ ।
ସକଳ ବିଷୟ ଏବେ କହିଲି ତ ମୁହିଁ
ଅନ୍ୟ ବର ଇଚ୍ଛା ଥିଲେ ମାଗ ସୁରସାଇଁ ।

ଏରୂପେ ମୁନିଙ୍କଠାରୁ ଶୁଣି ତତ୍ତ୍ୱଗିର
ବସି ରହିଲେ ମନେ ମନେ ପୁରନ୍ଦର ।
ନିଜ ପତ୍ନୀଙ୍କୁ ସେହୁ ଭଜିଲେ ବରଣ
ହରଷେ ତାହାଙ୍କୁ ବର ଦେଲେ ତପିଗଣ ।
ତଦନ୍ତେ ଚଳିବା ପଥେ ହେଲେ ଅଗ୍ରସର
ପାଇଲେ ବାସବ ଜ୍ଞାନ ଐଶ୍ୱର୍ଯ୍ୟ ଅପାର ।
ଅଧମ କ୍ଷେମମୋହନ କହେ ଯୋଡ଼ପାଣି
ଫେଡ଼ନ୍ତୁ ମୋହର ଦୁଃଖ ପ୍ରଭୁ କମ୍ବୁପାଣି ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମହାଲକ୍ଷ୍ମୀଙ୍କର ଜନ୍ମ ବୃତ୍ତାନ୍ତ
ବର୍ଣ୍ଣନେ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।

—*—

## ଊ ନ ତ୍ରିଂ ଶ ତ୍ ଅ ଧ୍ୟା ୟ

## ଇନ୍ଦ୍ରଙ୍କ ପ୍ରତି ବୃହସ୍ପତିଙ୍କର ଉପଦେଶ

ଶୁଣନ୍ତୁ ବିବୁଧ ଜନେ ଇତି ସୂତ୍ର ଦ୍ୱାରେ
ନାରାୟଣଙ୍କୁ ନାରଦ ପୁଚ୍ଛିଲେ ସାଦରେ ।
ବୋଇଲେ ହେ ମୁନିବର ଦୁର୍ବାସାଙ୍କ ଗିର
ଶ୍ରବଣ କଲି ଉତ୍ତରେ କୃଷ୍ଣ ରସ ସାର ।
ପୁଣି ତା ଉତ୍ତାରେ ସେହୁ କେଉଁ କର୍ମ କଲେ
ଆପଣା ପୁରକୁ ଜ୍ଞାନ ଲଭି ଇନ୍ଦ୍ର ଗଲେ ।
ଏହିରୂପେ ନାରଦଙ୍କ ବଚନ ଶୁଣିଣ
ଆନନ୍ଦରେ ବୋଇଲେକ ଋଷିକୁଳଗଣ ।
ଶୁଣ ତୁମ୍ଭେ ମନ ଦେଇ ଧାତାଙ୍କ କୁମର
ଦୁର୍ବାସାଙ୍କଠାରୁ ଜ୍ଞାନ ଲଭି ପୁରନ୍ଦର ।
ସର୍ବଦିନେ ଶ୍ରୀହରିଙ୍କୁ ସୁମରଣା କଲେ
କ୍ରମେ କ୍ରମେ ବଇରାଗ୍ୟ ଜନ୍ମିଲା ହୃଦରେ ।
ମୁନିଙ୍କ ପାଶରୁ ଯାଇ ସ୍ୱର୍ଗେ ପ୍ରବେଶିଲେ
ତହିଁ ବହୁତ ଅନିଷ୍ଟ ହୋଇଛି ଦେଖିଲେ ।
ମହାଭୟଙ୍କର ରୂପ ନିଶାଚରଗଣ
କରିଛନ୍ତି ବଳାତ୍କାରେ ଆସି ଆକ୍ରମଣ ।
ତାଙ୍କଠାରୁ ଭୟପାଇ ଜ୍ଞାତି ବନ୍ଧୁମାନେ
ଆଶ୍ରୟ ନେଇ ଅଛନ୍ତି ଯାଇ ଏଣେତେଣେ ।
ତାହାଙ୍କ ପାଶରେ ପିତା ମାତା ଆଦି କେହି
ନିରନ୍ତ ଲୁଚି ଅଛନ୍ତି ଗୁପ୍ତସ୍ଥାନେ ଯାଇ ।
ଏହିଭଳି ସ୍ୱର୍ଗପୁର ଅବସ୍ଥାକୁ ଦେଖି
ପୁରନ୍ଦର ମନେହୋଇ ଅତିଶୟ ଦୁଃଖି ।
ବୃହସ୍ପତିଙ୍କ ପାଶକୁ ସେହିକ୍ଷଣି ଗଲେ
ବସିଛନ୍ତି ମନ୍ଦାକିନୀ କୂଳରେ ଦେଖିଲେ ।
ପୂର୍ବମୁଖେ ଆଦିତ୍ୟଙ୍କୁ ନିରୀକ୍ଷଣ କରି
ଧ୍ୟାନ କରୁଛନ୍ତି କରେ ଜପାମାଳା ଧରି ।
ଭକ୍ତିଭରେ ନୟନରୁ ବହୁଅଛି ନୀର
ପୂରି ହୋଇଛି ଅଙ୍ଗରେ ପୁଲକ ଅଙ୍କୁର ।
ଏରୂପେ ତାହାଙ୍କୁ ଇନ୍ଦ୍ର ଦେଖି ସେହିଠାରେ
ଅପେକ୍ଷା କରିଣ ବସି ରହିଲେ ତଟରେ ।
ପ୍ରହରକ ଅନ୍ତେ ଗୁରୁ ନିଜ କର୍ମ ସାରି
ବାହାର ହୋଇଲେ ଜଳ ମଧ୍ୟୁ ଉଠିକରି ।
ବାସବ ସେକାଳେ ତାଙ୍କ ନିକଟକୁ ଗଲେ
ପ୍ରଣାମ କରିଣ କରଯୋଡ଼ି ଉଭାହେଲେ ।
ସେ ଅନ୍ତେ ଆମୂଳ କରି ସକଳ ବୃତ୍ତାନ୍ତ
କହିଣ ରୋଦନକଲେ ହୋଇ ସେ ଦୁଃଖିତ ।
ମୁନି ଶାପ ହେବାକଥା କହି ପୁନଃ ପୁନଃ
ବ୍ୟାକୁଳ ପରାୟେ ଉଚ୍ଚେ କଲନ୍ତେ କ୍ରନ୍ଦନ ।
ଜ୍ଞାନଗୁରୁ ବୃହସ୍ପତି ଯୋଗ ପ୍ରଭାବରେ
ସମସ୍ତ ବିଷୟ ଜାଣି ପାରିଲେ ସତ୍ୱରେ ।
ସେ ଅନ୍ତେ ବୋଇଲେ ଶୁଣ ଆହେ ଦେବରାଜ
ଅଧୀର ନ ହୋଇ ଯାହା କହୁଅଛି ହେଜ ।
ତୁମ୍ଭର ଅବସ୍ଥା ଏବେ ବୁଝିଲିଣି ମୁହିଁ
ପଚାରିବା ପାଇଁ କିଛି କଥା ଆଉ ନାହିଁ ।
ମାନଙ୍କ କୁଶଳ ଯେଉଁ ସାଜନ ଅଟଇ
ବିପଦ କାଳରେ କେବେ ଅଧୈର୍ଯ୍ୟ ନୁହଇ ।
ସେହିପରି ସମ୍ପଦରେ ନୁହେ ଉନମତ୍ତ
ସମସ୍ତ ବିପତ୍ତି ପୂର୍ବକର୍ମର ଆୟତ୍ତ ।

ଅନିତ୍ୟ ଅଟନ୍ତି ସ୍ୱପ୍ନ ପରାୟେ ସେ ଜାଣ
କ୍ଷଣେ ଦେଖାଦେଇ ପୁଣି ହୋଇଯାନ୍ତି ଲୀନ ।
ଜଗତ ବିଧାନ କର୍ତ୍ତା ବ୍ରହ୍ମା ପ୍ରଜାପତି
କର୍ମ୍ମର ଯେ ଆଦ୍ୟଅନ୍ତ ବୁଝି ନ ପାରନ୍ତି ।
ଜଗତ ମଧ୍ୟରେ ଯେତେ ଜୀବଙ୍କର ବାସ
ସବୁରି ପକ୍ଷେ ଏପରି ଘଟଇ ଅବଶ୍ୟ ।
ଈପ୍ସିତ ଗତିପ୍ରାପ୍ୟେ ସୁଖ ଦୁଃଖ କେତେ
ଭୋଗ ହୁଅନ୍ତି ତା ଜାଣି ନ ପାରେ ଅଜ୍ଞାନୀ ।
ଶୋଚନା କରିବା ପାଇଁ ତହିଁରେ କାରଣ
କିଛି ନାହିଁ ବୋଲି ମୋର କହିବାରୁ ଜାଣ ।
ନିଜ କର୍ମଫଳ ଭୋଗ ନ କରି କେହି
ବ୍ରହ୍ମାଣ୍ଡ ମଧ୍ୟରେ ଥିବ ସମ୍ଭବ ନୁହଇ ।
ପୂର୍ବାର୍ଜିତ କର୍ମମାନ ଭୋଗ ନ ହୋଇଲେ
କ୍ଷୟ ନୁହନ୍ତି କୋଟିଏ କଳପରେ ହେଲେ ।
ଅବଶ୍ୟ ପୂର୍ବର ଶୁଭାଶୁଭ କର୍ମ ଯେତେ
ଭୋଗ କରିବାକୁ ବାଧ୍ୟ ଅଟନ୍ତି ସମସ୍ତେ ।
ଏହିରୂପେ ବେଦଶାସ୍ତ୍ରେ ଦେଖ ସନାତନ
ଶ୍ରୀକୃଷ୍ଣ କହିଅଛନ୍ତି ଆହେ ମଘବାନ ।
ସାମବେଦ କଉଥୁମ ଶାଖାରେ ଏକଥା
କୃଷ୍ଣଙ୍କଠାରୁ ଶ୍ରବଣ କଲେ ଚଉମଥା ।
ଜନ୍ମଭୋଗ ଶେଷପରେ କୃତକର୍ମ ଫଳ
ଯଥାର୍ଥ ପ୍ରକାରେ ଭୋଗ ହୁଅଇ କେବଳ ।
ଭାରତବର୍ଷେ ଏହା ଅଟଇ ପ୍ରସିଦ୍ଧ
ଅନ୍ୟଥା କରିବା ନୁହେ କାହାର ସେ ସାଧ୍ୟ ।
ନିଜକର୍ମ ଯୋଗେ ଶୁଭାଶୁଭ ଭୋଗ ହୁଏ
ସମ୍ପଦ ବିପଦ ତାହା ସଙ୍ଗେ ସଙ୍ଗେ ଥାଏ ।
କୋଟିଏ ଜନ୍ମରେ କରିଥିବା କର୍ମ ଯେତେ
ଅନୁଗତ ହୋଇ ରହିଥାଆନ୍ତି ସମସ୍ତେ ।
ଭୋଗ ନ କଲା ପର୍ଯ୍ୟନ୍ତ ଛାୟା ପରକାରେ
ଯେଣିକି ଗଲେ ଗୋଡ଼ାଇ ଆସନ୍ତି ସଙ୍ଗରେ ।
ଦେଶକାଳ ପାତ୍ର ଭେଦ ଅନୁସାରେ ପୁଣ
ନ୍ୟୁନ ଅଧିକ ସେହି ହୁଅନ୍ତି ଜାଣ ।
ସମଦିନେ ଯେଉଁ ଦ୍ରବ୍ୟ କରାଯାଏ ଦାନ
ସେହି ଦ୍ରବ୍ୟ ସମାନରେ ହୁଅଇଟି ପୁଣ ।
ଅଧିକ ପୁଣ୍ୟଦିବସେ କୋଟିଗୁଣ ତାର
ଫଳଲାଭ ହୁଏ ଏହା ଶାସ୍ତ୍ରର ବିଚାର ।

ତହିଁରୁ ଅଧିକ ପୁଣ୍ୟକାଳ ହୋଇଥିଲେ
ଅଶେଷ ସୁକୃତ ଲାଭ ହୁଏ ଜାଣ ଭଲେ ।
ସେହିପରି ସମଦେଶେ ବସ୍ତୁତୁଲ୍ୟ ଫଳ
ତହିଁରୁ ଅଧିକ ଦେଶେ ହୁଅଇ ଅତୁଳ୍ୟ ।
ସମାନ ପାତ୍ରରେ ଦାନ କଲେ ସେହିପରି
ସମଫଳ ଲାଭ ହୁଏ ଆହେ ବଜ୍ରଧାରୀ ।
ଉତ୍ତମ ପାତ୍ରକୁ ଦେଲେ କୋଟିଏ ଗୁଣରେ
ହୁଅଇ ଅଧିକ ଏହା ଜାଣ ନିଶ୍ଚୟରେ ।
ତାଠାରୁ ଉତ୍କୃଷ୍ଟ ପାତ୍ର ହୋଇଥାଏ ଯେବେ
ଅନନ୍ତପୁଣ୍ୟ ପ୍ରାପତ ହୁଅଇଟି ତେବେ ।
ଉତ୍ତମ ଭୂମିରେ ଶସ୍ୟ କଲେ କୃଷିବଳ
ଯେରୂପେ ଲାଭ କରଇ ତହୁଁ ବହୁଫଳ ।
ସାମାନ୍ୟ ଭୂମିରେ କିଛି ଊଣାଫଳ ହୁଏ
ନିକୃଷ୍ଟ ଭୂମିରେ ଅତି ନ୍ୟୁନ ହୋଇଥାଏ ।
ତେମନ୍ତ ଅଟଇ ଦାନ ପୁଣ୍ୟର ବେଭାର
ଦେଶାଦି ଭେଦରେ ହୁଏ ନାନା ପରକାର ।
ସାମାନ୍ୟ ଦିନରେ ଦ୍ୱିଜହସ୍ତେ ଯେଉଁ ଦାନ
ଦେବ ସେଥିରୁ ପାଇବ ଫଳ ସେ ସମାନ ।
ଅମାବାସ୍ୟା ତିଥିରେ ବା ସଂକ୍ରାନ୍ତି ଦିନରେ
ଦେଲେ ତହୁଁ ଶତଗୁଣ ଫଳ ଭୋଗ କରେ ।
ପୂର୍ଣ୍ଣିମା ତିଥିରେ ଦେଲେ ଅନନ୍ତ ଯେ ଫଳ
ନିଶ୍ଚୟ ପାଇବ ଜାଣ ଆହେ ଆଖଣ୍ଡଳ ।
ସେହି ଦ୍ରବ୍ୟ ଯେବେ ଚନ୍ଦ୍ରଗ୍ରହଣରେ ଦେବ
ତାହାଠାରୁ କୋଟିଗୁଣ ଫଳଲାଭ ହେବ ।
ସୂର୍ଯ୍ୟ ପରାଗରେ ଦଶକୋଟି ଗୁଣ ହୋଇ
ଲାଭ ହୋଇବ ସନ୍ଦେହ ଏଥେ କିଛି ନାହିଁ ।
ଅକ୍ଷୟ ତିଥିରେ ଦେଲେ ଯେ ଫଳ ତାହାର
ସଂଖ୍ୟା କରିବାକୁ ଶକ୍ତ ଅଛି ବା କାହାର ।
ଏହିପରି ଆଉ ଯେତେ ପୁଣ୍ୟ ଦିନମାନ
କାହିଁରେ ଅଧିକ ଅବା କାହିଁରେ ନିଉନ ।
ଫଳଲାଭ ହୋଇଥାଏ ଆହେ ସୁରେଶ୍ୱର
ଧ୍ୟାନ ସ୍ନାନ ଜପ ପୁଣ୍ୟକର୍ମ ଏ ପ୍ରକାର ।
ଉତ୍ତମ ଦ୍ୱିଜଙ୍କୁ ମଧ୍ୟ ସାମାନ୍ୟ ଦେଶରେ
ଦାନ କଲେ ଫଳ ହୁଏ ଦ୍ରବ୍ୟ ଅନୁସାରେ ।
ତୀର୍ଥରେ ବା ଦେବାଳୟେ ଯେବେ ଦେବ ନେଇ
ଶତଗୁଣରେ ସେ ଫଳ ପ୍ରାପତ ହୁଅଇ ।

ଗଙ୍ଗାନଦୀ ସମୀପରେ ଦେଲେ କୋଟିଗୁଣ
ନାରାୟଣଙ୍କ କ୍ଷେତ୍ରରେ ଅସଂଖ୍ୟ ଯେ ଗୁଣ ।
ଫଳଲାଭ ହୁଏ ଜାଣ ଆହେ ଶଚୀପତି
ଏ ବାହାରେ କହୁଅଛୁ ଶୁଣ ଦେଇ ମତି ।
କୁରୁକ୍ଷେତ୍ରେ ବଦରିକା ଆଶ୍ରମରେ ଅବା
କାଶୀକ୍ଷେତ୍ରେ ବ୍ରାହ୍ମଣକୁ ଦାନ ଦିଏ ଯେବା ।
ତହିଁରୁ ଯେରୂପେ କୋଟିଗୁଣ ଫଳ ହୁଏ
ବିଷ୍ଣୁମନ୍ଦିରେ ଦେଲେ ସେପରି ହୋଇଥାଏ ।
କେଦାର ତୀର୍ଥରେ ଦେଲେ ହୁଏ ଲକ୍ଷଗୁଣ
ହରଦ୍ୱାରେ ମଧ୍ୟ ହୁଏ ତାହାର ସମାନ ।
ପୁଷ୍କର ତୀର୍ଥରେ ଅବା ଭାସ୍କର କ୍ଷେତ୍ରରେ
ଦେବେ ଦଶଲକ୍ଷ ଗୁଣ ହୁଏ ନିଶ୍ଚୟରେ ।
ଏହିପରି ଯେତେଗୁଣେ ଅଧିକ ଯେ ସ୍ଥାନ
ଅଧିକ ଫଳ ହୁଅଇ ଦେଲେ ତହିଁ ଦାନ ।
ସାମାନ୍ୟ ବ୍ରାହ୍ମଣ ହସ୍ତେ ଯେଉଁଠାରେ ଦେଲେ
ସାମାନ୍ୟରେ ଫଳପ୍ରାପ୍ତ ହୁଏ ଦାନ ଦେଲେ ।
ଯେଉଁ ବିପ୍ର ଗାୟତ୍ରୀଙ୍କ ଲକ୍ଷମନ୍ତ୍ର ଜପି
ଥିବ ତାହା ହସ୍ତେ ଦାନ କରିବ ସଦ୍ୟପି ।
ଲକ୍ଷଗୁଣ ଫଳଲାଭ ହୋଇବ ନିଶ୍ଚୟ
ମାତ୍ର ହୋଇଥିଲେ ସେହି ଜ୍ଞାନୀ ଜିତେନ୍ଦ୍ରିୟ ।
ପଣ୍ଡିତ ପବିତ୍ର ବିଷ୍ଣୁମନ୍ତ୍ର ଉପାସକ
ଅଟଇ ଯେ ଦ୍ୱିଜ ସବୁଠାରୁ ସେ ଅଧିକ ।
ତାହା ହସ୍ତେ ଦାନ ଦେଲେ କୋଟିଏ ଗୁଣରେ
ଫଳଲାଭ ହୁଏ ବୋଲି ଘେନ ମାନସରେ ।
ଏହିପରି ଯେ ଅଧିକ କର୍ମଠ ବ୍ରାହ୍ମଣ
ତାଙ୍କୁ ଦାନ ଦେଲେ ଫଳ ବୃଦ୍ଧି ହୁଏ ପୁଣ ।
କୁମ୍ଭାର ଯେରୂପେ ତନେ ମାଟିପିଣ୍ଡ ଥୋଇ
ଇଚ୍ଛାମତେ ଘେନ ଘଟ ନିର୍ମାଣ କରଇ ।
ସେହିରୂପେ ପ୍ରଜାପତି ପ୍ରାଣୀଙ୍କର କର୍ମ
ଜାଣି ଫଳ ଦେଇଥାନ୍ତି ଭାବି ଧର୍ମାଧର୍ମ ।
କର୍ମ ଅନୁସାରେ ଫଳ ନିଶ୍ଚୟ ପ୍ରାପତ
ଯୁଗେ ଯୁଗେ ହୋଇଥାଏ ଜାଣ ଶଚୀନାଥ ।
ଯାହାଙ୍କ ଆଜ୍ଞାରେ ସୃଷ୍ଟି କାର୍ଯ୍ୟ ସେ କରନ୍ତି
ସେ ନାରାୟଣଙ୍କୁ ତୁମ୍ଭେ ଭଜ ଦେଇ ମତି ।
ବିଧାତାର ବିଧାତା ସେ ରକ୍ଷକର କର୍ତ୍ତା
ସୃଷ୍ଟି ସଂହାରକାରୀର ଅଟନ୍ତି ସଂହର୍ତ୍ତା ।
ମହାବିପତ୍ତି କାଳରେ ତାହାଙ୍କୁ ସ୍ମରଣ
କରିଲେ ସକଳ ଦୋଷ ହୋଇବ ଖଣ୍ଡନ ।
ଶିବଙ୍କ ମୁଖରୁ ପୂର୍ବେ ଶୁଣିଅଛୁ ଏହା
ସଂଶୟ ଏଥିରେ କିଛି ନାହିଁ ଶଚୀନାହା ।
ଏରୂପେ ଇନ୍ଦ୍ରଙ୍କୁ କହି ଅଙ୍ଗିରା ତନୟ
ଆଲିଙ୍ଗନ କଲେ ପୁଣି ହୋଇଣ ସଦୟ ।
ଏ ବାହାରେ ନାନାମତେ ପ୍ରବୋଧି କହିଲେ
ଶ୍ରୀକୃଷ୍ଣ ସୁନ୍ଦର କ୍ଷେତ୍ରବାସୀ ଗୀତେ ବୋଲେ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଇନ୍ଦ୍ରଙ୍କ ପ୍ରତି ବୃହସ୍ପତିଙ୍କର ଉପଦେଶ କଥନେ ନାମ ଊନଚତ୍ୱାରିଂଶତ୍ତ୍ୱ ଅଧ୍ୟାୟଃ ।**

## ଚତ୍ୱାରିଂଶତ ଅଧ୍ୟାୟ

## ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଙ୍କର ଉତ୍ପତ୍ତି କଥନ

ନାରଦଙ୍କ ଆଗେ କହୁଛନ୍ତି ନାରାୟଣ
ଏଥୁଅନନ୍ତରେ କଥା ଶୁଣ ଋଷିଗଣ ।
ଗୁରୁଙ୍କଠାରୁ ସାନ୍ତ୍ୱନା ପାଇ ସୁରପତି
ଦେବତାମାନଙ୍କୁ ଡକାଇଣ ନିଜ କତି ।
ସଙ୍ଗତରେ ଘେନି ବୃହସ୍ପତିଙ୍କୁ ଆଗରେ
ଚଳାଇଣ ଗଲେ ବେଗେ ବ୍ରହ୍ମାଙ୍କ ପାଶରେ ।
ଦେଖିଲେ ବସିଅଛନ୍ତି କମଳଆସନ
ସମସ୍ତେ ତାହାଙ୍କ ପାଦେ କଲେକ ପ୍ରଣାମ ।
ସେ ଅନ୍ତରେ କରଯୋଡ଼ି ଆଗେ ଉଭା ହେଲେ
ବୃହସ୍ପତି ସବୁକଥା ବିସ୍ତାରି କହିଲେ ।
ତାହା ଶୁଣି ପିତାମହ ହସ ପରକାଶି
ଇନ୍ଦ୍ରଙ୍କୁ କୋମଳ ବାକ୍ୟ କହିଲେ ଆଶ୍ୱାସି ।

ବୋଇଲେ ହେ ବତ୍ସ ତୁମ୍ଭେ ମୋ ବଂଶରେ ଜାତ
ହୋଇଅଛ ପୁଣି ବୁଦ୍ଧି ଜ୍ଞାନରେ ବିଖ୍ୟାତ ।
ବୃହସ୍ପତି ଗୁରୁ ହୋଇ ଅଟନ୍ତି ତୁମ୍ଭର
ନିଜେ ପୁଣି ଅଧିପତି ଅଟ ଦେବଙ୍କର ।
ମାତାମହ ଯେ ଅଟନ୍ତି ଦକ୍ଷ ପ୍ରଜାପତି
ବିଷ୍ଣୁଙ୍କ ସେବାରେ ସଦା ତାହାଙ୍କର ମତି ।
ଏହିରୂପେ ତିନିକୁଳ ଶୁଦ୍ଧ ଅଟେ ଯା'ର
ସେ କିପାଁ କରିବ ବୃଥା ମିଥ୍ୟା ଅହଙ୍କାର ।
ଜନନୀ ଶୁଦ୍ଧଚରିତ୍ରା ପିତା ଜିତେନ୍ଦ୍ରିୟ
ସେହିପରି ମାତାମହ ମାତୁଳ ଉଭୟ ।
ଏମନ୍ତ ଯେ ଅଟେ ତାର ଅଭିମାନ ଲେଶ
ମନରେ ସ୍ଥାନ ପାଇବା ଅତିଶୟ ଦୋଷ ।
ପିତାଙ୍କ ଦୋଷରେ ଅବା ଗୁରୁଙ୍କ ଦୋଷରେ
ଅଥବା କୁତ୍ସିତ ମାତଶାସ୍ତ୍ର ପ୍ରଭାବରେ ।
ବିଷ୍ଣୁଦ୍ୱେଷୀ ହୁଏ ଲୋକ ଆହେ ବୃନହଣ
ସେ ଯେବେ ବହୁତକ୍ଲେଶ ଭୋଗ କରେ ଜାଣ ।
ସକଳ ଦେହରେ ଅବସ୍ଥିତ ନରହରି
ଯାହାକୁ ଛାଡ଼ିଣ ସେହି ଯାଆନ୍ତି ବାହାରି ।
ସେହିକ୍ଷଣି ଶବ ହୁଏ ତାହାର ଶରୀର
ଏଥିରେ ସନ୍ଦେହ ଅଛି ବୋଲି ନ ବିଚାର ।
ଇନ୍ଦ୍ରିୟଗଣର ପ୍ରଭୁ ଅଟନ୍ତି ମହେଶ
ପ୍ରାଣ ସ୍ୱରୂପେ ରହନ୍ତି ଲକ୍ଷ୍ମୀଦେବୀ ଈଶ ।
ପ୍ରକୃତି ଦେବୀ ଅଟନ୍ତି ବୁଦ୍ଧି ସ୍ୱରୂପିଣୀ
ତାଙ୍କ ଯୋଗେ ଗତାୟତ ହେଉଥାନ୍ତି ପ୍ରାଣୀ ।
ନିଦ୍ରାଆଦି ଶକ୍ତିଗଣ ପ୍ରକୃତିଙ୍କ ଅଂଶ
ପରମାତ୍ମା ପ୍ରତିବିମ୍ବ ଯେବଣ ପୁରୁଷ ।
ଶରୀର ମଧ୍ୟରେ ରହି ନାନା ସୁଖ ଦୁଃଖ
ଭୋଗ କରୁଥାନ୍ତି ଆହେ ଦେବଙ୍କର ମୁଖ୍ୟ ।
ଯେ ରୂପେ ବାଟରେ ଯାଉଥିଲେ ନରପତି
ତା ପଛରେ ପ୍ରଜାମାନେ ଗୋଡ଼ାଇ ଚାଲନ୍ତି ।
ସେହିପରି ଆତ୍ମା ଯେବେ ଦେହ ଛାଡ଼ିଯାଏ
ତାର ଅନୁଗତ ହୋଇ ଯାଆନ୍ତି ସର୍ବେଁ ।
ଶଙ୍କର ଅନନ୍ତ ମୂର୍ତ୍ତି ବିରାଟ ପୁରୁଷ
ସମସ୍ତେ ବୋଲାଉ ଯେଉଁ ଦେବଙ୍କର ଅଂଶ ।
ତେହୁ ପରମାତ୍ମାଙ୍କର ପ୍ରସାଦ ଯେ ଫୁଲ
ମୂର୍ଖପଣେ ତୁଚ୍ଛେ ତାକୁ ଅମାନନା କଲ ।

ସେ ପୁଷ୍ପକୁ ଦେଇ ଶିବ ଶ୍ରୀକୃଷ୍ଣଙ୍କ ପାଦ
ପୂଜା କରିଥିଲେ ପୂର୍ବେ ହୋଇଣ ଆନନ୍ଦ ।
ତାହା ଯେବେ ମୁନିବର ଦୁର୍ବାସା ମହର୍ଷି
ଯିବାବେଳେ ତୁମ୍ଭ ପାଶେ ପ୍ରବେଶିଲେ ଆସି ।
ସ୍ନେହରେ ତୁମ୍ଭଙ୍କୁ ତାହା କଲେ ସମର୍ପଣ
କରାଇଲ ତୁମ୍ଭେ ଗଜ ମସ୍ତକେ ଧାରଣ ।
ତହିଁରୁ ଯେ ଅପରାଧ ହୋଇଅଛି ତୁମ୍ଭର
ସାମାନ୍ୟ ବୋଲିଣ ତାକୁ ନ ଭାବ ମନର ।
ସେ ଦିବ୍ୟ କୁସୁମ ଯାହା ମସ୍ତକରେ ଥିବ
ସକଳ ସ୍ଥାନରେ ଆଗ ପୂଜା ସେ ପାଇବ ।
ଦଇବେ ଭାଗ୍ୟରୁ ତୁମ୍ଭେ ବଞ୍ଚିତ ହୋଇଲ
ଅଭାଗ୍ୟବନ୍ତକୁ ଲଭ ହୁଅଇକେ ଭଲ ।
ଯେଉଁ ଲୋକ ଶ୍ରୀକୃଷ୍ଣଙ୍କ ଭକତି ନ କରେ
କ୍ରୋଧେ ମହାଲକ୍ଷ୍ମୀ ନ ରହନ୍ତି ତାର ଘରେ ।
ପୂର୍ବେ ଶତ ଯଜ୍ଞ କରି ଯେଉଁ କମଳାଙ୍କୁ
ପାଇଥିଲ ଏବେ କ୍ରୋଧେ ଛାଡ଼ି ସେ ତୁମ୍ଭଙ୍କୁ ।
ନିଜ ଭବନକୁ ଗଲେ ଅପରାଧ ଦେଖି
ଆଜ ତୁମ୍ଭ ବସି କିପାଁ ହେଉଅଛ ଦୁଃଖୀ ।
ଆସ ଏବେ ମୋ ସଙ୍ଗରେ ବୈକୁଣ୍ଠକୁ ଯିବା
ଶ୍ରୀହରିଙ୍କ ସେବା କରି ଦୁଃଖ ଜଣାଇବା ।
ତାହାଙ୍କର ଅନୁଗ୍ରହ ହେଲେ ପୁଣ ଆସି
ରହିବେ କମଳା ତୁମ୍ଭ ପାଶରେ ବିଶ୍ୱାସି ।
ଏହିରୂପେ କହି ବ୍ରହ୍ମା ବୃହସ୍ପତି ତୁଲେ
ସକଳ ଦେବଙ୍କୁ ଘେନି ବଇକୁଣ୍ଠେ ଗଲେ ।
ଦେଖିଲେ ବିଷ୍ଣୁ ମନ୍ଦିର ଅଶେ ଶୋଭାବନ
ନିର୍ବିକାରମାନଙ୍କ ହରି ନେଉଅଛି ମନ ।
ବ୍ରହ୍ମପଦ ମନାଲକ୍ଷ୍ମୀ ପ୍ରଭୃତି ବଇତ୍ୟାର
ରତନ ଗଲ୍ୟଙ୍କ ପରେ ତୁଳନ୍ତି ବିବେକରି ।
କୋଟିଏ ଆଦିତ୍ୟ ଜିଣି ଦିଶୁଅଛି ତେଜ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚତୁର୍ଭୁଜ ।
[illegible] ରହନ୍ତି ପାଶେ ପାର୍ଷଦଗଣ
[illegible] ସୁ ଦେନ୍ଦ୍ରମଣ୍ଡ ଦିବ୍ୟ ଆଭରଣ ।
ଲକ୍ଷ୍ମୀ ସରସ୍ୱତୀ ଦୁହେଁ ଦୁଇପାଦ ଧରି
ସେବନ କରୁଛନ୍ତି ଧୀର ଧୀର କରି ।
ଗଙ୍ଗାଙ୍କ ସହିତେ ସର୍ବଦେବ ସେହିଠାରେ
ମୂର୍ତ୍ତିମନ୍ତ ହୋଇ ଲାଗିଅଛନ୍ତି ସେବାରେ ।

ଏରୂପେ ନାରାୟଣଙ୍କୁ ଦେଖି ସୁରଗଣ
ବ୍ରହ୍ମାଙ୍କ ସହିତେ କଲେ ଚରଣ ବନ୍ଦନ ।
ଭକ୍ତିଭରେ ପୁଣି ନିଜ ଶିରେ କରଯୋଡ଼ି
ସ୍ତୁତି ପାଠ କଲେ ତାଙ୍କ ଚରଣପାଶେ ବେଢ଼ି ।
ସେ ଅନ୍ତରେ ପ୍ରଜାପତି ଜଗତ ବିଧାତା
କୃତାଞ୍ଜଳି ହୋଇ ଜଣାଇଲେ ସବୁ କଥା ।
ସେହିକାଳେ ପୁଣି ଦେବେ କାତର ସ୍ୱରରେ
ନିଜ ନିଜ ଦୁଃଖ ଜଣାଇଲେ ସେ ଯାହାରେ ।
ତାହାଙ୍କର ଏ ଦଶାକୁ ଦେଖି ନାରାୟଣ
ଭାବିଲେ ବିପଦଗ୍ରସ୍ତ ହେଲେ ସୁରଗଣ ।
ଯାହା ସଙ୍ଗେ ଉପଯୁକ୍ତ ବସ୍ତ୍ର ଅଳଙ୍କାର
ଦେଖାନାହିଁ ନାହାନ୍ତି ତ ବାହନ ଆଦିର ।
ହୋଇଅଛନ୍ତି ସମସ୍ତେ ଶୋଭାରେ ବିହୀନ
ଯେ ରୂପେ ତୁଷାରପାତ ହେଲେ ପଦ୍ମବନ ।
ଏମନ୍ତ ବିଗ୍ରହ ସବୁ କାରଣ ଜାଣିଲେ
କୋମଳ ବାକ୍ୟରେ ତାଙ୍କୁ ଆଶ୍ୱାସି କହିଲେ ।
ବୋଇଲେ ହେ ପ୍ରଜାପତି ଆହେ ସୁରଗଣ
ମୁଁ ଥାଉଁ ଥାଉଁ କାହିଁକି ଭୟକର ପୁଣ ।
ପରମ ଐଶ୍ୱର୍ଯ୍ୟମୟୀ ଅଚଳା ଲକ୍ଷ୍ମୀଙ୍କୁ
ସମର୍ପଣ କରିବି ମୁଁ ଅବଶ୍ୟ ତୁମ୍ଭଙ୍କୁ ।
ମାତ୍ର ଯାହା କହୁଅଛି ଶୁଣ ମନଦେଇ
ସମସ୍ତ ଉଚିତ କାର୍ଯ୍ୟକର ତୁମ୍ଭେ ଯାଇ ।
ଯାହା କଲେ ଜଗତର ମଙ୍ଗଳ ହୋଇବ
ଏ ବାହାରେ ତୁମ୍ଭେ ଦିବ୍ୟ ସମ୍ପଦ ପାଇବ ।
ଯେମନ୍ତ ଉପାୟ ଚିନ୍ତା ନ କରିବ ଯେବେ
ଲକ୍ଷ୍ମୀ ତୁମ୍ଭ ସମୀପରେ ନ ରହିବେ କେବେ ।
ଯେରୂପେ ଜଗତଲୋକେ ମୋହର ଅଧୀନ
ଭକ୍ତଙ୍କ ଅଧୀନ ମୁହିଁ ସେହିରୂପେ ଜାଣ ।
ଯାହାଠାରେ ମୋର ଭକ୍ତେ କ୍ରୋଧ ପ୍ରକାଶନ୍ତି
ଲକ୍ଷ୍ମୀଙ୍କ ସହିତେ ମୁହିଁ ନ ରହେ ତା କତି ।
ଶଙ୍କର ଅଂଶରେ ଜାତ ଦୁର୍ବାସା ତପସ୍ୱୀ
ପରମ ବୈଷ୍ଣବ ଏଣୁ ମୋହର ବିଶ୍ୱାସୀ ।
ତୁମ୍ଭଙ୍କୁ ସେ କ୍ରୋଧଭରେ ଶାପ ଦେଲେ ଯହୁଁ
ଶିଘ୍ର ଯେବେ ତୁମ୍ଭଠାରୁ ଆସିଲି ମୁଁ ତହୁଁ ।
ଯେଉଁଠାରେ ଶଙ୍ଖଧ୍ୱନି ତୁଳସୀ ସେବନ
ଏ ବାହାରେ ଶାଳଗ୍ରାମ ଶିଳା ଅର୍ଚ୍ଚନ ।

ବ୍ରାହ୍ମଣ ଭୋଜନ ଆଉ ଶୁଭକର୍ମ ଯେତେ
ନ ଥାଏ ସେଠାରୁ ଲକ୍ଷ୍ମୀ ପଳାନ୍ତି ତୁରିତେ ।
ଯେଉଁ ଲୋକ ମୋତେ ଅବା ମୋହର ଭକ୍ତଙ୍କୁ
ନିନ୍ଦା କରୁଥାଏ ମନେ ନ କରି ଶଙ୍କାକୁ ।
ତାହା ଘରେ ମହାଲକ୍ଷ୍ମୀ ନ ରହନ୍ତି କ୍ଷଣେ
ବାହାରି ଆସନ୍ତି ଲଜ୍ଜା କ୍ରୋଧ କରି ମନେ ।
ଯେଉଁ ମୂଢ଼ ମୋହଠାରେ ଭକ୍ତି ନ କରଇ
ଅଥବା ଶ୍ରୀକୃଷ୍ଣ ଜନ୍ମ ଦିନରେ ଭୁଞ୍ଜଇ ।
ଆଉରି ଯେ ଏକାଦଶୀ ପର୍ବ ଦିବସରେ
ଭୋଜନ କରଇ ଲକ୍ଷ୍ମୀ ନ ରହି ତା ଘରେ ।
ପଳାଇ ଆସନ୍ତି ମନେ ଅପମାନ କରି
ଯେ ଲୋକ ମୋହର ନାମ ବିକ୍ରୟ କରଇ ।
ନୋହିଲେ ବା କନ୍ୟା ବିକି ଅରଜଇ ଧନ
ଲକ୍ଷ୍ମୀ ନ ରହନ୍ତି କେବେ ତାର ସନ୍ନିଧାନ ।
ପାତକୀ ଲୋକଙ୍କ ଘରେ କରେ ଯେ ନିବାସ
ଅଥବା ଶୂଦ୍ରର ଶ୍ରାଦ୍ଧଅନ୍ନ କରେ ଗ୍ରାସ ।
ତାହା ଘରୁ ମହାଲକ୍ଷ୍ମୀ ପଳାନ୍ତି ସତ୍ୱର
ସନ୍ଦେହ ଏଥିରେ କିଛି ନାହିଁ ମନେ କର ।
ଶୂଦ୍ର ଶବ ଦାହକରେ ଯେ ମୂର୍ଖ ବ୍ରାହ୍ମଣ
ତାକୁ ତେଜି ମହାଲକ୍ଷ୍ମୀ ପଳାନ୍ତି ଜାଣ
ଯେଉଁ ଦ୍ୱିଜ ଶୂଦ୍ରଙ୍କର ସୂପକାର ହୁଏ ।
ନୋହିଲେ ବା ହଳ ବାହି ଜୀବିକା ଚଳାଏ ।
ତାହାର ପରଶ କେବେ ହେବ ବୋଲି ଭୟେ
ଲକ୍ଷ୍ମୀ ରହି ନ ପାରନ୍ତି ସେ ଦ୍ୱିଜର ଗୃହେ ।
ଯେଉଁ ବିପ୍ର ଯବନର ସେବକ ହୁଅଇ
କେବଳ ଶୂଦ୍ର ଯାଜକ ଅଟେ ଅବା ସେହି ।
ତାହାଠାରୁ ମହାଲକ୍ଷ୍ମୀ ନ ଛୁଅନ୍ତି ଜଳ
ଗୃହ ତେଜି ବୈକୁଣ୍ଠକୁ ଆସନ୍ତି ଚଞ୍ଚଳ ।
ବିଶ୍ୱାସଘାତକ ମିତ୍ରଦ୍ରୋହୀ ନରଘାତୀ
କୃତଘ୍ନ ଅଗମ୍ୟଗାମୀ ଯେ ବିପ୍ର ଅଟନ୍ତି ।
ତାହାଙ୍କୁ ମୋହର ପତ୍ନୀ ସତୀ କମଳିଣୀ
ତ୍ୟାଗକରି ମୋ ପାଶକୁ ଆସନ୍ତି ଯେସନି ।
କପଟୀ ହିଂସ୍ରକ ନିଷ୍ଠୁର ଯେଉଁ ବିପ୍ର ଅଟେ
ନ ରହନ୍ତି ମହାଲକ୍ଷ୍ମୀ ତାହାର ନିକଟେ ।
ବ୍ରାହ୍ମଣୀ ଉଦରେ ଶୂଦ୍ରବୀର୍ଯ୍ୟରେ ଯେ ଜାତ
ହୋଇଥାଏ ଅବା ଯେହି ବେଶ୍ୟା ସ୍ତ୍ରୀସୁତ ।

ଅପର ଅନ୍ନକୁ ଯେବା ଭୋଜନ କରଇ
ତାହା ପାଶୁଁ ପଦ୍ମାଳୟା ଯାନ୍ତି ଅନ୍ତ ହୋଇ ।
ଯେଉଁ ଲୋକ ନଖରେଖା ପକାଏ ଭୂମିରେ
ଅଥବା ତୃଣ ଛିଣ୍ଡାଏ ନଖ ଆଘାତରେ ।
ତାକୁ ଛାଡ଼ି ମହାଲକ୍ଷ୍ମୀ ନୋହୁ ଆସନ୍ତ
କେବେ ହେଲେ ତା ପାଶରେ ରହି ନ ପାରନ୍ତି
ସୂର୍ଯ୍ୟ ଆଉଁ ଦୁଇଥର ଖାଏ ଯେ ବ୍ରାହ୍ମଣ
କି ଅବା ଦିବସ ଭାଗେ କରଇ ଶୟନ ।
ନୋହିଲେ ବା ଦିବସରେ ମୋହେ ରତିରସେ
ରହି ନ ପାରନ୍ତି ଲକ୍ଷ୍ମୀ ସେ ମୂର୍ଖର ପାଶେ ।
ନିତ୍ୟକର୍ମ ନ କରଇ ଯେଉଁ ଦ୍ୱିଜସୁତ
ଶୂଦ୍ରଠାରୁ ଦାନ ଘେନି ଅରଜଇ ବିତ୍ତ ।
ମନ୍ତ୍ର ଗ୍ରହଣ ନ କରି ଥାଏ ମୂର୍ଖପଣେ
ତା ଗୃହରେ ମହାଲକ୍ଷ୍ମୀ ନ ରହନ୍ତି କ୍ଷଣେ ।
ଅଜ୍ଞାନପଣରେ ଯେହୁ ପାଦ ଓଦା କରି
ଶୁଅଇ ପୁଣି ବସନ ପିନ୍ଧିବା ପାଶୋରି ।
ଅଧମ ଚଣ୍ଡାଳ ସଙ୍ଗେ ଅଟେ ସେ ସମାନ
ତାହାକୁ ଛାଡ଼ିଣ ଲକ୍ଷ୍ମୀ ଯାନ୍ତି ଅନ୍ୟ ସ୍ଥାନ ।
ମସ୍ତକେ ତଇଳ ଘେନି ସ୍ନାନ ଯେ ନ କରେ
ଆଉରି ବଜାଏ ବାଦ୍ୟ ଆପଣା ଶରୀରେ ।
ତାକୁ ତ୍ୟାଗକରି ରମା ଆସନ୍ତି ପଳାଇ
ଆରାଧନା କଲେ ହେଁ ନ ପାରନ୍ତି ରହି ।
ଯେଉଁ ଦ୍ୱିଜ ସନ୍ଧ୍ୟା ତରପଣ ଉପବାସ
ନ କରଇ ମହାଲକ୍ଷ୍ମୀ ଛାଡ଼ନ୍ତି ତା ପାଶ ।
ବ୍ରାହ୍ମଣକୁ ଯେଉଁ ଲୋକ ନିନ୍ଦେ ଅକାରଣେ
ଏ ବାହାରେ ବୈରଭାବ କରେ ଅନୁକ୍ଷଣେ ।
ଜୀବଙ୍କଠାରେ କଦାଚ ନ କରଇ ଦୟା
ତେଜନ୍ତି ତାହାକୁ ଲକ୍ଷ୍ମୀଦେବୀ ମହାମାୟା ।
ଶ୍ରୀହରିଙ୍କ ଉପାସନା ଗୁଣ ସଂକୀର୍ତ୍ତନ
ଯେଉଁ ସ୍ଥାନରେ ହେଉଥାଏ ପ୍ରତିଦିନ ।
ସେଠାରେ ସର୍ବମଙ୍ଗଳା କମଳା ଦେବୀ
ନିବାସ କରନ୍ତି ମନେ ଅନ୍ୟଥା ନ ଭାବି ।
କୃଷ୍ଣଙ୍କର ଅବା ତାଙ୍କ ଭକ୍ତମାନଙ୍କର
ପରଶଂସା ହୁଏ ଯହିଁ ଆହେ ଦେବବର ।
ମହାଲକ୍ଷ୍ମୀ ସେହି ସ୍ଥାନ ଛାଡ଼ି ନ ଆସନ୍ତି ।
ଆନନ୍ଦ ମନରେ ସବୁବେଳେ ରହିଥାନ୍ତି ।

ଯେଉଁଠାରେ ଶଙ୍ଖଧ୍ୱନି ତୁଳସୀ ସେବନ
ହୁଅଇ ଆଉରି ଶାଳଗ୍ରାମ ଶିଳାର୍ଚ୍ଚନ
ଶ୍ରୀକୃଷ୍ଣଙ୍କ ସେବାପୂଜା ହେଉଥାଏ ନିତ୍ୟ
ସେ ସ୍ଥାନରୁ ଲକ୍ଷ୍ମୀ ନ ଆସନ୍ତି କଦାଚିତ ।
ଶିବଲିଙ୍ଗ ପୂଜା ଶିବପୁରାଣ ପଠନ
ଏ ବାହାରେ ଶିବ ସ୍ତୋତ୍ର ମନ୍ତ୍ର ଜପ ଧ୍ୟାନ ।
ମହାମାୟା ଦୁର୍ଗାଙ୍କର ପୂଜା ସନ୍ତତରେ
ହୁଏ ଯହିଁ ଦେବୀଲକ୍ଷ୍ମୀ ରହନ୍ତି ସେଠାରେ ।
ମଠର ଦେବତାଙ୍କର ପୂଜା ଯେ କରଇ
ଆଉର ଉତ୍ତମ ଦ୍ୱିଜଗଣଙ୍କ ସେବଇ ।
ତାହାଠାରୁ କେବେ ଲକ୍ଷ୍ମୀ ବିମୁଖ ନୁହନ୍ତି
ଧନ ଧାନ୍ୟଆଦି ସବୁ ସମ୍ପଦ ଦିଅନ୍ତି ।
ଏହିରୂପେ ଦେବତାଙ୍କ କହି ରମାପତି
ଲକ୍ଷ୍ମୀଙ୍କ ଅନାଇ ପୁଣି କହିଲେ ଭାରତୀ ।
ବୋଇଲେ ଗୋ କମଳା ଘେନ ମୋ ବଚନ
କଳାମାନେ ହୁଅ କ୍ଷୀରସାଗରେ ଜନମ ।
ସେ ଅନ୍ତରେ ବ୍ରହ୍ମାଙ୍କର ମୁଖକୁ ଅନାଇ
କହିଲେ ପୁଣି ତାହାଙ୍କୁ ବ୍ରହ୍ମାଣ୍ଡ ଗୋସାଇଁ ।
ଆହେ ପ୍ରଜାପତି ତୁମ୍ଭେ ମନ୍ଥିଣ ସାଗର
ଲକ୍ଷ୍ମୀଙ୍କୁ ଦେବଙ୍କ ପାଶେ ସମର୍ପଣ କର ।
ଏହିପରି କମଳେଶ କହି ନାରାୟଣ
ଆପଣା ଅନ୍ତଃପୁରକୁ କଲେକ ଗମନ ।
ଆନନ୍ଦ ହୋଇଣ ଦେବେ ସେଠାରୁ ଗଲେ
କ୍ଷୀରସିନ୍ଧୁ ମନ୍ଥିବାକୁ ଉଦଯୋଗ କଲେ ।
ମନ୍ଥନଦଣ୍ଡ ସେ କଲେ ମନ୍ଦରକୁ ଆଣି
କୂର୍ମ ପୃଷ୍ଠରେ ତାହାକୁ ରଖାଇଲେ ପୁଣି ।
ଅନନ୍ତ ନାଗକୁ ପାଶକରି ସବଳରେ
ଆଲୋଡ଼ନ କଲେ ମିଶି ଦୈତ୍ୟଙ୍କ ସଙ୍ଗରେ ।
ପ୍ରଥମରେ ଲହୁଁ ଜାତ ହେଲେ ଧନ୍ୱନ୍ତରି
ମଦମ ଉଚ୍ଚୈଃଶ୍ରବା ଐରାବତ ଆଦିକରି ।
ତାହାପରେ ମନ୍ଥନରେ ଦିବ୍ୟ ସୁଧାରସ
ଉପୁଜି ହୋଇଲା ପୁଣି କାଳକୂଟ ବିଷ ।
ସେ ଅନ୍ତରେ ମହାଲକ୍ଷ୍ମୀ ଧରି ସୁବର୍ଣ୍ଣମା
ବନମାଳା ଆଦି ସବୁ ହୋଇଲେ ଉତ୍ପନ୍ନ ।
ତାହା ଦେଖି ଦେବଗଣ ମହାତୋଷ ବହି
ମୁକ୍ତ କଲେ କମଳାଙ୍କୁ ଶିରେ ଜରଦେଇ ।

ସେ ବୈଷ୍ଣବୀ ମହାଲକ୍ଷ୍ମୀ ଦେବୀ ସେ କାଳରେ
ଶ୍ରୀଅଙ୍ଗଙ୍କୁ ବନ୍ଦପାଳୀ ଦେଲେ ସନ୍ତୋଷରେ ।
ବ୍ରହ୍ମା ମହେଶ୍ୱର ଆଦି ଯେତେ ଦେବ ଥିଲେ
ସମସ୍ତେ ମହାଲକ୍ଷ୍ମୀଙ୍କୁ ଆରାଧନା କଲେ ।
ସନ୍ତୋଷ ହୋଇଣ ଦେବୀ ଇନ୍ଦ୍ରଙ୍କ ଭବନେ
ଧୀରେ ଶୁଭଦୃଷ୍ଟି ପକାଇଲେ ତତକ୍ଷଣେ ।
ସେ ସକାଶୁ ବାଧାବଶ ଥିଲା ଯାହା ଶ୍ରୀ
କେଉଁଆଡ଼େ ସେତିକ୍ଷଣି ଗଲା ସେ ଜୁଟଇ ।
ଆପଣାର ବାସସ୍ଥାନ ପାଇ ସୁରଗଣ
ପରମ ଆନନ୍ଦ ଲଭିଲେ ତକ୍ଷଣ ଜାଣ ।
ଏହିପରି ଲକ୍ଷ୍ମୀଙ୍କର ଜନ୍ମ ଉପାଖ୍ୟାନ
ତୁମ୍ଭେ ସବୁ ପୁଚ୍ଛିବାରୁ କଲି ବିବରଣ ।
ଆଉ ଯେବେ ଶୁଣିବାକୁ ଅଛି ତବ ମନ
ଆହେ ନାରଦ ମହର୍ଷି ପୁଚ୍ଛନ୍ତୁ ବଚନ ।
ଏତେବୋଲି ନାରାୟଣ ମଉନ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ରାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଙ୍କର

ଉତ୍ପତ୍ତି କଥନେ ନାମ ଚତ୍ୱାରିଂଶୋଽଧ୍ୟାୟଃ ।

---

## ଏକଚତ୍ୱାରିଂଶ ଅଧ୍ୟାୟ

### ମହାଲକ୍ଷ୍ମୀଙ୍କର ପୂଜା ଓ ସ୍ତୁତି ପଠନ ଦ୍ୱାରା ଇନ୍ଦ୍ରଙ୍କର ବରପ୍ରାପ୍ତି

ନାରଦଙ୍କ ବଚନ ଶୁଣିଣ ନାରଦ
ପଚାରିଲେ ହୋଇ ପୁଣି ଅତ୍ୟନ୍ତ ଆନନ୍ଦ ।
ଆହେ ଦେବ ଶ୍ରୀହରିଙ୍କ ଗୁଣ ସଙ୍କୀର୍ତ୍ତନ
ତୁମ୍ଭଠାରୁ ଶୁଣି ତୋଷ ହେଲା ମୋର ମନ ।
ଅବର ଶୁଣିଲି ଲକ୍ଷ୍ମୀ ଜନ୍ମ ଉପାଖ୍ୟାନ
ଏବେ କହ ତାହାଙ୍କର ସ୍ତୁତି ମନ୍ତ୍ର ଧ୍ୟାନ ।
ପ୍ରଥମେ ଶ୍ରୀହରି ତାଙ୍କୁ ଆରାଧନା କଲେ
ସେ ଅନ୍ତରେ ବ୍ରହ୍ମା ଶିବ ଭକ୍ତ୍ୟେ ପୂଜିଲେ ।
ଭ୍ରଷ୍ଟରାଜ୍ୟ ହୋଇବାରୁ ସ୍ୱର୍ଗ ଅଧୀଶ୍ୱର
ପୂଜା କଲେ ଘେନି ସବୁ ଦେବଙ୍କ ସଙ୍ଗର ।
ସେମାନେ ସେ ମନ୍ତ୍ର ସ୍ତୋତ୍ର ଧ୍ୟାନଆଦି କରି
ଜପଯୋଗ କଲେ ତାହା କହନ୍ତୁ ବିସ୍ତାରି ।
ଏରୂପେ ନାରଦ ବାକ୍ୟ ଶୁଣି ନାରାୟଣ
କହିଲେ ଲକ୍ଷ୍ମୀଦେବୀଙ୍କ ପୂଜାର ବିଧାନ ।
ବୋଇଲେ ମନ ଦେଇଣ ଶୁଣ ମୁନିବର
କ୍ଷୀରୋଦ ମଧ୍ୟରୁ ଲକ୍ଷ୍ମୀ ହୁଅନ୍ତେ ବାହାର ।
ତାଙ୍କୁ ଦେଖି ପୁରନ୍ଦର ହରଷିତ ହେଲେ
ସ୍ନାନ ସାରି ଶୁକ୍ଳ ଧୌତ ବସନ ପିନ୍ଧିଲେ ।
କ୍ଷୀରସିନ୍ଧୁ ନିକଟରେ ପୂର୍ଣ୍ଣକୁମ୍ଭ ଦେଖି
ଷଡ଼ ଦେବତାଙ୍କୁ ପୂଜା କଲେ ହୋଇ ସୁଖୀ ।
ସେହି ଷଡ଼ ଦେବତାଙ୍କ ନାମମାନ ଶୁଣ
ଗଣେଶ ଆଦିତ୍ୟ ଅଗ୍ନି ଶିବ ନାରାୟଣ ।
ଦୁର୍ଗାଙ୍କ ସହିତେ ତୁମ୍ଭେ ଆବାହନ କରି
ଆରାଧିଲେ ଗନ୍ଧପୁଷ୍ପ ଧୂପ ଦୀପ ଭରି ।
ସେ ଅନ୍ତରେ ମହାଲକ୍ଷ୍ମୀ ଦେବୀଙ୍କୁ ତହିଁରେ
ଆବାହନ କରି ଶଚୀ ମହା ତୋଷଭରେ ।
ଷୋଳ ଉପଚାର ଆଣି ପୂଜା ଆରମ୍ଭିଲେ
ପୁରୋହିତ ହୋଇ ବ୍ରହ୍ମା ପାଶରେ ବସିଲେ ।
ଜ୍ଞାନମୟ ସଦାଶିବ ଗୁରୁ ବୃହସ୍ପତି
ଆବର ଦେବତା ବିପ୍ର ମୁନି ଋଷି ଯତି ।
ସମସ୍ତେ ସେକାଳେ ଯାଇ ବସିଲେ ଆଗରେ
ମନ ନିବେଶିଲେ ଇନ୍ଦ୍ର ଲକ୍ଷ୍ମୀ ପୂଜନରେ ।
ଚନ୍ଦନ ଲେପନ ପାରିଜାତ ପୁଷ୍ପ ଘେନି
ସମର୍ପଣ କଲେ ଧ୍ୟାନ ପଢ଼ି ଆହେ ମୁନି ।
ଯେଉଁ ଧ୍ୟାନକୁ ପୂର୍ବେ ଦେବ ଜନାର୍ଦ୍ଦନ
ବ୍ରହ୍ମାଙ୍କୁ ପ୍ରଦାନ କରିଥିଲେ ତୋଷେ ଜାଣ ।

ତାହାର ସ୍ୱରୂପ ଏବେ କହୁଅଛୁ ମୁହିଁ
ସାବଧାନେ ଶୁଣ ତୁମ୍ଭେ ଆହେ ଋଷିସାଇଁ ।
ସହସ୍ରଦଳ କମଳ କର୍ଣ୍ଣିକାବାସିନୀ
ଶରତ ପାର୍ବଣ କୋଟି ଚନ୍ଦ୍ରମା ଶୋଭିନୀ ।
ଅପୂର୍ବ ସୌନ୍ଦର୍ଯ୍ୟ ଦିବ୍ୟ ରୂପ ମନୋହର
ତପତ ସୁବର୍ଣ୍ଣ ତୁଲ୍ୟ ଶ୍ରୀଅଙ୍ଗ ସୁନ୍ଦର ।
ପୀତବାସ ନାନାରତ୍ନ ଅଳଙ୍କାର ଘେନ
ବସ୍ତକତ ଅବସୁକ ସୁବ୍ରୁବଦନୀ ।
ମନ୍ଦହାସେ ବିକଶିତ ଶ୍ରୀମୁଖମଣ୍ଡଳ
ଯୌବନ ବୟସୀ ସର୍ବ ଉପମାର ସ୍ଥଳ ।
ଅଶେଷ ସମ୍ପଦଦାତ୍ରୀ ଦେବୀ ଭଗବତୀ
ଜୟ ଜୟ ମହାଲକ୍ଷ୍ମୀ ଘେନ ମୋର ଭକ୍ତି ।
ଏହିରୂପେ ଧ୍ୟାନକରି ସେ ଦେବଈଶ୍ୱର
ବ୍ରହ୍ମାଙ୍କ ଆଦେଶମତେ ଘେନ ଉପଚାର ।
ମନ୍ତ୍ର ସହିତରେ ସର୍ବ ସମର୍ପଣ କଲେ
ପୂଜା ଅନ୍ତେ ମହାଲକ୍ଷ୍ମୀ ତାଙ୍କୁ ବର ଦେଲେ ।
ସେ ଉପଚାରର କ୍ରମ କହୁଅଛୁ ଶୁଣ
ପ୍ରଥମେ ଆସନପାଦ୍ୟ ଘେନ ସୁରବର୍ଣ୍ଣ ।
ବୋଇଲେ ବିଶ୍ୱକର୍ମାର ଅଟେ ଯେ ନିର୍ମିତ
ଖଚିତ ହୋଇଛି ଯହିଁ ରତନ ବହୁତ ।
ଏମନ୍ତ ଦିବ୍ୟଆସନ ଦେଉଅଛୁ ମୁହିଁ
ଗ୍ରହଣ କର କମଳାଦେବୀ ମହାମାୟି ।
ସେ ଅନ୍ତରେ ପାଦ୍ୟଜଳ ବେନ ହସ୍ତେ ଧରି
ବୋଇଲେ ଅଟଇ ଏହା ମନ୍ଦାକିନୀ ବାରି ।
ପାଦ୍ୟରୂପେ ପ୍ରତିଗ୍ରହ କର ଲକ୍ଷ୍ମୀଦେବୀ
କୃତାର୍ଥ ହେବି ମୁଁ ତୁମ୍ଭ ପାଦପଦ୍ମ ସେବି ।
ଶଙ୍ଖ ଗର୍ଭସ୍ଥିତ ଦିବ୍ୟ ସୁବାସିତ ଜଳ
ମିଶ୍ରିତ ହୋଇଛି ଗନ୍ଧ ପୁଷ୍ପ ଦୂର୍ବାଦଳ ।
ଗ୍ରହଣ କରନ୍ତୁ ତୋଷେ ପଦ୍ମନିବାସିନୀ ।
ପ୍ରକାଶ କରୁଛି ତୁମ୍ଭ ଶ୍ରୀମୁଖେ ହାସିନୀ ।
ସୁଗନ୍ଧ ଶୁଦ୍ଧ ତଇଳ ଆମଳକୀ ଜଳ
ଯହିଁରେ ଶରୀର ହୁଏ ଅତ୍ୟନ୍ତ ନିର୍ମଳ ।
ଭକ୍ତିଭରେ ସମର୍ପଣ କରୁଅଛି ଏବେ
ଗ୍ରହଣ କରିବା ହେଉ ଦେବୀ ସ୍ନେହଭାବେ ।
ନାନା ଗନ୍ଧଦ୍ରବ୍ୟମୟ ଶାଳର ନିର୍ଯ୍ୟାସ
ଅଗ୍ନିରେ ନିକ୍ଷିପ୍ତ ହୋଇ ଚହଟାଏ ବାସ ।

ଏମନ୍ତ ଧୂପକୁ ଦେବୀ ଘେନ ମୋହଠାରୁ
କପଟ ଖଣ୍ଡନ ହେଉ ତୁମ୍ଭର କୃପାରୁ ।
ଶୀତଳ ସୁଖଦ ଏହି ସୁଗନ୍ଧ ଚନ୍ଦନ
ମଳୟ ପର୍ବତ ଶୃଙ୍ଗେ ହୋଇଛି ଉତ୍ପନ୍ନ ।
ଆନନ୍ଦେ ଗ୍ରହଣ କର ଦେବୀ ଭଗବତୀ
ତୁମ୍ଭ ଶ୍ରୀଚରଣେ ମୋର ଅଶେଷ ପ୍ରଣତି ।
ଅନ୍ଧାରନାଶନକାରୀ ସର୍ବ ଲୋକପ୍ରିୟ
ଦୀପକୁ ଘେନଣ ଦେବୀ ପରସନ୍ନ ହୁଅ ।
ନାନା ରସମୟ ସ୍ୱାଦୁଦ୍ରବ୍ୟ ସମନ୍ୱିତ
ନୈବେଦ୍ୟ ଗ୍ରହଣ କର ତ୍ରୈଲୋକମାତ ।
ବ୍ରହ୍ମମୟ ପୁଣି ପ୍ରାଣ ରକ୍ଷଣ କାରଣ
ସନ୍ତୋଷ ସୌନ୍ଦର୍ଯ୍ୟ ପୁଷ୍ଟି ସୁଖବର୍ଦ୍ଧନ ।
ଏମନ୍ତ ଅନ୍ନକୁ ଦେବୀ ଘେନ ତୋଷଭରେ
ସମର୍ପଣ କରୁଅଛି ତୁମ୍ଭ ଶ୍ରୀପଦରେ ।
ସୁପକ୍ୱ ଶାଳି ଅକ୍ଷତ ଖଣ୍ଡଘୃତ ପୂର୍ଣ୍ଣ
ସୁସ୍ୱାଦୁ ସୁମନେ ହର ଯେଉଁ ପରମାନ୍ନ ।
ତାହାକୁ ଘେନଣ ଦେବୀ ହୁଅ ଗୋ ସନ୍ତୁଷ୍ଟ
ତୁମ୍ଭ ଦୟା ଯୋଗେ ଦୂରହେଉ ମୋର କଷ୍ଟ ।
କ୍ଷୀର ଦଧି ଘୃତମୟ ସୁସ୍ୱାଦୁ ସୁନ୍ଦର
ସ୍ୱସ୍ତିକ ଘେନଣ ଦେବୀ ହୁଅ ତୋଷକର ।
ସୁରୁଚିର ନାନାବିଧ ପକ୍ୱ ଫଳଗଣ
ଘେନ ମହାମାୟେ କରୁଅଛି ସମର୍ପଣ ।
କାମଧେନୁ ଦୁଗ୍ଧ ସାର ସୁସ୍ୱାଦୁ ଉତ୍ତମ
ମର୍ତ୍ତ୍ୟରେ ଅମୃତ ବୋଲି ପାଇଛି ଯେ ନାମ ।
ସେହି ଗବ୍ୟ ସମର୍ପଣ କରୁଅଛି ଆଣି
ଗ୍ରହଣ କର ଶ୍ରୀହରିପ୍ରିୟା କମଳିନୀ ।
ଇକ୍ଷୁରସରୁ ଉତ୍ପନ୍ନ ଉତ୍ତମ ମଧୁର
ଅଗ୍ନିପକ୍ୱ ଖଣ୍ଡ ହେବ ପ୍ରତିଗ୍ରହ କର ।
ଗହମ ତଣ୍ଡୁଳ ଚୂର୍ଣ୍ଣ ଘୃତରେ ମିଶ୍ରିତ
ଏ ବାହାରେ ସୁମଧୁର ଦ୍ରବ୍ୟସମନ୍ୱିତ ।
ଏମନ୍ତ ପିଷ୍ଟଅନ୍ନକୁ ଘେନ ବିଷ୍ଣୁକାନ୍ତେ
ସମର୍ପଣ କରୁଛି ମୁଁ ତୁମ୍ଭର ଅଗ୍ରତେ ।
ଶାମ୍ୟର ମୂର୍ତ୍ତିରେ ନିର୍ମଳ ଘୃତପକ୍ୱ ହୋଇ
ଯବଣ ପିଷ୍ଟକ [illegible] ଦେଉଅଛି ମୁହିଁ ।
ତା ସଙ୍ଗତେ ଇକ୍ଷୁଦଣ୍ଡ ଖଣ୍ଡ ଖଣ୍ଡ କରି
ସମର୍ପଣ କରୁଅଛି ଘେନ ଆଗୋ ଶିରି ।

ଗ୍ରୀଷ୍ମକାଳେ ଶୀତବାୟୁ କରେ ଯେ ପ୍ରଦାନ
ଆନନ୍ଦେ ଦେବୀ ଗ୍ରହଣ କର ସେ ବ୍ୟଜନ ।
କର୍ପୂର ଚନ୍ଦନ ପୁଣି ଖଦିର ଗୁବାକ
ଯୁକ୍ତହୋଇ ସୁଶୋଭିତ କରଇ ଯେ ମୁଖ ।
ସେ ତାମ୍ବୂଳ ସମର୍ପଣ କରୁଅଛୁ ମୁହିଁ
ଘେନ ଦେବୀ ମହାଲକ୍ଷ୍ମୀ ତୋଷମନ୍ତ ହୋଇ ।
ଜଗତଜୀବନ ରୂପ ଶୀତଳ ସୁବାସ
ପାନକଲେ ମାନେ ତୃଷା କରଇ ଯେ ନାଶ ।
ସେ ଦିବ୍ୟପାନୀୟ ଜଳ କରୁଛୁ ଅର୍ପଣ
ଆନନ୍ଦରେ ଦେବୀ ତାହା କରନ୍ତୁ ଗ୍ରହଣ ।
କାର୍ପାସଜନିତ ଦେହ ଶୋଭାର କାରଣ
ଅଟଇ ଯେ ବସ୍ତ୍ର ତାହା ହରଷରେ ଘେନ ।
ନାନାରତ୍ନ ନିର୍ମିତ ଦିବ୍ୟ ଅଳଙ୍କାର
ସକଳ ସୌନ୍ଦର୍ଯ୍ୟ ଦେହ ଶୋଭାର ଆଧାର ।
ସମର୍ପଣ କରୁଅଛୁ ତୁମ୍ଭ ଚରଣରେ
ଗ୍ରହଣ କର ଶ୍ରୀହରିପ୍ରିୟା ଆନନ୍ଦରେ ।
ବିବିଧ କୁସୁମମୟ ସ୍ୱଚ୍ଛ ଶୀତଳ
ଘେନ ପଦ୍ମବନବାସିନୀ ଦିବ୍ୟପୁଷ୍ପମାଳ
ଅଶେଷ ମଙ୍ଗଳ ହେତୁ ଦେହ ଶୁଦ୍ଧ କର
ଗନ୍ଧଦ୍ରବ୍ୟ ଘେନ ଦେବୀ ତୁଷ୍ଟ ବୋଧଭର ।
ପୁଣ୍ୟତୀର୍ଥରେ ଉତ୍ପନ୍ନ ଶୁଦ୍ଧ ସୁନିର୍ମଳ
ଉତ୍ତମ ଅଟଇ ଯେଉଁ ଆଚମନ ଜଳ ।
ତାହାକୁ ଗ୍ରହଣ କର କୃଷ୍ଣ ପ୍ରିୟବତୀ
କରୁଛୁ ମୁଁ ତୁମ୍ଭଠାରେ ଅଶେଷ ଭକତି ।
ମହାମୂଲ୍ୟ ଗନ୍ଧପୁଷ୍ପ ଗଣରେ ପୂରିତ
ଅଟଇ ଯେ ଶଯ୍ୟା ତାହା ଘେନ ଆଦ୍ୟମାତ ।
ଯେଉଁ ଦ୍ରବ୍ୟ ଜଗତରେ ଦୁର୍ଲ୍ଲଭ ଅଟଇ
ଦେବତାମାନଙ୍କ ଭୋଗ ଯୋଗ୍ୟ ହୋଇଥାଇ ।
ତାହା ତୁମ୍ଭପାଶେ ମୁହିଁ ଦେଉଅଛୁ ଆଣି
ଗ୍ରହଣ କର ହରଷେ ଦେବୀ କମଳିନୀ ।
ଏହିରୂପେ ଉପଚାର ସମର୍ପଣ କରି
ପ୍ରତ୍ୟେକ ଦ୍ରବ୍ୟରେ ମୂଳମନ୍ତ୍ରକୁ ଉଚ୍ଚାରି ।
ଦଶଲକ୍ଷ ମନ୍ତ୍ର ଜପ କଲେ ପୁରନ୍ଦର
ସେ ସକାଶୁଁ ମନ୍ତ୍ରସିଦ୍ଧି ହେଲା ତାହାଙ୍କର ।
ଯେଉଁ ମନ୍ତ୍ର ତାଙ୍କୁ ଦେଇଥିଲେ ପ୍ରଜାପତି
ତାହାର ସ୍ୱରୂପ ଏବେ ଶୁଣ ଆହେ ମତି ।

ପ୍ରଥମରେ ଲକ୍ଷ୍ମୀ ମାୟା କାମ ସରସ୍ୱତୀ
ଏହାଙ୍କର ବୀଜ କ୍ରମେ କରଇବ ସ୍ଥିତି ।
ଚତୁର୍ଥୀ ବିଭକ୍ତି ଅନ୍ତ କମଳବାସିନୀ
ଶବ୍ଦକୁ ସେ ଉତ୍ତରରେ ବସାଇବ ପୁଣି ।
ସ୍ୱାହା ଦୁଇବର୍ଣ୍ଣ ଶେଷେ କରାଇବ ଯୁକ୍ତ
ଏମନ୍ତ ଦ୍ୱାଦଶାକ୍ଷର ମନ୍ତ୍ର ହେଲା ଜାତ ।
ପୂର୍ବେ ଏହି ମନ୍ତ୍ର ଜପ କରିଣ କୁବେର
ସର୍ବ ଧନ ସମ୍ପଦରେ କଲେ ଅଧିକାର ।
ଆଦର ଦକ୍ଷ ସାବର୍ଣ୍ଣି ମନୁ ନରପତି
ଏହି ମନ୍ତ୍ର ଜପକରି ହେଲେ ଚକ୍ରବର୍ତ୍ତୀ ।
ମଙ୍ଗଳ ଏହାଙ୍କୁ ଜପ କରିବା ହେତୁରେ
ଅଧିପତି ହେଲେ ସପ୍ତଦ୍ୱୀପା ପୃଥିବୀରେ ।
ଉତ୍ତାନପାଦିକ ପ୍ରିୟବ୍ରତ ଯେ କେଦାର
ଏହି ମନ୍ତ୍ର ଜପି ହେବେ ରାଜରାଜେଶ୍ୱର ।
ମନ୍ତ୍ର ସିଦ୍ଧ ହେଲା ପରେଁ ଦେବୀ କମଳିନୀ
ଇନ୍ଦ୍ରଙ୍କୁ ଦର୍ଶନ ଦେଲେ ଆସି ସେହିକ୍ଷଣି ।
ରତ୍ନସାର ବିନିର୍ମିତ ବିମାନରେ ବସି
ପ୍ରକାଶିତ କରୁଛନ୍ତି ଦିବ୍ୟ ଶୋଭାରାଶି ।
ଶୁକ୍ଳ ଚମ୍ପକ ପ୍ରାୟେ ଦିଶଇ ବରଣ
ରହିଅଛି ଶ୍ରୀଅଙ୍ଗରେ ନାନା ଆଭରଣ ।
ଈଷତ ହାସ ପ୍ରସନ୍ନବଦନ ମାଧୁରୀ
ନିନ୍ଦନ କରନ୍ତି ତେଜେ ମଧ୍ୟ ଦିନଶିରୀ ।
କୋଟି ପୂର୍ଣ୍ଣ ଚନ୍ଦ୍ରପ୍ରଭା ରତ୍ନମାଳା କରେ
ଧାରଣ କରିଅଛନ୍ତି ବିଶେଷ ଆଦରେ ।
ଏହିରୂପେ ମହାମାୟା କମଳାଙ୍କୁ ଦେଖି
ସ୍ତୁତିକଲେ ପୁରନ୍ଦର ହୋଇ ମହାସୁଖୀ ।
ସେ ସମୟେ ଭକ୍ତିଭରେ ତାହାଙ୍କ ଶରୀର
ପୁଲକିତ ହେଲା ନେତ୍ରୁ ବହିଗଲା ନୀର ।
ମସ୍ତକରେ ବେନିକର ଯୋଡ଼ି ଆନନ୍ଦରେ
ବ୍ରହ୍ମା ଦେଇଥିବା ସ୍ତୋତ୍ର ଉଚ୍ଚାରି ମୁଖରେ ।
ଯେଉଁରୂପେ ପ୍ରାର୍ଥନା କଲେ ଶୁଣ ଏବେ ତାହା
ଆହେ ନାରଦ ମହର୍ଷି ଯଣ୍ଡଙ୍କର ନାହା ।
ବୋଇଲେ ନମସ୍ତେ ଦେବୀ କମଳବାସିନୀ
ନାରାୟଣପ୍ରିୟେ ଭକ୍ତ ଦୁଃଖ ବିନାଶିନୀ ।
ଶ୍ରୀକୃଷ୍ଣ ପ୍ରେୟସୀ ପଦ୍ମା ପଙ୍କଜଲୋଚନା
ପଦ୍ମମୁଖୀ ପଦ୍ମାସନା କ୍ଷୀରାବ୍ଧିନନ୍ଦନା ।

ଷଡ୍‌ଗ୍ନା ବୈଷ୍ଣବ ଶକ୍ତି ଆନନ୍ଦକାରଣୀ
ନମୋ ନମଃ ଦେବୀ ସର୍ବ ସମ୍ପଦଦାୟିମା ।
ସର୍ବାଣୀ ସର୍ବରୂପା ଶୁଭ ଉଧ୍ୱାସ୍ୱିମା
ତୁମ୍ଭ ପାଦମୂଳେ ମୋର ଅଶେଷ ଦଇଣା ।
ତୁମ୍ଭ ଦୟା ଯୋଗେ ହୁଏ ଶ୍ରୀକୃଷ୍ଣ ଭକତ
ଅସହାୟ ପ୍ରାଣୀଙ୍କର ଅଟ ତୁମ୍ଭେ ଗତି ।
ଧନ ଅଧୀଶ୍ୱରୀ ତୁମ୍ଭେ ଅଟ ମହାମାୟା
ଜଗତ ଲୋକଙ୍କୁ ରକ୍ଷା କରେ ତୁମ୍ଭ ଦୟା ।
ଶସ୍ୟ ପାଳନକାରିଣୀ ଅଟ ଭଗବତୀ
ସର୍ବଦା ଲୋକହିତରେ ଥାଏ ତୁମ୍ଭ ମତି ।
ବୃଦ୍ଧିଦା ସିଦ୍ଧିଦା ତୁମ୍ଭେ ଶ୍ରୀହରି ରମଣୀ
ତୁମ୍ଭର ମହିମା ଦେବୀ କେ ପାରିବ ଜାଣି ।
ମହାଲକ୍ଷ୍ମୀ ବୋଲାଉଛ ବଇକୁଣ୍ଠ ପୁରେ
ଲକ୍ଷ୍ମୀ ଅଟେ ତୁମ୍ଭ ନାମ କ୍ଷୀର ସମୁଦ୍ରରେ ।
ସ୍ୱର୍ଗପୁରେ ସ୍ୱର୍ଗଲକ୍ଷ୍ମୀ ବୋଲାଅ ସେପରି
ନୃପତି ମନ୍ଦିରେ ତୁମ୍ଭ ନାମ ରାଜଶିରୀ ।
ଗୃହସ୍ଥଙ୍କ ଘରେ ଘରେ ଗୃହଲକ୍ଷ୍ମୀ ହୋଇ
ପ୍ରକାଶିତ ହୋଇଅଛ ନାନାରୂପ ବହି ।
ଗୋମାତା ସୁରଭିରୂପେ ଜନ୍ମିଅଛ ତୁମ୍ଭେ
ତୁମ୍ଭର ପ୍ରଶଂସା କହି କି ପାରିବୁ ଆମ୍ଭେ ।
ତୁମ୍ଭେ ଏକା ଦେବମାତା ଅଦିତି ବୋଲାଅ
କମଳା କମଳାଳୟା ନାମ ବହିଥାଅ ।
ସ୍ୱାହା ସ୍ୱଧା ରୂପେ ତୁମ୍ଭେ ହୁଅ ପରକାଶ
ସର୍ବଶସ୍ୟ ଗୁଣରେ ଅଟ ପୃଥିବୀ ସଦୃଶ ।
ଶୁଦ୍ଧସତ୍ତ୍ୱ ସ୍ୱରୂପିଣୀ ନାରାୟଣ କାନ୍ତା
ବଇରାଗୀ କ୍ରୋଧ ଅହଙ୍କାର ବରଜିତା ।
ତୁମ୍ଭ ପ୍ରସାଦରେ ଲଭ ହୁଏ ତତ୍ତ୍ୱଜ୍ଞାନ
ଆଉରି ଶ୍ରୀହରିଙ୍କର ପାଦେ ରହେ ମନ ।
ଯେ ତୁମ୍ଭେ ନ ଥିଲେ ସାର ଅସାର ସବୁତେ
ସକଳ ସଂସାର ଭସ୍ମ ହୁଅନ୍ତା କହୁଛି ।
ତୁମ୍ଭ ବିନା ଯେତେ ଜନ୍ତୁ ଚରାଚରେ ଜୀବ
ମୁହୂର୍ତ୍ତି ମଧ୍ୟରେ ସବୁ ହୋଇଯିବେ ଶବ ।
ସକଳ ଲୋକର ତୁମ୍ଭେ ହୋଇଛ ଜନନୀ
ଏ ବାହାରେ ପ୍ରିୟବନ୍ଧୁ ବାନ୍ଧବରୂପିଣୀ ।
ଧର୍ମ ଅର୍ଥ କାମ ମୋକ୍ଷ ହେତୁ ଅଟ ତୁମ୍ଭେ
ତୁମ୍ଭ ବିନା ଦଣ୍ଡେ ରହି ନ ପାରେ କେ ଏମ୍ଭେ ।

ଯେଉଁରୂପେ ସ୍ତନ୍ୟପାୟୀ ଶିଶୁମାନଙ୍କର
ଆଶ୍ରୟ ହୋଇ ଜନନୀ ଥାଏ ନିରନ୍ତର ।
ସେହିପରି ତୁମ୍ଭେ ସବୁଜୀବଙ୍କୁ ପାଳନ୍ତା
ତେଣୁ ବାରୁ ମାତା ବୋଲି ବୋଲାଉଛ ସିନା ।
କ୍ଷୁଦ୍ର ଶିଶୁ ମାତାଠାରୁ ବିଚ୍ଛେଦ ପାଇଲେ
ରହି ନ ପାରଇ ଯେହ୍ନେ କ୍ଷଣେମାତ୍ର ହେଲେ ।
ତୁମ୍ଭ ବିହୁନେ ଜଗତ ମଧ୍ୟରେ କେ ଜଣେ
ରହିବ ବୋଲି ବିଶ୍ୱାସ ନ ଆସଇ ମନେ ।
ପ୍ରସନ୍ନରୂପିଣୀ ତୁମ୍ଭେ ସମସ୍ତ ଲୋକରେ
କୃପାକରି ପରସନ୍ନ ହୁଅ ମୋରଠାରେ ।
ଶତ୍ରୁଗ୍ରସ୍ତ ହୋଇଅଛୁ ମୋର ନିଜ ପୁର
ପ୍ରଦାନ କରିଣ ତାହା ଉପଦ୍ରବୁଁ ଉଦ୍ଧର ।
ତୁମ୍ଭ ବିନାରୁ ବଞ୍ଚିତ ହୋଇ ଆମ୍ଭେମାନେ
ବନ୍ଧୁ ପ୍ରଶସ୍ତିନ ହୋଇ ବୁଲୁଅଛୁଁ ବନେ ।
ଜ୍ଞାନରତ୍ନ ସମ୍ପଦ ରାଜ୍ୟସୁଖ ଶିରୀ
ମଙ୍ଗଳ ବରଦାନ କର ସୁରେଶ୍ୱରୀ ।
ଏ ବାହାରେ କାମକ୍ରୋଧ ଲୋଭସଙ୍ଗ ଜିଣି
ଧର୍ମ ଅର୍ଥ କାମ ମୋକ୍ଷ କର ବିତରଣ ।
ପ୍ରଭାବ ପ୍ରତାପ ସର୍ବଲୋକେ ଅଧିକାର
ତୁମ୍ଭ କୃପାଯୋଗେ ହେଉ ଆମ୍ଭମାନଙ୍କର ।
ଅନ୍ତରେ ସକଳ ଶତ୍ରୁ ହେଉନ୍ତୁ ବିନାଶ
ପ୍ରାପତ ହେଉ ଆମ୍ଭଙ୍କୁ ଯଶ ପରିପୂର୍ଣ୍ଣ ।
ଏହେ ବୋଲି ସୁରପତି ଦେବଙ୍କର ତୁଲେ
ପୁନଃପୁନ ଦଣ୍ଡବତ ହୋଇ ସ୍ତୁତି କଲେ ।
ବ୍ରହ୍ମା ଶଙ୍କର ଅନନ୍ତ ଧର୍ମ୍ମ ଆଦି କରି
ଦେବତାଙ୍କ ପାଇଁ ସର୍ବେ କଲେ ଯୋଡ଼କରି ।
ତାହା ଦେଖି ମହାଲକ୍ଷ୍ମୀ ପ୍ରସନ୍ନ ହୋଇଲେ
ଇଚ୍ଛାମତେ ଦେବତାଙ୍କୁ ବରଦାନ କଲେ ।
ତାହାଙ୍କ ହସ୍ତରେ ଥିଲା ଯେଉଁ ପଦ୍ମମାଳା
ବିଭୂଷିତ କଲେ ତହିଁ କେଶବଙ୍କ ଗଳା ।
ସେ ଅନ୍ତରେ ସମସ୍ତଙ୍କୁ ଆଶୀର୍ବାଦ କରି
ବିମାନରେ ବସି ଗଲେ ଆପଣାର ପୁରୀ ।
ବର ପାଇ ଆନନ୍ଦରେ ସକଳ ଦେବତା
ନିଜ ନିଜ ସ୍ଥାନେ ଗଲେ ଶୁଣ ମହୁ ଭକ୍ତା ।
କ୍ଷୀର ସମୁଦ୍ର ମଧ୍ୟରେ ଶୋଇଥିଲେ ହରି
ତାହାଙ୍କ କୋଳକୁ ଚଳେଗଲେ ଯାଇ ଶିରୀ ।

ବ୍ରହ୍ମା ଶିବ ଦୁହେଁ ନିଜ ଭବନକୁ ଯାଇ
ରହିଲେ ଯେ ଯହା ସୁଖେ ତୋଷମନ ହୋଇ ।
ତିନି ସନ୍ଧ୍ୟାକାଳେ ଏହା ପଢ଼େ ଯେଉଁ ନର
ଧନଧାନ୍ୟ ସଉଭାଗ୍ୟ ବଢ଼ଇ ତାହାର ।
ରାଜା ଯେବେ ଭକ୍ତିଭରେ କରଇ ପଠନ
ପ୍ରାପତ ହୁଅଇ ରାଜ୍ୟ ସୁଖ ଯଶ ଧନ
ପଞ୍ଚଲକ୍ଷ ଥର ଜପ କରିଲେ ନିଶ୍ଚୟ
ସିଦ୍ଧ ହୁଅଇ ଏଥିରେ ନାହିଁଟି ସନ୍ଦେହ ।
ସେହି ସିଦ୍ଧସ୍ତୋତ୍ର ପାଠ କଲେ ପ୍ରତିଦିନ
ଅଭୀଷ୍ଟ ସିଦ୍ଧ ହୁଅଇ ଆହେ ତପୋଧନ ।
ସିଦ୍ଧମନ୍ତ୍ର ଯୋଗେ ଭାଗ୍ୟବାନ ହୁଏ ନର
ଧନ ଜନ ମାନ୍ୟ ଯଶ ଲଭଇ ଅପାର ।
ଇହକାଳେ ସୁଖ ପରକାଳରେ ମୁକତି
ଯୁଗେ ଯୁଗେ ତାକୁ ସିନା ହୁଅଇ ପ୍ରାପତି ।
ଏରୂପେ ଶୁଣି ନାରଦ ବିସ୍ମିତ ହୋଇଲେ
ନାରାୟଣଙ୍କୁ ଅନାଇ ପୁଣି ପଚାରିଲେ ।
ବୋଇଲେ ହେ ମହାଭାଗ ତୁମ୍ଭର ବଚନ
ଶୁଣିଣ ସଂଶୟ-ଜାଳେ ବୁଡ଼ିଲା ମୋ ମନ ।
ପ୍ରଥମରେ କହିଲ ତ ଦୁର୍ବାସା ମହର୍ଷି
ବାସବଙ୍କୁ ଯେଉଁ ପୁଷ୍ପ ଦେଲେ ମୋର ତୋଷି
ଯାହାର ମସ୍ତକେ ସେହି ପୁଷ୍ପ ରହିଥିବ
ସର୍ବଦେବଙ୍କ ଆଗରେ ପୂଜା ସେ ପାଇବ ।
ହସ୍ତୀର ମସ୍ତକେ ଇନ୍ଦ୍ର ସେ ପୁଷ୍ପକୁ ନେଇ
ଥୋଇବାରୁ ବନସ୍ତକୁ ଗଲା ସେ ପଳାଇ ।
ସେ ଅନ୍ତରେ ଶନୈଶ୍ଚର କ୍ରୂରଦୃଷ୍ଟି ପଡ଼ି
ଗଣେଶ ଦେହରୁ ଶିର ପଡ଼ିଲାକ ଛିଡ଼ି ।
ତା ଦେଖି ଧୂର୍ଜଟି ଗଜମୁଣ୍ଡ କାଟି ନେଲେ
ତତକ୍ଷଣେ ସେହି ଦେହରେ ଯୋଗ କରାଇଲେ ।
ସେହିଦିନୁ ଗଣପତି ସକଳ କର୍ମରେ
ଶ୍ରବଣ କଲେ ପ୍ରଥମେ ପୂଜା ସବୁଠାରେ ।

ପୁଣି କହୁଅଛ ଇନ୍ଦ୍ର ସେ ଠାବରୁ ଗଲେ
ଗଣେଶାଦି ଷଡ଼ଦେବତାଙ୍କୁ ପୂଜାକଲେ
ତାହାପରେ ଆରାଧନା କରି କମଳାଙ୍କୁ
ଲଭିକଲେ ଆପଣାର ରାଜ୍ୟ ବା ଶିରୀକୁ ।
ସେତେବେଳେ ତ ଗଣେଶ ଜନମି ନ ଥିଲେ
ଶଚୀପତି କେଉଁପରି ତାଙ୍କୁ ପୂଜା କଲେ ।
ଏହାର କାରଣ ମାନ ବୁଝି ନ ପାରିଲି
ଏଥିପାଇଁ ଆପଣଙ୍କୁ ପୁଣି ପୃଚ୍ଛା କଲି ।
ଏହି ପୁରାଣ ବଚନ ଅତ୍ୟନ୍ତ ଜଟିଳ
ଏଥିରେ ପ୍ରତ୍ୟେକ ଜନ ଲଭିବେ ସୁଫଳ ।
ଆପଣ ତ ଭଲକରି ଜାଣିଛନ୍ତି ତତ୍ତ୍ୱ
କହିଣ ସନ୍ଦେହ ମୋର ଘୁଞ୍ଚାନ୍ତୁ ତୁରିତ ।
ନାରାୟଣ ବୋଇଲେ ହେ ତପିଙ୍କ ଶେଖର
କହିବା ସେ କଥା ଏବେ ଶୁଣ ତୁମ୍ଭେ ଧୀର ।
ବାସବଙ୍କୁ ଯେତେବେଳେ ମୁନି ଶାପ ଦେଲେ
ସେହି ସମୟେ ଗଣେଶ ଜନମି ନ ଥିଲେ ।
ମାତ୍ର ଅଳ୍ପଦିନ ପରେ ହୋଇଲେ ଉତ୍ପନ୍ନ
ସକଳ ସ୍ଥାନରେ ତାଙ୍କୁ ପୂଜାକଲେ ଜନ ।
ଦେବେ ବହୁତ ବର୍ଷ ଯେ ଦୁଃଖୀତ ମନରେ
ଅଥୟ ହୋଇ ବୁଲିଲେ ସେ ଶାପ ଯୋଗରେ
ବିଷ୍ଣୁଙ୍କ ଆଦେଶ ମତେ ସେ କାଳେ ବାସବ
ଲକ୍ଷ୍ମୀଙ୍କୁ ପୂଜିବା ଲାଗି ପ୍ରକାଶିଲେ ଭାବ ।
ସେତେବେଳେକୁ ଗଣେଶ ଅଗ୍ରପୂଜ୍ୟ ହୋଇ
ସକଳ ଦେବଙ୍କ ମଧ୍ୟେ ଥିଲେ ଜାଣ ରହି ।
ତେଣୁ ଗଣେଶଙ୍କ ପୂଜା ଅଗ୍ରେ ସେହୁ କଲେ
ଧମନ୍ତ ପୂଜା ଫଳକୁ ସାଦରେ ଲଭିଲେ ।
ଏଥିରେ ସନ୍ଦେହ ପାଇଁ କଥା ଆଉ କିଛୁ
ନାହିଁ ଜାଣ ଆହେ ପ୍ରଜାପତିଙ୍କର ବତ୍ସ ।
ଏଥିଠାରେ କମଳାଙ୍କ ଜନ୍ମ ସମାଚାର
ଶେଷ କଲେ ଗୀତେ ଭାବ କହେ କ୍ଷେତ୍ରବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମହାଲକ୍ଷ୍ମୀଙ୍କ ପୂଜା ଓ ସ୍ତୁତି ପଠନ ଦ୍ୱାରା ଇନ୍ଦ୍ରଙ୍କର ବରପ୍ରାପ୍ତି କଥନେ ନାମ ଏକଚତ୍ୱାରିଂଶତୋଽଧ୍ୟାୟଃ ।

— + * + —

# ଦ୍ୱାଚତ୍ୱାରିଂଶତ୍ ଅଧ୍ୟାୟ
## ସ୍ୱାହା ପ୍ରଭୃତି ଦେବତାଙ୍କ ଚରିତ୍ର ବର୍ଣ୍ଣନ

ନାରାୟଣଙ୍କ ମୁଖରୁ ଲକ୍ଷ୍ମୀ ଉପାଖ୍ୟାନ
ଶୁଣିଣ ନାରଦ ବୋଇଲେକ ଧନ୍ୟ ଧନ୍ୟ ।
ପ୍ରଶଂସା କରଣ ଋଷିବରଙ୍କୁ ଅପାର
କହିଲେ ତୁମ୍ଭ ପରି କେ ନାହିଁ ବଡ଼ବର ।
ଯେଉଁ ଲକ୍ଷ୍ମୀ ଉପାଖ୍ୟାନ ଅତ୍ୟନ୍ତ ଅଦ୍ଭୁତ
ତାହା ଶ୍ରବଣରେ ତୋଷହେଲା ମୋର ଚିତ୍ତ ।
ଆଉ ଗୁପତ ବିଷୟ ରହିଅଛି ଯାହା
ଶୁଣାଇବାରେ ପ୍ରବୃତ୍ତ କର ମୋର ଆସ୍ଥା ।
ପୁରାଣ ଶାସ୍ତ୍ର ଆବର ବେଦ ବେଦାନ୍ତରେ
ପରକାଶ ହୋଇନାହିଁ ଯାହା ଜଗତରେ ।
ଏମନ୍ତ ଚରିତ କହି ତୋଷ କର ମନ
ଶୁଣି ନାରାୟଣ ହସି ବୋଇଲେ ବଚନ ।
ଯେଉଁ କଥା ପୁଚ୍ଛାକଲ ହେ ଧାତାଙ୍କ ସୁତ
ତାହା କହୁଅଛି ଶୁଣ ତୋଷକର ଚିତ୍ତ ।
ଆଜ ପର୍ଯ୍ୟନ୍ତେ ବହୁ ଗୁପ୍ତ ତଥ୍ୟମାନ
ଅପ୍ରକାଶ ରହିଅଛି ନ ଜାଣନ୍ତି ଜନ ।
ତାହା ମଧ୍ୟରୁ କେବଣ ଗାଥା ଶୁଣିବାକୁ
ବାଞ୍ଛୁଅଛ ତୁମ୍ଭେ ବେଗେଁ ପଚାର ଆମ୍ଭଙ୍କୁ ।
ଶୁଣି ନାରଦ ବୋଇଲେ ହେ ତପିଶେଖର
ପଚାରିବି ଏକକଥା ବେଗ ତା ଉତ୍ତର ।
ହବିର୍ଭାଗ ଦେବାବେଳେ ଦେବତାମାନଙ୍କୁ
କିମ୍ପା ଉଚ୍ଚରନ୍ତି ସ୍ୱାହା ଦେବୀଙ୍କ ନାମକୁ ।
ଯାଗ ହୋମ ଯଜ୍ଞ ଆଉ ପିତୃ ଶ୍ରାଦ୍ଧକାଳେ
ପ୍ରଶସ୍ତ ଅଟନ୍ତି ସ୍ୱାହାଦେବୀ ଧରାତଳେ ।
କାହିଁପାଇଁ ତାଙ୍କ ନାମ ହୁଏ ଉଚାରଣ
ବୁଝାଇ କୁହନ୍ତୁ ଦେବ ଏହାର କାରଣ ।
ପୁଣି ଯେତେ ଯେତେ ଶୁଭ କର୍ମମାନ ହୁଏ
ତହିଁରେ ଦକ୍ଷିଣା ଏକ ଉତ୍ତମ ବୋଲାଏ ।
ଏମାନଙ୍କ ଜନ୍ମଫଳ ପ୍ରଧାନ ଚରିତ
କୁହନ୍ତୁ ମୋତେ ଅଗତେ ସେ ସମସ୍ତ ତଥ୍ୟ ।

ତାହା ଶୁଣି ନାରାୟଣ ମୃଦୁ ହସି ହସି
ବୋଇଲେ କହିବା ତାହା ଶୁଣ ଏବେ ବସି ।
ସୃଷ୍ଟିର ଆରମ୍ଭ କାଳେ ସକଳ ଦେବତା
ଆହାର ଖୋଜିବାପାଇଁ ମନେ କରି ଚିନ୍ତା ।
ବ୍ରହ୍ମଲୋକେ ବ୍ରହ୍ମାଙ୍କର ସଭାରେ ମିଳିଲେ
ଆହାର ପାଇଁ ଆସିଛୁ ବୋଲି ଜଣାଇଲେ ।
ତାହା ଶୁଣି ପିତାମହ ଘେନାଇ ତାହାଙ୍କୁ
ସେହିକ୍ଷଣି ଧାଇଁଗଲେ ବିଷ୍ଣୁଙ୍କ ପାଶକୁ ।
ଦେବଙ୍କର ନିବେଦନ କଥାକୁ ବୁଝାଇ
କହନ୍ତେ ତା ଶୁଣି ପ୍ରଭୁ ରମାଦେବୀ ସାଇଁ ।
ଗୋଟିଏ କଳାରେ ଯାଇ ଯଜ୍ଞରୂପ ହେଲେ
ତା ଜାଣି ସମସ୍ତେ ଯାଗ ଅନୁଷ୍ଠାନ କଲେ ।
ପ୍ରଥମରେ ବ୍ରହ୍ମା ଶିବ ଦୁହେଁ ଯାଗକରି
ଅଗ୍ନିରେ ଆହୁତି ଦେଲେ ମନ୍ତ୍ରକୁ ଉଚାରି ।
ସେ ଅନ୍ତେ ବ୍ରାହ୍ମଣ କ୍ଷତ୍ରୀ ଆଦି ଯେତେଥିଲେ
ସେମାନେ ମଧ୍ୟ ଅନଳେ ଆହୁତିକ ଦେଲେ ।
ଦେବତାମାନଙ୍କୁ ତହୁଁ କିଛି ନ ମିଳିଲା
ସେ ସକାଶୁଁ ତାଙ୍କ ମନେ ଦୁଃଖ ଜାତ ହେଲା
ପୁଣି ସମସ୍ତେ ମିଳିତ ହୋଇ ଦଳକରେ ।
ପ୍ରବେଶ ହୋଇଲେ ଯାଇ ବ୍ରହ୍ମାଙ୍କ ସଭାରେ ।
ନମସ୍କାର କରି ତାଙ୍କୁ ବୋଇଲେ ହେ ବିହି
ଆପଣେ କହିତ ଯଜ୍ଞ କଲ ଆମ୍ଭ ପାଇଁ ।
ତଥାପି ଆମ୍ଭଙ୍କୁ ପ୍ରାପ୍ତ ନୋହିଲା ଆହାର
ଭାବନା କରନ୍ତୁ ଏବେ ଅନ୍ୟ ପ୍ରତିକାର ।
ତାହା ଶୁଣି ପିତାମହ ଧ୍ୟାନରେ ବସିଲେ
ଶ୍ରୀକୃଷ୍ଣଙ୍କୁ ମନେ ମନେ ସ୍ମରଣା କଲେ ।
ଯେ କଥାକୁ ଜାଣି ପ୍ରଭୁ ସଂସାର କରତା
ବୋଇଲେ ହେ ପିତାମହ କର କିମ୍ପା ଚିନ୍ତା ।
ମୋ ର ବୋଲେ ପ୍ରକୃତିଙ୍କୁ ସୁମରଣା କର
ସେ କଷ୍ଟେଁ କାମନା ପୂର୍ଣ୍ଣ କରିବେ ତୁମ୍ଭର ।
ଏହା ଶୁଣି ପୁଣି ବ୍ରହ୍ମା ପ୍ରକୃତିଦେବୀଙ୍କୁ
ଧ୍ୟାନ କରି ଭକ୍ତିଭରେ ପୂଜା କଲେ ତାଙ୍କୁ ।

ସକଳ ଶକ୍ତିରୂପିଣୀ ପ୍ରକୃତିସ୍ୱରୂପା
ବିଧାତାଙ୍କ ମନ ଜାଣି ସ୍ୱାହା ରୂପ ଧରି ।
ଅଗ୍ନିଦେବଙ୍କ ପାଶରେ ଯାଇଣ ମିଳିଲେ
ତାହାଙ୍କର ପ୍ରିୟବନିତା ହୋଇଣ ରହିଲେ ।
ଗ୍ରୀଷ୍ମକାଳ ସୂର୍ଯ୍ୟପରି ତାହାଙ୍କର ତେଜ
ସେ ସମୟେ ଦଗଦଗ କରୁଥିଲା ଉଜ ।
ମନ୍ଦହାସେ ମୁଖପଦ୍ମ ଅତି ମନୋହର
ଇନ୍ଦୁ ପ୍ରଭା ଜିଣି ଅଙ୍ଗ ଦିଶଇ ସୁନ୍ଦର ।
ବ୍ରହ୍ମାଙ୍କ ପାଶକୁ ଦେବୀ ଆସି ଏହିକ୍ଷଣି
କହିଲେ ଗମ୍ଭୀର ସ୍ୱରେ ସୁମଧୁର ବାଣୀ ।
ଆହେ ପଦ୍ମଯୋନି ମୁହିଁ ହେଲି ପରସନ୍ନ
ଇଚ୍ଛା ଅନୁରୂପେ ଏବେ ବର ମାଗି ନେନ ।
ତାହା ଶୁଣି ପ୍ରଜାପତି ସତ୍ୱରେ ଉଠିଲେ
ସ୍ୱାହାଦେବୀଙ୍କୁ ଅନାଇଁ ଏମନ୍ତ ଭଣିଲେ ।
ବୋଇଲେ ଗୋ ଦେବୀ ତୁମ୍ଭେ ବହ୍ନିଙ୍କର ଜାୟା
ଦାହିକା ଶକତି ରୂପ ଅଟେ ତୁମ୍ଭ କାୟା ।
ତୁମ୍ଭ ବିନା ହୁତାଶନ କେଉଁ ପଦାର୍ଥକୁ
ସମରଥ ନ ହୁଅନ୍ତି ଦଗ୍ଧ କରିବାକୁ ।
ମନ୍ତ୍ରଶେଷେ ତୁମ୍ଭ ନାମ ଉଚ୍ଚାରଣ କରି
ଅନଳରେ ଦେଲେ ହବ୍ୟ ଘୃତ ଆଦି କରି ।
ତାହା ସବୁ ଦେବତାଙ୍କୁ ହେଉ ପରାପତ
ଅନୁଗ୍ରହ କରି ଏହି ବର ଦିଅ ମାତ ।
ସକଳ ସମ୍ପଦରୂପା ଅଟ ସୁରେଶ୍ୱରି
ମୁକତି ପାଆନ୍ତି ଲୋକେ ତୁମ୍ଭ ନାମ ଧରି ।
ଏହିରୂପେ ସ୍ୱାହା ଶୁଣି ବ୍ରହ୍ମାଙ୍କ ବଚନ
ବିସ୍ମୟ ହୋଇ ମୁହୂର୍ତ୍ତେ ହୋଇଲେ ମଉନ ।
ସେ ଅନ୍ତରେ ଆପଣାର ଅଭିପ୍ରାୟ ଫେଇ
କହିଲେ ତାହାଙ୍କ ଆଗେ ସମସ୍ତ ବତାଇ ।
ବୋଇଲେ ହେ ପ୍ରଜାପତି କହୁଅଛୁ ଯାହା
ମନ ଦେଇ କରି ତୁମ୍ଭେ ଶୁଣ ଏବେ ତାହା ।
ଶ୍ରୀକୃଷ୍ଣଙ୍କ ବିନା ଏହି ଜଗତ ମଧ୍ୟରେ
ଯାହା ଅଛି ଅଟଇ ସେ ସ୍ୱପ୍ନ ପରକାରେ ।
ତାଙ୍କଠାରୁ ଶୁଭାଶୁଭ ହୁଅଇ ଉତ୍ପନ୍ନ
ସକଳ ଲୋକର ହେତୁ ଅଟନ୍ତି ସେ ଜାଣ ।
ବହୁତକାଳ ତପସ୍ୟା କରି ଏବେ ମୁହିଁ,
ରହିବି ସେ ପ୍ରଭୁଙ୍କର ପାଦପଦ୍ମ ଧ୍ୟାୟି ।

ଯାଙ୍କ ପ୍ରଭାବରେ ତୁମ୍ଭେ ହୋଇଅଛ ଧାତା
ଆବର ଅଟନ୍ତି ଶିବ ସଂହାର କରତା ।
ସେହିପରି ଶେଷଦେବ ଧରିଛନ୍ତି କ୍ଷିତି
ଧରମ ସକଳ ଲୋକ ସାକ୍ଷୀ ବୋଲାଅନ୍ତି ।
ଅଗ୍ରପୂଜ୍ୟ ହୋଇଛନ୍ତି ଦେବ ଗଣେଶ୍ୱର
ପ୍ରକୃତି ବୋଲାନ୍ତି ମାତା ତିନି ଜଗତର ।
ଏମନ୍ତ ଯେ ଦେବତାଙ୍କୁ ମୁନି ଋଷିମାନେ
ସର୍ବଦା ବନ୍ଦିଣ କରୁଥାନ୍ତି ମନେ ମନେ ।
ଏହିରୂପେ କହି ଦେବୀ ତହୁଁ ଚଳିଗଲେ
ପୁଷ୍କର ତୀର୍ଥରେ ଯାଇଁ ପ୍ରବେଶ ହୋଇଲେ ।
ଲକ୍ଷେ ବରଷ ପର୍ଯ୍ୟନ୍ତ ଗୋଟିଏ ପାଦରେ
ଉଭା ହୋଇଣ ତପସ୍ୟା କଲେ ନିରନ୍ତରେ ।
ଶ୍ରୀକୃଷ୍ଣ ସେ କଥା ଜାଣି ଆସି ସେହିକାଳେ
ନିଜ ରୂପ ଧରି ତାଙ୍କ ଆଗେ ଉଭାହେଲେ ।
କୋଟିଏ କନ୍ଦର୍ପ ଜିଣି ସୁନ୍ଦର ମୂରତି
ସେ ରୂପ ଦେଖି ମୋହିତା ହେଲେ ସ୍ୱାହାସତୀ ।
ସାତ୍ତ୍ୱିକ ଚିହ୍ନକୁ ଅଙ୍ଗେ କଲେ ପରକାଶ
କାମଶରେ ତାଙ୍କ ମନ ହୋଇଲା ଅବଶ ।
ଶ୍ରୀକୃଷ୍ଣ ତା ଦେଖି ଅଭିପ୍ରାୟ ବୁଝିପାରି
କୋଳେ ବସାଇଲେ ନେଇ ବେନିକର ଧରି ।
ସେ ଅନନ୍ତ ବୋଲେ ଶୁଣ ଆଗୋ ସୁକେଶି
ତୁମ୍ଭ ମନକଥା ସବୁ ଜାଣିଲି ବିଶେଷି ।
ମୋର ଅଙ୍ଗ ସଙ୍ଗ ଇଚ୍ଛା କରିଛ ଯା ତୁମ୍ଭେ
ତହିଁର ପ୍ରକାର କହୁଅଛୁଁ ଶୁଣ ଆମ୍ଭେ ।
ବରାହ ରୂପରେ ଅବତାର ହୋଇ ଯେବେ
ମହୀରେ ଜନମ ଆମ୍ଭେ ହୋଇବୁଟି ତେବେ ।
ତୁମ୍ଭେ ମଧ୍ୟ ନଗ୍ନଜିତ ଭାରିଯା ଉଦରେ
ଜନମ ହୋଇବ ନଷ୍ଟେଁ କନ୍ୟା ସ୍ୱରୂପରେ ।
ଆମ୍ଭର ଭାରିଯା ହୋଇ ମାନସ ତୋଷିବ
ଏଥିରେ ସନ୍ଦେହ ବୋଲି ନାହିଁ ଜାଣ ଲବ
ବର୍ତ୍ତମାନ ଅଗ୍ନିଙ୍କର ପତ୍ନୀ ହୋଇ କରି
ଦାହିକା ଶକତି ରୂପେ ରହ ଗୋ ସୁନ୍ଦରି ।
ସକଳ ବୈଦିକ ମନ୍ତ୍ର ଶେଷଭାଗେ ଥୋଇ
ପବିତ୍ର ହୋଇବ ବର ଦେଉଅଛୁ ମୁହିଁ ।
ଭକ୍ତିଭାବରେ ବୈଶ୍ୱାନର ତୁମ୍ଭଙ୍କୁ ପୂଜିବେ
ଏ କାହାରେ ବୃନ୍ଦେଶ୍ୱରୀ କରିଣ ରଖିବେ ।

ତାହାଙ୍କ ସଙ୍ଗରେ ନୀଳାକଣ୍ଠ ପ୍ରତିଦିନ
ଆନନ୍ଦରେ ବିହାରନ କରିବ ଯାପନ ।
ଏରୂପେ ଶ୍ରୀକୃଷ୍ଣ ସ୍ୱାହାଦେବୀଙ୍କୁ ବତାଇ
ଅଶ୍ୱାସନା କରି ଗଲେ ଅନ୍ତର୍ଦ୍ଧାନ ହୋଇ ।
ସେ ସମୟେ ବୈଶ୍ୱାନର ବ୍ରହ୍ମାଙ୍କ ଆଦେଶେ
ପ୍ରବେଶ ହୋଇଲେ ଆସି ସ୍ୱାହାଙ୍କର ପାଶେ ।
ଯଥାବିଧି ଉପାସନା କରି ସ୍ତୋତ୍ର ଧ୍ୟାନେ
ପାଣି ଗ୍ରହଣ କରିଲେ ବେଦର ବିଧାନେ ।
ସେ ଅନ୍ତେ ସହସ୍ରେ ଦିବ୍ୟ ବରଷ ପର୍ଯ୍ୟନ୍ତେ
ତାହାଙ୍କ ସଙ୍ଗରେ କ୍ରୀଡ଼ା କଲେ ଅବିରତେ ।
ନିର୍ଜନ ବନ ମଧ୍ୟରେ କେତେବେଳେ ଯାଇ
ବିହାର କରନ୍ତି ଦୁହେଁ ମହାତୋଷ ହୋଇ ।
କେବେ ଅବା ନିଜପୁରେ ବିଚିତ୍ର ଭବନେ
ଦୁଗ୍ଧଫେନ ତୁଲ୍ୟ ଶଯ୍ୟା ରମ୍ୟ ଉପାଧାନେ ।
କାଳକ୍ରମେ ହୁତାଶନ ଦେବଙ୍କର ରେତ
ପଡ଼ି ସ୍ୱାହା ଦେବୀଙ୍କର ଗର୍ଭ ହେଲା ଜାତ ।
ଦ୍ୱାଦଶ ବରଷ ଅନ୍ତେ ଗାର୍ହପତ୍ୟ ଆଦି
ପୁତ୍ରେ ଜାତ ହେଲେ ଦିବ୍ୟ ରୂପକୁ ସମ୍ପାଦି ।
ସେମାନଙ୍କୁ ପ୍ରତିଦିନ ମୁନି ଋଷିଗଣ
ସ୍ୱାହାନ୍ତ ବୈଦିକ ମନ୍ତ୍ର କରି ଉଚ୍ଚାରଣ ।
ପ୍ରତିଦିନ ନାନାହୋମ ଦ୍ରବ୍ୟମାନ ନେଇ
ପୂଜା କରୁଛନ୍ତି ଭକ୍ତିଭାବକୁ ଦେଖାଇ ।
ସ୍ୱାହାଯୁକ୍ତ ମନ୍ତ୍ରକୁ ଯେ କରନ୍ତି ଗ୍ରହଣ
ତାହାଙ୍କର ସର୍ବସିଦ୍ଧି ହୁଅଇଟି ଜାଣ ।
ଯେଉଁରୂପେ ବିଷହୀନ ହୋଇଥିଲେ ସର୍ପ
କ୍ଷଣକେ ଚୂର୍ଣ୍ଣ ହୁଅଇ ତାର ସବୁ ଦର୍ପ
ବ୍ରାହ୍ମଣ ଯଦ୍ୟପି ବେଦହୀନ ହୋଇଥାଏ
ଯେମନ୍ତ ତାହାର ବଡ଼ପଣ ନାଶଯାଏ ।
ଉତ୍ତମ ପତିବିହୀନ ହୋଇଲେ କାମିନୀ
ଯେରୂପେ ତାର ସୌଭାଗ୍ୟ ନାଶଯାଏ ପୁଣି ।
ଫଳ ଶାଖା ନ ଥିବାର ବୃକ୍ଷକୁ ଯେପରି
ତେଜନ୍ତି ସମସ୍ତେ ଦୂରୁ ଅନାଦର କରି ।
ସେହିପରି ସ୍ୱାହାହୀନ ମନ୍ତ୍ର ପ୍ରୟୋଗରେ
ନ ହୁଅଇ କର୍ମଫଳ କେବଣ ପ୍ରକାରେ ।
ସ୍ୱାହାନ୍ତ ମନ୍ତ୍ରରେ ଦେବେ ସନ୍ତୁଷ୍ଟ ହୁଅନ୍ତି
ଯାଜକର ମନୋରଥ ଫଳକୁ ଦିଅନ୍ତି ।

ଏହିପରି ସ୍ୱାହାଙ୍କର ମନ୍ତ୍ର ଉପାଖ୍ୟାନ
କହିଲି ସମ୍ପୂର୍ଣ୍ଣରୂପେ ଆହେ ତପୋଧନ ।
ଆଉ କେଉଁ କଥା ଇଚ୍ଛା ଥିଲେ ଶୁଣିବାକୁ
ପଚାର ଏକ୍ଷଣି ତାହା କହିବା ତୁମ୍ଭଙ୍କୁ ।
ନାରଦ ବୋଇଲେ ଆହେ ମୁନିଙ୍କ ଈଶ୍ୱର
ଯେଉଁ ସ୍ତୋତ୍ର ମନ୍ତ୍ରଧ୍ୟାନେ ଦେବ ବୈଶ୍ୱାନର ।
ସ୍ୱାହା ଦେବୀଙ୍କର ପୂଜା ସ୍ତୁତିପାଠ କଲେ
ତା ସବୁ ବିସ୍ତାରି କହ ମୋ ଆଗରେ ଭଲେ ।
ଏରୂପେ ନାରଦ ବାକ୍ୟ ଶୁଣି ନାରାୟଣ
ବୋଇଲେ ହେ ମୁନିବର ସାବଧାନେ ଶୁଣ ।
ସାମବେଦ ନିରୂପିତ ସ୍ତୋତ୍ର ପୂଜାବିଧି
ଯହିଁରେ ଅଚିରେ ସର୍ବକାର୍ଯ୍ୟ ହୁଏ ସିଦ୍ଧି ।
କ୍ରମ ଅନୁସାରେ ତାହା କହୁଅଛୁ ମୁହିଁ
ଯଜ୍ଞ ଆରମ୍ଭରେ ପୂର୍ଣ୍ଣକୁମ୍ଭକୁ ବସାଇ ।
ନୋହିଲେ ବା ଶାଳଗ୍ରାମ ସଂସ୍ଥାପନ କରି
ପୂଜିବ ସ୍ୱାହାଦେବୀଙ୍କୁ ମନ୍ତ୍ରକୁ ଉଚ୍ଚାରି ।
ନମସ୍ତେ ସିଦ୍ଧିଦା ଦେବୀ ମନ୍ତ୍ର ସ୍ୱରୂପିଣୀ
ତୁମ୍ଭେ ଅଟ ସର୍ବ କର୍ମଫଳ ବିଧାୟିନୀ ।
ଏହିରୂପେ ଧ୍ୟାନକରି ମୂଳମନ୍ତ୍ରେ ପୁଣି
ପାଦ୍ୟ ଅର୍ଘ୍ୟଆଦି ଉପଚାର ଦେବ ଆଣି ।
ସେ ଅନ୍ତରେ ମୂଳମନ୍ତ୍ର କରିବ ପଠନ
ତାହାର ସ୍ୱରୂପ ଏବେ ଶୁଣ ତପୋଧନ ।
ପ୍ରଥମେ ଓଁକାର ତାହାପରେ ମାୟାବୀଜ
ତହିଁପରେ ଲକ୍ଷ୍ମୀଙ୍କର ମୂଳମନ୍ତ୍ର ବୀଜ ।
ତହିଁ ପାଶେ ବହ୍ନିଜାୟା ଦେବୀପଦ ଦୁଇ
ଚତୁର୍ଥୀ ବିଭକ୍ତି ଯୋଗେ ବସାଇବ ନେଇ ।
ସ୍ୱାହା ବେନି ଅକ୍ଷରକୁ ବସାଇବ ଶେଷେ
ତେମନ୍ତ ହୋଇଲେ ମୂଳମନ୍ତ୍ର ବୋଲାଏ ସେ
ଏ ସ୍ତୋତ୍ର ପଠନ କରି ସ୍ୱାହା ଦେବୀଙ୍କର
ପୂଜାକଲେ ସର୍ବକର୍ମ ଫଳ ପାଏ ନର ।
ଅନଳ ଦେବତା ଏହା ଶୁଣିବା ଉତ୍ତାରେ
ଷୋଡ଼ଶ ନାମ ପଠନ କଲେ ଯେ ପ୍ରକାରେ ।
ତାହା ମଧ୍ୟ କହୁଅଛୁ ଶୁଣ ମୁନିଈଶ
ବୋଇଲେ ନମସ୍ତେ ସ୍ୱାହା ପ୍ରକୃତିଙ୍କ ଅଂଶ ।
ମନ୍ତ୍ରଅଙ୍ଗ ସ୍ୱରୂପିଣୀ ମନ୍ତ୍ର ଫଳଦାତ୍ରୀ
ପଦବକାରିଣୀ ଦେବୀ ସର୍ବଲୋକ ଧାତ୍ରୀ

ଧର୍ମେଶ୍ବର୍ଯ୍ୟ ସିଦ୍ଧିରୂପା ସମ୍ପଦର ହେତୁ
ସଂସାର ବନ୍ଧନ ଘୋର ସମୁଦ୍ରର ସେତୁ ।
ଅଗ୍ନିଙ୍କର ପ୍ରାଣତୁଲ୍ୟ ଦାହିକା ଶକତି
ଜଗତଜନନୀ ଦେବୀ କଲ୍ୟାଣବିଧାତ୍ରୀ ।
ସକଳ ଦେବତାଙ୍କର ଜୀବନରୂପିଣୀ
ଆବର ଭରଣ ରକ୍ଷା ପୋଷଣକାରିଣୀ ।
ଭକ୍ତିରେ ଯେ ଏ ଷୋଡ଼ଶ ନାମକୁ ପଢ଼ଇ
ଇହ ପରଲୋକେ ତାର ମଙ୍ଗଳ ହୁଅଇ ।
ଅପୁତ୍ରିକ ଲଭଇରେ ଉତ୍ତମ ନନ୍ଦନ
ଏଥିରେ ତିଳେ ସଂଶୟ ନାହିଁ ମନେ ଘେନ ।
କୁବେର ସମାନ ଧନ ପାଏ ଧନହୀନ
ମୂରୁଖ ପ୍ରାପତ ହୁଏ ଯେ ଅପାର ଜ୍ଞାନ ।
ଅପତ୍ନୀକ ଜନ ଲଭେ ସୁନ୍ଦରୀ ସୁମୂର୍ତ୍ତି
ଏହାକୁ ଯଦ୍ୟପି ପାଠ କରେ ସଦା ଧ୍ୟାଇ ।
ଏମନ୍ତ ମହିମା ଜାଣ ଅଟଇ ଏ ନାମର
କହିଲି ତୁମ୍ଭ ଅଗ୍ରତେ ଆହେ ମୁନିବର ।
କ୍ଷେତ୍ରମୋହନ ବୋଲଇ ଆହେ ସାଧୁଜନେ
ସ୍ବାହାଦେବୀ ଆରାଧନା କରେ ତୋଷମନେ ।

—ଃ—*—ଃ—

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସ୍ବାହା ପ୍ରଭୃତି ଦେବତାଙ୍କ
ଚରିତ ବର୍ଣ୍ଣନେ ନାମ ଦ୍ବିଚତ୍ୱାରିଂଶୋଽଧ୍ୟାୟଃ ।**

——○——

## ତ୍ରିଚତ୍ୱାରିଂଶତ୍ ଅଧ୍ୟାୟ

### ନାରଦଙ୍କ ଅଗ୍ରତେ ନାରାୟଣ ଋଷି ସ୍ବଧା ଉପାଖ୍ୟାନ ବର୍ଣ୍ଣନା କରିବା

ନାରଦଙ୍କର ବଚନ ଶୁଣି ନାରାୟଣ
ସ୍ବାହା ଦେବୀଙ୍କର ଗାଥା କହିଲେ ବଖାଣ ।
ବୋଇଲେ ହେ ଧାତାସୁତ ଶୁଣ ଦେଇ ଚିତ୍ତ
କହୁଅଛୁ ମାତ ସ୍ବାହା ଦେବୀଙ୍କ ଚରିତ ।
ସୃଷ୍ଟି ସର୍ଜନା କାଳରେ ଦେବ ପ୍ରଜାପତି
ସରଜିଲେ ପିତୃଗଣେ ହୋଇ ତୋଷ ମତି ।
ଆଗେ ଚାରିଗୋଟି ମୂର୍ତ୍ତି ସରଜନା କଲେ
ତିନିଗୋଟି ମୂର୍ତ୍ତି ତାହାପରେ ଆରମ୍ଭିଲେ ।
ଏହିପରି ସାତଗୋଟି ପିତୃଙ୍କ ମୂରତି
ସରଜନା କରି ଖାଦ୍ୟ ଲାଗି ବେଦପତି ।
ଶ୍ରାଦ୍ଧ ତରପଣ ଆଦି ଏ କରମ ଦୁଇ
କଲେ ସେ କାଳରେ ବେଦବର ତୋଷ ହୋଇ
ତାହାପରେ ସନ୍ଧ୍ୟା ସ୍ନାନ ତର୍ପଣ ପୂଜନ
ଶ୍ରାଦ୍ଧ କ୍ରିୟାକର୍ମ ଆଉ ବ୍ରାହ୍ମଣ ଭୋଜନ ।
ବିପ୍ରମାନଙ୍କର ନିତ୍ୟକର୍ମ ଅଟେ ଏହି
ଯେ ଏହା ନକରେ ମହାପାପୀ ସେ ଅଟଇ ।
ସେବା ନ କରଇ ଯେଉଁ ଦ୍ବିଜ ଶ୍ରୀହରିଙ୍କୁ
ଅନ୍ନ ଭୋଜନ କରଇ ନ ପୂଜି ବିଷ୍ଣୁଙ୍କୁ ।
ତାହାଙ୍କ ଶରୀର କେବେଁ ପବିତ୍ର ନୁହଇ
ସକଳ କର୍ମରେ ସେହୁ ଅଯୋଗ୍ୟ ଅଟଇ ।
ତରପଣ ଶ୍ରାଦ୍ଧଆଦି ପିତୃଙ୍କ ସକାଶେ
ସରଜନା କରି ବ୍ରହ୍ମ ଗଲେ ମନ ତୋଷେ ।
ବ୍ରାହ୍ମଣମାନେ ସେ ସବୁ କରନ୍ତେ ପ୍ରଦାନ
ପ୍ରାପତ ନୋହିଲା କିଛି ପିତୃଙ୍କୁ ସେ ଜାଣ ।
ସେ ସକାଶୁ ପିତୃମାନେ କ୍ଷୁଧାରେ ଆତୁର
ହୋଇକରି ଗଲେ ଯହିଁ ଥିଲେ ବେଦବର ।
ସଭାରେ ତାହାଙ୍କୁ ଦେଖି କହିଲେ ସମସ୍ତ
ତାହା ଶୁଣି ବ୍ରହ୍ମା କିଛି ହୋଇଣ ଚିନ୍ତିତ ।
ସେହିକ୍ଷଣି କନ୍ୟାଟିଏ ସରଜନା କଲେ
ମାନସୀ ବୋଲି ତାହାର ନାମକୁ ସେ ଦେଲେ
ନବ ଯଉବନେ ରୂପ ଦିଶଇ ସୁନ୍ଦର
କିଡ଼ଇ ଶ୍ରୀଅଙ୍ଗ ଶୋଭା କୋଟି ଚନ୍ଦ୍ରକର ।
ଶୁକ୍ଳ ଚମ୍ପକ ସମାନ ଦିଶଇ ବରଣ
ପୂରି ରହିଛନ୍ତି ଅଙ୍ଗେ ନାନା ଆଭରଣ ।
ସକଳ ବିଦ୍ୟାରେ ସେହି ଅଟନ୍ତି ଆଧାର
ଦୟାଆଦି ଗୁଣକରି ରହିଛନ୍ତି ଘର ।
ବିଶୁଦ୍ଧ ପ୍ରକୃତି ଅଂଶ ସ୍ବରୂପା ଅଟନ୍ତି
ମନ୍ଦହାସ ମନୋହର ଶୁକ୍ଳ ଦନ୍ତପନ୍ତି ।
ଶତଦଳ ପଦ୍ମପରେ ହୋଇଛନ୍ତି ଉଭା
ଲାବଣ୍ୟ ପ୍ରତିମା ପରି ପ୍ରକାଶନ୍ତି ଶୋଭା ।

ଏରୂପେ ତାହାଙ୍କୁ ଦେଖି କମଳଆସନ
ଦେବୀ ସ୍ୱରୂପେ ପିତୃଙ୍କୁ କଲେକ ପ୍ରଦାନ ।
ସେ ଅନ୍ତରେ ବ୍ରାହ୍ମଣଙ୍କୁ ବୋଇଲେ ହେ ତୁମ୍ଭେ
ସ୍ୱଧାନ୍ତ ମନ୍ତ୍ରରେ ପୂଜାକର ବୋଲୁ ଅମ୍ଭେ ।
ପିତୃମାନଙ୍କ ସନ୍ତୋଷ ହେବ ତହିଁ ଜାଣ
ଏମନ୍ତ ବଚନ ଶୁଣି ସକଳ ବ୍ରାହ୍ମଣ ।
ସେହି ଦିନଠାରୁ ପିତୃପୂଜା ସମୟରେ
ସ୍ୱଧାନାମ ଉଚ୍ଚାରଣ କଲେ ମନ୍ତ୍ରରେ ।
ଦେବତାଙ୍କ ମନ୍ତ୍ରେ ସ୍ୱାହା ହେଲେ ନିୟୋଜିତ
ପିତୃଙ୍କ ମନ୍ତ୍ରରେ ସ୍ୱଧା ହୋଇଲେ ବ୍ୟକ୍ତ ।
ଯାଗ ହୋମଆଦି ସବୁ କର୍ମରେ ଦକ୍ଷିଣା
ପ୍ରଶସ୍ତା ଅଟନ୍ତି ଜାଣ ଆହେ ମହାମନା ।
ଦକ୍ଷିଣା ବିହୀନ କର୍ମ ନିଷ୍ଫଳ ହୁଅଇ
ଏହିରୂପେ ଧର୍ମ ଶାସ୍ତ୍ର ଲେଖିଛନ୍ତି ଦେଖ ।
ଦେବତା ବ୍ରାହ୍ମଣ ପିତୃ ମୁନି ଋଷିମାନେ
ସ୍ୱଧାଙ୍କର ଉପାସନା କଲେ ତୋଷ ମନେ ।
ଦେବତା ପିତୃ ସମସ୍ତେ ପୂର୍ଣ୍ଣ ମନୋରଥ
ହୋଇଣ ଆଶ୍ରୟ କଲେ ଯେ ଯାହାର ପଥ ।
ଏହିରୂପେ ସ୍ୱଧାଦେବୀ ହୋଇଲେ ଉତ୍ପନ୍ନ
ଆହେ ମୁନିବର ସବୁ କଲତ ଶ୍ରବଣ ।
ଆଉ କେଉଁ କଥା ଶୁଣିବାକୁ ମନ ଥିଲେ
ପଚାର ଆମୂଳ କରି କହିବା ତା ଭଲେ ।
ନାରଦ ବୋଇଲେ ସ୍ୱଧା ଦେବୀଙ୍କର ଧ୍ୟାନ
ଏ ବାହାରେ ସ୍ତୋତ୍ର ମନ୍ତ୍ର ପୂଜାର ବିଧାନ ।
ସମସ୍ତ ଶୁଣିବାପାଇଁ ମୋହର ଲାଳସା
ହେଉଅଛି କହ ଆହେ ମୁନି ମହାଯଶା ।
ନାରାୟଣ ବୋଇଲେ ହେ ମନ ଦେଇକରି
ଶୁଣ ଯାହା ପଚାରିଲ କହିବା ବିସ୍ତାରି ।
ସ୍ୱଧା ଦେବୀଙ୍କର ପୂଜା କବଚ ଯେ ସ୍ତୋତ୍ର
ଧ୍ୟାନ ଆଦି ହୋଇଅଛି ବେଦରେ ଲିଖିତ ।
ତାହାସବୁ ତୁମ୍ଭଙ୍କୁ ତ ହୋଇଅଛି ଜ୍ଞାତ
ପୁଣି କିମ୍ପା ପଚାରୁଛ ହେଲ ପଣ୍ଡିତ ।
ଏଥିରୁ ଜାଣୁଛି ମୁହିଁ ବିଶେଷ ଭାବରେ
ବୁଝିବା ପାଇଁ ବିଚାର କରୁଛ ମନରେ ।
ସେଥି ଯୋଗେ ଭଲରୂପେ କହିବା ତୁମ୍ଭଙ୍କୁ
ଯେରୂପେ ସଂଶୟ ଆଉ ନ ଆସେ ମନକୁ ।

ଶରତ କୃଷ୍ଣପକ୍ଷର ତ୍ରୟୋଦଶୀ ଦିନ
ଆଦର ମଘାନକ୍ଷତ୍ର ଶ୍ରାଦ୍ଧକାଳେ ପୁଣ ।
ଯତନେ ସ୍ୱଧା ଦେବୀଙ୍କୁ ଅର୍ଚ୍ଚନା କରିବ
ସେ ଅନ୍ତରେ ଶ୍ରାଦ୍ଧଆଦି କର୍ମ ଆରମ୍ଭିବ ।
ଯେଉଁ ଦ୍ୱିଜ ସ୍ୱଧାଙ୍କର ପୂଜା ନ କରଇ
ଶ୍ରାଦ୍ଧ ତର୍ପଣେ ତାର ଫଳ କିଛି ନାହିଁ ।
ବ୍ରହ୍ମାଙ୍କ ମାନସୀ କନ୍ୟା ସର୍ବଜନବନ୍ଦ୍ୟ
ପିତୃମାନଙ୍କର ପୂଜା ଦେବୀ ଯେ ଅଟନ୍ତି ।
ସ୍ମରଣ କରୁଛି ତାଙ୍କୁ ଏକାଗ୍ର ଚିତ୍ତରେ
ପ୍ରାପ୍ତ ହେଉ ଶ୍ରାଦ୍ଧଫଳ ତାହାଙ୍କ କୃପାରେ ।
ଏହିରୂପେ ଧ୍ୟାନକରି ଶାଳଗ୍ରାମ ପରେ
ଅଥବା ଶ୍ରୀଫଳଯୁକ୍ତ ପୂର୍ଣ୍ଣ କଳସରେ ।
ପାଦ୍ୟ ଅର୍ଘ୍ୟ ନୈବେଦ୍ୟ ଆଦି ଉପଚାର
ପ୍ରଦାନ କରିବ କ୍ରମେ ହୋଇ ତତ୍ପର ।
ଓଁକାର ମାୟା ଦେବୀଙ୍କ ବୀଜାକ୍ଷର ପରେ
ଲକ୍ଷ୍ମୀବୀଜ ବହାଇବ ଅତି ଯତନରେ ।
ଚତୁର୍ଥ୍ୟନ୍ତ ସ୍ୱଧାଦେବୀ ସ୍ୱାହା ପୂର୍ବେ ରଖି
ପୂଜା କରିବ ଏଥିରେ ହୋଇ ମହାସୁଖୀ ।
ସେ ଅନ୍ତରେ ସ୍ତୋତ୍ର ପଢ଼ି ପ୍ରଣାମ କରିବ
ସ୍ତୋତ୍ରର ସ୍ୱରୂପ ଶୁଣ ହେ ମୁନିପୁଙ୍ଗବ ।
ନମସ୍ତେ ଶ୍ରୀ ସ୍ୱଧାଦେବୀ ପିତୃପ୍ରିୟବନ୍ତି
ତୁମ୍ଭ ଦୟାଯୋଗେ ଲୋକ ଲଭଇ ମୁକତି ।
ସକଳ ପାତକ କ୍ଷୟ ହୁଅଇ କହନ୍ତି
ବାଜପେୟ ଅଶ୍ୱମେଧ ଆଦି ଯାଗ ଯେତେ ।
ତହିଁର ଫଳ ପ୍ରାପତ ହୁଅଇ ନିଶ୍ଚୟ
ନ ଥାଏ ଅନେକ କାଳ ଦଣ୍ଡଠାରୁ ଭୟ ।
ସ୍ୱଧା ବେନି ଅକ୍ଷରକୁ ତିନିଗୋଟି ଥର
ପଞ୍ଚତ ଭାବେ ପଠନ କରେ ଯେଉଁ ନର ।
ଶ୍ରାଦ୍ଧ ତର୍ପଣ ବଳି କର୍ମଫଳ ସେହି
ଅବଶ୍ୟ ଲଭଇ ଏଥେ ସନ୍ଦେହ ଯେ ନାହିଁ ।
ସ୍ୱଧା ଦେବୀଙ୍କର ସ୍ତୋତ୍ର ଶ୍ରାଦ୍ଧ ସମୟରେ
ଶୁଣଇ ଯେବଣ ଲୋକ ସନ୍ତୁଷ୍ଟ ମନରେ ।
ଶତେ ଶ୍ରାଦ୍ଧ ଫଳଲାଭ ହୁଅଇ ତାହାର
ଆହେ ନାରଦ ମହର୍ଷି ମୁନିଙ୍କ ଶେଖର ।
ତ୍ରିସନ୍ଧ୍ୟାରେ ସ୍ୱଧା ନାମ ଉପାସନା କଲେ
ସୁନ୍ଦରୀ କାମିନୀ ଲାଭ ହୁଏ ଜାଣ ଭଲେ ।

ପିତୃଙ୍କର ପ୍ରାଣତୁଲ୍ୟ ଅଟ ଦେବୀ ସ୍ୱଧା
ତୁମ୍ଭ ଯୋଗେ ଅନୁଭବ ହୁଏ ଅନ୍ନ ବାଧା ।
ଶ୍ରାଦ୍ଧ ଅଧୀଶ୍ୱରୀ ଦେବୀ ସୁଫଳ ଦାୟିନୀ
ପିତୃଗଣ ତୁଷ୍ଟି ପୁଷ୍ଟି ପ୍ରୀତିକାରିଣୀ
ତୁମ୍ଭେ ଅଟ ନିତ୍ୟରୂପା ସର୍ବଗୁଣାମୟୀ
ପ୍ରସନ୍ନ ହୁଅ ସର୍ବଦା ଦେବୀ ମହାମାୟୀ ।
ସୃଷ୍ଟି ସମୟରେ ତୁମ୍ଭେ ହୋଇଣ ପ୍ରକାଶ
ପୂର୍ଣ୍ଣ ଲୀନ ହୁଅ ସୃଷ୍ଟି ପାଇଲେ ବିନାଶ ।
ତୁମ୍ଭ ସୃଷ୍ଟି ସ୍ଥିତି ବେଦ ନରେ ଅଗୋଚର ।
ତୁମ୍ଭେ ମାତ୍ର ଦେଖୁଅଛ ସଦା ଚରାଚର ।
ସ୍ୱସ୍ତି ସ୍ୱଧାଦେବୀ ତୁମ୍ଭ ପାଦେ ନମସ୍କାର
ବେଦବାକ୍ୟ ଆଦ୍ୟେ ତୁମ୍ଭେ ହୋଇଅଛ ଓଁକାର
ନମଃ ସ୍ୱାହା ବେଦଶବ୍ଦ ତୁମ୍ଭର ବାଚକ
ଦକ୍ଷିଣା ସ୍ୱରୂପେ ହୁଅ ଯଜ୍ଞଫଳଦାୟକ ।
ଏହିରୂପେ ବ୍ରହ୍ମବେଦେ ଛଅ ପ୍ରକାରେ
ନିରୂପିତ ହୋଇଅଛ ତୁମ୍ଭେ ସବୁଠାରେ ।
ପୂର୍ବକାଳେ ଗୋଲୋକରେ ଗୋପସ୍ତ୍ରୀବେଶେ
ସଖୀରୂପେ ଥିଲ ତୁମ୍ଭେ ରାଧାଙ୍କର ପାଶେ ।
ଶ୍ରୀକୃଷ୍ଣଙ୍କୁ ବକ୍ଷସ୍ଥଳେ କରିଲ ଧାରଣ
ସେ ସକାଶୁ ସ୍ୱଧା ବୋଲି ହେଲ ତୁମ୍ଭ ନାମ ।
ଦିନକରେ ବୃନ୍ଦାବନେ ଶ୍ରୀକୃଷ୍ଣ ତୁମ୍ଭଙ୍କୁ
ଆଲିଙ୍ଗନ କଲେ ମନେ ବହୁତ ତୋଷରୁ ।
ରାଧିକା ଦେଖିଣ ତାହା କରି ମହାକୋପ
ମର୍ତ୍ତ୍ୟରେ ପତିତ ହୁଅ ବୋଲି ଦେଲେ ଶାପ ।
ସେ ସକାଶୁ ଜଗତରେ ଜାତହେଲ ତୁମ୍ଭେ
ତୁମ୍ଭର ମହିମା ସବୁ ଜାଣିଅଛୁ ଆମ୍ଭେ ।
ଶ୍ରୀକୃଷ୍ଣଙ୍କ ଆଲିଙ୍ଗନ ପୁଣ୍ୟ ସକାଶରୁ
କନ୍ୟାରୂପେ ଜାତ ହୋଇଅଛ ଆମ୍ଭଠାରୁ ।
ନୋହିଲ ତୁମ୍ଭର ରତିରସରେ ତୃପତ
ସେ ସକାଶୁ ହୋଇଗଲ ବୃଦ୍ଧଗୋଟି ପତ ।
ସ୍ୱାହା ହୋଇଥିଲେ ପୂର୍ବେ ସୁନ୍ଦରୀ ଗୋପିକା
ତାହାଙ୍କ ସଙ୍ଗରେ ପ୍ରୀତି କରନ୍ତି ରାଧିକା ।
ରତିପାଇଁ ଶ୍ରୀକୃଷ୍ଣଙ୍କୁ ଯାଚିଲେ ଶରୀର
ତେଣୁ ସ୍ୱାହା ବୋଲି ନାମ ହେଲା ତାହାଙ୍କର ।
ପୂର୍ବେ ଏକଦିନେ ରମ୍ୟ ବସନ୍ତ କାଳରେ
ଶ୍ରୀକୃଷ୍ଣଙ୍କ ସଙ୍ଗେ ମିଳି ରାସ ମଣ୍ଡଳରେ ।

ରତିରସେ ମତ୍ତ ହୋଇଥିବା ବେଳେ ଆସି
ପ୍ରବେଶ ହୋଇଲେ ତହିଁ ରାଧିକା ସୁକେଶୀ ।
କ୍ରୋଧରେ ଶାପ ଦିଅନ୍ତେ ତାହାଙ୍କୁ ପୁନଇ ।
ଅବତାର ହେଲେ ସେହି ମର୍ତ୍ତ୍ୟପୁର ମଧ୍ୟ ।
କୃଷ୍ଣଙ୍କର ଅଙ୍ଗସଙ୍ଗ ପୁଣ୍ୟବଳ ଯୋଗୁଁ
ହୋଇଛନ୍ତି ଏବେ ହୁତାଶନଙ୍କ କାମିନୀ ।
ପବିତ୍ର ସ୍ୱରୂପା ସେହି ଅମର ବନ୍ଦିତା
ସକଳ ଲୋକପାଳଙ୍କ ରୂପ ଆନନ୍ଦିତା ।
ପୂର୍ବକାଳେ ଗୋଲୋକରେ ସୁଶୀଳା ନାମରେ
ସଖୀ ଜଣେ ଥିଲେ ରାଧା ଦେବୀଙ୍କ ପାଶରେ ।
ଦିନେ ରାଧା ଦେଖୁଁ ଦେଖୁଁ ଶ୍ରୀକୃଷ୍ଣଙ୍କ କୋଳେ
ବସିଲେ ଦକ୍ଷିଣଭାଗେ କାମଶର ଭୋଳେ ।
ତାହା ଦେଖି ରାଧାଦେବୀ ମହାକ୍ରୋଧ ହୋଇ
ଶାପ ଦେବାରୁ ଜନ୍ମିଲେ ମର୍ତ୍ତ୍ୟପୁରେ ସେହି ।
ଶ୍ରୀକୃଷ୍ଣଙ୍କ ଆଲିଙ୍ଗନ ପୁଣ୍ୟରୁ ସେ ଜାଣ
ଦକ୍ଷିଣା ରୂପରେ ଜାତ ହୋଇଲେଟି ପୁଣ ।
ସୁକୃତିସମର୍ଥୀ ସେହି ପତିପ୍ରିୟବନ୍ତି
ଯଜ୍ଞର ଦକ୍ଷିଣଭାଗେ ବସନ୍ତେ ଝଟିତି ।
ଦକ୍ଷିଣା ବୋଲିଣ ନାମ ହୋଇଲା ତାଙ୍କର
ପ୍ରଶସ୍ତ ହେଲେ ସେ ସବୁ କର୍ମେ ନିରନ୍ତର ।
ଏହିପରି ଈଶ୍ୱରଙ୍କ ଇଚ୍ଛା ଅନୁସାରେ
କର୍ମ ସମ୍ପୂର୍ଣ୍ଣ ହୋଇବ ପାଇଁ ସେ କାଳରେ ।
ସ୍ୱାହା ସ୍ୱଧା ଦକ୍ଷିଣା ଏ ତ୍ରୟର ନାମ ଘେନି
ଅବତାର ହେଲେ ତିନି ଗୋପାଳ କାମିନୀ ।
ଜଗତ ମଙ୍ଗଳ ଲାଗି ବହିଲେ ଶରୀର
ଶାସ୍ତ୍ର ପୁରାଣରେ ଖ୍ୟାତ ନାମ ଯେ ତାଙ୍କର ।
ଏରୂପେ ସ୍ୱଧାଙ୍କ ଆଗେ କହି ବେଦବର
ବସିଲେ ମଉନେ ଦେବ ସମିତି ମଧ୍ୟର ।
ସେ ଅନ୍ତରେ ତାଙ୍କ ଆଗେ ସ୍ୱଧାଦେବୀ ଆସି
ଉପସ୍ଥିତ ହେଲେ ନିଜ ରୂପେ ପରକାଶି ।
ତାଙ୍କ କର ଧରି ବ୍ରହ୍ମା ପିତୃଙ୍କୁ ଡକାଇ
ସମର୍ପଣ କଲେ ଅତି ଆନନ୍ଦିତ ହୋଇ ।
ତାହାଙ୍କୁ ପାଇଣ ତୋଷ ହେଲେ ପିତୃଗଣ
ଆପଣାର ବାସସ୍ଥାନେ କଲେକ ଗମନ ।
ସ୍ୱଧା ଦେବୀଙ୍କର ସ୍ତୋତ୍ର ଯେ ଜନ ଶୁଣଇ
ସକଳ ତୀର୍ଥର ସ୍ନାନ ଫଳ ସେ ଲଭଇ ।

ବେଦ ପଠନରେ ଯେଉଁ ସୁଫଳ ମିଳଇ
ତେମନ୍ତ ସକାର ଫଳ ପ୍ରାପତ ହୁଅଇ ।
ସ୍ୱଧା ବୋଲକରି ଯେଉଁ ଦୁଇଟି ଅକ୍ଷର
ସାମାନ୍ୟ ନୁହଇ ତାହା ମନରେ ବିଚାର ।
ଯେ ନାମ ଜପିଲେ ସର୍ବ ବିପଦ ଖଣ୍ଡନ
ହୁଅଇ ଆବର ଶୋକ ଦୁଃଖ ବିମୋଚନ ।
ଅଧମ କ୍ଷେତ୍ର ମୋହନ କହେ ଯୋଡ଼ିକର
ସ୍ୱଧା ଦେବୀଙ୍କୁ ଭଜନ କର ସର୍ବନର ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ନାରାୟଣଙ୍କ ଅଗ୍ରତରେ ନାରାୟଣଋଷି ସ୍ୱଧା ଉପାଖ୍ୟାନ ବର୍ଣ୍ଣନେ ନାମ ତ୍ରିଚତ୍ୱାରିଂଶତ୍ତ୍ୱ ଅଧ୍ୟାୟଃ ।**

## ଚ ତୁ ଶ୍ଚ ତ୍ୱା ରିଂ ଶ ତ୍ ଅ ଧ୍ୟା ୟ
## ଦକ୍ଷିଣାଙ୍କର ସ୍ୱରୂପ ବର୍ଣ୍ଣନ

ଶୁଣ ହେ ଧାତାନନ୍ଦନ ମନକର୍ଣ୍ଣ ଦେଇ
ଏଥୁଁ ଅନନ୍ତରେ ଆନ କଥା କହୁଅଛି ।
ଶୁଣିଲ ବିଶେଷି ସ୍ୱାହା ସ୍ୱଧାଙ୍କର ଗିର
ଦକ୍ଷିଣା ଚରିତ ଏବେ କରିବା ପ୍ରଚାର ।
ଥିଲା ଏକ ଗୋପବାଳା ନାମାତ ସୁଶୀଳା
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ ଅତି ପ୍ରିୟବତୀ ଥିଲା
ପରମା ସୁନ୍ଦରୀ ରୂପ ଯୌବନବତୀ
ରାଧାରାଣୀଙ୍କର ସେହୁ ଥିଲା ପ୍ରିୟସାଥି ।
ଆବର ସର୍ବ ବିଦ୍ୟାରେ ଅଟେ ସେ ନିପୁଣ
ବିପୁଳ ସୁନ୍ଦରୀ ରତି ହେବ ତାକୁ ଊଣା ।
ପ୍ରସ୍ଫୁଟିତ ପଦ୍ମ ସମ ଅଟେ ତା ନୟନ
ତାଳମ୍ବ ଫଳ ସମାନ ତାର ବେନି ସ୍ତନ ।
ପୁଣି ନିତାକରେ ରମ୍ଭା ବୃକ୍ଷଲତା ଜାନୁ
କନକ ଚମ୍ପକ ସମ ଅଟେ ତାର ତନୁ ।
ହସିବେଳେ ତାବଦନ ଦିଶେ ମଲ୍ଲିପରି
ରତ୍ନ ଅଳଙ୍କାର ଅଙ୍ଗେ ଶୋଭିତ ତାହାର ।
ସେହୁ ଗଜରାଜଗତି କନକ ବରଣୀ
କାମ ଶାସ୍ତ୍ରରେ ନିପୁଣ ସୁରସିକା ଧନୀ ।
ସେହୁରବ ବିଶାରଦା କୃଷ୍ଣ ମନୋହାରୀ
ସୁରସିକା ବିଳାସିନୀ ରହାସ ମାଧୁରୀ ।
ଏମନ୍ତ ଗୋପକାମିନୀ ରାଧାଙ୍କ ଆଗରେ
ବସିଲେ ଯାଇଣ କୃଷ୍ଣଚନ୍ଦ୍ରଙ୍କ କୋଳରେ ।
ତାହା ଦେଖି ଲଜ୍ଜାଭରେ ଶ୍ରୀ ମଧୁସୂଦନ
ବସିଲେ ସେକାଳେ କରି ତଳକୁ ବଦନ ।
କ୍ରୋଧରେ ରାଧାରାଣୀଙ୍କ ଶ୍ରୀଅଙ୍ଗ କମ୍ପିତ
ଆରକ୍ତ ବଦନ ଉକ୍ତ ଅଧର ସ୍ଫୁରିତ ।
ଅପମାନ ଜ୍ଞାନକରି ସେ ରମଣୀବର
ଶାପ ଦେବାପାଇଁ ଯତ୍ନୁଁ ହେଲେ ତତପର ।
ଶ୍ରୀକୃଷ୍ଣ ତାହାଙ୍କ ମନ କଥାକୁ ଜାଣିଲେ
କଳହ ହେବ ନିଶ୍ଚୟେ ବୋଲି ଧ୍ୟାଇଲେ ।
ସେହୁକ୍ଷଣି ଅଙ୍କସ୍ଥଳୁଁ ଟେକିଣ ତାହାଙ୍କୁ
ଅନ୍ତର୍ଦ୍ଧାନ ହୋଇ ଗଲେ ପ୍ରକାଶି ମାୟାକୁ ।
ତା ଦେଖି ଗୋପିକା ଭୟେ ଥରହର ହୋଇ
ଶ୍ରୀକୃଷ୍ଣଙ୍କ ପଛେ ପଛେ ଗଲା ସେ ପଳାଇ ।
ସେହୁଠାରେ ଆଉ ଯେତେ ଗୋପୀମାନେ ଥିଲେ
ଭୟ ହେନ ସ୍ଥିର ହୋଇ ରହି ନ ପାରିଲେ ।
ମସ୍ତକରେ କରଯୋଡ଼ି ରାଧାଙ୍କର ପାଖେ
ଦଣ୍ଡବତ ହୋଇ ପଡ଼ି ଶୋକ ବେଗରେ ।
ବୋଇଲେ ଗୋ ଦେବୀ ଆମ୍ଭ ଦୋଷ କ୍ଷମାକର
ଆମ୍ଭେମାନେ ଅଟୁ ପାଦଦାସୀ ଯେ ତୁମ୍ଭର ।
ସୁଦାମ ଆଦି ଯେ ଗୋପଜନେ ତହିଁ ଥିଲେ
ସେମାନେ ମଧ୍ୟ ମନରେ ମହାଭୟ କଲେ ।
ଦେବୀଙ୍କ ଚରଣ ତଳେ ପଶିଲେ ଶରଣ
ବୋଇଲେ ଆମ୍ଭଙ୍କୁ ରକ୍ଷାକର ବାରେ ପୁଣ ।
ସୁଶୀଳା ଗୋପିକା ଭୁଲେ ଦେବ ନରହରି
ଅନ୍ତର୍ଦ୍ଧାନ ହୋଇବାର ରାଧା ଦେଖିକରି ।
ସୁଶୀଳା ଗୋପୀକୁ ସେହୁକ୍ଷଣି ଦେଲେ ଶାପ
ବୋଇଲେ ଲୋ ପାପାତ୍ମୀ ଅର୍ଜିଲୁ ପାପ ।
ଆଜଠୁଁ ଯେବେ ତୁହି ଗୋଲୋକକୁ ଥରେ
ଆସିବୁ ହୋଇବୁ ଭସ୍ମ ମୋହର ଶାପରେ ।
ଏ[illegible] କହି ଦେବୀ ସେ ରାସମଣ୍ଡଳେ
[illegible] ଶ୍ରୀକୃଷ୍ଣଙ୍କୁ ଡାକିଲେ ଆକୁଳେ ।

ବହୁ କାଳର ହୋଇଥିଲା ତାଙ୍କ ମନ
ସେ ସକାଶୁ ପୁନଃପୁନଃ କଲେ ସେ ଆହ୍ୱାନ ।
କ୍ଷଣକ କୋଟିଏ ଯୁଗ ପରି ସେ ମଣିଲେ
ପ୍ରାଣନାଥ ଗୋପାଳଙ୍କୁ ଆସ ହେ ବୋଇଲେ ।
ତୁମ୍ଭ ବିନା ଏ ଜୀବନ ହେଉଛି ଆତୁର
ଯେଣୁ ତୁମ୍ଭେ ଅଟ ମୋର ପ୍ରାଣ ଅଧୀଶ୍ୱର ।
ପତି ସଉଭାଗ୍ୟ ଯେତେ କାମିନୀଙ୍କ ମନେ
ସର୍ବ ଜାତ ହୋଇ ବୃଦ୍ଧି ପାଏ ଦିନେ ଦିନେ ।
ଉତ୍ତମ ରମଣୀ ପତି ସେବାକରେ ନିତ୍ୟେ
ଚେତନା ତାର ସୁଖ ନ ହୁଏ କଷ୍ଟଚେ ।
କୁଳସ୍ତ୍ରୀଙ୍କର ପ୍ରିୟବନ୍ଧୁ ଏକା ପତି
ଆଉର ସୁଖ ସମ୍ପଦ କାରଣ ଅଟନ୍ତି ।
ମୁକ୍ତି ଗତିଦାତା ସେହୁ ଅଟନ୍ତି ନିଶ୍ଚୟ
ତାଙ୍କ ଯୋଗେ ହୁଏ ପ୍ରୀତି ଶାନ୍ତିର ଉଦୟ ।
ଧର୍ମ ଅର୍ଥ କାମ ମୋକ୍ଷ ପତିଙ୍କର ବିନା
କେବେହେଲେ ଲଭ କରି ନ ପାରେ ଅଙ୍ଗନା
ସାରଠାରୁ ସାରତର ପତି ଏକା ଜାଣ
ସର୍ବବନ୍ଧୁ ଜନଙ୍କର ପୀରତି ବର୍ଦ୍ଧନ ।
ଭରଣ କରିବା ଯୋଗୁ ଭର୍ତ୍ତା ସେ ବୋଲନ୍ତି
ପାଳିବା ହେତୁରୁ ତାଙ୍କ ନାମ ଅଟେ ପତି ।
ଶରୀର ରକ୍ଷଣକର୍ତ୍ତା ହେବାରୁଟି ସ୍ୱାମୀ
କାମଦାତା ହେବାରୁ ସେ କାନ୍ତ ନାମ ଘେନି ।
ଖ୍ୟାତ ଅଟଇ ପୀରତି କରିବାରୁ ପ୍ରିୟ
ଐଶ୍ୱର୍ଯ୍ୟ ଦେବାରୁ ତାର ଈଶ ନାମଧେୟ
ରତିଦାନ କରିବାରୁ ରମଣ ବୋଲାଏ
ପ୍ରିୟ ହୋଇ ତାହାଠାରୁ ନାହିଁ ଆଉ କାଏ ।
ସ୍ୱାମୀର ବୀର୍ଯ୍ୟରୁ ଜାତ ହେବାରୁ ତନୟ
ସେ ମଧ୍ୟ ଅଟଇ ଜଗତରେ ଅତି ପ୍ରିୟ ।
ତଥାପି ଅଧିକ କାନ୍ତ ଶତେ ପୁତ୍ରଠାରୁ
ଏମନ୍ତ ଭାବନ୍ତି ମନେ କୁଳବଧୁଗୁଡ଼ୁ ।
ମାତକୁଳେ ଜନ୍ମିଥାଏ ଯେବଣ କାମିନୀ
ଆପଣାର କାନ୍ତକୁ ସେ ନ ପାରଇ ଚିହ୍ନି ।
ତୀର୍ଥ ସ୍ନାନ ଦାନ ଯାଗ ମହୀ ପ୍ରଦକ୍ଷିଣ
ଆଉର ଯେ ଉପବାସ ବ୍ରତ ଆଚରଣ ।
ଗୁରୁଦେବ ଦ୍ୱିଜଙ୍କର ସେବା ଆଦି କରି
ଯେତେ ଯେତେ ପୁଣ୍ୟକର୍ମ ଆଚରନ୍ତି ନାରୀ ।

ସେ ସବୁ ନୁହଇ ପତି ସେବାର ସମାନ
ସ୍ତ୍ରୀଙ୍କର ଇଷ୍ଟଦେବ ଅଟନ୍ତି ରମଣ ।
ଗୁରୁଦେବ ଦ୍ୱିଜଠାରୁ ପତି ଯେ ଅଧିକ
ଏ କଥା ଯେ ନ ଜାଣେ ତା ଜୀବନକୁ ଧିକ ।
ଯେଉଁରୂପେ ବିଦ୍ୟାଦାତା ପୂଜ୍ୟ ଶିଷ୍ୟଙ୍କର
ତେମନ୍ତ ଅଟନ୍ତି ପତି କୁଳକାମିନୀର ।
ଯାହାଙ୍କ ପ୍ରସାଦେ ମୁହିଁ ଗୋପୀଙ୍କ ମଧ୍ୟରେ
ଆଉର ଜଗତ ନାରୀଜନ ସମାଜରେ ।
ପୂଜ୍ୟା ହୋଇଅଛି ଏବେ ସେ ପ୍ରାଣପତିଙ୍କୁ ।
ଚିହ୍ନି ନ ପାରଇ ଧିକ ହେଉ ମୋ ମତିକୁ ।
ଏ ସକାଶୁ ମାନସରେ କରୁଛି ଭାବନା
ଅତ୍ୟନ୍ତ ନିଷ୍ଠୁର ଅଟେ ସ୍ତ୍ରୀବୁଦ୍ଧି ହୀନା ।
ଏରୂପେ ବସ୍କର ତହୁଁ ରାଧିକା ସୁନ୍ଦରୀ ।
ମଉନେ ବସିଲେ ମନେ ଶ୍ରୀକୃଷ୍ଣଙ୍କୁ ସ୍ମରି ।
ତାହାଙ୍କର ମନକଥା ଜାଣି ବୈକୁଣ୍ଠେଶ
ସେହିକ୍ଷଣି ସମୀପରେ ହେଲେ ପରକାଶ ।
ପତିଙ୍କୁ ଦେଖି ରାଧିକା ସନ୍ତୁଷ୍ଟ ହୋଇଲେ
ତାହା ସଙ୍ଗରେ ତହୁଁ ନାନାକ୍ରୀଡ଼ା କଲେ ।
ଏଥୁଅନ୍ତେ ରାଧା ଶାପେ ଦକ୍ଷିଣା ସୁନ୍ଦରୀ
ଗୋଲୋକରୁ ଚ୍ୟୁତ ହୋଇ ମର୍ତ୍ତ୍ୟେ ଅବତରି
କଠୋର ତପସ୍ୟା କରି ବହୁତ ସମୟ
କମଳା ଦେବୀଙ୍କ ଅଙ୍ଗେ ପାଇଲେ ସେ ଲୟ ।
ସେ ସମୟେ ଯେତେ ଦ୍ୱିଜେ କଲେ ଯେତେ ଯାଗ
ଦକ୍ଷିଣା ବିହୀନେ କେବେ ନ ପାଇଲେ ଭାଗ ।
ଦୁଃଖିତ ମନରେ ତହୁଁ ଦେବ ତାଙ୍କ ପାଶେ
ପ୍ରବେଶ ହୋଇଲେ ସର୍ବେ ଅତ୍ୟନ୍ତ ତରାସେ ।
ଆଦ୍ୟ ପ୍ରାନ୍ତରର ସବୁ କଥା ଜଣାଇଲେ
ଦେବଙ୍କର ଦୁଃଖ ଦେଖି ବିଧାତା ସେ କାଳେ
ମନେ ମନେ ଶ୍ରୀହରିଙ୍କୁ କଲେ ସୁମରଣ
ପ୍ରସନ୍ନ ହୋଇଲେ ତହୁଁ ପ୍ରଭୁ ଜନାର୍ଦ୍ଦନ ।
ଲକ୍ଷ୍ମୀଙ୍କ ଅଙ୍ଗରୁ ବେଗେ ଦକ୍ଷିଣାଙ୍କୁ ନେଇ
ବ୍ରହ୍ମାଙ୍କ ପାଶରେ ଦେଲେ ହରଷିତ ହୋଇ ।
ତାହାଙ୍କୁ ଦେଖିଣ ବ୍ରହ୍ମା ସନ୍ତୁଷ୍ଟ ଚିତ୍ତରେ
ସମର୍ପଣ କଲେ ନେଇ ଯଜ୍ଞଙ୍କ ହସ୍ତରେ ।
ପୂର୍ଣ୍ଣ ହେବାକୁ ଅଶେଷ କର୍ମର ବିଧାନ
ସାଦରେ ଯଜ୍ଞ ତାହାଙ୍କୁ କରିଲେ ଗ୍ରହଣ ।

ବିଧି ଅନୁସାରେ ପ୍ରକାର ସେ ଅନ୍ତରେ
ସ୍ତୁତି କଲେ ମୁନି ବେଦ ବଚନ ପ୍ରକାରେ ।
ତପତ କାଞ୍ଚନ ପ୍ରାୟେ ଦକ୍ଷିଣାଙ୍କ ତନୁ
ତେଜରେ ଜିଣଇ ଗ୍ରୀଷ୍ମ ମଧ୍ୟାହ୍ନ ଭାନୁ ।
କୋଟି ପୂର୍ଣ୍ଣଚନ୍ଦ୍ର ପରି ବିରାଜଇ ପ୍ରଭା
ସୁନ୍ଦର ପଣରେ ରତିସମ ହେବେ ଅବା ।
କୋମଳ ବିଗ୍ରହକଣ୍ଠ କମଳବଦନା
ବିକଶିତ ପଦ୍ମଦଳ ବିଶାଳଲୋଚନା ।
ବହ୍ନିଶୁଦ୍ଧ ବସନରେ ଶୋଭିତ ଶରୀର
ପକ୍ୱ ବିମ୍ବଫଳ ତୁଲ୍ୟ ସୁରଙ୍ଗ ଅଧର ।
ମାଳତୀ କୁସୁମମାଳା କେଶପାଶେ ସାଜେ
ମନ୍ଦହାସେ ସୁରୁ ମୁଖମଣ୍ଡଳ ବିରାଜେ ।
ନାନାରତ୍ନ ଅଳଙ୍କାରେ ପୂରିତ ଶ୍ରୀଅଙ୍ଗ
ସୁଗନ୍ଧ ଚନ୍ଦନ ହୋଇଅଛି ଚର୍ଚ୍ଚି ସଙ୍ଗ ।
କସ୍ତୁରୀ କୁଙ୍କୁମ ବିନ୍ଦୁ ସିନ୍ଦୂର ତିଳକ
ଲଲାଟ ପଟରେ ଥାଇ ଦିଶେ ଝଳଝଳ ।
ପ୍ରଶସ୍ତ ନିତମ୍ବ ବିମ୍ବ ପୀନ ପୟୋଧର
କ୍ରୀଡ଼ାସ୍ଥାନ କି ଅବା ସେ କାମଦେବଙ୍କର ।
ଏରୂପେ ସୁନ୍ଦରରୂପେ ଯଜ୍ଞ ଦେଖିକରି
ମୂର୍ଚ୍ଛିତ ହୋଇଲେ କାମଶରେ ହୋଇ ଘାରି ।
ବିବାହ କରିଣ ତାଙ୍କୁ ବିଧି ଅନୁସାରେ
କ୍ରୀଡ଼ା କଲେ ତାଙ୍କ ସଙ୍ଗେ ବିବିଧ ପ୍ରକାରେ ।
ନିର୍ଜନ ବନରେ ଦିବ୍ୟ ଶତେବର୍ଷ ଯାଏ
ବିହାର କଲେ ଆନନ୍ଦେ ପତିପତ୍ନୀ ଦୁହେଁ ।
ସେ ଅନ୍ତରେ ଦେବୀଙ୍କର ହେଲା ଗର୍ଭବାସ
ଅତୀତ ହୋଇଲା ପରେ ଦ୍ୱାଦଶ ବରଷ ।
ଉତ୍ତମ ପୁତ୍ର ଗୋଟିଏ ହେଲା ଉତପନ୍ନ
ସର୍ବ କର୍ମଫଳରୂପ ଅଟଇ ସେ ଜାଣ ।
ସମ୍ପୂର୍ଣ୍ଣ ହୁଅଇ କର୍ମ ଦକ୍ଷିଣା ଯୋଗରେ
ଫଳ ଦିଏ ତାହାଙ୍କର ପୁତ୍ର ସେ ଅନ୍ତରେ ।
ଯଜ୍ଞ ମଧ୍ୟ ନିଜ ପତ୍ନୀ ଦକ୍ଷିଣା ସଙ୍ଗତେ
ଆଉର ତନୟ କର୍ମଫଳ ହେଲେ ସାଥେ ।
କର୍ମୀଙ୍କର ଫଳଦାତା ହୁଅଇଟି ଜାଣ
ଏରୂପେ ଅଟଇ ଧର୍ମଶାସ୍ତ୍ରର ପ୍ରମାଣ ।
ଯେଉଁ ଦିନଠାରୁ ଯଜ୍ଞ ଭାର୍ଯ୍ୟାସୁତ ଘେନ
ଯଜମାନମାନଙ୍କରେ ହେଲେ ଫଳଦାତା ।

ଉତ୍ତମ ପ୍ରକାରେ ଯେବେ ଯାଗଶେଷ ପାଇ
ସନ୍ତୁଷ୍ଟ ହୋଇ ବସିଲେ ପୁତ୍ରକୁ ପୂଜାଇ ।
ନିଜ ନିଜ ସ୍ଥାନେ ଯାଇ ହୋଇଲେ ପ୍ରବେଶ
ଶୁଣ ହେ ନାରଦ ମୁନିଗଣଙ୍କର ଈଶ ।
ଧର୍ମଙ୍କ ମୁଖରୁ ଏହା ଶୁଣିଅଛି ମୁହିଁ
ପରମ୍ପରା ବୋଲି ତୁମ୍ଭ ଆଗେ ବେଲି କହି ।
କର୍ମ ଶେଷ ହେବାମାତ୍ରେ ଦକ୍ଷିଣାକୁ ଦେବ
ତେବେ ସେ କର୍ମର ଫଳ ଅବଶ୍ୟ ପାଇବ ।
ଦଇବ ଯୋଗରେ ଅବା ଅଜ୍ଞାନ ହେତୁରେ
ଦକ୍ଷିଣା ଯେବେ ନ ଦେବ କର୍ମର ଶେଷରେ ।
ମୁହୂର୍ତ୍ତେ ବିଳମ୍ବ ହେଲେ ତହିଁର ଦ୍ୱିଗୁଣ
ଦାନ ନ କଲେ ସମାନ ଫଳ ନୁହେ ଜାଣ ।
ଗୋଟିଏ ଦିନ ଅତୀତ ହୋଇଯାଏ ଯେବେ
ଶତଗୁଣ ଦାନ ଦେବାପାଇଁ ହୁଏ ତେବେ ।
ତିନିଦିନ ଗତହେଲେ ତାର ଦଶଗୁଣ
ସାତଦିନ ଗଲେ ବିଂଶଗୁଣ ହୁଏ ଜାଣ ।
ମାସେ ଗତହେଲେ ଲକ୍ଷେଗୁଣ ହୋଇଥାଏ
ତିନିକୋଟି ଗୁଣ ହୁଏ ବର୍ଷେ ଯେବେ ଯାଏ ।
ତହିଁରୁ ଅଧିକ ହେଲେ ଯଜମାନଙ୍କର
ନିଷ୍ଫଳ ହୁଅଇ ସବୁ କର୍ମ ମନେ କର ।
ସେହି ଲୋକ ବ୍ରହ୍ମସ୍ୱ ହରଣ ଦୋଷରେ
କେବଣ କର୍ମକୁ ଯୋଗ୍ୟ ନୁହେ ଜଗତରେ ।
ଏ ବାହାରେ ବ୍ୟାଧିଯୁକ୍ତ ଦରିଦ୍ର ହୁଅଇ ।
ତାହାଠାରୁ ବଳି ଆଉ ପାପୀ କେହି ନାହିଁ ।
ଶାପଦେଇ ମହାଲକ୍ଷ୍ମୀ ତେଜିଣ ତାହାକୁ
ଅନ୍ତର ହୁଅନ୍ତି ମନେ ପ୍ରକାଶି ରୋଷକୁ ।
ବିମୁଖ ହୋଇ ତାଠାରୁ ଦେବ ପିତୃଗଣ
ନିତ୍ୟହୋମାନନ୍ତ ପ୍ରଭାଦ୍ରବ୍ୟ ଶ୍ରାଦ୍ଧ ତରପଣ ।
ଅନେକ ଦେବତା ହୋମ ପଦାର୍ଥ ତାଠାରୁ
ଗ୍ରହଣ କରନ୍ତି ନାହିଁ ହୋଇ ଅତୋଷରୁ ।
ଯଜମାନ ଯେବେ ଯାଚି ଦକ୍ଷିଣା ନ ଦେବ
ଗ୍ରହଣକର୍ତ୍ତା ଯଦ୍ୟପି ମାଗିଣ ନେବ ।
ସେ ଦୁହେଁ ନରକ ମଧ୍ୟେ ପଡନ୍ତି ଅପୁତ
କଷଣରେ ରଜ୍ଜୁ ଛିନ୍ନ ପୂର୍ଣ୍ଣଘଟବତ ।।
କ୍ରୋଧରେ ବା ଅଜ୍ଞାନରେ ଦକ୍ଷିଣା ମାଗିଲେ
ଯେଉଁ ଲୋକ ନ ଦିଅଇ ଜାଣି ତତକାଳେ ।

ବ୍ରହ୍ମସ୍ୱ ହରଣ କଲ ଦୋଷ ତାର ହୁଏ
ଅନ୍ତଃକାଳେ କୁମ୍ଭୀପାକ କୁଣ୍ଡକୁ ସେ ଯାଏ ।
ଲକ୍ଷେ ବରଷ ପର୍ଯ୍ୟନ୍ତ ପଡ଼ଇ ତହିଁରେ
ପ୍ରହାର କରନ୍ତି ଯମଦୂତେ ତା ଦେହରେ ।
ସେ ଅନ୍ତେ ଚଣ୍ଡାଳ ଘରେ ଜନ୍ମ ସେ ହୁଅଇ
ଅନ୍ନବସ୍ତ୍ର ଆଦି ତାକୁ କିଛି ନ ମିଳଇ ।
ସପତ ପୁରୁଷ ତାର ପଡ଼ନ୍ତି ନରକେ
କଷ୍ଟ ଦେଉଥାନ୍ତି ନିତ ତାଙ୍କୁ ଯମଲୋକେ ।
ଏହିରୂପେ ଦକ୍ଷିଣାଙ୍କ ଚରିତ ଅଟଇ
ଶୁଣିଲ ତ ବସି ସବୁ କହିଲି ବତାଇ ।
ଅଉ କ ଶୁଣିବାପାଇଁ ଇଚ୍ଛା ଅଛି ଯେବେ
ପଚାର ଏକ୍ଷଣି ତାହା କହିବି ମୁଁ ତେବେ ।
ନାରଦ ବୋଇଲେ ଆହେ ମୁନିଙ୍କ ମଣ୍ଡନ
ଯେବଣ କର୍ମ ଅଟଇ ଦକ୍ଷିଣାବିହୀନ ।
ତହିଁର ଯେ ଫଳ ତାହା କରଇ କେ ଭୋଗ
ବିସ୍ତାରଣ ମୋ ଆଗରେ କହ ମହାଭାଗ ।
ଏ ବାଦରେ ଦକ୍ଷିଣାଙ୍କ ପୂଜା ଯେଉଁରୂପେ
କଲେ ଯଜ୍ଞ ତାହା ମଧ୍ୟ କହ ବସି ଆପେ ।
ତାହା ଶୁଣି ନାରାୟଣ ବୋଇଲେ ହେ ଶୁଣ
ଦଇବରେ ଯେଉଁ କର୍ମ ହୁଏ ଅଦକ୍ଷିଣ ।
ତହିଁରୁ କିଞ୍ଚିତ ମାତ୍ର ଫଳ ନ ମିଳଇ
ଦକ୍ଷିଣା କେବଳ କର୍ମ ଫଳକୁ ଦିଅଇ ।
ଯେଉଁ ଯେଉଁ ଦ୍ରବ୍ୟ ପୂଜା ହୁଏ କର୍ମବେଳେ
ଗ୍ରହଣ କରନ୍ତି ତାହା ବଳିରାଜା ବଳେ ।
ପୂର୍ବରେ ବାମନ ସେହି ପଦାର୍ଥ ସକଳ
ବଳିଙ୍କୁ ଦେଇଅଛନ୍ତି ଆହେ ତପଶୀଳ ।
ଶ୍ରୋତ୍ରିୟ ନ ଥାଇ ଯେଉଁ ଶ୍ରାଦ୍ଧ କରାଯାଏ
ଯେତେକ ପଦାର୍ଥ ତହିଁ ନୈବେଦ୍ୟ ହୁଏ ।
ଦୈତ୍ୟସମାନେ ତା ସବୁ କରନ୍ତି କବଳ
ଶ୍ରାଦ୍ଧ କରତାର କର୍ମ ହୁଅଇ ନିଷ୍ଫଳ ।
ଯେଉଁ ଦ୍ୱିଜ ଶୂଦ୍ରଦକ୍ଷିଣା ଭୋଗ କରୁଥାଇ
ଗୁରୁଙ୍କଠାରେ କିଞ୍ଚିତ ଭକ୍ତି ନ କରଇ ।
ଦେବତା ଗୃହରେ ଯାହା କରଇ ସେ ପୂଜା
ଗ୍ରହଣ କରନ୍ତି ତାହା ନିଜେ ବଳିରାଜା ।
ଦକ୍ଷିଣା ଦେବୀଙ୍କ ଧ୍ୟାନ ସ୍ତୋତ୍ର ପୂଜାବିଧି
ପ୍ରଶସ୍ତ ଅଟଇ କାଣ୍ୱ ଶାଖାରେ ପ୍ରସିଦ୍ଧି ।

ଆମୂଳ କରଣ ଏବେ କହିବି ତୁମ୍ଭଙ୍କୁ
ଶ୍ରବଣ କର ସେ କଥା ଦେଇଣ ଚିତ୍ତକୁ ।
ଦକ୍ଷିଣା ଦେବୀଙ୍କୁ ପାଇ ଯଜ୍ଞ ପୂର୍ବକାଳେ
ତାଙ୍କର ସୁନ୍ଦରପଣେ ମୁଗ୍ଧ ହୋଇଗଲେ ।
କାତର କଣ୍ଠରେ ତହୁଁ ଆରମ୍ଭିଲେ ସ୍ତୁତି
ବୋଇଲେ ନମସ୍ତେ ମହାମାୟୀ ଭଗବତୀ ।
ପୂର୍ବକାଳେ ଗୋଲୋକରେ ଗୋପୀରୂପେ ରହି
ହୋଇଥିଲ ରାଧାଙ୍କର ପ୍ରାଣପ୍ରିୟା ସହି ।
କାର୍ତ୍ତିକ ପୂର୍ଣ୍ଣିମା ଦିନ ରାସ ଉତ୍ସବରେ
ପ୍ରବେଶିଲେ ଶ୍ରୀକୃଷ୍ଣଙ୍କ ଦକ୍ଷିଣ ପାର୍ଶ୍ୱରେ ।
ସେ ଯେଣୁ ଦକ୍ଷିଣା ନାମ ତୁମ୍ଭର ହୋଇଲା
ଆବର ବୋଲଉଥିଲ ଜନେ ଯେ ସୁଶୀଳା ।
ଉତ୍ତମ ସ୍ୱଭାବ ହୋଇଥିବାରୁଟି ଜାଣ
ଖ୍ୟାତ ହୋଇଲ ସୁଶୀଳା ବୋଲିକରି ନାମ ।
ଏକଦିନେ ଶ୍ରୀକୃଷ୍ଣଙ୍କ ଦକ୍ଷିଣ ଅଙ୍ଗରେ
ବସିଥିଲ ତେଣୁ ରାଧା ଦେବୀ କୋପଭରେ ।
ଶାପ ଦେବାରୁ ମର୍ତ୍ତ୍ୟରେ ଜନମ ପାଇଲ
ସେ ଯେଣୁ ମଧ୍ୟ ଦକ୍ଷିଣା ନାମେ ଖ୍ୟାତ ହେଲ
ମୋର ଭାଗ୍ୟବଳେ ତୁମ୍ଭେ ଗୋଲୋକରୁ ଖସି
ଦଇବେ ମୋ ସମୀପରେ ପ୍ରବେଶିଲେ ଆସି ।
ଏବେ ମୋହର ପ୍ରାର୍ଥନା ଘେନ ଗୋ ସୁନ୍ଦରୀ
କୃତାର୍ଥ କରାଅ ମୋତେ ପତିରୂପେ ବରି ।
ଫଳଦାତ୍ରୀ ହେବ ତୁମ୍ଭେ ସକଳ କର୍ମର
ତୁମ୍ଭବିନା କର୍ମଫଳ ନ ପାଇବେ ନର ।
ଯେଉଁରୂପରେ ପୃଥିବୀ ଜଳଶୂନ୍ୟ ହୋଇ
ବୃକ୍ଷ ଥିଲେ ତାଇ ଜନ୍ମ ବ୍ୟର୍ଥ ଅଟଇ ।
ସେହିପରି ତୁମ୍ଭେ ଯେଉଁ କର୍ମରେ ନ ଥିବ
କେବଣ ପ୍ରକାରେ ତାହା ଶୋଭା ନ ପାଇବ ।
ବ୍ରହ୍ମା ବିଷ୍ଣୁ ଶିବ ତୁଲେ ଏବଂ ଦିକପାଳ
ସମର୍ଥ ନୁହନ୍ତି ଦେବାପାଇଁ କର୍ମଫଳ ।
କେବଳ ତୁମ୍ଭର ତହିଁ ଅଟେ ଅଧିକାର
କହିପାରିବ କେ ଅବା ମହିମା ତୁମ୍ଭର ।
କର୍ମରୂପୀ ପିତାମହ ଫଳରୂପୀ ହର
ଯଜ୍ଞରୂପୀ ବିଷ୍ଣୁମୂର୍ତ୍ତି ଅଟେ ମନେ କର ।
ସବୁର ମଧ୍ୟରେ ତୁମ୍ଭେ ସାରସ୍ୱରୂପିଣୀ
ତୁମ୍ଭ କୃପାବଳେ ଧନ୍ୟ ହେବୁ ଆମ୍ଭେ ପୁଣି ।

ସକଳ ଭୁବନ କର୍ତ୍ତା ପ୍ରକୃତିର ପର
ବ୍ରହ୍ମମୟ ସନାତନ ପ୍ରଭୁ ଦାମୋଦର ।
ତଥାପି ସେ କର୍ମବନ୍ତା ଫଳ ଦେବାପାଇଁ
ସମର୍ଥ ନୋହନ୍ତେ କେଉଁ କର୍ମେ ପ୍ରାଣସନ୍ଧ ।
କେବଳ କର୍ମଙ୍କ ମୂର୍ତ୍ତି ପତ୍ନୀ ସ୍ୱରୂପରେ
ଗ୍ରହଣ କରିବ ଯେବେ ବିଧି ଅନୁସାରେ ।
ସମସ୍ତ କର୍ମଫଳକୁ ପାଇବ ମୁଁ ଦେଇ
ଏଥିରେ ସନ୍ଦେହ ତୋର କଥା କିଛି ନାହିଁ ।
ଏହିରୂପେ ସ୍ତୁତି କରି ଦକ୍ଷିଣା ଆଗରେ
ଉଭା ହେଲେ ଯଜ୍ଞ ତାଙ୍କ ପାଇବା ନିକଟରେ ।
ସନ୍ତୋଷ ହୋଇଣ ଦେବୀ ସମ୍ମତ କଲେ
ଭାର୍ଯ୍ୟା ହୋଇ ଯଜ୍ଞଙ୍କର ପାଶରେ ରହିଲେ ।
ଯଜ୍ଞ ସମୟରେ ଏହି ଦକ୍ଷିଣା ସ୍ତୋତ୍ରକୁ
ପଢ଼ିବ ଯେ ଭକ୍ତିଭରେ ଦେଇଣ ମନକୁ ।
ଅଶେଷ ଫଳ ପ୍ରାପତ ହୋଇବ ନିଶ୍ଚୟ ।
କିଞ୍ଚିତ ମାତ୍ର ଏଥିରେ ନାହିଁ ସେ ସଂଶୟ ।
ଗୋମେଧ ମନୁଷ୍ୟମେଧ ଯଜ୍ଞ ରାଜସୂୟ
ଅଶ୍ୱମେଧ ଲାଙ୍ଗଳ ଯେ ଫଳଦ୍ର ବାଜପେୟ ।
ବିଷ୍ଣୁଯାଗ ଭୂମିପ୍ରଦ ଧନଦ ପୁତ୍ରେଷ୍ଟି
ଗଜମେଧ ଲୌହଯଜ୍ଞ ସ୍ୱର୍ଣ୍ଣଲବ୍ଧ ଇଷ୍ଟି ।
ଶାନ୍ତିଳ ବ୍ୟାଧି ଖଣ୍ଡନ ଶିବରୁଦ୍ର ଯାଗ
ବାରୁଣ କନ୍ଦୁକେବିଶ ମର୍ଦ୍ଦନ ବନ୍ଦାଗ ।
ଶୁଚିଯାଗ ଧର୍ମଯଜ୍ଞ ପାତକ ମୋଚନ
ବନ୍ଧନ ଅର୍ଥ ର କର୍ମ ଯଜ୍ଞ ସୁରେଚନ ।
ଦାନଯଜ୍ଞ ଜ୍ଞାନଯଜ୍ଞ ମହାଯଜ୍ଞମାନ
ଯେଉଁ ଯଜ୍ଞମାନ କରେ ସୁଖେ ସମ୍ପାଦନ ।
ମଣିଯଜ୍ଞ ପ୍ରଭୃତିକ ଆଦି କର୍ମ ଯେତେ
ତହିଁରେ ପଢ଼ିଲେ ଏହି ସ୍ତୋତ୍ର ଏକଚିତ୍ତେ ।
ନିର୍ବିଘ୍ନରେ ସମାପତ ହୁଅନ୍ତି ସେ ଜାଣ
ଆଉ ଯେ ଅଭାବ କିଛି ଥିଲେ ହୁଏ ପୂର୍ଣ୍ଣ ।
ଏହିରୂପେ ଅଟେ ସ୍ତୋତ୍ର ଧ୍ୟାନମନ୍ତ୍ର ସମ
ଆଗରେ ସ୍ଥାପିଣ ପୂର୍ଣ୍ଣଘଟ ଶାଳଗ୍ରାମ
ଦକ୍ଷିଣା ଦେବୀଙ୍କୁ ପୂଜା କରିବ ତହିଁରେ
ଜାତ ହୋଇଅଛନ୍ତି ଯେ ଲକ୍ଷ୍ମୀଙ୍କ ଅଂଶରେ ।
ସକଳ କର୍ମର ଫଳ ଦଅନ୍ତି ସେ ହେଲେ
କୃତାର୍ଥ ହୁଅଇ ଲୋକ ଯାହା କୃପାବଳେ ।

ବିଷ୍ଣୁଙ୍କର ଶକ୍ତିରୂପା ସୁଶୀଳା ସୁନ୍ଦରୀ
ପ୍ରଣାମ କରୁଛି ତାଙ୍କ ପାଦେ ଅନୁସରି ।
ଏହିରୂପେ ଧ୍ୟାନକରି ଦେବୀଙ୍କ ଆଗରେ
ମୂଳମନ୍ତ୍ରେ ଜଗଦ୍ଗୁରୁ ଦେବ ଯତନରେ ।
ଶୁଦ୍ଧାସନେ ବସି ଶୁଦ୍ଧମନେ ଚିନ୍ତାକରି
ମହାମୁଦ୍ରା କରିବ ଯେ କରପୁଟ ଯୋଡ଼ି ।
ପୂର୍ବପରି ଏକଗୋଟି ବୀଜାକ୍ଷର ନେଇ
ଯୋଜନା କରିବ ଆଦ୍ୟ ଓଁକାର ମିଶାଇ ।
ଦକ୍ଷିଣା ଶବ୍ଦର ଦେଇ ଚତୁର୍ଥୀ ବିଭକ୍ତି
ସ୍ୱାହାନ୍ତ କରିଣ କରିବ ତାର ଜପ ।
ଭକ୍ତିଭରେ ଦେବତାଙ୍କୁ ପୂଜିଲେ ଏମନ୍ତେ
ସକଳ ଅଭୀଷ୍ଟ ସିଦ୍ଧି ହୁଅଇ ନିଶ୍ଚିନ୍ତେ ।
ଆହେ ମୁନିବର ଏହି ଦକ୍ଷିଣା ଆଖ୍ୟାନ ।
ପଦ୍ମଭବା ଯୋଗ୍ୟ ସବୁ କହିଲିଟି ଜାଣ ।
ଏହାକୁ ଯେ ଭକ୍ତିଭରେ ପଠନ କରଇ
ଅଥବା ପଣ୍ଡିତଜନ ମୁଖରୁ ଶୁଣଇ ।
ତାହାର ସକଳ କାର୍ଯ୍ୟ ହୁଅଇ ସଫଳ
ପ୍ରସନ୍ନ ହୁଅନ୍ତି ତାହାଠାରେ ଦେବକୁଳ ।
କେତେବେଳେ ହେଲେ କର୍ମ ନୁହେ ଅଙ୍ଗହୀନ
ସେହିକାଳ ଯାଏ ତାର ଦେହେ ଥାଏ ପ୍ରାଣ ।
ଅପୁତ୍ରିକ ଲୋକ ଯେବେ ଏହାକୁ ଶୁଣଇ
ନିଶ୍ଚୟ ଯୋଗ୍ୟ ସନ୍ତାନ ପ୍ରାପତ ହୁଅଇ ।
ଭାର୍ଯ୍ୟାହୀନ ହୋଇଥିଲେ ସୁନ୍ଦରୀ ରମଣୀ
ପ୍ରାପ୍ତହୋଇ ସେବା କରେ ପତି ମନ ଜାଣି ।
ଏ ବାହାରେ ସୁବଂଶ ପତିବ୍ରତା ହୁଏ
କେବେହେଁ ଅପ୍ରିୟ ମନ୍ଦ ବଚନ ନ କହେ ।
ବିଦ୍ୟାହୀନ ଲୋକ ହୁଏ ଶାସ୍ତ୍ରରେ ନିପୁଣ
ଯେବେ ସେ ଏହାକୁ ପାଠ କରେ ପ୍ରତିଦିନ ।
ନିର୍ଦ୍ଧନ ଲୋକକୁ ଧନ ମିଳଇ ବହୁତ
ଭୂମିହୀନ ଲୋକ ଭୂମି ଲଭଇ ନିଶ୍ଚିତ ।
ପ୍ରଜାହୀନ ହୋଇଥାଏ ଯେବଣ ନୃପତି
ପ୍ରଜାବନ୍ତ ହୁଏ ତାର ପଢ଼ିଲେ ଏ ସ୍ତୁତି ।
ବନ୍ଧନ ସଙ୍କଟେ ଅଟେ ବନ୍ଧୁ ବିଚ୍ଛେଦରେ
ମାସେ ପର୍ଯ୍ୟନ୍ତେ ଏହା ଶ୍ରବଣ ଯେ କରେ ।
ତାହାର ବିପତ୍ତିମାନ ଖଣ୍ଡନ ହୁଅଇ
ଯେ ଏହା ପଢ଼ଇ ଅବା କର୍ଣ୍ଣରେ ଶୁଣଇ ।

ତହିଁରୁ ମୁକତ ଲଭ କରଇ ସେ ଜାଣ
କହନ୍ତି ନାରଦ ଆଗେ ଋଷି ନାରାୟଣ ।
କହଇ କ୍ଷେତ୍ରମୋହନ ଆହେ କୃପାମୟ
ଏଥି ମୋତେ ତୁମ୍ଭ ପଦ୍ମପାଦରେ ଆଶ୍ରୟ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଦକ୍ଷିଣାଙ୍କର ସ୍ୱରୂପ ବର୍ଣ୍ଣନେ ନାମ ଚତୁଶ୍ଚତ୍ୱାରିଂଶତ୍ତ ଅଧ୍ୟାୟଃ ।

—*—

# ପଞ୍ଚଚତ୍ୱାରିଂଶତ୍ ଅଧ୍ୟାୟ

## ଷଷ୍ଠୀଙ୍କ ଉପାଖ୍ୟାନ ନାରାୟଣ ବର୍ଣ୍ଣନା କରିବା

ଏଥି ଅନନ୍ତରେ ଶୁଣ ନାରଦ ତପସ୍ୱୀ
ନାରାୟଣଙ୍କ କଥାରେ ହୋଇ ମହାତୋଷୀ ।
ବୋଇଲେ ହେ ମୁନିବର ବେଦତତ୍ତ୍ୱଜ୍ଞାନୀ
କୃତାର୍ଥ ହୋଇଲି ତୁମ୍ଭଠାରୁ କଥା ଶୁଣି ।
କହିଲେ ଅନେକ ଦେବଦେବୀଙ୍କ ଚରିତ
ଆଉ କିଛି ଶୁଣିବାକୁ ପୁଣି ମୋର ଚିତ୍ତ ।
ଉତ୍ସୁକ ହେଉଛି ଏଣୁ ଆହେ ତପୋଧନ
କହ ଆଉ ଅଛି ଯାହା ଉତ୍ତମ ଆଖ୍ୟାନ ।
ନାରାୟଣ ବୋଇଲେ ହେ ସବୁ ଦେବୀଙ୍କର
ଚରିତ ଅଛଇ ଭିନ୍ନ ଭିନ୍ନ ପରକାର ।
ତହିଁରୁ ଯା ଶୁଣିବାକୁ ହେବ ତୁମ୍ଭ ମନ
ପଚାର କରିଣ ମୋତେ ପରମ ବଚନ ।
ନାରଦ ବୋଇଲେ ଷଷ୍ଠୀ ଚଣ୍ଡିକା ମଙ୍ଗଳା
ମନସା ଆଦି ଯେ ସବୁ ପ୍ରକୃତିଙ୍କ କଳା ।
ତାହାଙ୍କର ଚରିତକୁ ଶୁଣିବାକୁ ମୁହିଁ
ମତ କରିଅଛି ଜାଣ ଆହେ ଋଷିସାଇଁ ।
ତାହା ଶୁଣି ନାରାୟଣ ବୋଇଲେ ମୁଁ ଏବେ
କହୁଛି ସେ କଥା ଶୁଣି ଶ୍ରଦ୍ଧା ହୁଏ ଯେବେ ।
ପୂର୍ବକାଳେ ପ୍ରକୃତିଙ୍କ ଷଷ୍ଠଅଂଶେ ଜାତ
ହେଲେ ସେ ଷଷ୍ଠୀ ତାହାଙ୍କ ନାମ ହେଲା ଖ୍ୟାତ
ଶିଶୁ ବୃଦ୍ଧିର ଅଧିଷ୍ଠାତ୍ରୀ ଦେବୀ ସେ ଅଟନ୍ତି
ବାଳକମାନଙ୍କୁ ସଦା ରକ୍ଷା କରୁଥାନ୍ତି ।
ତାହାଙ୍କର ଅନ୍ୟ ନାମ ଅଟଇ ଦେବସେନା
ମାତୃକା ମଧ୍ୟରେ ତାଙ୍କୁ କରନ୍ତି ଗଣନା
କାର୍ତ୍ତିକେୟ ଦେବଙ୍କର ଧର୍ମପତ୍ନୀ ସେହି
ପତିବ୍ରତା ଗୁଣେ ତାଙ୍କପରି କେହି ନାହିଁ ।
ବାଳକ ବାଳିକା ମାନେ ଜନ୍ମ ସମୟରେ
ଆୟୁଷ ଲଭ କରନ୍ତି ତାହାଙ୍କ ଯୋଗରେ ।
ସବୁବେଳେ ଶିଶୁଙ୍କର ପାର୍ଶ୍ୱରେ ରହି
ପାଳନା କରନ୍ତି ସେହି ଷଷ୍ଠୀ ମହାମାୟୀ ।
ତାହାଙ୍କର ପୂଜାବିଧି ଶୁଣ ଜ୍ଞାନଗୁରୁ
କହିବି ମୁଁ ଶୁଣିଛି ଯା ଧର୍ମଙ୍କ ମୁଖରୁ ।
ପୂର୍ବକାଳେ ସ୍ୱାୟମ୍ଭୁବ ମନୁଙ୍କର ସୁତ
ଥିଲେ ଏକ ନରପତି ନାମ ପ୍ରିୟବ୍ରତ ।
ପୃଥ୍ୱୀଜନ ମଧ୍ୟରେ ସେ ଅଟନ୍ତି ଧୁରୀଣ
ବିବାହ ନ କରି ତପେ ବଳାଇଲେ ମନ ।
ବହୁତ ଯତ୍ନରେ ତାଙ୍କୁ ବ୍ରହ୍ମା ପ୍ରଜାପତି
ବିବାହ କରାଇ ଦେଲେ ଉତ୍ତମ ଯୁବତୀ ।
ଭାର୍ଯ୍ୟାଙ୍କୁ ଘେନି ପ୍ରିୟବ୍ରତ ନରବର
ଯାପନ କଲେ ବହୁତ ରଜନୀ ବାସର ।
ତଥାପି ପୁତ୍ର ସନ୍ତାନ କିଛି ତ ନ ହେଲେ
ସେ ସକାଶୁ ପୁତ୍ରେଷ୍ଟି ଯଜ୍ଞ ରାଜା କଲେ ।
କଶ୍ୟପ ମୁନି ତହିଁରେ ଥିଲେ ପୁରୋହିତ
ଯଥାକାଳେ ହେଲା ସବୁ କର୍ମ ସମାପତ ।
ପ୍ରିୟବ୍ରତଙ୍କର ପତ୍ନୀ ମାଳିନୀ ସୁନ୍ଦରୀ
ଯଜ୍ଞଚରୁ ନେଇ ତାଙ୍କୁ ଦେଲେ ତପସ୍ୱୀ ।
ଭୋଜନ କରନ୍ତେ ତାହା ରାଜପତ୍ନୀଙ୍କର
ଅଳପ ସମୟେ ଜାତ ହେଲା ଗର୍ଭଭାର ।
ଦ୍ୱାଦଶ ବରଷ ଅନ୍ତେ ସେ କାମିନୀବର
ଜାତ କଲେ ଅଭିନବ ସୁନ୍ଦର କୁମର ।
କନକ ପ୍ରତିମା ପରି ଅବୟବ ଶୋଭା
ଦେଖିବା ମାତ୍ରକେ ନେତ୍ର କରୁଥିଲା ଲୋଭା ।

ବନ୍ଧୁବର୍ଗ ସଙ୍ଗତରେ ଜନକ ଜନନୀ
ଆନନ୍ଦିତ ହେଲେ ପୁତ୍ର ଜନ୍ମହେବା ଜାଣି ।
ମୁହୂର୍ତ୍ତିଅନ୍ତରେ ପୁଣି ଦେଖିଲେ ନିରେଖି
ଲେଉଟିଅଛି ପୁତ୍ରର ଦୁଇଗୋଟି ଆଖି ।
ଜନ୍ମହେବା ସଙ୍ଗେ ସଙ୍ଗେ ଛାଡ଼ିଯାନ୍ତେ ଜୀବ
କାଠ ପିତୁଳା ପରାୟେ ପଡ଼ିଅଛି ଶବ ।
ଦଇବ ତ ସେମାନଙ୍କୁ ବାମ ହୋଇଥିଲା
ସେ ସକାଶୁ ସବୁ ସୁଖ ଛଡ଼ାଇଣ ନେଲା ।
ଏହିରୂପେ ଅଦଭୁତ କଥା ଦେଖିକରି
ବ୍ୟାକୁଳ ହେଲେ ଶୋକରେ ସବୁ ନରନାରୀ ।
ପୁତ୍ରବିରହ ବେଦନା ନ ସହିଣ ମାତା
ପଡ଼ିଲେ ମହୀଉପରେ ହରାଇଣ ଚେତା ।
ସେ ସମୟେ ନରପତି ବହୁ ଶୋକ କଲେ
ପୁନଃପୁନଃ ଆପଣାର କର୍ମକୁ ନିନ୍ଦିଲେ ।
ଧୈର୍ଯ୍ୟଧରି ପୁଣି ମୃତ ଶିଶୁକୁ ଘେନାଇଁ
ଶ୍ମଶାନକୁ ଗଲେ ଦାହ କରାଇବା ପାଇଁ ।
ନିର୍ଜନ ସ୍ଥାନରେ ଯାଇ ପ୍ରବେଶ ହୋଇଲେ
ଶବକୁ କୋଳରେ ଧରି ବହୁତ କାନ୍ଦିଲେ ।
ବନ୍ଧୁଲୋକମାନେ କେତେ କହିଲେ ବୁଝାଇ
ତଥାପି ତାହାଙ୍କ ମନ ସମ୍ଭାଳିଲା ନାହିଁ ।
ଦାରୁଣ ପୁତ୍ରଶୋକରେ ହୋଇଣ ଅଧୀର
ଜୀବନ ତେଜିବା ପାଇଁ ବସିଲେ ସତ୍ୱର ।
ସେ ସମୟେ ଆକାଶକୁ ଅନାନ୍ତେ ରାଜନ
ଦେଖିଲେ ଆସୁଛି ଖସି ଉତ୍ତମ ବିମାନ ।
ସ୍ଫଟିକ ସମାନ କାନ୍ତି ଦିଶଇ ତାହାର
ନାନା ରତନରେ ହୋଇଅଛି ମନୋହର ।
ମଧ୍ୟାହ୍ନ ଆଦିତ୍ୟପରି ତାର ତେଜରାଜି
ପ୍ରକାଶ ହୁଅଇ ଦଶଦିଗରେ ବିରାଜି ।
ବନ୍ଧାହୋଇ ଚାରିପାଶେ ବିଚିତ୍ର ଦୁକୂଳ
ଫର ଫର ଉଡ଼ୁଅଛି ବାଜନ୍ତେ ଅନିଳ ।
ଲମ୍ବମାନ ହୋଇ ସ୍ୱର୍ଣ୍ଣମାଳା କୋଟି କୋଟି
ଶରତ କାଳ ବିଦ୍ୟୁତପରି କରେ ଲୁଟି ।
ଏ ବାହାରେ ନାନାବିଧ କୁସୁମର ହାର
ମଣ୍ଡିତହୋଇ ଦିଶଇ ଅତ୍ୟନ୍ତ ସୁନ୍ଦର ।
ସେ ବିମାନ ମଧ୍ୟେ ବସିଛନ୍ତି ଏକ ଦେବୀ
ମନୋହର ଦିଶୁଅଛି ତାହାଙ୍କର ଛବି ।

ନବ ଯଉବନବତୀ ଚମ୍ପକ ବରଣା
ମନ୍ଦହାସ ବିକଶିତ କମଳ ବଦନା ।
ନାନାରତ୍ନ ଅଳଙ୍କାରେ ସର୍ବାଙ୍ଗ ଭୂଷିତା
କୃପାମୟୀ ଯୋଗେଶ୍ୱରୀ ତ୍ରିଜଗତ ମାତା ।
ଏମନ୍ତ ରୂପରେ ଦେବୀ ରାଜାଙ୍କ ଆଗରେ
ଉପସ୍ଥିତ ହେଲେ ଆସି ଅତ୍ୟନ୍ତ ବେଗରେ ।
ତାହାଙ୍କୁ ଦେଖିଣ ରାଜା ଶବକୁ ପକାଇ
ପ୍ରଣାମ କରିଣ ଉଭାହେଲେ ଆଗେ ଯାଇ ।
ଏ ବାହାରେ ଯଥାବିଧି ଅରଚନା କରି
ସ୍ତୁତିକଲେ ଦେବୀଙ୍କର ମସ୍ତକରେ ଧରି ।
ସେ ଅନ୍ତରେ ତାହାଙ୍କର ନିକଟକୁ ଗଲେ
କୋମଳ ମଧୁରତର ବଚନ ପୁଚ୍ଛିଲେ ।
ବୋଇଲେ ଗୋ ଦେବୀ ତୁମ୍ଭେ କାହାରବନିତା
କେ ଅଟେ ତୁମ୍ଭର ହୋଇଛନ୍ତି ପିତା ମାତା
କାହିଁପାଇଁ ଏ ସ୍ଥାନକୁ କଲ ଆଗମନ
ଏହା ଶୁଣିବାକୁ ମୋର ହେଉଅଛି ମନ
ରାଜାଙ୍କ ବଚନ ଶୁଣି ଦେବୀ ଦେବସେନା
କହିଲେ ତାହାଙ୍କ ଆଗେ ହୋଇ ହୃଷ୍ଟମନା ।
ବୋଇଲେ ହେ ନରପତି ଶୁଣ ସାବଧାନେ
ପଚାରିଲ ଯାହା ସବୁ କହିବା ବଚନେ ।
ବ୍ରହ୍ମାଙ୍କ ମନରୁ ଆମ୍ଭେ ହୋଇଅଛୁ ଜାତ
ଦେବସେନା ବୋଲି ଆମ୍ଭ ନାମ ଅଟେ ଖ୍ୟାତ
ଆମ୍ଭକୁ ସର୍ଜନା କରି ଦେବ ପିତାମହ
କାର୍ତ୍ତିକେୟଙ୍କୁ ପ୍ରଦାନ କଲେ ବହୁ ସ୍ନେହ ।
ମାତୃକା ମଧ୍ୟରେ ଦେବସେନା ବୋଲିକରି
ବିଖ୍ୟାତ ହୋଇଛୁ ଆମ୍ଭେ ଆହେ ଦଣ୍ଡଧାରୀ ।
ପ୍ରକୃତଦେବୀଙ୍କ ଷଷ୍ଠ ଅଂଶରେ ଜନମ
ହୋଇବାରୁ ଷଷ୍ଠୀଦେବୀ ଅଟେ ଆମ୍ଭ ନାମ ।
ଅପୁତ୍ର ଲୋକକୁ ଆମ୍ଭେ ଦେଉ ପୁତ୍ରଦାନ
ଅପ୍ରିୟବାଦୀକୁ ଦେଉ ସୁପ୍ରିୟ ବଚନ ।
ଦରିଦ୍ର ଲୋକକୁ ଧନ ଦେଉ ଅପରିମିତ
ଅକର୍ମ ଲୋକକୁ କର୍ମେ କରଉ ଆସକ୍ତ ।
ସୁଖଦୁଃଖ ଭୟ ଶୋକ ହରଷ ବିଷାଦ
ମଙ୍ଗଳ ସେ ଅମଙ୍ଗଳ ସମ୍ପଦ ବିପଦ ।
କର୍ମ ଅନୁସାରେ ସବୁ ହୁଅଇଟି ଜାଣ
ପ୍ରଧାନ ଅଟଇ କର୍ମ ଆହେ ନରବୀର ।

ବହୁ ପୁତ୍ର ହୁଏ ନର କର୍ମ ପ୍ରଭାବରେ
ଅପୁତ୍ରିକ ମଧ୍ୟ ହୋଇଥାଏ ସେ ପ୍ରକାରେ ।
କର୍ମରେ ବହୁତ ପତ୍ନୀ ହୁଅନ୍ତି ପ୍ରାପତ
ହେଁ ହୀନ ହୁଏ ଲୋକ କର୍ମରେ ନିଯୁତ ।
କର୍ମଯୋଗେ ଧ୍ୟ ବନ୍ତ ଦରିଦ୍ର ହୁଅଇ
ଦରିଦ୍ରଲୋକଙ୍କୁ ଧନ କର୍ମରେ ମିଳଇ ।
ରୂପଗୁଣ ଗଉରବ ହୁଏ କର୍ମବଳେ
କର୍ମରେ ପଡ଼ନ୍ତି ଲୋକେ ବ୍ୟାଧିର କବଳେ ।
କର୍ମ ଯୋଗ ଅଳ୍ପାୟୁଷ ପୁତ୍ର ଜାତ ହୁଏ
କର୍ମ ଏକା ଚିରଜୀବୀ ଆୟୁଷକୁ ଦିଏ ।
ଗୁଣବନ୍ତ ହୁଏ ନର କର୍ମ ଅନୁରୂପରେ
ବିକଳାଙ୍ଗ ହୁଏ ମଧ୍ୟ ଜାଣ ସେ ପ୍ରକାରେ ।
ସେ ସକାଶୁ କର୍ମ ଅଟେ ଜଗତରେ ଶ୍ରେଷ୍ଠ
ମନ୍ଦକର୍ମ କଲେ ଲୋକ ହୁଏ ବହୁ କଷ୍ଟ ।
କର୍ମରୂପୀ ନାରାୟଣ ପ୍ରଭୁ ସର୍ବଗ୍ରାହୀ
ପାପପୁଣ୍ୟ ବୁଝି ଫଳ ଦିଅନ୍ତି ସେହି ।
ଏହିରୂପେ କହି ଦେବୀ ମୃତ ଶିଶୁ ଧରି
ଜୀଆଇଲେ ସଞ୍ଜୀବନୀ ମନ୍ତ୍ରେ ଫୁଙ୍କି କରି ।
ଫୁଟିଥିବା ପଦ୍ମ ପରି ତନୟର ମୁଖ
ଦେଖିଣ ରାଜାଙ୍କ ମନେ ଜାତ ହେଲା ସୁଖ ।
ସେହି କାଳେ ମହାମାୟା ଶିଶୁକୁ ଧରିଲେ
ଆକାଶକୁ ଯିବାପାଇଁ ଉଦ୍‌ଯୋଗ କଲେ ।
ତାହା ଜାଣି ନରପତି ଶିରେ ଯୋଡ଼କର
ଦେବୀଙ୍କୁ ପ୍ରାର୍ଥନା କଲେ ହୋଇଣ ଆତୁର ।
ସେ ସକାଶୁ ଦେବସେନା ପରସନ୍ନ ହୋଇ
କହିଲେ ମୋଠାରୁ ଶୁଣ ଆହେ ନରସାଇଁ ।
ସ୍ୱାୟମ୍ଭୁବ ମନୁଙ୍କର ଅଟ ତୁମ୍ଭେ ସୁତ
ପୁଣି ହୋଇଅଛ ତିନ ଭୁବନର ନାଥ ।
ତୁମ୍ଭଠାରେ ସବୁକଥା ଅଟଇ ସମ୍ଭବ
ରାଜାଙ୍କ ଅଧୀନ ଯେଣୁ ସକଳ ମାନବ ।
ଅତଏବ ମୋର ପୂଜା କର ମନଦେଇ
ଆଦର କରାଅ ସବୁ ଲୋକଙ୍କୁ କହାଇ ।
ତାହାହେଲେ ତୁମ୍ଭର ଏ ପୁତ୍ରକୁ ପାଇବ
ଏ ପୁତ୍ର ସମାନ କେହି ଜଗତେ ନୋହିବ ।
ସୁତର ସୁବ୍ରତ ନାମ ହେବ ଏ ବାଳ
ହୋଇବ ଏ କଥା ସତ୍ୟ ଆହେ ନରପାଳ ।

ଶନତ୍କୁଲ୍ୟ ପରାକ୍ରମ ହୋଇବ ତାହାର
ଅଗ୍ରଣୀ ହେବ ଏ ସବୁ ଯୋଗୀ ମାନଙ୍କର ।
ନାରାୟଣଙ୍କର ହୋଇ ଜନ୍ମ ପାଇଅଛୁ ଯେଣୁ
ଏତଜନ୍ମ କଥା ଜାଣି ମାରନ୍ତି ସେଣୁ ।
ସୁବ୍ରତ ନାମରେ ଏହୁ ହୋଇବ ବଖ୍ୟାତ
ସର୍ବଦା ବିଷ୍ଣୁଙ୍କ ପାଦେ ନବେଶିବ ଚିତ୍ତ ।
ଲକ୍ଷେ ମତ୍ତଗଜ ବଳ ବହିବ ଅଙ୍ଗରେ
ସେବକ ରୂପରେ ଖଟିଥିବେ ସବୁ ସାରେ ।
ଧନୁର୍ଦ୍ଧର ଗୁଣବନ୍ତ ପଣ୍ଡିତ ଯେ ଜନ
ତାହାଙ୍କର ପ୍ରିୟପାତ୍ର ହେବ ଏ ନନ୍ଦନ ।
ଯୋଗୀ ଜ୍ଞାନୀ ସିଦ୍ଧରୂପ ତେପସ୍ୱୀ ହୋଇବ
ସମସ୍ତଙ୍କଠାରୁ ଶ୍ରେଷ୍ଠ ଆସନ ପାଇବ ।
ଏହିରୂପେ କହି ଦେବୀ ରାଜାଙ୍କ ପାଶରେ
ପୁତ୍ରକୁ ଅର୍ପଣ କଲେ ଅତି ହରଷରେ ।
ଦେବୀଙ୍କର ପୂଜାବଧି କରିବା ସକାଶେ
ଅଙ୍ଗୀକାର କଲେ ରାଜା ପରମ ସନ୍ତୋଷେ ।
ଶୁଭ ବର ଦେଇ ତାଙ୍କୁ ଦେବୀ ମହାମାୟୀ
ସ୍ୱର୍ଗ ସ୍ୱର୍ଗ ଆକାଶରେ ଗଲେ ଲୀନ ହୋଇ ।
ଆନନ୍ଦେ ହୋଇ ନୃପ ଆପଣା ମନ୍ଦିରେ
ଉପସ୍ଥିତ ହେଲେ ବନ୍ଧୁବର୍ଗ ସହିତରେ ।
ପୁତ୍ରର ଜୀବନ ଲାଭ ହୋଇଲା ଯେପରି
ସବୁରି ଆଗରେ ଖ୍ୟାତ କଲେ ଦଣ୍ଡଧାରୀ ।
ସେ ଅନ୍ତରେ ବ୍ରାହ୍ମଣଙ୍କୁ ଡକାଇ ଆଣିଲେ
ଦେବୀଙ୍କର ପୂଜାବଧି ସମାପନ କଲେ ।
ବହୁତ ସୁବର୍ଣ୍ଣ ରତ୍ନ ଦେଇ ତାଙ୍କ ମନ
ତୋଷ କରାଇଲେ ପ୍ରିୟବ୍ରତ ନରରାଣ ।
ସେହିଦିନଠାରୁ ପ୍ରତି ଶୁକ୍ଳ ଷଷ୍ଠୀ ଦିନେ
ଷଷ୍ଠୀଦେବୀଙ୍କର ପୂଜା କଲେ ସେ ଯତନେ ।
ଏ ବାହାରେ ସମସ୍ତଙ୍କୁ କହିଲେ ବୁଝାଇ
ନିଜ ନିଜ ଗୃହେ ପୂଜା କଲେ ସର୍ବେ ଯାଇ ।
ପ୍ରସବ ହୋଇବା ଦିନୁ ଷଷ୍ଠ ଦିବସରେ
ସୂତିକା ଗୃହରେ ଷଷ୍ଠୀ ପୂଜାକଲେ ନରେ ।
ଏକବିଂଶ ଦିବସରେ ମଧ୍ୟ ସେହିପରି
ଆରାଧନା କଲେ ଆନନ୍ଦରେ ସର୍ବ ନାରୀ ।
ଶିଶୁଙ୍କର ଶୁଭକର୍ମ ହୁଏ ଯେତେବେଳେ
ପ୍ରଥମରେ ଷଷ୍ଠୀପୂଜା କରନ୍ତି ସକଳେ ।

ଷଷ୍ଠୀ ଦେବୀଙ୍କର ଧ୍ୟାନ ସ୍ତୋତ୍ର ପୂଜା କ୍ରମ
ଯେଉଁରୂପେ ପୂର୍ବେ ମୋତେ କହିଛନ୍ତି ଧର୍ମ ।
ଆମୂଳ କହିଣ ମୁହିଁ ତୁମ୍ଭର ଆଗରେ
କହୁଅଛି ମନ ଦେଇ ଶୁଣ ସବୁଗରେ ।
ଶାଳଗ୍ରାମ ଶିଳାରେ ବା ଜଳପୂର୍ଣ୍ଣ ଘଟେ
ଅଥବା ପ୍ରଶସ୍ତ ବଟମୂଳର ନିକଟେ ।
ଗୃହକାନ୍ଥ ଦେହରେ ବା ପୁତ୍ତଳିକା ସ୍ଥାପି
ପୂଜା କରିବ ଯତନେ ଷଷ୍ଠୀ ନାମ ଜପି ।
ପ୍ରକୃତିଙ୍କ ଷଷ୍ଠକଳା ଶୁଦ୍ଧ ପତିବ୍ରତା
ଶୁଭାଶୁଭ ପ୍ରଦାୟିନୀ ହି ଜଗତମାତା ।
ସୁପୁତ୍ରଦା ଦୟାରୂପା ଦୁଷ୍ଟ ବିନାଶିନୀ
ପରମ ପବିତ୍ର ମୂର୍ତ୍ତି ପବିତ୍ରକାରଣୀ ।
ଶ୍ୱେତ ଚମ୍ପକ ତୁଲ୍ୟ ସୁନ୍ଦର ବରନ
ବସ୍ତ୍ରଜାତ ପୁଣି ନାନା ରତ୍ନ ଆଭରଣ ।
ଏମନ୍ତ ଯେ ଦେବୀ ତାଙ୍କ ପାଦ ପଙ୍କଜରେ
ପ୍ରଣାମ କରୁଛି ମୁହିଁ ଭକ୍ତି ସହିତରେ ।
ଏହିରୂପେ ଧ୍ୟାନକରି ନିଜ ମସ୍ତକରେ
କୁସୁମ ଗୋଟିଏ ଆଣି ଥୋଇବ ସ୍ନେହରେ ।
ସେ ଅନ୍ତରେ ପୁଣି ଆଉ ଥରେ ଧ୍ୟାନ କରି
ପୂଜା କରିବ ଷୋଡ଼ଶ ଉପଚାର ଧରି ।
ପାଦ୍ୟ ଅର୍ଘ୍ୟ ଆଚମନ ଗନ୍ଧପୁଷ୍ପ ଫୁଲେ
ଧୂପ ଦୀପ ନଇବେଦ୍ୟ ଦେବ ଆଣି ଭଲେ ।
ଷଷ୍ଠୀଦେବୀଙ୍କର ମୂଳମନ୍ତ୍ର ଅଷ୍ଟାକ୍ଷର
ଜପ କରିବ ଶେଷରେ୍ ଆହେ ଅଷ୍ଟୋତ୍ତର ।
ସେ ମନ୍ତ୍ର ସ୍ୱରୂପ ଏବେ କହୁଅଛି ଶୁଣ
ପ୍ରଥମେ ଓଁକାର ତହୁଁ ମାୟାବୀଜ ପୁଣ ।
ଚତୁର୍ଥ୍ୟନ୍ତ ଷଷ୍ଠୀଦେବୀ ପଦର ଶେଷରେ
ସ୍ୱାହା ବୋଲ ଅକ୍ଷରକୁ ବସାଇ ସହିତରେ ।
ଏହିପରି ଅଷ୍ଟାକ୍ଷର ମନ୍ତ୍ରକୁ ରଚିବ
ଜପ କରିବାରେ କେବେ ହେଳା ନ କରିବ ।
ତାହାପରେ ସ୍ତୁତି ପଢ଼ି ହେବ ଦଣ୍ଡବତ
ବୋଲିବ ନମସ୍ତେ ଦେବୀ ତିନିଲୋକ ମାତ ।
ସ୍ତୋତ୍ର ପାଠକଲେ ଧନ ସମ୍ପଦ ମିଳଇ
ମନ୍ତ୍ର ଜପକଲେ ସୁତ ଲାଭ ହୋଇଥାଇ ।
ଲକ୍ଷେବାର ଯେବେ ଏହି ମନ୍ତ୍ରକୁ ଜପିବ
ନିଶ୍ଚୟରେ ମନୋରଥ ସୁଫଳ ହୋଇବ ।

ଶୁଣ ହେ ନାରଦ ମୁନି ସ୍ତୋତ୍ରର ପ୍ରକାର
ସକଳ ଶୁଭ ଦିଅଇ ପଢ଼ିବେ ଯାହାର ।
ପ୍ରିୟବ୍ରତ ନରପତି ଯେଉଁଣ ସ୍ତୋତ୍ରକୁ ।
ପଠନ କଲେ ଅନାଇଁ ଷଷ୍ଠୀଙ୍କ ମୁଖକୁ
ନମସ୍ତେ ଶ୍ରୀ ଷଷ୍ଠୀଦେବୀ ସ୍କନ୍ଦ ପ୍ରିୟବତୀ
ମହାମାୟା ଯୋଗେଶ୍ୱର ଶାନ୍ତଶୀଳ ମୂର୍ତ୍ତି ।
ମଙ୍ଗଳ ଦାୟିନୀ ବାଲ୍ୟଦୁଷ୍ଟ ବିନାଶିନୀ
ବର ପ୍ରଦାୟିନୀ ଧନ ତନୟ ଦାୟିନୀ ।
ତୁମ୍ଭ ଶ୍ରୀଚରଣ ପଦ୍ମେ କରୁଛି ଭକତି ।
ପ୍ରସନ୍ନ ହୋଇଣ ମୋତେ ଦିଅ ସଦ୍‌ଗତି ।
ତୁମ୍ଭେ ଅଟ ସୁଖଦାୟୀ ମୋକ୍ଷମାର୍ଗ ହେତୁ
ସଂସାର ମହାସାଗର ତରଣର ସେତୁ ।
ପ୍ରକୃତି ଷଷ୍ଠଅଂଶରେ ତୁମ୍ଭର ଜନମ
ନମସ୍ତେ ଶ୍ରୀ ମହାମାୟୀ ଷଷ୍ଠୀ ନମୋନମଃ ।
ତୁମ୍ଭ ମାୟାରେ ଜଗତ ଘୂରୁଅଛି ପୂରି
ନମସ୍ତେ ଶ୍ରୀ ଷଷ୍ଠୀଦେବୀ ତୈଲୋକ୍ୟ ଈଶ୍ୱରୀ ।
ଅଟଇ ତୁମ୍ଭର ନାମ ସଂସାରରେ ସାର
ପ୍ରଣାମ କରୁଛି ତୁମ୍ଭ ପାଦେ ବାରମ୍ବାର ।
ଶୁଭାଶୁଭ ପ୍ରଦାୟିନୀ ସର୍ବଲୋକମାତ
ପ୍ରସନ୍ନ ହୋଇଣ ମୋତେ କର ଭବୁଁ ମୁକ୍ତ ।
ବାଳକ ରକ୍ଷାକାରଣୀ ଦେବୀ ଜଗଦ୍ଧାତ୍ରୀ
ନମସ୍ତେ ନମସ୍ତେ ଷଷ୍ଠୀ ଶିଶୁ ଅଧିଷ୍ଠାତ୍ରୀ
କଲ୍ୟାଣିନୀ ଫଳସିଦ୍ଧି ମୋକ୍ଷ ବିଧାୟିନୀ
ପ୍ରତ୍ୟକ୍ଷ ସ୍ୱରୂପା ଚଣ୍ଡୀ ବିପଦ ନାଶିନୀ ।
ଜଗତ ମଧ୍ୟରେ ତୁମ୍ଭେ ଅଟ ପୂଜ୍ୟତମା
ତିନିଲୋକ ଅଗୋଚର ତୁମ୍ଭର ମହିମା ।
ଦେବତାମାନଙ୍କୁ ରକ୍ଷାକର ତୁମ୍ଭେ ନିତ୍ୟେ
ଶରଣ ପଶୁଛି ମୁହିଁ ତୁମ୍ଭ ପାଦାଗ୍ରତେ ।
ଦେବୀ ତୁମ୍ଭେ ଅଟ ହିଂସା କ୍ରୋଧ ବିବର୍ଜିତା
ତୁମ୍ଭଙ୍କୁ ଅର୍ଚ୍ଚନା କଲେ ନ ରହଇ ଚିନ୍ତା ।
ସମ୍ପଦ କଳତ୍ର ସୁତ ଦିଅ ସୁରେଶ୍ୱରି
ଏ ବାହାରେ ଧର୍ମ ପଞ୍ଚରୂପ ଆଦ୍ୟ କରି ।
ଭୂମି ପ୍ରଜା ବିଦ୍ୟା ଧନ ତୁମ୍ଭ ପ୍ରସାଦରେ ।
ମଙ୍ଗଳ ତନୟ ପ୍ରାପ୍ତି ହେଉ ଯେ ପ୍ରକାରେ ।
ଏହିରୂପେ ସ୍ତୁତିକରି ନୃପ ପ୍ରିୟବ୍ରତ
ଲେଉଟି ପାଇଲେ ଆପଣାର ପ୍ରିୟସୁତ ।

ସେ ତନୟ ଯଶୋବନ୍ତ ଧର୍ମଶୀଳ ହେଲା
ସମସ୍ତ ଲୋକ ମଧ୍ୟରେ ପ୍ରଶଂସା ପାଇଲା ।
ଆହେ ମୁନିବର ଏହି ଷଷ୍ଠୀଦେବୀ ସ୍ତୋତ୍ର
ସଂବତ୍ସର କଲେ ଲୋକ ହୁଅଇ ପବିତ୍ର ।
ବରଷେ ପର୍ଯ୍ୟନ୍ତ ଯେବେ ଏହାକୁ ଶୁଣିବ
ଅପୁତ୍ରିକ ହୋଇଥିଲେ ପୁତ୍ର ପ୍ରାପ୍ତ ହେବ ।
ପଠନ କରିବ ଯେବେ ବରଷ ପର୍ଯ୍ୟନ୍ତ
ସକଳ ପାପରୁ ନିଶ୍ଚେ ହୋଇବ ମୁକତ ।
ଚିରକାଳ ବନ୍ଧ୍ୟା ହୋଇଥିବ ଯେଉଁ ନାରୀ
ତାହାକୁ ଶୁଣିଲେ ପୁତ୍ର ହୋଇବ ତାହାର ।
ଷଷ୍ଠୀଦେବୀଙ୍କ ପ୍ରସାଦେ ସେହି ପୁତ୍ରଗୋଟି
ଗୁଣରେ କଲ୍ୟାଣବନ୍ତ ନିଶ୍ଚେ ହୋଇବଟି ।

ଏଥୁଅନ୍ତେ ଚିରକାଳ ଆୟୁଷ ପାଇବ
ସଂସାର ମଧ୍ୟରେ ପୂଜ୍ୟ ହୋଇଣ ରହିବ ।
ଯେବଣ ନାରୀକି ଥିବ କାକବନ୍ଧ୍ୟା ହୋଇ
ଏହା ଯେବେ ସେହୁ ଭକ୍ତି ଭାବରେ ଶୁଣଇ ।
ବରଷକ ମଧ୍ୟେ ତାର ହୁଏ ଦିବ୍ୟ ସୁତ
ଷଷ୍ଠୀଦେବୀଙ୍କ ପ୍ରସାଦେ ଆହେ ତପୋବନ୍ତ ।
ରୋଗଜାତ ହେବ ଯେବେ ଶିଶୁଙ୍କ ଦେହରେ
ପିତାମାତା ଏହି ସ୍ତୋତ୍ର ଶୁଣିଲେ ଭକ୍ତିରେ ।
ମାସକ ମଧ୍ୟରେ ମୁକ୍ତ ହୋଇବ ସନ୍ତାନ
ମୁନି ମାନଙ୍କ ବଚନ କେବେଁ ନୁହେଁ ଆନ ।
କ୍ଷେତ୍ରମୋହନ କହଇ ଯୋଡ଼ି ବେନିକର
ଷଷ୍ଠୀ ଦେବୀଙ୍କର ସ୍ତୋତ୍ର ପଢ଼ ସର୍ବ ନର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଷଷ୍ଠୀଙ୍କ ଉପାଖ୍ୟାନ ନାରାୟଣ
ବର୍ଣ୍ଣନା କରିବା ନାମ ପଞ୍ଚଚତ୍ୱାରିଂଶତ୍ ଅଧ୍ୟାୟଃ ।

---

## ଷଷ୍ଠଚତ୍ୱାରିଂଶତ୍ ଅଧ୍ୟାୟ

## ମଙ୍ଗଳା ଦେବୀଙ୍କ ଚରିତ ବର୍ଣ୍ଣନ

ଏଥୁଁ ଅନନ୍ତରେ ଶୁଣ ଅପୂର୍ବ ଚରିତ
ନାରଦଙ୍କୁ କହିଁ ନାରାୟଣ ତପୋବନ୍ତ ।
ବୋଇଲେ ହେ ତପିବର ଷଷ୍ଠୀଦେବୀ ଗିର
ଅମୃତ ତୁଲ କଥନ ଶୁଣିଲ ସତ୍ୱର ।
ଏବେ ମଙ୍ଗଳ ଚଣ୍ଡୀଙ୍କ ଚରିତକୁ ଶୁଣ
ଯେମନ୍ତେ ହୋଇଛି ପୂଜା ସ୍ତୋତ୍ରର ବିଧାନ ।
ଧର୍ମ ମୋହ ଅଗ୍ରେ କହିଅଛନ୍ତି ଯେମନ୍ତ
ତହିଁ ତୁମ୍ଭଙ୍କୁ ବିସ୍ତାର କହିବ ସମସ୍ତ ।
ଚଣ୍ଡୀ ଶବ୍ଦର ଅର୍ଥ ସମର୍ଥ ଅଟଇ
ମଙ୍ଗଳ ଶବ୍ଦର ନାମ କଲ୍ୟାଣକୁ କହି ।
ତେଣୁ ଶୁଭକର୍ମରେ ଯେ ଅଟଇ ସମର୍ଥ
ତାଙ୍କୁ ବୁଝାଇ ମଙ୍ଗଳ ଚଣ୍ଡୀ ଶବ୍ଦ ଅର୍ଥ ।
ଆନ ପରକାରେ ଏବେ କହୁଅଛି ଶୁଣ
ପୃଥିବୀର ଚଣ୍ଡୀଅର୍ଥ ପ୍ରବର୍ତ୍ତିଇ ଜାଣ ।
ମହୀ ଦେବୀଙ୍କ ବଳାକୁ ମଙ୍ଗଳ କହନ୍ତି
ତାହାଙ୍କର ଇଷ୍ଟଦେବୀ ମଙ୍ଗଳା ଅଟନ୍ତି ।

ମଙ୍ଗଳଗ୍ରହ ତାହାଙ୍କୁ ପୂଜିବାରୁ ନିତ
ସେ ଦେବୀ ମଙ୍ଗଳଚଣ୍ଡୀ ନାମ ପାଇଛନ୍ତି ।
ମନୁଙ୍କର ବଂଶ ଜାତ ମଙ୍ଗଳ ନରେଶ
ସପ୍ତଦ୍ୱୀପାପୃଥିବୀ ତାହାଙ୍କର ବଶ୍ୟ ।
ସେନ ନିଅନ୍ତି ସେ ଚଣ୍ଡୀ ଦେବତାଙ୍କୁ ସେବି
ତେଣୁ ମଙ୍ଗଳ ଚଣ୍ଡିକା ବୋଲଅନ୍ତି ଦେବୀ ।
ମୂରତି ଭେଦରେ ନାନା ରୂପ ସେ ଅଟନ୍ତି
ସ୍ତ୍ରୀମାନଙ୍କରେ ପୂଜ୍ୟ ଦେବୀ ବୋଲଅନ୍ତି ।
ତ୍ରିପୁର ସଙ୍ଗରେ ଘୋର ଯୁଦ୍ଧ କଲାବେଳେ
ପୂଜିଲେ ଶଙ୍କର ତାଙ୍କୁ ହସ୍ତ କର ବୋଲେ ।
ପୁଣି ବ୍ରହ୍ମାଙ୍କ ଆଦେଶେ ପ୍ରକାଣ୍ଡ ରାକ୍ଷସ
ଆସିଲେ ଶିବଙ୍କୁ ପଦେ କରିବାକୁ ଗ୍ରାସ ।
ସେ ସମୟେ ମହାଦେବ ଦୁର୍ଗାଙ୍କର ସ୍ତୁତି
ପଠନ କଲେ ତହିଁରୁ ପାଇବାରୁ ମୁକ୍ତି ।
ତାହା ଜାଣି ମହାମାୟା ମଙ୍ଗଳ ଚଣ୍ଡିକା
ରୂପ ଧରି ତାଙ୍କ ଆଗେ ଉଭାହୋଇ ଏକା ।

ବୋଇଲେ ହେ ମହାବ୍ରହ୍ମ ଲସ୍ମ ନାହିଁ କରୁ
ଶୁଣ ସାବଧାନ ହୋଇ ଯାହା ମୁଁ କହୁଛୁ ।
ପରମାତ୍ମା ନାରାୟଣ ହେବେ ବୃଦ୍ଧ ରୂପ
ଯୁଦ୍ଧଶକ୍ତି ରୂପେ ଥିବ ମୁଁ ତୁମ୍ଭ ସମୀପ ।
ଆମ୍ଭ ଦୁହିଙ୍କ ସାହାଯ୍ୟ ପାଇ ଏବେ ଯାଅ
ରାକ୍ଷସଙ୍କୁ ମାରି ଯମପୁରକୁ ପଠାଅ ।
ଏହା କହି ଅନ୍ତର୍ହିତା ହେଲେ ସୁରେଶ୍ୱରୀ
ଶିବଙ୍କ ପାଶେ ରହିଲେ ଶକ୍ତିରୂପ ଧରି ।
ବିଷ୍ଣୁ ଦତ୍ତ ଶର ହସ୍ତେ ଘେନି ତ୍ରିଲୋଚନ
ରାକ୍ଷସଙ୍କୁ ପଠାଇଲେ ପ୍ରେତପୁର ସ୍ଥାନ ।
ତାହା ଦେଖି ଦେବଗଣ ମୁନିଋଷି କୁଳେ
ଆନନ୍ଦରେ ଶଙ୍କରଙ୍କୁ ବହୁ ସ୍ତବ କଲେ ।
ପୁଣି ତାଙ୍କ ମସ୍ତକରେ ପୁଷ୍ପ ବୃଷ୍ଟି କରି
ବୋଇଲେ ହେ ଦେବ ଆମ୍ଭେ ଦୁଃଖୁ ହେଲୁ ପାରି
ବ୍ରହ୍ମା ବିଷ୍ଣୁ ଦୁହେଁ ତୋଷ ହୋଇ ସେ କାଳରେ
ଶୁଭ ଆଶୀର୍ବାଦ ଦାନ କଲେ ତୋଷଲରେ ।
ସେ ଦୁହିଙ୍କ ସକମତେ ସ୍ନାନ କରି ହର
ଅର୍ଚ୍ଚନା କଲେ ମଙ୍ଗଳ ଚଣ୍ଡୀ ଦେବୀଙ୍କର ।
ପାଦ୍ୟ ଅର୍ଘ୍ୟ ଆଚମନ କୁସୁମ ଚନ୍ଦନ
ଧୂପ ଦୀପ ନଇବେଦ୍ୟ ଆଦି ଦ୍ରବ୍ୟମାନ ।
ସମର୍ପଣ କରି ପୁଣି ମହିଷ ଛାଗଳ
ଗଣ୍ଡକ ଢୁଭିନ୍ତ ବଳି ଦେଲେ ତତକାଳ ।
ବସ୍ତ୍ର ଅଳଙ୍କାର ମାଲ୍ୟ ପାୟସ ପିଷ୍ଟକ
ମଧୁ ସୁଧା ପକ୍ୱଫଳ ଦେଲେ ସେ ଅନେକ ।
ଆଦରି ସଙ୍ଗୀତ ନୃତ୍ୟ ବାଦ୍ୟ ସହିତରେ
ବହୁବିଧ ଉତ୍ସବ କରାଇଲେ ଆନନ୍ଦରେ ।
ସାଂଖ୍ୟ ବିଧି ନିରୂପିତ ଧ୍ୟାନ ପାଠ କରି
ନାନା ଦ୍ରବ୍ୟ ଦେଲେ ମୂଳ ମନ୍ତ୍ରକୁ ସୁମରି ।
ସର୍ବ ପୂଜ୍ୟତମ ଦେବୀ ମଙ୍ଗଳ ଚଣ୍ଡିକା
ଭକତବତ୍ସଳା ଗଣ୍ଡ ମୁକୁଟ ଦାୟିକା ।
ଏହିରୂପେ ମୂଳମନ୍ତ୍ର ସ୍ୱରୂପ ଅଟଇ
ଅଶେଷ କାମନା ପୂର୍ଣ୍ଣ କରଇଟି ଏହି ।
ଦଶଲକ୍ଷ ଜପ କଲେ ସିଦ୍ଧି ହୁଏ ଜାଣ
ସିଦ୍ଧ କଲା ଲୋକ ଅଟେ ସ୍ୱୟଂ ନାରାୟଣ ।
ଧ୍ୟାନର ସ୍ୱରୂପ ଏବେ ଶୁଣ ଏକମନେ
ସର୍ବର କାମନା ପୂର୍ଣ୍ଣ ହୁଏ ଅଳ୍ପ ଦିନେ ।

ସୁସ୍ଥିର ଯୌବନବନ୍ତୀ ଷୋଡ଼ଶ ବର୍ଷୀୟା
ସର୍ବ ଗୁଣ ମନୋହର ଦେବୀ ମହାମାୟା ।
ଶୁକଳ ଚମ୍ପକବର୍ଣ୍ଣା କୋଟି ଚନ୍ଦ୍ରପ୍ରଭା
ବହ୍ନି ଶୁଦ୍ଧ ବସ୍ତ୍ର ରତ୍ନ ଅଳଙ୍କାର ଶୋଭା ।
ମଲ୍ଲିକା କୁସୁମ ହାରେ ରମ୍ୟ କେଶପାଶ
ସୁରଙ୍ଗ ଅଧର ବିରାଜିତ ମନ୍ଦହାସ ।
ଶରତ ପଙ୍କଜ ତୁଲ୍ୟ ମୁଖ ସୁଶୋଭିତ
ମନୋତ୍ପଳଦଳ ପ୍ରାୟେ ନୟନ ରାଜିତ ।
ଜଗଦ୍ଧାତ୍ରୀ ଧନଜନ ସମ୍ପଦ ଦାୟିନୀ
ସଂସାର ସାଗର ମୁକ୍ତି ପୋତ ସ୍ୱରୂପିଣୀ ।
ଏମନ୍ତ ଯେ ଦେବୀ ତାଙ୍କୁ ଭଜୁଅଛୁ ମୁହିଁ
ତାହାଙ୍କ ପ୍ରସାଦେ ଶୁଭ ଫଳ ଦେବାପାଇଁ ।
ଏବେ ଶୁଣ ସ୍ତବପାଠ ସ୍ୱରୂପକୁ ବସି
ତହିଁରେ ଶଙ୍କର ସ୍ତୁତି କଲେ ହୋଇ ତୋଷି ।
ବୋଇଲେ ନମସ୍ତେ ଦେବୀ ମଙ୍ଗଳଚଣ୍ଡିକା
ଜଗତର ପିତାମାତା ତୁମ୍ଭେ ଅଟ ଏକା ।
ବିପଦ ଦାରୁଣୀ ସର୍ବ ସମ୍ପତ୍ତି କାରିଣୀ
ମଙ୍ଗଳଦାୟିନୀ ମାତ ଶୁଭ ସ୍ୱରୂପିଣୀ ।
ଶୁଭଯୋଗ୍ୟ ଅଟ ତୁମ୍ଭେ ଶୁଭ ଅଧିସ୍ୱାମୀ
ସକଳ ଲୋକର ପୁଣ୍ୟ ପାପ ଫଳ ଦାଶୀ ।
ପୂଜ୍ୟଠାରୁ ପୂଜ୍ୟତର ଅଟ ସୁଶୋଭନେ
ତୁମ୍ଭର ମହିମା ଅଗୋଚର ତ୍ରିଭୁବନେ ।
ମଙ୍ଗଳ ଆଧାର ତବ କର୍ମ ବିନାଶିନୀ
ମଙ୍ଗଳବାରେ ପୂଜିତା ଅଟ ଶୁଭଦାନ ।
ପ୍ରାର୍ଥନା କରୁଛୁ ମୋତେ ରକ୍ଷାକର ଦେବୀ
ଉଦ୍ଧାର ହୁଅନ୍ତି ଲୋକେ ତୁମ୍ଭ ପାଦ ସେବି ।
ଏହିରୂପେ ସଦାଶିବ ସ୍ତୁତି କଲି ପରେ
ପୂଜା କଲେ ପୁଣି ପ୍ରତି ମଙ୍ଗଳବାରରେ ।
ସାବଧାନ ହୋଇ ଏହି ସ୍ତୋତ୍ର ଯେ ଶୁଣଇ
ସର୍ବଦା ତାହାର ସର୍ବ ମଙ୍ଗଳ ହୁଅଇ ।
ପ୍ରଥମେ ଦେବୀଙ୍କୁ ପୂଜା କଲେ ସଦାଶିବ
ଦ୍ୱିତୀୟେ ମଙ୍ଗଳ କଲେ ପାଇ ଭକ୍ତି ଭାବ ।
ତୃତୀୟେ ଅର୍ଚ୍ଚନା କଲେ ମଙ୍ଗଳ ନୃପତି
ଚତୁର୍ଥେ ମଙ୍ଗଳବାରେ ସକଳ ଯୁବତୀ ।
ପଞ୍ଚମରେ ନରନାରୀ ସର୍ବେ ମିଳିକରି
ଅର୍ଚ୍ଚନା କଲେ ଦେବୀ ମହିମା ସୁମରି ।

ତ୍ରୈଲୋକ୍ୟ ବିଶ୍ୱରେ ଦେବ ନରନାଗଙ୍କର
ଆରାଧିତା ହୁଅନ୍ତି ସେ ମଙ୍ଗଳ ବାସରେ ।
ସେ ଅନ୍ତରେ ସବୁଠାରେ ପୂଜା ପାଇ କରି
ପ୍ରସିଦ୍ଧ ହୋଇଲେ ସର୍ବ ମଙ୍ଗଳା ଈଶ୍ୱରୀ ।
ଦେବୀଙ୍କ ଏ ସ୍ତୋତ୍ରକୁ ଯେ ଶୁଣଇ ମର୍ତ୍ତ୍ୟରେ
ଅମଙ୍ଗଳ କେବେ ନ ଆସଇ ତାର ଘରେ ।
ଅପୂର୍ବ ଚରିତମୟ ଅଟଇ ଏ ଗ୍ରନ୍ଥ
କ୍ଷେତ୍ର ମୋହନ ବୋଲଇ ଶୁଣ ସାଧୁସନ୍ଥ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମଙ୍ଗଳାଦେବୀଙ୍କର ଚରିତ ବର୍ଣ୍ଣନେ
ନାମ ଷଟ୍‌ଚତ୍ୱାରିଂଶତ୍ ଅଧ୍ୟାୟଃ ।

## ସପ୍ତଚତ୍ୱାରିଂଶତ୍ ଅଧ୍ୟାୟ

## ମନସା ଦେବୀଙ୍କର ଚରିତ ବର୍ଣ୍ଣନ

ଶୁଣ ହେ ଧାତାଙ୍କ ସୁତ ଦେଇ ମନକର୍ଣ୍ଣ
ମନସା ଦେବୀଙ୍କ କଥା କରିବା ବଖାଣ ।
ଧର୍ମଙ୍କ ମୁଖରୁ ପୂର୍ବେ ତାହା ଶୁଣିଥିଲି
ତୁମ୍ଭ ଅଗ୍ରତେ ସମସ୍ତ କହିଦେବା ଖୋଲି ।
କଶ୍ୟପଙ୍କର ମନରୁ ହୋଇବାରୁ ଜାତ
ମନସା ଦେବୀ ନାମରେ ହୋଇଲେ ସେ ଖ୍ୟାତ
ଆପଣା ଇଚ୍ଛାରେ ସେହୁ କ୍ରୀଡ଼ା କରୁଥାନ୍ତି
ଶ୍ରୀକୃଷ୍ଣ ଚନ୍ଦ୍ରଙ୍କୁ ସଦା ମନମଧ୍ୟେ ଚିନ୍ତି ।
କିବା ଏହି ହେତୁ ମୁନି ମନସା ବୋଲିଣ
ଦେଇଥିଲେ ତାହାଙ୍କର ନାମ ସେ କାରଣ ।
ସିଦ୍ଧ ଯୋଗିନୀ ବୈଷ୍ଣବୀ ଅଟନ୍ତି ସେ ଦେବୀ
ତିନି ଯୁଗ ପରିଯନ୍ତେ କୃଷ୍ଣ ପାଦ ସେବି ।
ପୁଣି କେତେକାଳ ଅନ୍ତେ ଜରତ୍କାରୁ ମୁନି
ଭାରତରେ ଜନମିଲେ ବିଷ୍ଣୁ କଳା ଘେନି ।
ତପକରି ଶ୍ରୀକୃଷ୍ଣଙ୍କୁ ଅନ୍ତରେ ଜପିଲେ
ତାହାଙ୍କ ଠାରେ ଶ୍ରୀକୃଷ୍ଣ ପ୍ରସନ୍ନ ହୋଇଲେ ।
ସେ କମନ୍ତେ ମନସାଙ୍କୁ ସଙ୍ଗତରେ ନେଇ
ତାଙ୍କ କରେ ଅରପଣ କଲେ ତେ ସହୋଇ ।
ପ୍ରଥମରେ ନକ୍ଷେ ବସି ଅର୍ଚ୍ଚନା କଲେ
ଜରତ କାରଙ୍କୁ ହସ୍ତେ ପୁଣି କଲେ ।
ଏଥୁଅନ୍ତେ ଗ ମର୍ତ୍ତ୍ୟ ପାତାଳ ଭୁବନେ
ଥିଲେ ଯେଉଁମାନେ ପୂଜା କଲେ ତୋଷମନେ ।
ଏ ଅନ୍ତେ ମନସା ଦେବୀ ବ୍ରହ୍ମାଣ୍ଡ ମଧ୍ୟରେ
ପୂଜନୀ ସ୍ୱରୂପା ହୋଇଥିଲେ ସେ କାଳରେ ।
ଜାଗ୍ରତ ଗଉରୀ ନାମ ହେଲା ତାହାଙ୍କର
ସେ ନାମରେ ପୂଜା ତହୁଁ କଲେ ସର୍ବ ନର ।
ଶିବଙ୍କର ଶିଷ୍ୟ ସେହି ଶୈବଧର୍ମମୟୀ
ଆବର ବୈଷ୍ଣବ ଧର୍ମେ ଥାନ୍ତି ସଦା ରହି ।
ସେ ଘେନ ଶଇବୀ ବଇଷ୍ଣବୀ ସେ ବୋଲନ୍ତି
ପୁଣି ନାଗମାନଙ୍କୁ ସେ ରକ୍ଷା କରିଛନ୍ତି ।
ଜନମେଜୟ ରାଜାଙ୍କୁ ଦେଇଛନ୍ତି ପ୍ରାଣ
ତେଣୁ ନାଗେଶ୍ୱରୀ ତାଙ୍କ ନାମ ଅଟେ ଜାଣ ।
ବିଷ ସଂହାରିବା ପାଇଁ ତାଙ୍କପରି କେହି
ନ ଥିବାରୁ ବିଷହାରୀ ବୋଲନ୍ତି ସେହି ।
ଶିବଙ୍କରଠାରୁ ସିଦ୍ଧ ଯୋଗ ପାଇଥିଲେ ।
ସେ ଘେନ ସିଦ୍ଧଯୋଗିନୀ ନାମକୁ ବହିଲେ ।
ଗୁପତ ଅଟଇ ଯେଉଁ ସଞ୍ଜୀବନୀ ମନ୍ତ୍ର
ତାହାକୁ ଯେ କରି ପାଇଥିଲେ ସେ ସ୍ୱତନ୍ତ୍ର ।
ସେ ସକାଶୁ ବିଜ୍ଞଜନେ ଜ୍ଞାନମୟୀ ବୋଲି
ବୋଲନ୍ତି ତାଙ୍କର ଗୁଣ ମନେ ମନନ ଭାଳି ।
ଆସ୍ତିକ ଋଷି ତାହାଙ୍କଠାରୁ ଜନ୍ମ ହେଲେ
ସେ ଘେନ ଆସ୍ତିକମାତା ନାମ ସେ ପାଇଲେ ।
ଜରତ୍କାରୁ ମୁନିଙ୍କର ଭାର୍ଯ୍ୟା ସେ ଅଟନ୍ତି
ଜରତ୍କାରୁପ୍ରିୟା ନାମ ହେଲା ତହୁଁ ଖ୍ୟାତି ।
ଜାଗ୍ରତ ଗଉରୀ ସିଦ୍ଧଯୋଗିନୀ ମନସା
ବୈଷ୍ଣବୀ ନାଗଭଗିନୀ ଶୈବୀ ନାଗେଶ୍ୱରୀ ।
ଜରତ୍କାରୁ ପ୍ରିୟବଶ ଆସ୍ତିକ ଜନନୀ
ଯାହା ଜ୍ଞାନବତୀ ଦେବୀ ବିଷ ସଂହାରିଣୀ ।

ବିଶ୍ୱମଣ୍ଡଳ ପୂଜିତା ଭୁବନ ଈଶ୍ୱରୀ
ଜ୍ଞାନମୟୀ ଜ୍ଞାନଦାତ୍ରୀ ସର୍ବ ଶୁଭଙ୍କରୀ ।
ପୂଜାକାଳେ ଏହି ନାମ ପଠନ ଯେ କରେ
ନାଗଠାରୁ ଭୟ ତାର ନୁହେଁ କଦାଚରେ ।
ନାଗପୂର୍ଣ୍ଣ ଭବନରେ କରିଲେ ଶୟନ
ବିଷଧର ସର୍ପରେ ବା ହୋଇଲେ ବେଷ୍ଟନ ।
ଏ ସ୍ତୋତ୍ର ପଠନ କଲେ ଶହେ ଅଷ୍ଟୋତ୍ତର
ସକଳ ଆପଦ ଦୂର ହୁଅଇ ସତ୍ୱର ।
ନିତ୍ୟ ଯେ ପଠନ କରୁଥାଏ ଶାନ୍ତମତେ
ରହି ନ ପାରନ୍ତି ସର୍ପେ ତାହାର ଅଗ୍ରତେ ।

ଜପ କଲେ ଦଶଲକ୍ଷ ସ୍ତୋତ୍ର ସିଦ୍ଧ ହୁଏ
ସ୍ତୋତ୍ର ସିଦ୍ଧହେଲେ ଲୋକ ମହାତ୍ମା ବୋଲାଏ ।
ଶିବଙ୍କ ପରାୟେ ତେଜ ତାହାର ହୁଅଇ
କାଳକୂଟ ବିଷ ସେହୁ ଭକ୍ଷଣ କରଇ ।
ନାଗ ମାନଙ୍କୁ ଭୂଷଣ କରଣ ଶଙ୍କରେ
ପୁଣି ଯାତାୟାତ କରେ ବସି ନାଗ ପରେ ।
ନାଗମାନଙ୍କରେ ତଳ୍ପ କରିଣ ତତ୍ପର
ଶୟନ କରଇ ସେହୁ ଆନନ୍ଦ ମନର ।
କ୍ଷେତ୍ରମୋହନ କହଇ ଆହେ ସାଧୁଜନ
ନାଗସ୍ମଣ ନାମ ଭଜ ହୋଇବ ମୋଚନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମନସା ଦେବୀଙ୍କର ଚରିତ
ବର୍ଣ୍ଣନେ ନାମ ସପ୍ତଚତ୍ୱାରିଂଶତ୍ ଅଧ୍ୟାୟଃ ।

— —*— —

## ଅଷ୍ଟଚତ୍ୱାରିଂଶତ୍ ଅଧ୍ୟାୟ

### ମନସା ଦେବୀଙ୍କର ପୂଜା ଓ ସ୍ତୋତ୍ରାଦିର ନିୟମ କଥନ

ଶୁଣ ହେ ଧାତାନନ୍ଦନ ଦେଇ ମନ କର୍ଣ୍ଣ
କହିବା ମନସାଙ୍କର ମନ୍ତ୍ର ସ୍ତୋତ୍ର ଧ୍ୟାନ ।
ଶ୍ୟାମବେଦରେ ଉକତ ହୋଇଛି ସମସ୍ତ
ମନସା ଦେବୀଙ୍କ ଧ୍ୟାନ ମନ୍ତ୍ର ଆଦି ସ୍ତୋତ୍ର ।
ତହିଁରୁ କେତେକ କଥା କହିବା ବୁଝାଇ
ଶୁଣିଲେ ତୁମ୍ଭେ ପରମ ତୃପ୍ତ ଯେ ହେବଇଁ ।
ଧ୍ୟାନର ସ୍ୱରୂପ ସବାଗ୍ରରେ ବୁଝି ନିଅ
ଯାହାକୁ ପଠନ କଲେ ପାପ ଯାଏ କ୍ଷୟ ।
କନକ ଚମ୍ପା ସଦୃଶୀ ଦେହ ବିଭୂଷିତା
ବିଶୁଦ୍ଧ ଅନଳ ସମ ବସ୍ତ୍ରରେ ମଣ୍ଡିତା ।
ନାଗ ଉପବୀତ ଶୋଭୁଅଛି କଣ୍ଠଦେଶେ
ଅତି ମନୋହର ରୂପ ଶୋଭା ପରକାଶେ ।
ଜ୍ଞାନ ଗାରିମାରେ ତିନିପୁରେ ଯେ ତୁଳନା
ସମାନ ହୋଇବେ ତାଙ୍କୁ ସରସ୍ୱତୀ ବିନା ।
ସିଦ୍ଧ ଅଧାସ୍ୱିମା ଜନ ପବଣ କାରଣୀ
ହିପ୍ରର ସତୀମାନଙ୍କ ମଧ୍ୟରେ ଅଗ୍ରଣୀ ।
ମୂଳମନ୍ତ୍ରେ ତାହାଙ୍କୁ ପୂଜ ଭକତରେ
ସାଧନା କରିବ ତହେ ପୁଷ୍ପ ସହିତରେ ।

ବେଦୋକ୍ତ ଯେ ମୂଳମନ୍ତ୍ର ଭକତ ଦାୟକ
ଦ୍ୱାଦଶ ଅକ୍ଷର ଜାଣ ହେ ମୁନିନାୟକ ।
ଓଁକାର ଯେ ମାୟାବୀଜ ଲକ୍ଷ୍ମୀ ବୀଜାକ୍ଷର
କାମୀଙ୍କ ବୀଜ କ୍ରମରେ ବସାଇ ତତ୍ପର ।
ମନସା ଦେବୀ ଶବଦ ଚତୁର୍ଥ୍ୟନ୍ତ କରି
ଶେଷେ ସ୍ୱାହା ଦୁଇଗୋଟି ଅକ୍ଷରକୁ ଧରି ।
ଏହିରୂପେ ମନ୍ତ୍ରଟିକୁ କରିଣ ଉଦ୍ଧାର
ପାଞ୍ଚଲକ୍ଷ ଜପ କରିପାରେ ଯେଉଁ ନର ।
ତାହାର ଯେ ମନ୍ତ୍ରସିଦ୍ଧି ହୁଅଇ ନିଶ୍ଚୟ
ବିଷ ହେବେ ତା ପକ୍ଷରେ ଅଟେ ସୁଧାମୟ ।
ଧନ୍ୱନ୍ତରି ସମାନ ଯେ ବୋଲାଇ ଲୋକରେ
ବିଷଯୋଗୁ ଭୟ ତାର ନୁହେଁ କେଉଁଠାରେ ।
ଆଷାଢ଼ ସଂକ୍ରାନ୍ତି ଦିନ ସ୍ନୁହୀ ଶାଖା ଆଣି
ଦେବୀ ଜ୍ଞାନରେ ପୂଜା କରିବ ଯେ ପୁଣି ।
ଆବର ମନସା ନାମ ପଞ୍ଚମୀ ଦିନରେ
ବଳି ଉପହାର ସମର୍ପଣ ଯେବା କରେ ।
ସେହି ଲୋକ ଧନବାନ ପୁତ୍ରବନ୍ତ ହୋଇ
ସୁଖେ ରହେ ଚିରକାଳ ଆୟୁଷକୁ ପାଇ ।

ପୂଜାର ବିଧାନ ସବୁ କହିଅଛୁ ପୂର୍ବେ
ଶ୍ରବଣ କର ଆଖ୍ୟାନ କହୁଅଛୁ ଏବେ ।
ଧର୍ମଙ୍କ ମୁଖରୁ ମୁହିଁ ଶୁଣିଅଛୁ ଯାହା
କହିବି ତୁମ୍ଭ ଆଗରେ ଆହେ ମୁନିନାଥ ।
ପୂର୍ବକାଳେ ନାଗଭୟେ ମାନବ ସମସ୍ତ
ତ୍ରାସ ଘର ଯୋଗକର ହେଲେ ଉଦ୍ବେଗେ ।
ଯାହାକୁ ଗୋଡ଼ାଇ ନାଗେ ଦଂଶନ କରନ୍ତି
ସେମାନେ ମୁହୂର୍ତ୍ତ ମଧ୍ୟେ ଜୀବନ ହରନ୍ତି ।
ସେ ସକାଶୁ ଦ୍ୱିଜଗଣ କଶ୍ୟପଙ୍କ ପାଶେ
ଉପସ୍ଥିତ ହୋଇ ଜଣାଇଲେ ସେ ବିରସେ ।
ତା ଶୁଣି କଶ୍ୟପ ମୁନି ବ୍ରହ୍ମାଙ୍କ ଆଦେଶେ
ମନ୍ତ୍ର ସରଜନା କଲେ ସର୍ପଙ୍କର ନାଶେ ।
ତପସ୍ୟାରେ ପୁଣି ମନଯୋଗରେ ଯେମନ୍ତ ।
ସର୍ଜନା କରନ୍ତେ ଏକ କନ୍ୟା ହେଲା ଜାତ
ତେଣୁ ସେ କନ୍ୟାର ନାମ ମନସା ହୋଇଲା ।
ରୂପ ଗୁଣରେ ତାହାର ସମ କେ ନ ଥିଲା ।
ବାଲ୍ୟ ସମୟରେ ତପ କରିବା ଇଚ୍ଛାରେ ।
ଗଲା ସେ କନ୍ୟକା ମହାଦେବଙ୍କ ପାଶରେ ।
ଭକ୍ତିଭରେ ପୂଜାକରି ଶ୍ରୀସଦାଶିବଙ୍କୁ
ସ୍ତୁତିକଲା ମସ୍ତକରେ ଯୋଡ଼ି ଶ କରକୁ ।
ଦିବ୍ୟ ସହସ୍ର ବରଷ ଗଲା ଏହିପରି
ପ୍ରସନ୍ନ ହୋଇଲେ ତହିଁ ଦେବ ତ୍ରିପୁରାରି ।
ମହାଜ୍ଞାନ ପୁଣି ତାକୁ ପଢ଼ାଇଲେ ବସି
ଅଷ୍ଟାକ୍ଷର କୃଷ୍ଣମନ୍ତ୍ର ଦେଲେ ହୋଇ ତୋଷ ।
ସେ ମନ୍ତ୍ର ସ୍ୱରୂପ ଶୁଣ ଆହେ ବ୍ରହ୍ମାତ୍ମଜ
ପ୍ରଥମରେ ଲକ୍ଷ୍ମୀମାୟା କାମଦେବ ବୀଜ ।
ତାପରେ କୃଷ୍ଣଦେବଙ୍କୁ ଚତୁର୍ଥ୍ୟନ୍ତ କରି
ଋଷିକ ଶେଷରେ ଦେଲେ ଠାକୁରଙ୍କୁ ଭରି ।
ଏ ବାହାରେ ତ୍ରିଲୋକ ମଙ୍ଗଳ କାରଣ
କବଚ ସ୍ତୋତ୍ର ଯେ ପୂଜାକ୍ରମ ଜପ ଧ୍ୟାନ ।
ପୁରଶ୍ଚରଣ ପ୍ରଭୃତି ବେଦୋକ୍ତ ପ୍ରକାରେ
ସମସ୍ତ ପ୍ରଦାନ କଲେ ଶିବ ସେ କାଳରେ ।
ମୃତ୍ୟୁଞ୍ଜୟ ମନ୍ତ୍ର ମଧ୍ୟ ଦେଇଣ ତାହାକୁ
ଆଜ୍ଞାଦେଲେ ଯାଅ ବୋଲି ପୁଷ୍କର ତୀର୍ଥକୁ ।
ଶଙ୍କର ଅନୁଜ୍ଞା ପାଇ ମନସା ସୁନ୍ଦରୀ
ପୁଷ୍କର ତୀର୍ଥରେ ତପ କଲେ ଯାଇକରି ।

ତିନିଯୁଗ ପର୍ଯ୍ୟନ୍ତେ ଶ୍ରୀକୃଷ୍ଣଙ୍କୁ ଚିନ୍ତି
ଧ୍ୟାନ କରୁଣ ରହିଲେ ସ୍ଥିରମନ ହୋଇ ।
ତାଙ୍କ ତପସ୍ୟାରେ ତୋଷ ହୋଇ ଦେବହରି ।
ପ୍ରତ୍ୟକ୍ଷ ହୋଇଲେ ପାଶେ ଶଙ୍ଖ ଚକ୍ର ଧରି ।
ଦେଖିଲେ ସେ ନବବାଳା ତପେ ଅତିଶୟେ
କ୍ଷୀଣ ହୋଇଅଛି ଗ୍ରୀଷ୍ମ ସରିତ ପରାୟେ ।
ସେ ସକାଶୁ ଦୟାକରି ଆଶ୍ୱାସନା କଲେ
ଜଗତରେ ପୂଜ୍ୟା ହୁଅ ବୋଲି ବରଦେଲେ
ଏ ବାହାରେ ଆଶୀର୍ବାଦ କରି ଅତିବେଗେ
ଅନ୍ତର୍ଦ୍ଧାନ ହୋଇ ଚଳିଗଲେ ଶୂନ୍ୟମାର୍ଗେ ।
ଏରୂପେ ମନସା ଦେବୀ ବର ତ ପାଇଲେ
ଶ୍ରୀକୃଷ୍ଣ ପ୍ରଥମେ ତାଙ୍କ ପୂଜାବିଧି କଲେ ।
ଦ୍ୱିତୀୟେ ପୂଜିଲେ ଦେବ କଇଳାସବାସୀ
ତୃତୀୟରେ ସୁରସୁର ମନୁ ମୁନି ଋଷି ।
ଏହିପରି କ୍ରମେ କ୍ରମେ ଜଗତମଧ୍ୟରେ
ପୂଜିତା ହେଲେ ମନସା ଦେବୀ ସବୁଠାରେ ।
ପୂର୍ବରେ କଶ୍ୟପ ମୁନି ଜରତ୍କାରୁଙ୍କୁ
ପ୍ରଦାନ କଲେ ଆନନ୍ଦେ ସେ କନ୍ୟାରତ୍ନକୁ ।
ଅଯାଚିତ ଭାବେ ତାକୁ ପାଇ ଜରତ୍କାରୁ
ଗ୍ରହଣ କରିଲେ ତୋଷେ ବ୍ରହ୍ମାଙ୍କ ଆଜ୍ଞାରୁ ।
ବିଧି ଅନୁସାରେ ସାରି ବିବାହ ବିଧାନ
ତାହାଙ୍କୁ ଘେନିଣ ସୁଖେ କଟାଇଲେ ଦିନ ।
ଏକଦିନେ ମୁନିବର ପଥଶ୍ରାନ୍ତ ହୋଇ
ପୁଷ୍କର ତୀର୍ଥରେ ବଟମୂଳେ ଥିଲେ ଶୋଇ ।
ପ୍ରିୟାଙ୍କ ଜଘନ ପରେ ଥୋଇଥିଲେ ଶିର
ଏହିକାଳେ ଅସ୍ତ ହେଲେ ଦିବସ ଈଶ୍ୱର ।
କ୍ରମେ ସାୟଂକାଳ ଆସି ହେଲା ଉପସ୍ଥିତ ।
ବାସ ଖୋଜିଗଲେ ପଶୁ ପକ୍ଷୀଏ ତ୍ୱରିତ ।
ତାହା ଦେଖି ପତିବ୍ରତା ମନସା କାମିନୀ
ପତିଙ୍କର ଗାଢ଼ନିଦ୍ରା ହୋଇଥିବା ଜାଣି ।
ବସି ମନରେ ବିଚାର କରନ୍ତି ସୁନ୍ଦରୀ
କିରୂପେ ଉଠିବେ କାନ୍ତ ନିଦ୍ରା ପରିହରି ।
ପଶ୍ଚିମ ସନ୍ଧ୍ୟା ସମୟ ହେଲା ଆସି ଏବେ
ଧର୍ମଲୋପ ହେବ ସନ୍ଧ୍ୟା ନ କରିବେ ଯେବେ ।
ଯେଉଁ ଲୋକ ପୂର୍ବା ପୁଣି ପଶ୍ଚିମା ସନ୍ଧ୍ୟାକୁ
ନ କରଇ ବ୍ରହ୍ମହତ୍ୟା ପାପ ଗ୍ରାସେ ତାକୁ ।

ଆବର ଅଶୁଚି ହୋଇ ରହେ ସେ ଜଗତେ
କେବଣ କର୍ମକୁ ଯୋଗ୍ୟ ନୁହେ କଦାଚିତେ ।
ଏହିରୂପେ ଅଛି ବେଦ ଶାସ୍ତ୍ରର ବିଚାର
ଏତେ ଭାବି ସେ ମନସା ହୋଇ ତରତର ।
ଧୀରେ ଧୀରେ ପତିଙ୍କର ନିଦ୍ରାଭଙ୍ଗ କଲେ
ସେହିକ୍ଷଣି ଉଠି ମୁନି ଆସନେ ବସିଲେ ।
ଭାର୍ଯ୍ୟାଙ୍କୁ ଅନାଇଣ ଅଳ୍ପ କ୍ରୋଧବନ୍ତ ।
ବୋଇଲେ ମୋହର ନିଦ୍ରା ଭାଙ୍ଗିଲ କିପାଇଁ ।
ଯେଉଁ ସ୍ତ୍ରୀ ପତିଙ୍କର ଅନିଷ୍ଟରେ ରତ
ହୁଅଇ ତାହାର ଯେତେ ଉପବାସ ବ୍ରତ ।
ଏ ବାହାରେ ଦାନ ହୋମ ବିଜ ଉପାସନା
ସମସ୍ତ ନିଷ୍ଫଳ ହୁଏ ଜାଣ ଗୋ ଅଙ୍ଗନା ।
ପତିଙ୍କୁ ଯେ ପୂଜା କରୁଥାଏ ପ୍ରତିଦିନ
ସନ୍ତୁଷ୍ଟ ହୁଅନ୍ତି ତାହାଠାରେ ଭଗବାନ ।
ପତିବ୍ରତା କାମିନୀର ଧର୍ମ ଆଚରଣ
ପତି ସେବାଠାରୁ ବଳନାହିଁ କିଛୁ ଜାଣ ।
ସକଳ ପ୍ରକାର ଦାନ ଯଜ୍ଞ ତୀର୍ଥସ୍ନାନ
ବ୍ରତ ଉପବାସ ଆଦି ଯେତେ ପୁଣ୍ୟ କର୍ମ ।
ପତିସେବା ଧର୍ମର ସେ କଳାଟିକୁ ସରି
ହୋଇବ ନାହିଁଟି ଜାଣିଥାଅ ଭଲକରି ।
ସବନ ଭାରତବର୍ଷେ ଯେଉଁ ସ୍ତ୍ରୀ ନିତି
ପତିଙ୍କର ସେବା କରୁଥାଏ ଦେଇମତି ।
ଅନ୍ତଃକାଳେ ସ୍ୱାମୀକୁଳେ ବଇକୁଣ୍ଠେ ଯାଇ
ଶତେ ବ୍ରହ୍ମ ବର୍ଷ ମହାସୁଖେ ରହେ ତହିଁ ।
ଯେଉଁ ନାରୀ ଜାଣି ଜାଣି ପତିର ଅପ୍ରିୟ
କରଇ ଅଥବା ବାକ୍ୟ କହେ ବିଷମୟ ।
ଅନ୍ତଃକାଳେ କୁମ୍ଭୀପାକ ନରକେ ପଡ଼ଇ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ କଷ୍ଟ ପାଉଥାଇ ।
ସେ ଅନ୍ତେ ଜନମ ହୁଏ ଚଣ୍ଡାଳ ଯୋନିରେ
ପତିପୁତ୍ର ବିବର୍ଜିତ ହୁଏ ସେ କାଳରେ ।
ଏହିରୂପେ କହି ମୁନି ମଉନେ ରହିଲେ
ମନସା ତାହାଙ୍କ ମନକଥାକୁ ଜାଣିଲେ ।
ସେଘେନ ଦୁଃଖିତାହୋଇ ବୋଇଲେ ହେ ନାଥ
ତୁମ୍ଭେ ଯେ ଗାଢ଼ ନିଦ୍ରାରେ ହେଲେ ଅସଇତ ।
ବହୁଁ ବହୁଁ ଅସ୍ତାଚଳେ ପ୍ରବେଶିଲେ ରବି
ଆସିଲା ସନ୍ଧ୍ୟା ସମୟ ଧରି କଳା ଛବି ।

ସନ୍ଧ୍ୟା ନ କଲେ ପାତକ ହେବ ବୋଲି କରି
ଭାଙ୍ଗିଲି ତୁମ୍ଭର ନିଦ୍ରା ବହୁତ ବିଚାରି ।
ତହିଁରେ ଯଦ୍ୟପି ଦୋଷ ହୋଇଲା ମୋହର
ଅନୁଗ୍ରହ କରି ତୁମ୍ଭେ ତାହା କ୍ଷମାକର ।
ଶୃଙ୍ଗାର ଆହାର ନିଦ୍ରା ଭଙ୍ଗ ଯେ କରଇ
ଅନ୍ତଃକାଳେ କାଳସୂତ୍ରେ ଯାଇ ସେ ପଡ଼ଇ ।
ଏକଥା ମୁଁ ଭଲରୂପେ ଜାଣିଥିଲି ହେଲେ
ପାପଭୟେ ନିଦ୍ରାଭଙ୍ଗ କଲି ଜାଣ ଭଲେ ।
ଏମନ୍ତ ବୋଲି ମନସା ସ୍ୱାମୀଙ୍କର ପାଦେ
ପ୍ରଣାମ କରିଣ ଭୟେ ଶୋକ ଗଦଗଦେ ।
ଆପଣାର ଦୋଷ କ୍ଷମା କରିବାର ପାଇଁ
ଜଣାଇଲେ ପୁନଃ ପୁନଃ ଆହେ ଋଷିସାଇଁ ।
ତାହା ଦେଖି ଜରତ୍କାରୁ ବିସ୍ମୟ କାହିଁତେ
ସୂର୍ଯ୍ୟଙ୍କୁ ଶାପ ଦେବାକୁ ନିଶ୍ଚୟ କରନ୍ତେ ।
ସେହିକ୍ଷଣ ଦିବାକର ସେକଥା ଜାଣିଲେ
ମୁନିଙ୍କ ପାଶରେ ଆସି ଉପସ୍ଥିତ ହେଲେ ।
ବିନୟ ଭକ୍ତିରେ ତାଙ୍କୁ କହିଲେ ବଚନ
ବୋଇଲେ ଶୁଣିବା ହେଉ ଆହେ ତପୋଧନ ।
ସନ୍ଧ୍ୟା ହେବା ଯୋଗେ ଧର୍ମ ଲୋପ ଭୟକରି
ଉଠାଇଲେ ଆପଣଙ୍କୁ ମନସା ସୁନ୍ଦରୀ ।
ସେତେବେଳେ ପଶ୍ଚିମ ଅସ୍ତ ହୋଇ ମୁଁ ନ ଥିଲି
ମୋତେ କାହିଁପାଇଁ ଶାପ ଦେଉଛ ନ ଜାଣି ।
ଆପଣଙ୍କ ପକ୍ଷେ ଏହା ନୁହଇ ଉଚିତ
ଯେହେତୁ ଦ୍ୱିଜଙ୍କ ହୃଦ ନବନୀତବତ ।
କ୍ଷଣେ ମାତ୍ର କ୍ରୋଧ କରି ପୁଣି ଶାନ୍ତ ହୁଏ
ଏମନ୍ତ ଉତ୍ତମ ଗୁଣ ଦ୍ୱିଜଠାରେ ଥାଏ ।
କ୍ରୋଧରେ ବ୍ରାହ୍ମଣ ଯେବେ ଅନାଇବେ ଜଳ
ମୁହୂର୍ତ୍ତ ମଧ୍ୟେ ଜଗତ ଯିବ ନଷ୍ଟେ ଜଳ ।
ପୃଷ୍ଠି ସରଜନା କରି ପାରନ୍ତି ବ୍ରାହ୍ମଣ
ତାଙ୍କଠାରୁ ତେଜୋବନ୍ତ ନାହିଁ କେହି ଜାଣ ।
ଉତ୍ତମ ବଂଶରେ ଜାତ ଯେବଣ ବ୍ରାହ୍ମଣ
ସର୍ବଦା ସେ କରୁଥାନ୍ତି ଶ୍ରୀକୃଷ୍ଣଙ୍କୁ ଧ୍ୟାନ ।
ସୂର୍ଯ୍ୟଙ୍କ ବଚନ ଶୁଣି ଜରତ୍କାରୁ ଋଷି
ଆଶୀର୍ବାଦ କଲେ ତାଙ୍କୁ ହୋଇ ମହାତୋଷୀ ।
ମେଲାଣି ମାଗିଣ ରବି ନିଜ ସ୍ଥାନେ ଗଲେ
ଏଥୁ ଅନନ୍ତରେ ଯାହା ହେଲା ଶୁଣ ଭଲେ ।

ସତ୍ୟକୁ ପାଳିବା ପାଇଁ ମୁନି ଜରତ୍କାରୁ
ମନସା ଦେବୀଙ୍କୁ ତ୍ୟାଗ କଲେ ସମୀପରୁ ।
କାତର ହୋଇଣ ଶୋକ କରନ୍ତେ ସୁନ୍ଦରୀ
ଅସ୍ଥିର ହୋଇଲେ ମୁନି ଧୈର୍ଯ୍ୟ ତ୍ୟାଗକରି ।
ସେ କାଳେ ମନସା ଦେବୀ ଗୁରୁ ବିଲୋଚନ
ଏ ବାହାରେ ଇଷ୍ଟଦେବ ଶ୍ରୀ ମଧୁସୂଦନ
ଜନକ କଶ୍ୟପ ମୁନି ସନ୍ନତରେ ପୁଣି
ସୁମରଣା କଲେ ମହାଭୟ ହୃଦେ ଘେନି ।
ତା ଜାଣି ଶ୍ରୀକୃଷ୍ଣ ଶିବ ବ୍ରହ୍ମା ଯେ କଶ୍ୟପ
ମିଳିଲେ ସେକ୍ଷଣି ଆସି ମନସା ସମୀପ ।
ଇଷ୍ଟଦେବଙ୍କୁ ପାଶରେ ଦେଖି ଦ୍ୱିଜବର
ଚରଣ ଧରି ପ୍ରଣାମ କଲେ ବାରମ୍ବାର ।
ଆବର ବହୁତ ସ୍ତୁତି କରି ଭକ୍ତିଭଲେ
ବ୍ରହ୍ମା ଶିବଙ୍କ ପାଦରେ ନମିଲେ ସତ୍ୱରେ ।
କଶ୍ୟପ ମୁନିଙ୍କୁ ପୁଣି ନମସ୍କାର କରି
ଆସିବା କାରଣ ପୁଚ୍ଛାକଲେ ତପସ୍ୱୀ ।
ତାହା ଶୁଣି ପ୍ରଜାପତି ହୋଇ ଆଗଭର
କହିଲେ କୃଷ୍ଣଙ୍କପାଦେ କରି ନମସ୍କାର ।
ବୋଇଲେ ହେ ଦ୍ୱିଜକୁଳ କୁମୁଦଶଶାଙ୍କ
ଜାଣିଛୁ ମୁଁ ସବୁ ତୁମ୍ଭମନକଥା ଯାକ ।
ଯେବେ ଧର୍ମପତ୍ନୀ ତ୍ୟାଗ କରିବାକୁ ତୁମ୍ଭେ
ଇଚ୍ଛା କରିଅଛ ଶୁଣ କହୁଛୁ ଯା ଆମ୍ଭେ ।
ପ୍ରଥମରେ ନିଜ ଧର୍ମ ପାଳନା ସକାଶେ
ଏହାଙ୍କଠାରେ ତନୟ ଜାତକରି ତୋଷେ ।
ଯତି ବ୍ରହ୍ମଚାରୀ ଅବା ଭିକ୍ଷୁ ବନଚର
ଧର୍ମପତ୍ନୀଠାରେ ଜାତ କରିବ କୁମର ।
ସେ ଅନ୍ତରେ ମୁନି ହୋଇ ଆଚରିବ ଧର୍ମ
ଏରୂପେ ଅଟଇ ବର୍ଣ୍ଣ ଆଶ୍ରମର କ୍ରମ ।
ପୁତ୍ର ଜାତ ନ କରି ଯେ ଧର୍ମପତ୍ନୀ ଛାଡ଼ି
ବୁଲଇ ସନ୍ନ୍ୟାସୀ ହୋଇ ଘେନି ଆଶାବାଡ଼ି ।
ଯେଉଁରୂପେ ଚାଲୁଣୀରେ ଢାଳଦେଲେ ଜଳ
ନ ରହି ତଳକୁ ଗତି କରଇ ଚଞ୍ଚଳ ।
ସେହିପରି ତାର ଧର୍ମ କର୍ମ ଆଦି ଯେତେ
ନଷ୍ଟ ହୁଅନ୍ତି ସର୍ବେ ନ ରହି କଥିତେ ।
ଏମନ୍ତ ପ୍ରଜାପତିଙ୍କ ବଚନକୁ ଶୁଣି
ହରଷରେ ଜରତ୍କାରୁ ଋଷି କୁଳମଣି ।

ମନ୍ତ୍ର ପଢ଼ି ପ୍ରିୟାଙ୍କର ନାଭିକୁ ଛୁଇଁଲେ
ତାହା ଦେଖି ଦେବତାଏ ଆଶୀର୍ବାଦ କଲେ
ମୁନିଙ୍କୁ ମେଲାଣି ମାଗି ଏଥୁ ଅନନ୍ତରେ
ବିମାନ ଆରୋହି ଗଲେ ଯେ ଯାହାରପୁରେ ।
ମୁନିଙ୍କ ସ୍ପର୍ଶନ ଯୋଗେ ମନସା କାମିନୀ
ଗର୍ଭବତୀ ହୋଇ ଦେଖାଗଲେ ସେହିକ୍ଷଣି ।
ତାହା ଦେଖି ଜରତ୍କାରୁ ହରଷିତ ହେଲେ
ପ୍ରିୟାଙ୍କୁ ମଧୁରବାକ୍ୟ ସେକାଳେ କହିଲେ ।
ବୋଇଲେ ଗୋ ପ୍ରିୟବତୀ ଏ ଗର୍ଭେ ତୁମ୍ଭର
ଜାତ ହୋଇବ ଉତ୍ତମ ସୁନ୍ଦର କୁମର ।
ଜିତେନ୍ଦ୍ରିୟ ଧର୍ମବନ୍ତ ବଇଷ୍ଣବ ଶ୍ରେଷ୍ଠ
ତେଜସ୍ୱୀ ତପସ୍ୱୀ ସର୍ବଗୁଣରେ ଉତ୍କୃଷ୍ଟ ।
ବେଦବିଜ୍ଞ ଜ୍ଞାନବନ୍ତ ଯୋଗୀଗଣ ବର
ହୋଇବ ତୁମ୍ଭର ସୁତ ସନ୍ଦେହ ନ କର ।
ସପତପୁରୁଷ ମୁକ୍ତ କରିବ ସେ ଜାଣ
ତାର ଜନ୍ମକାଳେ ତୋଷ ହେବେ ପିତୃଗଣ ।
ପତିବ୍ରତା ପ୍ରିୟବତୀ ସୁପୁତ୍ରଜନନୀ
ଉତ୍ତମ କୁଳସମ୍ଭବା ଅଟେ ଯେ କାମିନୀ ।
ସେ ଏକା ଉତ୍ତମ ଜାୟା ବୋଲାଏ ଜଗତେ
ତା ଯୋଗେ ଭୁଞ୍ଜନ୍ତି ସୁଖ କୁଟୁମ୍ବ ସମସ୍ତେ ।
ହରିଭକ୍ତି ଦିଅଇ ଯେ ବନ୍ଧୁ ତାକୁ ବୋଲି
ସୁଖଦେବା ଲୋକଟିକୁ ଇଷ୍ଟବୋଲି ଘେନି ।
ସଂସାର ବନ୍ଧନଛେଦୀ ହରିଭକ୍ତି ରସ
ପ୍ରଦାନ କରଇ ଯେଉଁ ପିତା ହୋଇ ତୋଷ ।
ଜଗତେ ଉତ୍କୃଷ୍ଟ ପିତା ବୋଲାଏ ସେ ଜାଣ
ଯେଉଁ ମାତା କରେ ଗର୍ଭ କଷ୍ଟରୁ ରକ୍ଷଣ ।
ସେହି ଅଟଇ ଉତ୍ତମ ମାତା ଏ ସଂସାରେ
ସେହି ଗୁରୁ ବିଷ୍ଣୁମନ୍ତ୍ର ଦିଏ ଯେ କର୍ଣ୍ଣରେ ।
ବିଦ୍ୟାଦ ତା ମଧ୍ୟ ଗୁରୁ ବୋଲାଏ ନିଶ୍ଚିତେ
ଶ୍ରୀକୃଷ୍ଣ ବିଷୟଜ୍ଞାନ ସାର ଏ ଜଗତେ ।
ଯାହାଙ୍କଠାରୁ ଉତ୍ପନ୍ନ ହୁଏ ଚରାଚର
ଯାହାଙ୍କ ଯୋଗରେ ପୁଣି ହୁଅଇ ସଂହାର ।
ସେହି ପରମାତ୍ମା ବିନା ଅନ୍ୟ ଜ୍ଞାନ ଯାହା
ଜ୍ଞାନ ମଧ୍ୟରେ ଗଣନା ନ ହୁଅଇ ତାହା ।
ବେଦରେ ଯୋଗରେ ସାର ଶ୍ରୀହରି ସେବନ
ବିଡ଼ମ୍ବନା ଅଟେ ସବୁ ତହିଁରୁ ଯେ ଆନ ।

ତୁମ୍ଭଙ୍କୁ ଉତ୍ତମ ଜ୍ଞାନ ଦେଉଅଛୁ ମୁହିଁ
ଜ୍ଞାନଦାନ ଉପଯୁକ୍ତ ସ୍ୱାମୀ ଯେ ଅଟଇ ।
ଜ୍ଞାନବଳେ ସଂସାରରୁ ମୁକ୍ତ ହୁଏ ଲୋକ
ଜ୍ଞାନହୀନ ଅଟଇ ଯେ ମୂଢ଼ ଅବିବେକ ।
ଯଥାର୍ଥ ଗୁରୁ ଯେ ବିଷ୍ଣୁ ଭକ୍ତିମନ୍ତ୍ର ଜ୍ଞାନ
ଦିଅନ୍ତି ଏଥିରେ କିଛି ସନ୍ଦେହ ନ ଘେନ ।
ଯେଉଁଗୁରୁ କର୍ମ ବନ୍ଧନରୁ ମୁକ୍ତ କରି
ନ ପାରେ ଅଟଇ ସେହି ପ୍ରକୃତ ବଇରୀ ।
ଜନମ ଗର୍ଭରେ ବାସ ଯମଙ୍କ ତାଡ଼ନା
ଏମନ୍ତେ ସଂସାର ମଧ୍ୟେ ଯେତେକ ଯାତନା ।
ଯେ ଲୋକ ତହିଁରୁ ମୁକ୍ତ କରି ନ ପାରିବ
ତାଙ୍କୁ ଗୁରୁ ବନ୍ଧୁ ବୋଲି କପାଇଁ ବୋଲିବ ।
ପରମ ଆନନ୍ଦ ରୂପ ନିତ୍ୟ ସୁଖକର
ନ ଦେଖାଏ ଶ୍ରୀକୃଷ୍ଣଙ୍କ ମାର୍ଗ ଯେଉଁ ନର ।
ତାହାକୁ ଗୁରୁ ବୋଲିଣ ଈଶ୍ୱର ଯେ କରେ
ଅଧମ ଅଟଇ ସେହି ଲୋକଙ୍କ ମଧ୍ୟରେ ।
ଏ ଘେନ ବୋଲୁଛି ତୁମ୍ଭେ ସବୁକଥା ତେଜି
ଦିନ ନିଅ ଶ୍ରୀକୃଷ୍ଣଙ୍କ ପାଦପଦ୍ମ ଭଜି ।
ସେ ଦେବ ପରମ ବ୍ରହ୍ମ ନିର୍ଗୁଣ ସ୍ୱରୂପ
ତାଙ୍କୁ ସେବାକଲେ ସର୍ବ ପାପହୁଏ ଲୋପ ।
ଛଳରେ ତୁମ୍ଭଙ୍କୁ ତ୍ୟାଗ କରୁଅଛୁ ମୁହିଁ
ଏ ଦୋଷ ମୋହର କ୍ଷମାକର ପ୍ରାଣସହି ।
ସାଧ୍ୱୀ ଅଟନ୍ତି ଯେଉଁ ନିତମ୍ବିନୀ ଜନେ
ସତ୍ତ୍ୱଗୁଣେ ନ ରହଇ କ୍ରୋଧ ତାଙ୍କ ମନେ ।
ତୁମ୍ଭେ ତ ପତିବ୍ରତାଙ୍କ ହୋଇଛ ଅଗ୍ରଣୀ
ଆନନ୍ଦେ ଗୃହକୁ ଫେରିଯାଅ ଏହିକ୍ଷଣି ।
ପୁଷ୍କର ତୀର୍ଥରେ ତପ କରିବି ମୁଁ ଯାଇ
ସର୍ବଦା ଶ୍ରୀକୃଷ୍ଣଙ୍କର ପାଦପଦ୍ମ ଧ୍ୟାୟି ।
ବିଷୟ ଭୋଗରେ ମନ ଥାଏ ଯାହାଙ୍କର
ଧନ ପୁତ୍ର ଦାରିଯାଙ୍କୁ ବୋଲନ୍ତି ଯେ ମୋର ।
ନିଷ୍ଠୁର ଅଟନ୍ତି ଯେଉଁ ତପିଜନମାନେ
ତାହାଙ୍କର ମନୋରଥ ଶ୍ରୀକୃଷ୍ଣ ଚରଣେ ।
ଏହିରୂପେ ମୁନିଙ୍କର ବଚନକୁ ଶୁଣି
ଶୋକରେ କାତର ହୋଇ ମନସା ତରୁଣୀ ।
ବିନୟରେ ତାହାଙ୍କର ଆଗେ ଉଭାହୋଇ
ବୋଇଲେ ମୋଠାରୁ ଶୁଣ ଆହେ ଗୋସାଇଁ ।

ନିଦ୍ରାଭଙ୍ଗ କରିବାରୁ ଛାଡ଼ିଲ ତ ମୋତେ
ଗୋଟିଏ କଥା ମାଗଇ ରହିଥିବ ଚିତ୍ତେ ।
ସୁମରଣା କରୁଥିବ ଯେତେବେଳେ ମୁହିଁ
ପାଶରେ ପ୍ରବେଶ ହେଉଥିବ ଦୟାବହି ।
ସାମାନ୍ୟରେ କଷ୍ଟକର ହୁଏ ବନ୍ଧୁଭେଦ
ପୁତ୍ର ବିରହେ ହୁଅଇ ତହିଁ ବଳି ଖେଦ ।
ସବୁଠାରୁବଳି ପତି ବିରହ ଅଧିକ
ପତି ବିଚ୍ଛେଦେ ଆକୁଳ ହୁଅନ୍ତି ପ୍ରାଣୀଯାକ ।
ଶତପୁତ୍ରଠାରୁ ପତି ଅଧିକ ଅଟନ୍ତି
ଏହିରୂପେ ପତିବ୍ରତା କାମିନୀଙ୍କ ଗତି ।
ଯେସନ୍ତେ ପିତାମାତାଙ୍କର ଏକ ପୁତ୍ରଠାରେ
ବିଷ୍ଣୁ ଭକ୍ତଙ୍କର ଯଥା ଶ୍ରୀକୃଷ୍ଣ ପାଦରେ ।
ଯେଉଁରୂପେ ଏକଚକ୍ଷୁ ଲୋକମାନଙ୍କର
ନେତ୍ରଠାରେ ଜାତ ହୁଏ ଅତ୍ୟନ୍ତ ଆଦର ।
ତୃଷିତ ଲୋକର ଜଳେ ସ୍ନେହ ଯେଉଁପରି
ଯେରୂପେ କ୍ଷୁଧାର୍ତ୍ତ ରହେ ଅନ୍ନକୁ ସୁମରି ।
କାମୁକ ହୁଅଇ ଯେସନ୍ତେ କାମିନୀରେ ରତ
ଆନନ୍ଦ ଯେରୂପେ ଚୋର ଦେଖି ପରବିତ୍ତ ।
ଜାରପୁରୁଷ ପାଇଲେ କୁଳଟା ଯେ ରୂପେ
ଉପସ୍ଥିତ ହୁଏ ତାର ନିକଟରେ ଆପେ ।
ଶାସ୍ତ୍ରରେ ସ୍ନେହ କରନ୍ତି ପଣ୍ଡିତେ ଯେପରି
ବଣିକ ଯେରୂପେ ନିଜେ ବାଣିଜ୍ୟ ସୁମରି ।
ସେହିରୂପେ ସତୀ ସ୍ତ୍ରୀମାନଙ୍କର ମନ
କାନ୍ତଠାରେ ରତହୋଇ ରହିଥାଏ ଜାଣ ।
ଏମନ୍ତ କହି ମନସା ସ୍ୱାମୀପାଦେ ପଡ଼ି
ଦୁଃଖିତା ହୋଇଣ ଉଚ୍ଚସ୍ୱରେ କାନ୍ଦେ ରଡ଼ି ।
ତାହା ଦେଖି ମୁନିବର ଦୟାକରି କ୍ଷଣେ
ଉଠାଇ ତାହାକୁ କୋଳେ ଧରିଲେ ତକ୍ଷଣେ ।
ସତୀଙ୍କର ନେତ୍ରଜଳେ ତାହାଙ୍କର କୋଳ
ଓଦା ହୋଇଗଲା ଜାଣ ଆହେ ତପଶୀଳ ।
ମୁନିଙ୍କ ନେତ୍ରରୁ ମଧ୍ୟ ଲୋତକ ବହିଲା
ମନସା ଦେବୀଙ୍କ ସବୁ ଅଙ୍ଗ ତିନ୍ତିଗଲା ।
ସେଅନ୍ତରେ ଦୁହିଙ୍କର ଉଦେହେଲା ଜ୍ଞାନ
ପାସୋରି ହୋଇଲା ପୂର୍ବ ଦୁଃଖ କଥାମାନ ।
ଶ୍ରୀକୃଷ୍ଣଙ୍କ ପାଦପଦ୍ମ ହୃଦରେ ସୁମରି
ତପସ୍ୟା କରିବା ପାଇଁ ଗଲା ତପସ୍ୱୀ ।

ଘଲ୍‌ବେଳେ ମନସାକୁ ପ୍ରବୋଧି କହୁନ
ନର୍ମଦ ବନମଧ୍ୟରେ ହେଲେ ଉପସ୍ଥିତ ।
ତା ଦେଖି ହରଷ ହବେ ମନସା ସୁନ୍ଦରୀ
ପ୍ରବେଶ ହୋଇଲେ ଯାଇ କଇଳାସଗିରି ।
ତାହାଙ୍କ ଶୋକ କରିବା ଦେଖିଣ ପାର୍ବତୀ
ସମ୍ବୋଧନା କଲେ କଥା କହି ନାନାମତି ।
ଅତ୍ୟନ୍ତ ମଙ୍ଗଳମୟ ଅଟେ ଶିବାଳୟ
ତହିଁରେ ରହିଲେ ସତୀ ଛାଡ଼ି ସବୁ ଭୟ ।
ପ୍ରଶସ୍ତ ଦିବସେ ପୁଣି ମଙ୍ଗଳ କ୍ଷଣରେ
ଉତ୍ତମ କୁମର ଜାତ କଲେ ସେ କାଳରେ ।
ସେ ତନୟ ନାରାୟଣ ଅଂଶରେ ଉତ୍ପନ୍ନ
ଯୋଗୀଜନ ଗୁରୁ ଜ୍ଞାନୀଜନଙ୍କ ମଣ୍ଡନ ।
ଗର୍ଭେ ଥିବା ସମୟରେ ଶଙ୍କରଙ୍କଠାରୁ
ବିବିଧ ପ୍ରକାରେ ତତ୍ତ୍ୱଜ୍ଞାନ ଶୁଣିବାରୁ ।
ସକଳ ବିଷୟେ ସେହୁ ଅଟଇ ନିପୁଣ
ନୂହନ୍ତି ତାହାର ସମ ଶାସ୍ତ୍ରବନ୍ତ ଜନ ।
ଜନ୍ମହେବା କାଳେ ତାର ଜାତକର୍ମମାନ
ଏ ବାହାରେ ବେଦପାଠ ମଙ୍ଗଳ ବିଧାନ ।
ନିଜେ ଆସି ସଦାଶିବ ସମାଦର କଲେ
ତିନିଲକ୍ଷ କୋଟି ସ୍ୱର୍ଣ୍ଣ ବ୍ରାହ୍ମଣଙ୍କୁ ଦେଲେ ।
ପାର୍ବତୀ ଦେବୀ ଯେରୂପେ ଲକ୍ଷେ ଗୋଟି ଗାଈ
ଦେଲେ କେତେ ଧନରତ୍ନ ସୁବର୍ଣ୍ଣ ମିଶାଇ ।
ଏଥୁଅନ୍ତେ ସଦାଶିବ ଷଡ଼ଅଙ୍ଗ ଭୁଲେ
ବାଳକକୁ ସ୍ୱରବେଦ ପାଠ କରାଇଲେ ।
ଏ ବାହାରେ ମୃତ୍ୟୁଞ୍ଜୟ ଜ୍ଞାନ ଦେଇକରି
ସକଳ ବିଷୟ ବୁଝାଇଲେ ସେହିପରି ।
ନିଜ କାନ୍ତାଠାରେ ପୁଣି ଇଷ୍ଟଦେବତାରେ
ଆଦର ଶ୍ରୀନାରାୟଣ ପଦ-କମଳରେ ।
ମନସା କାମିନୀଙ୍କର ଭକ୍ତିଭାବ ଥିଲା
ତେଣୁ ତାଙ୍କ ପୁତ୍ର ନାମ ଆସ୍ତିକ ହୋଇଲା ।
ଈଶ୍ୱରଙ୍କ ଆଦେଶରେ ଯାଇ ସେ କୁମର
ପୁଷ୍କର ତୀର୍ଥରେ ଆଚରିଲେ ତପ ଘୋର ।
ବିଷ୍ଣୁଙ୍କର ମହାମନ୍ତ୍ର ଜପକରି ତହିଁ
ତିନିଲକ୍ଷ ଦିବ୍ୟ ବର୍ଷ ବେଳେ ସେ କଟାଇ ।
ଲେଉଟି କୈଳାସ ଗିରିଶିଖରେ ମିଳିଲେ
ଶଙ୍କରଙ୍କ ପାଦ ଧରି ନମସ୍କାର କଲେ ।

ସେ ଅନ୍ତେ ମନସାଦେବୀ କୁମରକୁ ଘେନି
ଈଶ୍ୱରଙ୍କଠାରୁ ଆଜ୍ଞା ପାଇ ସେହିକ୍ଷଣି ।
ନିଜ ପିତା କଶ୍ୟପଙ୍କ ଗୃହେ ପରବେଶ
ହୁଅନ୍ତେ ତାହାଙ୍କୁ ଦେଖି ମୁନିଗଣେଶ ।
ପୁତ୍ର କୋଳେ ନେଇ ଅତି ଆଦରେ ରଖିଲେ
ଶତଲକ୍ଷ ରତ୍ନ ଆଣି ବ୍ରାହ୍ମଣଙ୍କୁ ଦେଲେ ।
ବହୁତ ଦ୍ୱିଜଙ୍କୁ ପୁଣି ଡକାଇ ଭୋଜନ
ଦେଲେ ଅଶେଷ ଆନନ୍ଦିତ କରି ମନ ।
ଦିତି ଅଦିତି ପ୍ରଭୃତି ଯେତେ ସ୍ତ୍ରୀ ଥିଲେ
ସମସ୍ତେ ଝିଅ ନାତିଙ୍କୁ ଦେଖି ତୋଷ ହେଲେ ।
କୁମରକୁ ସଙ୍ଗେ ଘେନି ଆନନ୍ଦ ମନରେ
ରହିଲେ ମନସା ନିଜ ପିତାଙ୍କର ଘରେ ।
ଏଥୁଅନନ୍ତରେ ଯାହା ହେଲା ଶୁଣ ମୁନି
ଅଭିମନ୍ୟୁ ପୁତ୍ର ପରୀକ୍ଷିତ ମହାଜ୍ଞାନୀ ।
ଦଇବ ଦୋଷରେ ମନ୍ଦକର୍ମରୁ ସେ ନୃପ
ପାଇଲେ ଦ୍ୱିଜଙ୍କଠାରୁ ମହାଘୋର ଶାପ ।
ସେ ଶାପ ସ୍ୱରୂପ ଏବେ କହୁଅଛି ଶୁଣ
ମୃଗୟାରୁ ପରୀକ୍ଷିତ ଫେରି ଏକ ଦିନ ।
ଆସିବାବେଳେ କ୍ଷୁଧାରେ ହୋଇଣ ଆକୁଳ
ଦେଖିଲେ ବାଟରେ ଏକ ବୃଦ୍ଧ ତପଃଶୀଳ ।
ବସିଛନ୍ତି ଯୋଗଧ୍ୟାନେ ଶବରେଖା ପରି
ପଚାରିଲେ ତାଙ୍କୁ କେତେ କଥା ଦଣ୍ଡଧାରୀ ।
ଉତ୍ତର ନ ଦେଲେ ଯହୁଁ ତପୀଗଣ ଈଶ
କ୍ରୋଧରେ ରାଜନ ହୋଇ ଅତ୍ୟନ୍ତ ଅବଶ ।
ନିକଟରେ ଏକ ମୃତ ସର୍ପ ପଡ଼ିଥିଲା
ଲମ୍ବାଇଲେ ନେଇ ତାଙ୍କୁ ମୁନିଙ୍କର ଗଳା ।
ମୁନି ତ ଯୋଗରେ ମନ ଧ୍ୟାନ ଢାଳିଥିଲେ
ରାଜାଙ୍କ ଅମତ କଥା ଜାଣି ନ ପାରିଲେ ।
ଅଳପ ସମୟ ପରେ ଶୃଙ୍ଗୀ ନାମଧେୟ
ମିଳିଲେ ସେଠାରେ ଆସି ମୁନିଙ୍କ ତନୟ ।
ଦେଖିଲେ ପିତାଙ୍କ ଗଳେ କେଉଁ ଦୁଷ୍ଟମତି
ଲମ୍ବାଇଛି ମୃତ ସର୍ପ ଛାଡ଼ି ମନୁ ଖ୍ୟାତି ।
ସେ ସକାଶୁ ନ ଧଇରେ ହୋଇ ପରଚଣ୍ଡ
ବୋଇଲେ କଏ ସେ ତୁଚ୍ଛ ଅଟୁରେ ପାଷାଣ୍ଡ ।
ଫଳ ମୂଳ ଖାଇ ବନେ କରୁଛି ଯେ ତପ
ତାହାର ଗଳାରେ ଦେଲୁ କମ୍ପା ମୃତ ସର୍ପ ।

ତୋହଠାରେ କହାହୋଇ ହଣଥିଲେ ସେହି
ଏକଥା ମନରେ ଥରେ ବିଗୃହଲୁ ନାହିଁ ।
ଏ ସକାଶୁ ଆଜଠାରୁ ସାତଦିନ ପରେ
ମରିବୁ ତୁ ବିଷଧର ସର୍ପ ଦଂଶନରେ ।
ଧର୍ମର ପ୍ରଭାବ ଯେବେ ସତ୍ୟ ହୋଇଥିବ
ମୋହର ବଚନ ତେବେ ଅନ୍ୟଥା ନ ହେବ ।
ଏହିରୂପେ ମୁନିଙ୍କର ଶାପ ଦେବା ଶୁଣି ।
ଦୁଃଖିତ ହୋଇଣ କୁରୁକୁଳ ନୃପମଣି ।
ଆପଣାର କରମକୁ ବହୁତ ନିନ୍ଦିଲେ
ଗଙ୍ଗାନଦୀ ତୀରେ ଯାଇ ପ୍ରବେଶ ହୋଇଲେ ।
ସାତଦିନ ପରଯନ୍ତେ ସେହିଠାରେ ରହି
ଶୁଣିଲେ ଧର୍ମ ସଂହିତା ଶୁକଙ୍କୁ ଡକାଇ ।
ସେ ଅନ୍ତରେ ସାତଦିନ ହୁଅନ୍ତେ ସମାପ୍ତ
ଆସିଲେ ତକ୍ଷକ ଯହିଁ ଥିଲେ ପରୀକ୍ଷିତ ।
ତାହା ଜାଣି ଧନ୍ୱନ୍ତରୀ ଦେବ ବୈଦ୍ୟରାଜ
ଭେଟିଲେ ବାଟରେ ତାଙ୍କୁ ହୋଇ ସଜବାଜ ।
ଘଡ଼ିଏ ପର୍ଯ୍ୟନ୍ତେ ଦୁହେଁ ତର୍କି ବାଦକଲେ
ଧନ୍ୱନ୍ତରୀଙ୍କ ପ୍ରଭାବ ତକ୍ଷକ ଜାଣିଲେ ।
ସେ ଯେନ ତାହାଙ୍କୁ ଦିବ୍ୟମଣିଟିଏ ଦେଇ
ସେହିଠାରୁ ନିଜପୁରେ ଦେଲେ ବାହୁଡ଼ାଇ ।
ଧନ୍ୱନ୍ତରୀ ତ ରାଜାଙ୍କୁ ଜିଆଇ ଦେବାକୁ
ଯାଉଥିଲେ ଶୁଣି ତହୁଁ ତକ୍ଷକ ବାକ୍ୟକୁ ।
ମଣି ଘେନ ଆପଣାର ଗୃହକୁ ଫେରିଲେ
ତକ୍ଷକ ପରୀକ୍ଷିତଙ୍କ ପାଶରେ ମିଳିଲେ ।
ମଞ୍ଚାପରେ ବସିଥିଲେ ନର ଅଧୀଶ୍ୱର
ତାହାଙ୍କୁ ଯାଇ ଦଂଶନ କଲେ ସେ ସତ୍ୱର ।
ଶ୍ରୀହରିଙ୍କୁ ପୁନଃପୁନଃ ସୁମରଣା କରି
ପ୍ରବେଶ ହୋଇଲେ ରାଜା ବଇକୁଣ୍ଠ ପୁରୀ ।
ପିତାଙ୍କ ମରଣ ବାର୍ତ୍ତା ଶୁଣି ଜନ୍ମେଜୟ
ଘଡ଼ିଏ ଯାଏ ଶୋକରେ ହୋଇଲେ ଅଥୟ ।
ସେ ଅନ୍ତରେ ଧୈର୍ଯ୍ୟଧରି ଯୁଦ୍ଧ କାର୍ଯ୍ୟମାନ
ଦ୍ୱିଜଙ୍କୁ ପଚାରି ସବୁ କଲେ ସମାପନ ।
ତକ୍ଷକ ଉପରେ ତାଙ୍କ କ୍ରୋଧ ଯେ ବଢ଼ିଲା
ଅଧିକ ହୋଇଣ କ୍ରମେ ସମ୍ଭାଳି ନୋହିଲା ।

ରାଜେ ସେହୁ ସର୍ପ ଯଜ୍ଞ ଆରମ୍ଭ କରିଲେ
ଅପାର ସର୍ପ ଅଗ୍ନିରେ ପୋଡ଼ି ଭସ୍ମ ହେଲେ ।
ତକ୍ଷକ ସ୍ୱା ଦେଖି ଭୟ ପାଇଣ ମନରେ
ଶରଣ ପଶିଲେ ଯାଇ ଇନ୍ଦ୍ରଙ୍କ ପୟରେ ।
ତାହା ଜାଣି ଦ୍ୱିଜମାନେ ଇନ୍ଦ୍ରଙ୍କ ସହିତ
ଅଗ୍ନିରେ ଦହିବା ପାଇଁ ଆରମ୍ଭିଲେ ମନ୍ତ୍ର ।
ତାହା ଜାଣି ଦେବତାଙ୍କୁ ଘେନିଣ ସଙ୍ଗରେ
ପ୍ରବେଶ ହେଲେ ମନସା ଦେବୀଙ୍କ ପାଶରେ ।
ଅଷ୍ଟ ବଚନରେ ସ୍ତବ କରିଣ ତାହାଙ୍କୁ
ଗୁହାରି କଲେ ଆପଣ ବିପଦ କଥାକୁ ।
ଜନନୀଙ୍କ ସମୀପରେ ଆସ୍ତିକ ତ ଥିଲେ
ଦେବଙ୍କ କାର୍ଯ୍ୟ କରିବା ପାଇଁ ବାହାରିଲେ ।
ଜନ୍ମେଜୟଙ୍କ ସମୀପେ ପରବେଶ ହୋଇ
ବର ମାଗିଲେ ଇନ୍ଦ୍ରଙ୍କ ପ୍ରାଣ ରକ୍ଷା ପାଇଁ ।
ପୁଣି ସର୍ପ ଯଜ୍ଞ ବନ୍ଦ କରିବା ନିମନ୍ତେ
ବର ମାଗିଲେ ତାହାଙ୍କୁ ସୁରଗଣ ହିତେ ।
ଆଗରୁ ତ ନରଈଶ ସତ୍ୟ କରିଥିଲେ
ତେଣୁ ଆସ୍ତିକଙ୍କ କଥା ଲଂଘି ନ ପାରିଲେ ।
ଯଜ୍ଞଶେଷ କରି ରାଜା ବ୍ରାହ୍ମଣମାନଙ୍କୁ
ବହୁଧନ ରତ୍ନ ଦେଇ ପେଷିଲେ ଗୃହକୁ ।
ତାହାପରେ ସୁରଗଣ ଇନ୍ଦ୍ରଙ୍କ ସହିତେ
ମନସାଦେବୀଙ୍କ ପୂଜା କଲେ ଆନନ୍ଦରେ ।
ନାନା ଉପଚାରମତେ ଯହୁଁ ପୂଜାକଲେ
ମନସାଦେବୀ ଅପାର ଆନନ୍ଦ ହୋଇଲେ ।
ତାହାଙ୍କ କାମନା ମାତ୍ର କରନ୍ତେ ପୂରଣ
ଆନନ୍ଦମନେ ଫେରିଲେ ସର୍ବ ଦେବଗଣ ।
ମନସାଙ୍କର ଚରିତ ଅତ୍ୟନ୍ତ ପବିତ୍ର
ପାଠକଲେ ଜନମାନେ ହୋଇବେ ପବିତ୍ର ।
ଶମନ ଦଣ୍ଡରୁ ସେହୁ ମୁକତ ହୋଇବେ
ଅନ୍ତକାଳେ ଯାଇ ବଇକୁଣ୍ଠରେ ବସିବେ ।
ତେଣୁ ସଜ୍ଜନଙ୍କୁ ମୁଁ କରେ ନିବେଦନ
ମନସା ଦେବୀଙ୍କ ସ୍ତୋତ୍ର ପଢ଼ ସର୍ବଜନ ।
ଅଧମ କ୍ଷେତ୍ରମୋହନ କହେ ଯୋଡ଼କର
ଭଜିଲେ ତାହାଙ୍କୁ ଭବୁ ହୋଇବ ଉଦ୍ଧାର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମନସା ଦେବୀଙ୍କର ପୂଜା ଓ
ସ୍ତୋତ୍ରାଦିର ବର୍ଣ୍ଣନ କଥନେ ନାମ ଅଷ୍ଟ ଚତ୍ୱାରିଂଶତ୍ ଅଧ୍ୟାୟ ।

# ଊନପଞ୍ଚାଶତ୍ ଅଧ୍ୟାୟ

## ମନସା ଦେବୀଙ୍କ ପୂଜାବିଧି ଓ ସ୍ତୋତ୍ର ଆଦିର ବର୍ଣ୍ଣନ

ନାରାୟଣଙ୍କୁ ଅନାଇଁ ବୋଇଲେ ନାରଦ
କେଉଁଣ ସ୍ତୋତ୍ର ପଠନ କଲେ ଦେବଇନ୍ଦ୍ର ।
ପୁଣି ସେ କରୂପେ ପୂଜା ବିଧାନ କରିଲେ
ଶୁଣିବାପାଇଁକ ଇଚ୍ଛା ବଳଛି ସୁଜନେ ।
ନାରାୟଣ ବୋଇଲେ ହେ ମୁନିଙ୍କର ଶ୍ରେଷ୍ଠ
କହିବା ସେ କଥା ଶୁଣ ଦେଇଣ ମାନସ ।
ପବିତ୍ର ଜଳରେ ସ୍ନାନକରି ମହାଜ୍ଞାନ
ଧଉତ କରି ପିନ୍ଧିଲେ ଶୁକଳ ବସନ ।
ଦେବୀଙ୍କ ମୂରତି ରଖି ରତ୍ନ ସିଂହାସନେ
ଭକତି ଭରେ ନମିଲେ ତାଙ୍କ ପାଦାସନେ ।
ସହସ୍ର ସୁବର୍ଣ୍ଣ କୁମ୍ଭେ ମନ୍ଦାକିନୀ ନୀର
ଆଣାଇ ଧଉତ କରି ଦେବୀଙ୍କ ଶରୀର ।
ଅଗ୍ନିପ୍ରାୟ ମନୋରମ ବସ୍ତ୍ର ପିନ୍ଧାଇଲେ
ସର୍ବାଙ୍ଗରେ ସୁବାସିତ ଚନ୍ଦନ ଲେପିଲେ ।
ନାନାବିଧ ସୁମିଷ୍ଟ ପକ୍ୱ ଫଳମାନ ଆଣି
ପାଦ୍ୟ ଅର୍ଘ୍ୟ ଆଦି ସେଥୁ ଠୁଳକଲେ ପୁଣି ।
ବିଷ୍ଣୁ ଶିବଙ୍କ ସହିତେ ଗଣେଶ ଭାସ୍କର
ଦୁର୍ଗା ବହ୍ନିଙ୍କର ନାମ ସୁମରି ସତ୍ୱର ।
ପ୍ରଥମରେ ପୂଜାକରି ଷଡ଼ ଦେବତାଙ୍କୁ
ଆବାହନ କରାଇଲେ ମନସା ଦେବୀଙ୍କୁ ।
ସବୁ ଉପଚାର ଦେଇ ଓଁକାର ମନ୍ତ୍ରରେ
ପୂଜାକଲେ ମନସାଙ୍କୁ ସେଥୁ ଭକ୍ତିଭରେ ।
ସ୍ୱାହାବୋଲି କହି ଏହି ମନ୍ତ୍ରକୁ ଉଚ୍ଚାରି
ଉପଚାର ମାନ ଦେଲେ ନିଜହାତେ ଧରି ।
ନାନା ପରକାର ବାଦ୍ୟ ବାଜଣା ବଜାଇ
ନୃତ୍ୟଗୀତ କରାଇଲେ ଦେବତାଙ୍କ ପାଇଁ ।
ଘନ ଘନ ଆକାଶରେ ଦୁନ୍ଦୁଭି ବାଜିଲା
ନାନା ପ୍ରକାର ସୁବାସ କୁସୁମ ବର୍ଷିଲା ।
ବ୍ରହ୍ମା ବିଷ୍ଣୁ ହର ଆଦି ଦେବତାଙ୍କ ଗିରେ
ମନସାଙ୍କୁ ସ୍ତୁତି କଲେ ଇନ୍ଦ୍ର ଭକତିରେ ।

ବୋଇଲେ ଗୋ ମହାମାୟି ସାଧ୍ୱୀ ସୁବ୍ରତେ
ସ୍ତୁତି କରିବାକୁ ମୁହିଁ ତୁମ୍ଭ ପଦାଗତେ ।
କୁସୁମ ଅଞ୍ଜଳି ଦେଇ କରୁଅଛୁ ଭିକ୍ଷା
ମହାଘୋର ସଙ୍କଟରୁ କର ମୋତେ ରକ୍ଷା ।
ତୁମ୍ଭ କୃପାବଳେ ମୁହିଁ ପାଇଲି ଜୀବନ
ଅନୁଗ୍ରହ କରି ମୋର ଧନପୁତ୍ର ଘେନ ।
ସ୍ତୁତି କରିବାକୁ ମୁହିଁ ଅକ୍ଷମ ଅଟଇ
ତୁମ୍ଭେ ସେ ପ୍ରକୃତିଅଂଶ ଅଟ ମହାମାୟି ।
ପ୍ରକୃତିଙ୍କ ଗୁଣଗଣ ବର୍ଣ୍ଣିବାକୁ କାର
ସମରଥ ଅଛି ଅବା ଜଗତ ମଧ୍ୟର ।
ତୁମ୍ଭେ ଅଟ ଶୁଦ୍ଧସତ୍ତ୍ୱ ଗୁଣ ସ୍ୱରୂପିଣୀ
କୋପ ହିଂସା ଦ୍ୱେଷ ତ୍ୟାଗ କରିଅଛ ପୁଣି ।
ସେ ସକାଶୁ ଘୃଣାକଲେ ହେଲେ ମୁନିବର
ଶାପଦେଇ କଲନାହିଁ ତାଙ୍କ ଅପକାର ।
ଯେରୂପେ ମୋହର ପୂଜ୍ୟା ଅଟନ୍ତି ଅଦିତି
ତୁମ୍ଭେ ମଧ୍ୟ ସେହିପରି ଅଟ ଭଗବତୀ ।
ମୋହର ଜୀବନ ପୁଣ ଦାରା ଆଦି କରି
ସବୁ ରକ୍ଷାକଲ ମାତ ତ୍ରୈଲୋକ୍ୟ ଈଶ୍ୱରୀ ।
ତୁମ୍ଭଠାରେ ମୋର ପ୍ରୀତି ଭକତି ଅପାର
ବଢ଼ୁଅଛି ଯେସନେ ମାତାଠାରେ ତନୟର ।
ସହଜରେ ତୁମ୍ଭେ ପୂଜ୍ୟା ହେଲେହେଁ ଜଗତେ
ତୁମ୍ଭର ମହିମା ବଢ଼ାଇବି ମୁଁ ସତ୍ୟତେ ।
ଆଷାଢ଼ ସଂକ୍ରାନ୍ତି ଦିନ ଭକ୍ତିରେ ଯେ ଜନ
କରିବ ତୁମ୍ଭର ପୂଜାବିଧି ସମ୍ପାଦନ ।
ଆଉରି ମାନସା ନାଗ ପଞ୍ଚମୀ ତିଥିରେ
ଯେ ଅବା ଉତ୍ସାହ କରେ ତୁମ୍ଭର ପୂଜାରେ ।
ପୁତ୍ରପୌତ୍ର ଧନ ଜନରେ ଅନେକ ସମ୍ପଦ
ବଢ଼ଇ ତାହାର ଯେସନେ ଶୁକ୍ଳପକ୍ଷ ଚନ୍ଦ୍ର ।
ଯଶ କୀର୍ତ୍ତି ବିଦ୍ୟାଗୁଣେ ନିପୁଣ ହୁଅଇ
ସକଳ ଲୋକରେ ପୂଜା ପାଇଣ ରହଇ ।
ପୂଜା ନ କରି ତୁମ୍ଭଙ୍କୁ ଯେଉଁ ମୂର୍ଖଜନେ
ନିନ୍ଦା କରନ୍ତି ସର୍ବଦା ଗର୍ବ କରି ମନେ ।

ତାଙ୍କ ଘରୁ ମହାଲକ୍ଷ୍ମୀ ଯାଆନ୍ତି ପଳାଇ
ପୀଡ଼ା ଦେଇଥାନ୍ତି କ୍ଷୋଭରୁ ସର୍ପେ ଉଚ୍ଚ ।
ସ୍ୱର୍ଗଲକ୍ଷ୍ମୀ ଅଟ ତୁମ୍ଭେ ସ୍ୱର୍ଗ ଭୁବନରେ
କମଳା ବୋଲଅ ତୁମ୍ଭେ ବଇକୁଣ୍ଠ ପୁରେ ।
ତୁମ୍ଭ ପତି ଜରତ୍କାରୁ ମୁନିଗଣ ଈଶ
ପ୍ରକୃତିରେ ଅଟନ୍ତି ସେ ନାରାୟଣ ଅଂଶ ।
ପ୍ରଜାପତି କଶ୍ୟପ ସେ ମନରୁ ତୁମ୍ଭଙ୍କୁ
ଜାତ କଲେ ବଗ୍ଧନଣ ଆତ୍ମର ଶ୍ରେୟକୁ ।
ସେ ସକାଶୁ ତୁମ୍ଭ ନାମ ହୋଇଲା ମନସା
ପୂର୍ଣ୍ଣ ଇଲ ଦେବୀ ତୁମ୍ଭେ ମୋର ଦୁଃଖନଶା ।
ଆପଣା ଇଚ୍ଛାରେ ନିଜ ତତ୍ତ୍ୱ ଜାଣିବାକୁ
ପାଇଅଛ ଦେବୀ ତୁମ୍ଭେ ଯଥାର୍ଥ ଜ୍ଞାନକୁ ।
ସେଥି କାରଣରୁ ଅବା ତୁମ୍ଭର ଯେ ନାମ
ମନସା ହୋଇଲା ଏଥେ ନାହିଁ କିଛି ଭ୍ରମ ।
ନୋହିଲେ ବା ଦେବଗଣ ତୁମ୍ଭଙ୍କୁ ଭକ୍ତିରେ
ପୂଜା କରୁଥାନ୍ତି ଯେଣୁ ଆପଣା ମନରେ ।
ସେ ଯୋଗୁ ମନସା ତୁମ୍ଭ ନାମ ହୋଇଅଛି
ଶ୍ରବଣ ପାଇଁ ଏଥିରେ କଥା ନାହିଁ କିଛି ।
ସତ୍ତ୍ୱଗୁଣ ତୁମ୍ଭଠାରେ ଅଟ ବିଦ୍ୟମାନ
ଭକ୍ତି ଅନୁସାରେ ଦିଅ ଭକ୍ତଙ୍କୁ ଦର୍ଶନ ।
ଏହିରୂପେ ସ୍ତୁତିକରି ଶଚୀଦେବୀ ପତି
ଆପଣା ପୁରକୁ ଚଳେ ହୋଇ ତୋଷମତି ।
ମନସା ଭାମିନୀ ଋଷି ପୁତ୍ରଙ୍କୁ ସଙ୍ଗରେ
ରହିଲେ ଶତକାଳ ପିତାଙ୍କର ଘରେ ।
ସେ କାଳରେ ଭ୍ରାତୃଗଣ ତାଙ୍କୁ ପୂଜାକଲେ
ନଇଅନ୍ତେ ପୁଣି ନାନା ସ୍ତୁତି ଆରମ୍ଭିଲେ ।
ପୁଣି କେତେ ଦିନ ଅନ୍ତେ ଅମର ଭୁବନୁ
ପ୍ରବେଶ ହୋଇଲେ ଆସି ସୁର କାମଧେନୁ ।
ସୁରଭି ବୋଲିଣ ନାମ ଅଟେ ତାହାଙ୍କର
ମନସାକୁ ସ୍ନାନ କରାଇଲେ ସେ ସତ୍ୱର ।
ତଦଅନ୍ତେ ପୁଣି ନିଜ କ୍ଷୀର ଦେଇକରି
ଭକ୍ତିଭରେ ପୂଜାକଲେ ସୁରଭି ସୁନ୍ଦରୀ ।
ଆଉର ଅନେକ ମତେ ଜ୍ଞାନ ତାଙ୍କୁ ଦେଲେ
ବୃତ୍ତାନ୍ତ ଦେଇଣ ନିଜ ପୁରେ ଚଳିଗଲେ ।
ମନସାଙ୍କ ପୂଜା କରି ଏ ମହାସ୍ତୋତ୍ରକୁ
ପଢ଼ିବେ ପ୍ରତ୍ୟହ ଯେହୁ ଧ୍ୟାନ କରି ତାଙ୍କୁ ।
ସର୍ପ ମାନଙ୍କର ଭୟ ତାର ନ ରହିବ
ପୁତ୍ର ପୌତ୍ରୀ ତୁଲେ ଧନ ସମ୍ପଦ ବଢ଼ିବ
ଯେହୁ ଜନ ପାଞ୍ଚଲକ୍ଷ ମନ୍ତ୍ରକୁ ଜପିବ
ସକଳ କାମନା ତାର ସଫଳ ହୋଇବ ।
କାଳକୂଟ ତାର ଏବେ ହୋଇବ ଅମୃତ
ସନ୍ଦେହ ନ କର ବିଧାତାଙ୍କ ସୁତ ।
ମୁନି ନାରାୟଣ ନାରଦଙ୍କ ଅଗ୍ରତରେ
କହିଲେ ଏ ଗିର ଷେକ ଭଣଇ ଗୀତରେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମନସା ଦେବୀଙ୍କ ପୂଜାବିଧି ଓ ସ୍ତୋତ୍ର ଆଦର ବର୍ଣ୍ଣନେ ନାମ ଊନପଞ୍ଚାଶତ୍ ଅଧ୍ୟାୟଃ ।

——o——

## ପଞ୍ଚାଶତ୍ ଅଧ୍ୟାୟ

## ସୁରଭିଙ୍କ ଉପାଖ୍ୟାନ ବର୍ଣ୍ଣନ

ନାରଦ ବୋଇଲେ ଆହେ ମୁନିଙ୍କ ମଣ୍ଡନ
କହ ମୋତେ ସୁରଭିଙ୍କ ଜନ୍ମ ଉପାଖ୍ୟାନ ।
କି ରୂପରେ ଗୋଲୋକରେ କଲେ ଯାଇ ବାସ
କାହିଁପାଇଁ ଆସିଲେ ବା ମନସାଙ୍କ ପାଶ ।
ଏ କଥା ଶୁଣିବାପାଇଁ ବଳୁଛି ମୋ ମନ
ଆମୂଳ କାରଣ ସବୁ କହ ତପୋଧନ ।
ତାହା ଶୁଣି ନାରାୟଣ ବୋଇଲେ ହେ ଶୁଣ
କହିବା ସୁରଭିଙ୍କର ଚରିତକୁ ପୁଣ ।
ଗାଈମାନଙ୍କର ଅଧିଷ୍ଠାତ୍ରୀ ସେ ଅଟନ୍ତି
ତାଙ୍କଠାରୁ ସବୁଗାଈ ଗୋରୁ ଜନ୍ମି ଛନ୍ତି ।
ଗୋଲୋକରେ ଯେତେ ଗୋରୁ ବାସକରି ରହି
ଅଛନ୍ତି ତାଙ୍କ ମଧ୍ୟରେ ପ୍ରଧାନଟି ଏହି ।

ପୂର୍ବକାଳେ ବୃନ୍ଦାବନେ ଜନ୍ମ ସେ ହୋଇଲେ
ତହିଁର ପ୍ରକାର କହୁଅଛି ଶୁଣ ଭଲେ ।
ଏକଦିନେ ଶ୍ରୀରାଧିକାବଲ୍ଲଭ ମୁରାରି
ସକଳ ଗୋପିଜନଙ୍କୁ ସଙ୍ଗତରେ ଧରି ।
ବୃନ୍ଦାବନ ମଧ୍ୟେ ଯାଇ ପରବେଶ ହେଲେ
ରାଧାଙ୍କ ହସ୍ତ ଧରିଣ ବିହାର ସେ କଲେ ।
କେତେକ ସମୟ ପରେ କ୍ଷୀରପାନ ଇଚ୍ଛା
ହେଲା ତାହାଙ୍କର ଆହେ ବ୍ରହ୍ମାଙ୍କର ବତ୍ସ ।
ସେ ସକାଶୁ ସୁରଭୀଙ୍କୁ ବାମପାର୍ଶ୍ୱୁ ଜାତ
କଲେ ସେହିକ୍ଷଣି ପ୍ରଭୁ ବତ୍ସାର ସହିତ ।
ତାହା ଦେଖିଣ ସୁଦାମା ରତ୍ନହାଣ୍ଡି ନେଇ
ଦୋହନ କଲେ ସେକାଳେ ହରଷିତ ହୋଇ
ସୁଧାଠାରୁ ବଳି ସ୍ୱାଦ ଅଟଇ ସେ କ୍ଷୀର
ପାନକଲେ ଜନ୍ମ ମୃତ୍ୟୁ ହୋଇଯାଏ ଦୂର ।
ଶ୍ରୀହସ୍ତରେ ନେଇ ତାହା ରାଧା ପ୍ରାଣପତି
ପାନ କଲେ ସନ୍ତୋଷରେ ପୂର୍ଣ୍ଣକରି ମତି ।
ବଳକା ହୋଇଣ ଯେତେ କ୍ଷୀର ପଡ଼ି ଥିଲା
ତହିଁରେ ଗୋଟିଏ ସରୋବର ଜାତ ହେଲା ।
ବିସ୍ତୃତ ଅଟଇ ଶତଯୋଜନ ତାହାର
ଗୋଲୋକରେ ପ୍ରସିଦ୍ଧ ସେ କ୍ଷୀର ସରୋବର ।
କ୍ରୀଡ଼ାବ୍ୟାପୀ ହୋଇଲା ସେ ରାଧା ଦେବୀଙ୍କର
ଏ ବାହାରେ ଯେତେ ଗୋପୀ ଥିଲେ ସେହିଠାର
କ୍ରୀଡ଼ା କଉତୁକେ ମାତି ସମସ୍ତେ ତହିଁରେ
ସ୍ନାନ କରୁଥିଲେ ଗୋପ ଗୋପୀ ଆନନ୍ଦରେ ।
ତାହା ଦେଖିକରି ଦେବ ଶ୍ରୀବତ୍ସଲାଞ୍ଛନ
କଲେ ସେ ବାପୀରେ ରତ୍ନସୁବର୍ଣ୍ଣ ସୋପାନ ।
ସେ ଅନ୍ତେ ସୁରଭୀଠାରୁ ଲକ୍ଷକୋଟି ଧେନୁ
ଜାତ ହେଲେ ଜାଣ ଆହେ ଇନ୍ଦ୍ରଙ୍କର ସୁନୁ ।
ସେହିପରି ଲକ୍ଷେକୋଟି ବତ୍ସ ତାହାଙ୍କର
ଲୋମକୂପମାନଙ୍କରୁ ହୋଇଲେ ବାହାର ।
ସେହି ଗାଈଙ୍କର ପୁତ୍ର ପୌତ୍ର ଯେ ବହୁତ
ଜନମ ହୁଅନ୍ତେ ଗଉ ସୃଷ୍ଟି ହେଲା ଜାତ ।
ଶ୍ରୀକୃଷ୍ଣ ତା ଦେଖିକରି ହରଷିତ ହେଲେ
ପ୍ରଥମରେ ସୁରଭୀଙ୍କୁ ଆରାଧନା କଲେ ।
ସେହିଠାରୁ ତିନିଲୋକେ ଯେତେ ଗଉଥିଲେ
ସମସ୍ତେ ତାହାଙ୍କୁ ଭକ୍ତିଭରେ ପୂଜା କଲେ ।

ତାହାପରେ ଶ୍ରୀକୃଷ୍ଣଙ୍କ ଆଜ୍ଞା ଅନୁସାରେ
ଆଳତି ଦେଇ ଗୋରୁଙ୍କୁ ପୂଜା କଲେ ନରେ
ଧ୍ୟାନ ସ୍ତୋତ୍ର ମୂଳମନ୍ତ୍ର ପୂଜାର ବିଧାନ
ବେଦରେ ଯେଉଁରୂପ ଉକ୍ତ ହୋଇଅଛି ଜାଣ ।
ସମସ୍ତ ତୁମ୍ଭ ଆଗରେ କହୁଅଛି ମୁହିଁ
ଶୁଣ ଏବେ ସାବଧାନେ ମନ କର୍ଣ୍ଣ ଦେଇ ।
ଓଁକାର ଚତୁର୍ଥୀ ଅନ୍ତ ସୁରଭୀ ଯେ ପଦ
ଶେଷରେ ଯୋଗ କରିବ ନାମ ଏହି ଭେଦ ।
ଷଡ଼ାକ୍ଷର ମନ୍ତ୍ର ଜାତ ହେଲା ଏହିପରି
ସିଦ୍ଧ କରିବ ଏହାକୁ ଲକ୍ଷେ ଜପକରି ।
ଏମନ୍ତ ହେଲେ ସେ କଳ୍ପବୃକ୍ଷର ସମାନ
ହୋଇବ ନିଶ୍ଚୟ ବୋଲି ମାନସରେ ଘେନ ।
ଧ୍ୟାନ ଯେ ହୋଇଛି ଯଜୁର୍ବେଦରେ କଥିତ
ପୂଜାବିଧି ଅଟେ ସର୍ବଲୋକ ସନମତ ।
ସ୍ତବରେ କହୁଛି ତାହା ଶୁଣ ମୁନିବର
ଅଟେ ଯାହା ସବୁଧର୍ମ କର୍ମ ମଧ୍ୟେ ସାର ।
ମହାଲକ୍ଷ୍ମୀ ସ୍ୱରୂପିଣୀ ରାଧା ସହଚରୀ
ପରମ ପୂଜିତା ଦେବୀ ପ୍ରକୃତି ଈଶ୍ୱରୀ ।
ଗଉମାନଙ୍କର ଅଧିଷ୍ଠାତ୍ରୀ ମହାମାୟୀ
ମନୋରଥ ପ୍ରଦାୟିନୀ ସର୍ବଦେବୀମୟୀ ।
ଯାହାଙ୍କ ଯୋଗେ ପବିତ୍ର ହୁଅଇ ସଂସାର
ସେହି ସୁରଭୀଙ୍କୁ ମୋର କୋଟି ନମସ୍କାର ।
ପୂର୍ଣ୍ଣକୁମ୍ଭେ ଅବା ଗଜ ମସ୍ତକ ଉପରେ
ନୋହିଲେ ବା ଗୋରୁ ବନ୍ଧାସ୍ତମ୍ଭ ସମୀପରେ ।
ଶାଳଗ୍ରାମ ଶିଳାରେ ବା ଜଳେ ଅନଳରେ
ପୂଜା କରିବ ସୁରଭୀ ଦେବୀଙ୍କୁ ଯତନରେ ।
ପରଦିନେ ଆରାର୍ତ୍ତିକ ସମର୍ପଣ କରି
ଭକ୍ତିଭରେ ଉପାସନା କରିବ ସେପରି ।
ଏମନ୍ତ ହେଲେ ଜଗତ ମଧ୍ୟରେ ସେ ଜନ
ସବୁଠାରେ ପୂଜାଯୋଗ୍ୟ ହୁଅଇଟି ଘେନ ।
ବାରାହକଳ୍ପରେ ଦିନେ ବିଷ୍ଣୁଙ୍କ ମାୟାରୁ
ଅନ୍ତର୍ଦ୍ଧାନ ହେଲା କ୍ଷୀର ସକଳ ସ୍ଥାନରୁ ।
ତାହା ଦେଖି ଦେବଗଣ ଘୋରଚିନ୍ତା କଲେ
ବ୍ରହ୍ମାଙ୍କ ପାଶକୁ ଯାଇ ସବୁ ଜଣାଇଲେ ।
ତାହାଙ୍କ ଅନୁଜ୍ଞା ପାଇ ସୁର ଅଧିପତି
ଭକ୍ତିଭରେ କଲେ ପୁଣି ସୁରଭୀଙ୍କୁ ସ୍ତୁତି ।

ବୋଇଲେ ନମସ୍ତେ ଦେବୀ ନୈଲୋକ୍ୟପାବନୀ
ଜଗତ ଅମ୍ବିକେ ମାତ ଦେବୀ ସ୍ୱରୂପିଣୀ ।
ନମସ୍ତେ ସୁରଭି ସଧା ପୀରତକାରଣୀ
ଶ୍ରୀକୃଷ୍ଣ ମାନସପ୍ରୀତ ତୋଷ ବିଧାୟିନୀ ।
ଅଟେଷ ଅଟଇ ଦେବୀ ମଙ୍ଗଳ ତୁମ୍ଭର
ପ୍ରଣାମ କରୁଛୁ ତୁମ୍ଭ ପାଦେ ବାରମ୍ବାର ।
କଳ୍ପବୃକ୍ଷ ସ୍ୱରୂପିଣୀ ସିଦ୍ଧି ବୁଦ୍ଧିଦାୟିନୀ
ଶୁଭ ପ୍ରଦାୟିନୀ ଲୋକମାତା ତପସ୍ୱିନୀ ।
ଯଶ କୀର୍ତ୍ତିଧର୍ମ ଅର୍ଥ କାମ ମୋକ୍ଷଆଦ
ସକଳ ଦେଉଛ ମାତ ସଦୟେ ପ୍ରମୋଦ ।
ମୋହର ବଚନ ଶୁଣି ଅନୁଗ୍ରହ କର
ତୁମ୍ଭଯୋଗେ ମନୋରଥ ସିଦ୍ଧ ହେଉ ମୋର ।
ଏହିରୂପେ ସ୍ତୁତି ସହୁଁ କଲେ ସୁରେଶ୍ୱର
ସୁରଭୀ ପାଇଣ ମନେ ସନ୍ତୋଷ ଅପାର ।
ସେହିକ୍ଷଣି ଆବିର୍ଭୂତ ହୋଇ ତାଙ୍କ ପାଶେ
ବାଞ୍ଛିତ ବର ପ୍ରଦାନ କଲେ ଅତି ତୋଷେ ।
ସେଥଅନ୍ତେ ଲୋକେକେ ଯାଇ ପରବେଶ ହେଲେ
ଇନ୍ଦ୍ର ଆଦି ଦେବଗଣ ସେସ୍ଥାନେ ଗଲେ ।
ଦୁଗ୍ଧ ପୂର୍ଣ୍ଣ ହେଲା ତହୁଁ ନିଖିଳ ଜଗତ
ଉତ୍ପନ୍ନ ହୋଇଲା କ୍ରମ କ୍ରମେ ଦଧିଘୃତ ।

ବ୍ରାହ୍ମଣ କ୍ଷତ୍ରିୟ ଆଦି ସଙ୍କ ଜାତିମାନେ
ବହୁ ପରକାରେ ଯଜ୍ଞ କଲେ ତୋଷମନେ ।
ଦକ୍ଷିଣେ ଗ ପାଇ ସୁରେ ବଧି ଅନୁସାରେ
ହରଷମନେ ରହିଲେ ସେ ଯାହା ସୁଖରେ ।
ଏ ମହା ସ୍ତୋତ୍ରକୁ ସେହୁ ଭକ୍ତିରେ ପଢଇ
ତାହାକୁ ସମଣ ଦଣ୍ଡ କେବେଁ ନ ଲାଗଇ ।
ଧନଜନ ଗୋଧନଲକ୍ଷ୍ମୀ ବଢ଼ଇ ଅପାର
ସକଳ ସମ୍ପଦ ଗୃହେ ହୁଏ ଭରପୁର ।
ତୀର୍ଥ ମାନଙ୍କରେ ସ୍ନାନ କରିବାର ଫଳ
ଲୋକଙ୍କରେ ଯଜ୍ଞକର୍ମ କରିଲେ ସକଳ ।
ଅନ୍ତଃକାଳେ ବଇକୁଣ୍ଠ ପୁରେ ସ୍ଥାନପାଏ
ଅପାରକାଳ ପର୍ଯ୍ୟନ୍ତ ସେହିଠାରେ ରହେ ।
ଶେଷେ ବ୍ରାହ୍ମଣ କର୍ମରେ ହୁଅଇ ପଣ୍ଡିତ
ବ୍ରହ୍ମ ଉପାସନାରେ ସେ ସଦା ହୁଏ ରତ ।
ତାହାର ସଙ୍ଗରେ ସମ ନ ହୁଅନ୍ତି କେହି
ଶ୍ୟାମ କ୍ଷେତ୍ର ମୋହନ ଗୀତରେ ଭଣଇ ।
ମହତ୍ କର୍ମରେ ସେହୁ ତାଳନ୍ତି ମନ
ତାହାଙ୍କ ଚରଣ ତଳେ କରେ ନିବେଦନ ।

—*—

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତ ଖଣ୍ଡେ ସୁରଭୀଙ୍କ ଉପାଖ୍ୟାନ
ନାମ ପଞ୍ଚାଶତ୍ ଅଧ୍ୟାୟଃ ।

—*—

## ଏକପଞ୍ଚାଶତ୍ ଅଧ୍ୟାୟ

## ରାଧିକା ଦେବୀଙ୍କ ଚରିତ ବର୍ଣ୍ଣନ

ନାରଦ ବୋଇଲେ ନାରାୟଣ ମହାଭାଗ
ଯେରୂପେ ତୁମ୍ଭର ବେଦଶାସ୍ତ୍ରେ ଅନୁରାଗ ।
ସେହି ପରକାରେ ଜ୍ଞାନ ଉତ୍ତମ ଅଟଇ
ନାରାୟଣ ପରାୟଣ ଅଛ ତୁମ୍ଭେ ହୋଇ ।
ନାରାୟଣ ଅଂଶରେ ତ ହୋଇଅଛ ଜାତ
ଜାଣିଅଛ ନାରାୟଣ କଥାର ସେ ତତ୍ତ୍ୱ ।
ଶୁଣିଲି ଆମୂଳ କରି ସୁରଭୀ ବୃତ୍ତାନ୍ତ
ମ ସକାଶୁ ଅତିଶୟ ତୋଷ ହେଲା ଚିତ୍ତ ।

ଏବେ ରାଧା ଦେବୀଙ୍କର ଉପାଖ୍ୟାନ ମୁହିଁ
ଶୁଣିବି ବଖାଣ ତାହା କହ କୃପାବହି ।
ଏହିରୂପେ ପଚାରନ୍ତେ ନାରାୟଣ ମୁନି
ବୋଇଲେ କହିବା ଶୁଣ ଆହେ ବ୍ରହ୍ମଜ୍ଞାନି ।
ପୂର୍ବକାଳେ କଇଳାସ ପର୍ବତ ଶିଖରେ
ଥରେ ମହାଦେବ ଷଡ଼ାନନଙ୍କ ଆଗରେ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ରାସ ଉପାଖ୍ୟାନ
ଏ ବାଦରେ ଗୋଲୋକର ବିଶେଷ ବର୍ଣ୍ଣନ ।

କହୁଥିଲେ ଆନନ୍ଦରେ ବଚନ ସମସ୍ତ
ରାଧିକା ଦେବୀ ସେଠାରେ ହେଲେ ଉପସ୍ଥିତ ।
କଥାଶେଷେ ପତିଙ୍କର ମୁଖକୁ ଅନାଇ
ସସ୍ମିତ ବଦନେ ତାଙ୍କୁ ପଚାରିଲେ ଚାହିଁ ।
ବୋଇଲେ ହେ ମହାପ୍ରଭୁ ରାଧାଙ୍କ ଚରିତ
ସମସ୍ତରୂପେ ମୋ ଆଗେ କରନ୍ତୁ ବ୍ୟକତ ।
ଶୁଣିବାପାଇଁ ବ ଶ୍ରଦ୍ଧା ବଢ଼ୁଛି ମୋହର
ଅନୁଗ୍ରହ କର ମୋତେ କହ ପ୍ରାଣେଶ୍ୱର ।
ତାହା ଶୁଣି ମହାଦେବ ହୃଷ୍ଟମନ ହୋଇ
କହିବାକୁ ଆରମ୍ଭିଲେ ପ୍ରିୟା ମୁଖ ଚାହିଁ ।
ବୋଇଲେ ହେ ଜୀବେଶ୍ୱରି ଶୁଣ ମନଦେଇ
ରାଧିକା ଦେବୀଙ୍କ କଥା କହିବା ବତାଇ ।
ନିଗମ ଆଗମ ପଞ୍ଚରାତ୍ର ଆଦି ମତ
ଆଦର ଯେ ଷୋଡଶାସ୍ତ୍ର ନାନାରୂପ ଗୀତ ।
ବେଦାଦି ପୁରାଣେତନ୍ତ୍ର ଭକ୍ତିଯୋଗ ସାର
ପରମାତ୍ମା ଶ୍ରୀକୃଷ୍ଣଙ୍କ ଚରିତ ଆଦର ।
ତୁମ୍ଭ ଆଗରେ ସମସ୍ତ କହିଅଛି ମୁହିଁ
ପୁଣି ଦେବଦେବୀଙ୍କର ଉପାଖ୍ୟାନ ଯେଇ ।
ଏବେ ରାଧାଦେବୀଙ୍କର ଅପୂର୍ବ ଚରିତ
ଶୁଣିବାପାଇଁକ ହେଲ ତୁମ୍ଭର ଯେ ଚିତ୍ତ ।
ଆଗମ କହିବାକାଳେ କାଣ୍ୱ ଶାଖାନ୍ତରେ
ତାହାଙ୍କ କଥା ତ ଶୁଣିଅଛ ସଂକ୍ଷେପରେ ।
ରାସର ଭବରେ ଏବେ ଉତ୍ପତ୍ତି ଯେ ଧ୍ୟାନ
ଆଦର ନାମ ମାହାତ୍ମ୍ୟ ପୂଜାର ବିଧାନ ।
କବଚ ସ୍ତୋତ୍ରକୁ ଆଦି ସମସ୍ତ ବିଷୟ
କହୁଅଛି ଶୁଣ ବସି ମନକରି ସ୍ଥିର ।
ଏମନ୍ତ ବୋଲିଣ କ୍ଷଣେ ମଉନ ହୋଇଲେ
ଶ୍ରୀକୃଷ୍ଣଙ୍କୁ ମନ ମଧ୍ୟେ ସୁମରଣା କଲେ ।
ସେ ଅନ୍ତରେ ପୁଣି ଚାହିଁ ପ୍ରିୟାଙ୍କ ବଦନ
ବୋଇଲେ ବାନ୍ଧବ ଶୁଣ ମୋହର ବଚନ ।
ଯେତେବେଳେ ପରମାତ୍ମା ଶ୍ରୀକୃଷ୍ଣ ମୋ ଆଗେ
କହିଲେ ଗୋଲୋକ ରାଧା ଚରିତ ସରାଗେ ।
ମନା କରିଥିଲେ କାହା ଆଗେ କହିବାକୁ
ସେ ସକାଶୁ ଏବେ ସୁମରିଲି ମୁଁ ତାହାଙ୍କୁ ।
ଧ୍ୟାନମାର୍ଗେ ଦରଶନ ଦେଲେ ମୋତେ ସେହି
ବୋଇଲେ ପୁଣ ତୁମ୍ଭଙ୍କୁ କହିବାର ପାଇଁ ।

ମୋହର ତ ଅଛ ତୁମ୍ଭେ ଅର୍ଦ୍ଧ ଅବୟବ
ଅତଏବ ପ୍ରକାରେ ହେଲେ ନାହିଁ ଭେଦଭାବ ।
ଏଣୁ ତୁମ୍ଭ ଆଗେ ତାହା କହିଲେ ଯେ ଦୋଷ
ନୋହିବ ଏରୂପେ ଆଜ୍ଞାଦେଲେ ଦେବଈଶ ।
ମୋର ଇଷ୍ଟଦେବ କାନ୍ତା ରାଧା ପତିପ୍ରିୟା
ଗୋଲୋକର ଅଧୀଶ୍ୱରୀ ଦେବୀ ମହାମାୟା ।
ତାହାଙ୍କ ଆଖ୍ୟାନ ମୁହିଁ ଜାଣେ ଭଲକରି
ରହସ୍ୟ ଅଟଇ ଯାହା ମନ୍ତ୍ରଶାସ୍ତ୍ର ପରି ।
ଜାଣି ନ ପାରନ୍ତି ବ୍ରହ୍ମା ଯାର ଆଦିଅନ୍ତ
ଏ ବାହାରେ ନାଗ ଅଧୀଶ୍ୱର ଯେ ଅନନ୍ତ ।
ସନତକୁମାର ଇନ୍ଦ୍ର ଧର୍ମ ସନାତନ ।
ଦେବତା ଗନ୍ଧର୍ବ ପକ୍ଷ ରକ୍ଷ ଯାତୁଧାନ ।
ଏମାନଙ୍କ ମଧ୍ୟରୁ କେ କହିଁର ବୃତ୍ତାନ୍ତ
ଜାଣିବାପାଇଁକ ନ ହୁଅନ୍ତି ସମରଥ ।
ମୋହର ପ୍ରାଣ ସଦୃଶେ ତୁମ୍ଭର ଜୀବନ
ମହାନ ଅଂଶରେ ହୋଇଅଛ ତ ସମାନ ।
ସେ ହେତୁ ଶୁଣିବାପାଇଁ ଯୋଗ୍ୟ ଅଟ ତୁମ୍ଭେ
ତୁମ୍ଭଠାରେ ଅବିଶ୍ୱାସ କରିବୁ କ ଆମ୍ଭେ ।
ଆମୂଳ କହିଣ ଏବେ ଶୁଣ ବସି ଧୀରେ
ଗୋଲୋକରେ ଥିଲେ ବୃନ୍ଦା ବିପିନ ମଧ୍ୟରେ ।
ଶତଶୃଙ୍ଗ ପର୍ବତର ରମ୍ୟ ଶୃଙ୍ଗଦେଶେ
ମନୋହର ଦିବ୍ୟଲତା ଗୃହତଳ ବାସେ ।
ମାଳତୀ ମଲ୍ଲିକା ଉପବନ ଅଭ୍ୟନ୍ତରେ
ବିଜୟ ଶ୍ରୀକୃଷ୍ଣ ରତ୍ନସିଂହାସନ ପରେ ।
ସୁରଭି ଶୀତଳ ମନ୍ଦ ଗନ୍ଧବହ ଆସି
ନିଶ୍ୱାସ ସନ୍ତାପ ଖେଦ ଦେଉଥାଏ ନାଶି ।
କେତେକ ସମୟ ପରେ ପ୍ରଭୁ ଜନାର୍ଦ୍ଦନ
ରମଣ କରିବାପାଇଁ କଲାଇଲେ ମନ ।
ସେହିକ୍ଷଣି ତାହାଙ୍କର ଇଚ୍ଛା ଅନୁସାରେ
ଆପଣା ଶରୀର ଦୁଇଭାଗ ହେଲା ଖରେ ।
ଦକ୍ଷିଣ ଅଂଶଟି ପୂର୍ବଭାଗରେ ରହିଲା
ବାମଅଂଶ ରାଧାରୂପେ ପ୍ରକାଶିତ ହେଲା ।
ସୁନ୍ଦରପଣରେ ତାଙ୍କୁ କନ୍ଦର୍ପ ରମଣୀ
ସମାନ ହୋଇବ ନାହିଁ ବୋଲି ଥାଅ ଜାଣି ।
ଦିବ୍ୟବସ୍ତ୍ର ଆଭରଣ ଅଙ୍ଗଦେଶେ ସାଜେ
ରତ୍ନସିଂହାସନ ପରେ ବସିଛନ୍ତି ବାମେ ।

ଅଗ୍ନିଶୁଦ୍ଧ ସୁବସନ ପରିଧାନ କରି
ରୂପେ ପ୍ରକାଶନ୍ତ କୋଟି ପୂର୍ଣ୍ଣଚନ୍ଦ୍ର ପରି ।
ତପତ କାଞ୍ଚନ ତୁଲ୍ୟ ଉଜ୍ଜଳ ବରନ
ମନ୍ଦହାସ ସୁଶୋଭିତ ପଙ୍କଜ ବଦନ ।
ମାଳତୀ ମାଳା ମଣ୍ଡିତ କୃଷ୍ଣ କେଶପାଶେ
ରତ୍ନହାର ବିରାଜିତ ହୃଦୟ ପ୍ରଦେଶେ ।
ମନ୍ଦାକିନୀ ଧାରାପରି ଶୁଭ୍ର ମୁକ୍ତାମାଳା
ବକ୍ଷସ୍ଥଳେ ଲମ୍ବି ଝୁଲୁଥିଲା ଝଲମଲ ।
ବର୍ତ୍ତୁଳ ଉନ୍ନତ ମେରୁଶିଖର ସଦୃଶ
କଠିନ ସୁନ୍ଦର ଦ୍ୱୟ ମନୋହର ଦୃଶ୍ୟ ।
କସ୍ତୁରୀ ପତ୍ରରଚନା ଲଗି ଶୋଭାବନ
ମାଙ୍ଗଲ୍ୟ ମଙ୍ଗଳମୟ ରମ୍ୟ ଦେହସ୍ଥାନ ।
ନବ ଯଉବନେ ପୂର୍ଣ୍ଣ ଅପୂର୍ବ ଶୋଭା
ମନମଥ ରଥତୁଲ୍ୟ ନିତମ୍ବର ପ୍ରଭା ।
କାମରେ ଆତୁର ହୋଇ ତାହାଙ୍କର ମନ
ଅସ୍ଥିର ଭାବରେ ହୋଇଥିଲା ଛନ୍ନଛନ୍ନ ।
ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ରସିକ ଈଶ୍ୱର
ସମ୍ଭୋଗ କରିବାପାଇଁ ହେଲେ ତତ୍ପର ।
ରମଣ କରିବା ଇଚ୍ଛା ଜାଣି ପତିଙ୍କର
ଧାବନ କରିଣ ଦେବୀ ହୃଷ୍ଟ ଅନ୍ତର ।
ରାଧା ବୋଲି ତାହାଙ୍କର ନାମ ହେଲା ଖ୍ୟାତ
ନିଷ୍ପନ୍ନ କଲେ ସେପରି ସକଳ ପଣ୍ଡିତ ।
ଶ୍ରୀକୃଷ୍ଣଙ୍କୁ ରାଧାଦେବୀ କରନ୍ତି ଭଜନ
ତାଙ୍କଠାରେ ଥାଏ ସଦା ଶ୍ରୀକୃଷ୍ଣଙ୍କ ମନ ।
ସେ ସକାଶୁ ଦୁହିଙ୍କର ଭେଦଭାବ ନାହିଁ
ଏକ ଅଟେ ଆତ୍ମାଭିନ୍ନ ଅଟେ ମାତ୍ର ଦେବୀ ।
ଏମନ୍ତ ଅଟଇ ତତ୍ତ୍ୱଜ୍ଞମାନଙ୍କର ମତ
ମନ ଦେଇକରି ଶୁଣ ଷଡ଼ାନନ ମାତ ।
ରାସ ମଣ୍ଡଳରେ ଜାତ ହୋଇ ସେ ସୁନ୍ଦରୀ
ଧାବନ କଲେ କୃଷ୍ଣଙ୍କ ଆଗେ ମିଳକରି ।
ତେଣୁ ଆଦ୍ୟ ଅକ୍ଷରକୁ କରିଣ ସଙ୍କେତ
ରାଧା ବୋଲିକରି ତାଙ୍କ ନାମ କଲେ ଖ୍ୟାତ ।
ରା ଅକ୍ଷର ଉଚ୍ଚାରଣ କରି ଭକ୍ତଗଣ
ଅଲଭ୍ୟ କରନ୍ତି ମୁକ୍ତିମାର୍ଗ ଦରଶନ ।
ଧା ଅକ୍ଷର ଉଚ୍ଚାରଣେ ଶ୍ରୀହରିଙ୍କ ପୁରରେ
ଧାବନ କରନ୍ତି ସେହିପରି ନିରନ୍ତରେ ।

ଏଣୁ ରାଧା ବୋଲିକରି ତାଙ୍କ ନାମ ହେଲା
ସେ ଦୁଇ ଅକ୍ଷରେ ଭକ୍ତି ମୁକତି ମିଳିଲା ।
ଶ୍ରୀକୃଷ୍ଣଙ୍କ ବାମାଂଶରୁ ଜାତ ହେଲେ ରାଧା
ଏ ସକାଶୁ ତାଙ୍କଠାରେ କୃଷ୍ଣଙ୍କର ଶ୍ରଦ୍ଧା ।
ସେହିରାଧା ଦେବୀଙ୍କର ଲୋମକୂପରୁଁ ଜାତ
ହେଲେ କ୍ରମେ କ୍ରମେ ସବୁ ଅମର ଯୋଷିତ ।
ଏହାହାରେ ଗୋଲୋକରେ ଯେତେ ଗୋପସ୍ତ୍ରୀଏ
ସେମାନେ ମଧ୍ୟ ଜନମି ଅଛନ୍ତି ସେପରି ।
ଶ୍ରୀକୃଷ୍ଣଙ୍କ ଲୋମକୂପୁଁ ସମସ୍ତ ଗୋପାଳ
ଜନମି ଗୋଲୋକ ପୂର୍ଣ୍ଣ କଲେ ତତକାଳ ।
ସେ ଅନ୍ତରେ ରାଧାଙ୍କର ବାମ ପାର୍ଶ୍ୱରୁ
ଜନମ ହୋଇଲେ ମହାଲକ୍ଷ୍ମୀ ସ୍ୱରୂପରୁ ।
ବଇକୁଣ୍ଠ ଭୁବନରେ ନାରାୟଣଙ୍କର
ପ୍ରିୟପତ୍ନୀ ହୋଇ ରହିଲେ ସେ ରମାବର ।
ତାହାଙ୍କ ଅଂଶରେ ରାଜଲକ୍ଷ୍ମୀ ଜାତ ହୋଇ
ରାଜ ଭବନରେ ବାସ କଲେ ତହୁଁ ଯାଇ ।
ପୁଣି ଆଉ ଏକ ଅଂଶେ ମର୍ତ୍ତ୍ୟଲକ୍ଷ୍ମୀ ଜାତ
ହେଲେ ଯେ ଗୃହୀଙ୍କ ଗୃହେ ସଦା ଉପସ୍ଥିତ ।
ସେହିଟି ଅଟନ୍ତି ଶସ୍ୟ ରକ୍ଷଣକାରିଣୀ
ଗୃହଦେବତା ବୋଲନ୍ତି ତାଙ୍କୁ ସର୍ବପ୍ରାଣୀ ।
ଶ୍ରୀକୃଷ୍ଣଙ୍କ ଧର୍ମପତ୍ନୀ ଅଟନ୍ତି ରାଧିକା
ବକ୍ଷସ୍ଥଳେ ତାହାଙ୍କର ରହନ୍ତି ସେ ଏକା ।
ପ୍ରାଣର ସେ ଅଧିଷ୍ଠାତ୍ରୀ ବୋଲି ସବୁବେଳେ
ବସାଇ ଥାଆନ୍ତି ପ୍ରଭୁ ଆଣି ବକ୍ଷସ୍ଥଳେ ।
ଶୁଣ ଗୋ ପାର୍ବତୀ ଦେବୀ ହୋଇ ସାବଧାନ
ବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତେ ନିଖିଳ ଭୁବନ ।
ଅନିତ୍ୟ ଅଟଇ ଏହା ବେଦ ନିରୂପିତ
ନିତ୍ୟ ଅଟନ୍ତି କେବଳ ରାଧାଦେବୀ କାନ୍ତ ।
ତାହାଙ୍କୁ ସର୍ବଦା ତୁମ୍ଭେ କର ସୁମରଣା
କାମନା ହୋଇବ ପୂର୍ଣ୍ଣ ନ କର ଭାବନା ।
ପରମ ପ୍ରଧାନ ସେହି ପରମ ପୁରୁଷ
ପରମାତ୍ମା ବ୍ରହ୍ମମୟ ଜଗତର ଈଶ ।
ସର୍ବଆଦ୍ୟ ସର୍ବପୂଜ୍ୟ ଜନଙ୍କ ରହିତ
ନିସ୍ପୃହ ପ୍ରକୃତିଠାରୁ ପରେ ଅବସ୍ଥିତ ।
ସ୍ୱେଚ୍ଛାମୟ ନିତ୍ୟରୂପ ଭକ୍ତ ହିତକାରୀ
ଆଦିଅନ୍ତ କାଳ ଜଣା ନ ପାଏ ତାଙ୍କର ।

ତାହାଙ୍କଠାରୁ ଭିନ୍ନ ଯେ ଦେବତା ସମସ୍ତ ।
କଳ୍ପନା ବସ୍ତୁ ପୁଣି ଅଚିନ୍ତ୍ୟ ଅନିତ୍ୟ ।
ଶ୍ରୀକୃଷ୍ଣଙ୍କ ପ୍ରିୟତମା ରାଧିକା ହୃଦସ୍ଥ
ମହାବିଷ୍ଣୁଙ୍କୁ ଅଛନ୍ତି ଯେହୁ ଜାତକରି ।
ସର୍ବଦା ତାହାଙ୍କୁ ସେବାକରି ସାଧୁଜନେ ।
ମୁକତି ଲଭନ୍ତି ମର୍ତ୍ତ୍ୟଦେହ ଅବସାନେ ।
ଯାହାଙ୍କର ପାଦପଦ୍ମ ଭକ୍ତଜନଙ୍କର
ସୁଲଭ ଅଟଇ ଦୁର୍ଲଭେ ମନେକର ।
ସ୍ୱପ୍ନରୂପେ ଶ୍ରୀକୃଷ୍ଣଙ୍କ କୋଳରେ ଯେ ଥାଇ
ପ୍ରକାଶିତ ହୋଇଛନ୍ତି ପତ୍ନୀଭାବ ବହି ।
ଯଥାର୍ଥରେ ଏକରୂପ ଅଟନ୍ତି ସେ ଦୁହେଁ
ପ୍ରଭେଦ ତାହାଙ୍କଠାରେ ସମ୍ଭାବିତ ନୁହେ ।

ଦ୍ୱାଦଶ ଗୋପଜନଙ୍କ ମଧ୍ୟରେ ଯେ ଶ୍ରେଷ୍ଠ
ସୁଦାମା ନାମ ଯେ ସେହୁ ଶ୍ରୀକୃଷ୍ଣଙ୍କ ଇଷ୍ଟ ।
ଜ୍ଞାନ ବଳ ପରାକ୍ରମ ତାଙ୍କର ଅଟଇ
ବୈଷ୍ଣବ ହୋଇ ତାହାଙ୍କ ସମାନ କେ ନାହିଁ ।
ଥରେ ଶ୍ରୀକୃଷ୍ଣ ଗୋଲୋକେ କ୍ରୀଡ଼ା କରୁଥିଲେ
ସୁଦାମାଙ୍କ ଆଗେ ରାଧା କୃଷ୍ଣଙ୍କୁ କୋପିଲେ ।
ରାଧାଙ୍କର ଦୋଷ ଦେଖି ଶାପ ସେ ଦେଲେ
ସେ ସକାଶୁ ରାଧା ମର୍ତ୍ତ୍ୟପୁରେ ଜନମିଲେ ।
ବୃଷଭାନୁ ଔରସରେ କଳାବତୀ ଗର୍ଭେ
ଜନମ ଲଭିଲେ ସେ ରମଣୀର ଭବେ ।
ଏଥିଠାରେ ରାଧାଙ୍କର ଜନ୍ମ ଉପାଖ୍ୟାନ
ଶେଷ ହେଲା କହେ ଗୀତେ କ୍ଷେତ୍ରବାସୀ ଦୀନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ରାଧିକା ଦେବୀଙ୍କ ଚରିତ ବର୍ଣ୍ଣନ
କଥନେ ନାମ ଏକପଞ୍ଚାଶତ୍ ଅଧ୍ୟାୟଃ ।

## ଦ୍ୱିପଞ୍ଚାଶତ୍ ଅଧ୍ୟାୟ

### ସୁଦାମାଙ୍କ ଶାପ ଓ ରାଧାରାଣୀଙ୍କର ମର୍ତ୍ତ୍ୟାଗମନ ବର୍ଣ୍ଣନ

ଶଙ୍କର ବୋଇଲେ ଆହେ ଦେବାଧି ଈଶ୍ୱର
ମୋ ଆଗେ କହନ୍ତୁ ସୁଦାମାଙ୍କ ଶାପ ଗିର ।
ସେତ ଅତି ପ୍ରିୟ ପରିଜନ ଠାକୁରଙ୍କ
ତାହାଙ୍କ ଗାଥା ଶ୍ରବଣେ ବଢ଼େ ମୋ ସଉକ ।
ସୁଦାମା କପରି ବସ୍ତୁ ପ୍ରହ୍ରୀ ସେ ରାଧାଙ୍କୁ
ଶାପଦେଲେ କହ୍ୱର ସେ ନ କଲ ତାହାଙ୍କୁ ।
ଏମନ୍ତ ଶୁଣି ଶଙ୍କର ବୋଇଲେ ଗୋ ଦେବୀ
ତୁମ୍ଭେ ଯା ପୁଚ୍ଛିଁଛ ତାହା ବଖ୍ୟାନ କରିବ ।
ଥରେ ଗୋଲୋକ ମଣ୍ଡଳ ମହାରାସଠାରେ
ବିରଜା ଗୋପୀଙ୍କୁ ସଙ୍ଗେ ଘେନି ରାଧାବର ।
ନାନାରସରେ ତାହାଙ୍କ ସଙ୍ଗରେ ମାତିଲେ
କାମନା ବହ୍ନି ତାଙ୍କର ନିର୍ବାପିତ କଲେ ।
ତାହାଙ୍କ ଅଙ୍ଗରେ ରତ୍ନ ଅଳଙ୍କାର ମାନ
ଦେଖା ଯାଉଥିଲା ସୂର୍ଯ୍ୟ ତେଜର ସମାନ ।
ରତ୍ନ ନିର୍ମିତ ଦୀପ ଯେ ସର୍ବଦା ଜଳଇ
ତାହାର ତେଜରେ ଦଶଦିଗ ଚମକଇ ।

ଅମୂଲ୍ୟ ସୁବର୍ଣ୍ଣ ପୁଷ୍ପଖଚିତ ଶଯ୍ୟାରେ
ଚନ୍ଦନ କୁଙ୍କୁମ ବାସ ଜନ ମନ ହରେ ।
ସୁଗନ୍ଧ ମାଳତୀପୁଷ୍ପ ମାଳା ତାହାପରେ
ଲମ୍ବିତ ହୋଇଣ ମୁକ୍ତାପଂକ୍ତିକୁ ଧିକ୍କାରେ ।
ଏମନ୍ତ ଶଯ୍ୟାରେ ନବଦମ୍ପତି ହରଷେ
ପ୍ରବର୍ତ୍ତିଲେ ପରସ୍ପର ସଙ୍ଗେ ରତିରସେ ।
ଏହିପରି ମନ୍ୱନ୍ତର ଲକ୍ଷେ ଗତ ହେଲା
ସେ ଦୁହିଙ୍କ ଉପଭୋଗ ସମାପ୍ତ ନୋହିଲା ।
ଗୋଲୋକ ସଂଖ୍ୟାରେ ତାହା ଅଳପ ସମୟ
ଯେଣୁ ସେ ଅଟନ୍ତି ନିତ୍ୟ ଶୁଦ୍ଧ ନିରାମୟ
ରାଧାଙ୍କର ଚରଗୋଟି ଦୂତୀ ତାହା ଜାଣି
କର ଯୋଡ଼ିଣ ବୋଇଲେ ଶୁଣ ଠାକୁରାଣୀ ।
ବିରଜାକୁ ସଙ୍ଗେ ଘେନି ତୁମ୍ଭ ପ୍ରାଣପତି
ବହୁତ କାଳରୁ କାମରସେ ମାତିଛନ୍ତି ।
ଏରୂପେ ଦୂତୀଙ୍କ ମୁଖୁଁ ଶୁଣିଣ ରାଧିକା
କ୍ରୋଧ ହୋଇଣ ମୁଖ କରିଦେଲେ ଫିକା ।

ଶ୍ରୀକୃଷ୍ଣଙ୍କ ଛାଡ଼ିବାକୁ କରନ୍ତେ ନିଶ୍ଚୟ
ପ୍ରବୋଧନା କଲେ ସେ କାଳରେ ସଖୀଚୟ ।
ତଥାପି ତାହାଙ୍କ ମନ ସନ୍ତୁଷ୍ଟ ନ ହେଲା
ବେଳକୁ ବେଳ ଅଧିକ କ୍ରୋଧ ଜାତ ହେଲା ।
ବସ୍ତ୍ର ଅଳଙ୍କାର ଯାହା ଥିଲା ତାଙ୍କ ଅଙ୍ଗେ
ଓହ୍ଲାଇଆଣି କ୍ରୋଧରେ ଫିଙ୍ଗି ଦେଲେ ବେଗେ
କ୍ରୀଡ଼ାପଦ୍ମ ସହିତରେ ଉଜ୍ଜ୍ୱଳ ଦର୍ପଣ
ନ ରଖି ପାଶରେ ତ୍ୟାଗକଲେ ତତକ୍ଷଣ ।
କସ୍ତୁରୀଯୁକ୍ତ ମସ୍ତକରୁ ସିନ୍ଦୂର ଲିଭାଇ
ଦେଲେ ପୁଣି ଜଳେ ପଦ ଅଳତାକୁ ଧୋଇ ।
କୁସୁମ ମାଳା ପକାଇ ମୁକ୍ତ କଲାକେଶ
ପରିଧାନ କଲେ ଏକ ଶୁକ୍ଳ କ୍ଷୀଣବାସ ।
ସଙ୍ଗତରେ କେତେ ଗୋଟି ସଖୀ ଘେନିଗଲେ
ବିମାନ ପାଶରେ ଯାଇ ପ୍ରବେଶ ହୋଇଲେ ।
କେତେ ଦୂରେ ସଖୀମାନେ କଲେ ନିବାରଣ
ତଥାପି ତାହାଙ୍କ ତତ୍ତ୍ୱ ନ ବୁଝିଲା ଜାଣ ।
ସେମାନଙ୍କ କୂଳେ ଯାନ ଉପରେ ବସିଲେ
କ୍ରୋଧରେ ନୟନ ବେନି ରଙ୍ଗ କରିଦେଲେ ।
ସେ ଯାନରେ ସହସ୍ରେ ଟି ଚକ୍ର ଲାଗିକରି
ଦିଶୁଥିଲା ନାନାରତ୍ନେ ଅତ୍ୟନ୍ତ ମାଧୁରୀ ।
ଦିବ୍ୟ ଶ୍ୱେତବସ୍ତ୍ର ଜାତ ପତାକା ଉପରେ
ଫରଫର ଉଡ଼ୁଥିଲା ପବନ ତାପରେ ।
ମଣି ମୁକ୍ତା ସହିତରେ କୁସୁମର ହାର
ବନ୍ଧାହୋଇ ଦିଶୁଥିଲା ଅତି ମନୋହର ।
ଇଚ୍ଛାଗତ ଅଟଇ ସେ ରତ୍ନମୟ ରଥ
ଶତକୋଟି ଗୋପିକାଙ୍କୁ ଘେନିକରି ସାଥ ।
ବସିଣ ରାଧିକା ଦେବୀ ଶୂନ୍ୟେ ଚଳିଗଲେ
ସେ ସମୟେ ମୁଖଗୋଳ ଜାତହେଲା ଭଲେ ।
ଶ୍ରୀକୃଷ୍ଣଙ୍କ ପାର୍ଷଦ ସୁଦାମା ଗୋପାଳ
ରାଧାଙ୍କର କଥା ଜାଣି ହୋଇଣ ଚଞ୍ଚଳ ।
ଶ୍ରୀକୃଷ୍ଣଙ୍କୁ ସାବଧାନ କରାଇ ସେ କାଳେ
ଗୋପକୁ ଘେନି ଅନ୍ତର ହୋଇ ପଳାଇଲେ ।
କୃଷ୍ଣ ତାହା ଜାଣିକରି ବିରଜାଙ୍କ ପାଶ
ଛାଡ଼ିଣ ମୁହୂର୍ତ୍ତେ ମଧ୍ୟେ ହୋଇଲେ ଅଦୃଶ୍ୟ ।
ବିରଜା ତ ତାହାସବୁ ସତ୍ତ୍ୱରେ ଜାଣିଲେ
ରାଧା ଶାପଦେବେ ବୋଲି ମହାଭୟ କଲେ ।
ଆପଣାର ପ୍ରିୟପ୍ରାଣ ଛାଡ଼ି ସେହିକ୍ଷଣି
ଗଲେ ମୃତ ଶରୀରକୁ ପକାଇ ଧରଣୀ ।
ତାହାଙ୍କର ସମୀପରେ ଯେତେ ଗୋପୀଥିଲେ
ସମସ୍ତେ ସେପରି ତାଙ୍କ ସଙ୍ଗେ ମୃଲଗଲେ ।
ବିରଜାଙ୍କ ଶରୀରଟି ନଦୀରୂପ ହେଲା
ଗୋଲୋକ ମଧ୍ୟରେ ପୂର୍ବମୁଖେ ବହିଗଲା ।
କୋଟିଏ ଯୋଜନ ତାର ଅଟଇ ବିସ୍ତାର
ବେଷ୍ଟନ କଲା ସେ ବେଗେ ଗୋଲୋକ ନଗର ।
ଯେତେ ଗୋପସ୍ତ୍ରୀ ତାଙ୍କ ସଙ୍ଗତରେ ଥିଲେ
କ୍ଷୁଦ୍ରନଦୀ ହୋଇ ସେହିକାଳେ ବହିଗଲେ ।
ଏହିପରି ପ୍ରତି ବିଶ୍ୱଜଗତରେ ଯେତେ
ନଦୀ ଜାତହେଲେ ତାଙ୍କ ଅଂଶଟି ସମସ୍ତେ ।
ଲବଣ କ୍ଷୀରାଦି ଯେଉଁ ସପତ ସାଗର
ସେମାନେ ଅଟନ୍ତି ସେହି ବିରଜା କୁମର ।
ଏମନ୍ତ ସମୟରେ ତହିଁ ରାଧିକା ସୁନ୍ଦରୀ
ପ୍ରବେଶ ହୋଇଲେ ମହାକୋପ ହୃଦେ ଧରି ।
କୃଷ୍ଣ ବିରଜାକୁ କାହିଁ ଦେଖି ନ ପାରିଲେ
ସେ ଯେଣେ ବାହୁଡ଼ି ନିଜ ମନ୍ଦିରେ ମିଳିଲେ ।
ସେ ଅନ୍ତରେ ମହାପ୍ରଭୁ ଶ୍ରୀକୃଷ୍ଣ ତା ଜାଣି
ଗୋଲୋକେ ମିଳିଲେ ଗୋପୀଗଣ ସଙ୍ଗେ ଘେନି ।
ଆଠ ଗୋଟି ଗୋପାଳଙ୍କ ସଙ୍ଗତରେ ଯାଇ
ରାଧାଙ୍କ ମନ୍ଦିର ଦ୍ୱାରଦେଶେ ଉଭାହୋଇ ।
ଯେଉଁ ଗୋପୀମାନେ ଦ୍ୱାର ଜଗି ରହିଥିଲେ
ଭିତରକୁ ଯିବାପାଇଁ ତାଙ୍କୁ ପଚାରିଲେ ।
ତାହା ଶୁଣି ଗୋପୀମାନେ କଲେ ନିବାରଣ ।
ବୋଇଲେ ତେଣିକି ତୁମ୍ଭେ ନ ଯାଅ ବହନ
ଶ୍ରୀକୃଷ୍ଣ ତାହାଙ୍କୁ ନାନାପ୍ରକାରେ ବୁଝାଇ
ପ୍ରବେଶ ହୋଇଲେ ରାଧା ସମୀପରେ ଯାଇ ।
ଦେଖିଣ ରାଧିକା ଦେବୀ ମହାକ୍ରୋଧ ହେଲେ
ପତିଙ୍କ ମୁଖକୁ ଚାହିଁ କେତେ ଗାଳିଦେଲେ ।
କୃଷ୍ଣ ସମୀପରେ ଥାଇ ସୁଦାମା ଗୋପାଳ
ଦେବୀଙ୍କ ଭର୍ତ୍ସନା ଶୁଣି ହେଲେ କୋପାନଳ ।
ତେଣୁ ସେ ଭର୍ତ୍ସନାବାକ୍ୟ ଦେବୀଙ୍କୁ ବହୁତ
ତିରସ୍କାର କଲେ କିଛି ନ ବିଚାରି ତତ୍ତ୍ୱ
ତା ଶୁଣି ରାଧିକା ଦେବୀ କଲେ ମହାକୋପ
କ୍ରୋଧରେ ସୁଦାମାକୁ ଦେଲେ ଘୋରଶାପ ।

ବୋଇଲେ ସେଠାରେ ଅପରାଧ କଲ ତୁହି
ସେ ହେତୁ ବଷଧ ରୂପେ ଜାତ ହୁଏ ଯାଇ ।
ସୁଦାମା ବୋଇଲେ ମୋର ଦୋଷ କିଛି ନାହିଁ
ତଥାପି ଯା ଶାପ ଦେଲ ବୃଥା କ୍ରୋଧ କରି ।
ସେ ସକାଶୁ ତୁମ୍ଭେ ମଧ୍ୟ ଭାରତବର୍ଷରେ
ଜନମ ହୋଇବ ଗୋପ କନ୍ୟକା ରୂପରେ ।
ଶତେ ସମ୍ବତ୍ସର ଯାଏ ଶ୍ରୀକୃଷ୍ଣ ବିଚ୍ଛେଦ
ତୁମ୍ଭଙ୍କୁ ହେବ ସେଠାରେ ବହୁତ ଯେ ଖେଦ ।
ମହୀଭାର ହରିବାକୁ ପ୍ରଭୁ ଭଗବାନ
ଜନ୍ମ ହୋଇଥିବେ ମର୍ତ୍ତ୍ୟେ ସେ କାଳରେ ଜାଣ
ଏମନ୍ତ ବୋଲି ସୁଦାମା କୃଷ୍ଣଙ୍କ ମାତାଙ୍କୁ
ପ୍ରଣାମ କରିଣ ବାହାରିଲେ ସେ ପିତାଙ୍କୁ ।
ତାହା ଦେଖି ରାଧା ମନେ ଦୁଃଖିତା ହୋଇଲେ
ସୁଦାମା ପଛରେ ବେଗେ ଗୋଡ଼ାଇଣ ଗଲେ ।
ହେ ଶିଶୁ ଯାଉଛ ବତ୍ସ ବୋଲି ପୁନଃ ପୁନଃ
କାତର ହୋଇ ସେଠାରେ କରନ୍ତେ ରୋଦନ ।
ଶ୍ରୀକୃଷ୍ଣ ତାଙ୍କୁ ବହୁତ ଆଶ୍ୱାସନା କଲେ
ଅଳ୍ପକାଳ ପରେ ସେହି ଆସିବେ ବୋଇଲେ ।
ଯେ ଅନ୍ତେ ସୁଦାମା ଯାଇ ଶଙ୍ଖଚୂଡ଼ ରୂପେ
ଜନମ ହୋଇଲେ ମର୍ତ୍ତ୍ୟେ ରାଧାଙ୍କର ଶାପେ ।
ତୁଳସୀ ତାଙ୍କର ପ୍ରିୟ ଭାର୍ଯ୍ୟା ହୋଇଲେ
ବହୁତକାଳ ପର୍ଯ୍ୟନ୍ତ ସୁଖ ଭୋଗ କଲେ ।
କେତେଦିନ ପରେ ମୋର ଶୂଳଘାତ ପାଇ
ଗୋଲୋକେ ମିଳିବେ ଶାପ ମୁକତ ସେ ହୋଇ
ବରାହକଳ୍ପେ ହେବା ରାଧିକା ସୁନ୍ଦରୀ
ଗୋକୁଳେ ଭାରତବର୍ଷ ମଧ୍ୟେ ଅବତରି ।
ବୃଷଭାନୁ ବୈଶ୍ୟଙ୍କର କନ୍ୟକା ହୋଇଲେ
ଅଯୋନି ସମ୍ଭବା ହୋଇ ଜନମ ପାଇଲେ ।
ବୃଷଭାନୁ ଧର୍ମପତ୍ନୀ ନାମ କଳାବତୀ
ବାୟୁଯୋଗେ ଗର୍ଭବତୀ ହେଲେ ମହାସତୀ ।
କାଳକ୍ରମେ କନ୍ୟାଟିଏ ଜନମ ସେ କଲେ
ରାଧା ବୋଲି କରି ତାର ନାମଗୋଟି ଦେଲେ ।
ଦ୍ୱାଦଶ ବରଷ ଅନ୍ତେ ଯଉବନ ଆସି
ପ୍ରବେଶିଲା ତାଙ୍କ ଅଙ୍ଗେ ଶୋଭା ପରକାଶି ।
ରାୟାଣ ବୋଲିଣ ଏକ ଗୋପସୁତ ଥିଲା
ତାହାକୁଳେ ରାଧାଙ୍କର ବିବାହ ବଢ଼ିଲା ।

ଯେତେବେଳେ ଶ୍ରୀକୃଷ୍ଣ ଗୋପରୂପେ ଜନ୍ମହେଲେ
ନନ୍ଦ ଯଶୋଦାଙ୍କର ସେ ନନ୍ଦନ ହୋଇଲେ ।
ଯଶୋଦାଙ୍କ ସହୋଦର ଅଟନ୍ତି ରାୟାଣ
ବିଷ୍ଣୁଙ୍କ ଅଂଶରେ ଜାତ ହୋଇଥିଲେ ପୁଣ ।
ଲେଖାରେ ଯେ କୃଷ୍ଣଙ୍କର ମାତୁଳ ଅଟନ୍ତି
ରାଧିକା ଯେ ହେଲେ ତାହାଙ୍କର ପ୍ରିୟବତୀ ।
ଛାୟାରୂପ ହେନ ଦେଇ ତାଙ୍କ ପାଶେ ରହି
ନିଜରୂପ ଅନ୍ତର୍ଦ୍ଧାନ କରି ଗଲେ ତହିଁ ।
ଯେତେବେଳେ ବୃନ୍ଦାବନେ ଶ୍ରୀନନ୍ଦନନ୍ଦନ ।
କ୍ରୀଡ଼ନ୍ତି ତାହାଙ୍କୁ ସଙ୍ଗେ ଘେନି ପୁନଃ ପୁନଃ ।
ସେହି ସମୟରେ ନିଜ ରୂପ ଘେନି କରି
ଉପସ୍ଥିତ ହେଉଥାନ୍ତି ରାଧିକା ସୁନ୍ଦରୀ ।
ରାଧାଙ୍କ ଚରଣ ପଦ ଦେଖିବା ଇଚ୍ଛାରେ
ଷାଠିଏ ସହସ୍ର ବର୍ଷ ପୁଷ୍କର ତୀର୍ଥରେ ।
ତପସ୍ୟା କରିଣ ବ୍ରହ୍ମା ଦରଶନ କଲେ
କୃତାର୍ଥ ହୋଇ ଆପଣା ପୁରେ ଚଳିଗଲେ ।
ଶ୍ରୀକୃଷ୍ଣ କିଞ୍ଚିତକାଳ ପୁଣ୍ୟ ବୃନ୍ଦାବନେ
ରାଧିକା ସହିତେ କ୍ରୀଡ଼ା କଲେ ତୋଷମନେ ।
ସେ ଅନ୍ତରେ ସୁଦାମାଙ୍କ ଶାପେ ଦୁହିଙ୍କର
ବିଚ୍ଛେଦ ହୋଇଲା ସେ କାଳରେ ମନେକର ।
ମହୀଭାର ନିବାରଣ କରି ରାଧାପତି
ଗୋଲୋକ ଭୁବନେ ଯାଇ କଲେ ଅବସ୍ଥିତି ।
ବୃଷଭାନୁ ନନ୍ଦ ଦୁହେଁ ତାଙ୍କୁ ଅନୁସରି
ଗଲେ ଗୋଲୋକ ଭୁବନେ ଦେହତ୍ୟାଗ କରି ।
ଆଉ ଯେତେ ଗୋପ ଗୋପୀ ରାଧାକୃଷ୍ଣକୁଳେ
ମର୍ତ୍ତ୍ୟଭୁବନରେ ଯେ ଜାତ ହୋଇଥିଲେ ।
ସମସ୍ତେ ତ ଛାୟାରୂପ ଘେନି ଥିଲେ ଆସି
ଶରୀର ଛାଡ଼ି ପ୍ରକୃତି ଅଙ୍ଗେ ଗଲେ ମିଶି ।
ଶ୍ରୀକୃଷ୍ଣଙ୍କ ପାରିଷଦ ହୋଇଣ ରହିଲେ
ପୂର୍ବପରି ନାନା ସୁଖେ ଦିନ କଟାଇଲେ ।
ତ୍ରିଂଶ ଲକ୍ଷ କୋଟି ଯେ ତାଙ୍କର ପ୍ରମାଣ
ରାଧାକୃଷ୍ଣଙ୍କ ପାଶରେ ରହିଲେ ସେ ଜାଣ ।
ଦ୍ରୋଣ ପ୍ରଜାପତି ନନ୍ଦ ଯଶୋଦା କାମିନୀ
ଗୋଲୋକେ ରହିଲେ ପୂର୍ବ ତପୋବଳ ଘେନି ।
ବସୁଦେବ କଶ୍ୟପ ଯେ ଦେବକୀ ଅଦିତି
ହରିପିତା ମାତା ସବୁ କଳ୍ପରେ ହୁଅନ୍ତି ।

ପିତୃଙ୍କ ମାନସୀ କନ୍ୟା ଦେବୀ କଳାବତୀ
ରାଧାଙ୍କର ଜନନୀ ସେ ପତିବ୍ରତା ସତୀ ।
ବସୁଦାମ ଗୋପାଳ ଯେ ଥିଲେ ଗୋଲୋକରେ
ବୃଷଭାନୁ ନାମେ ଜନ୍ମିଥିଲେ ସେ ମର୍ତ୍ତ୍ୟରେ ।
ଏମନ୍ତ ଅଟଇ ରାଧା ଜନ୍ମ ଉପାଖ୍ୟାନ
ଅମୂଲ୍ୟ କାହିଁଣ ମନୁ କଲ ଯା ଶ୍ରବଣ ।
ଅଶେଷ ପାତକ ନାଶ କରେ ଏ ଚରିତ୍ର
ସ୍ମରଣ ହୁଅଇ ପଦପଦାଙ୍କ ଅମୃତ ।
ଶ୍ରୀକୃଷ୍ଣ ପ୍ରଥମେ ଦୁଇ ଭାଗ ହୋଇଥିଲେ
ଭାଗକେ ଦ୍ୱିଭୁଜ ଭାଗେ ଚତୁର୍ଭୁଜ ହେଲେ ।
ଚତୁର୍ଭୁଜ ହୋଇଲେ ସେ ସ୍ୱୟଂ ନାରାୟଣ
ଦ୍ୱିଭୁଜ ରୂପକୁ କୃଷ୍ଣ ବୋଲି କହ ଜାଣ ।
ଚତୁର୍ଭୁଜଙ୍କର ପତ୍ନୀ ଲକ୍ଷ୍ମୀ ସରସ୍ୱତୀ
ଆଉରି ଗଙ୍ଗା ତୁଳସୀ ଉଭୟେ ଅଟନ୍ତି ।
ଶ୍ରୀକୃଷ୍ଣଙ୍କ ପ୍ରିୟବତୀ ରାଧିକା ସୁନ୍ଦରୀ
ଅଷ୍ଟାଙ୍ଗ ରୂପିଣୀ ପୁଣି ଜୀବଙ୍କ ଈଶ୍ୱରୀ ।
ତେଜରେ ରୂପରେ ଗୁଣ ବୟସରେ ସେହି
ଦେଖାଯାନ୍ତି ଶ୍ରୀକୃଷ୍ଣଙ୍କ ସମଭାବ ବହି ।
ପ୍ରଥମରେ ରାଧା ପଦ ଉଚ୍ଚାରଣ କରି
କୃଷ୍ଣନାମ ଉଚ୍ଚାରଣ କରିବ ବିଚାରି ।
ବ୍ୟତିକ୍ରମ କଲେ ଏହା ବ୍ରହ୍ମହତ୍ୟା ଦୋଷ
ହୁଅଇ ଏକଥା ଶ୍ରୁତି ଶାସ୍ତ୍ରରେ ପ୍ରକାଶ ।
କାର୍ତ୍ତିକ ପୂର୍ଣ୍ଣିମା ଦିନ ଦେବ ନରହରି
ରାସମଣ୍ଡଳରେ ଗୋପୀ ଗୋପାଳଙ୍କୁ ଧରି
ରାଧା ଦେବୀଙ୍କର ପୂଜା ମହୋତ୍ସବ କଲେ
ରତ୍ନଗୁଟିକାରେ ତାଙ୍କ କବଚ ରଖିଲେ ।
ଦକ୍ଷବାହୁ ମୂଳେ ପୁଣି କଣ୍ଠ ପ୍ରଦେଶରେ
ଧାରଣ କଲେ ତାହାକୁ ଅତ୍ୟନ୍ତ ଆଦରେ ।
ପୁଣି ଭକ୍ତିଭରେ ସ୍ତୋତ୍ର ଧ୍ୟାନକୁ ପଢ଼ିଲେ
ରାଧା ଚର୍ବିତ ତାମ୍ବୁଳ ଭକ୍ଷଣ ସେ କଲେ ।
କେତେବେଳେ ରାଧିକାଙ୍କୁ ପୂଜନ୍ତି ଶ୍ରୀହରି
କେବେ ଶ୍ରୀହରିଙ୍କି ପୂଜା କରନ୍ତି କିଶୋରୀ ।

ପରସ୍ପରେ କୃଷ୍ଣ ଦେବୀ ସେ ଦୁହେଁ ଅଟନ୍ତି
ଯେହ୍ନେ ଭେଦ ବିଚାରନ୍ତି ନରକକୁ ଯାନ୍ତି ।
ପୁଣି ବ୍ରହ୍ମା ବିଷ୍ଣୁ ଧାତାଙ୍କ ଆଦେଶ ପାଳଣ
ମାନସ ରଞ୍ଜିଇ ଧର୍ମ କରିଲେ ପୂଜନ ।
ଆଉରି ଅନନ୍ତ ନାଗ ରବି ନିଶାକର
ମହେନ୍ଦ୍ର ଶଙ୍କର ମନୁ ଦାନବ କିନ୍ନର ।
ମନୁଷ୍ୟ ଆଉରି ଯୋଗୀ ଋଷି ସନ୍ଥମାନେ
ରାଧା ଦେବୀ ପାଦ ସର୍ବେ ପୂଜିଲେ ଭକ୍ତିରେ ।
ତୃତୀୟେ ପୂଜିଲେ ସପ୍ତଦ୍ୱୀପ ଅଧୀଶ୍ୱର
ନାମ ସୁଜନେ ସର୍ବଦା ଥାନ୍ତି ସେ ତତ୍ପର ।
ପୂର୍ବରେ ସେ ନରନାଥ ବିପ୍ର ଶାପ ପାଇ
ବହୁ କଷ୍ଟ ଭୋଗୁଥିଲେ ବ୍ୟାଧିବନ୍ତ ହୋଇ ।
ତେଣୁ ମାତ ରାଧିକାଙ୍କୁ ଆରାଧନା କଲେ
ଯାଇଥିବା ରାଜ୍ୟଧନ ଐଶ୍ୱର୍ଯ୍ୟ ପାଇଲେ ।
ସେହ୍ନେ ରୋଗ ମୁକ୍ତ ହୋଇ ମହା ଆନନ୍ଦରେ
କାଳ ବିତାଇଲେ ରାଧାଦେବୀଙ୍କ ବରରେ ।
ମର୍ତ୍ତ୍ୟଲୋକେ ସର୍ବ ଚିନ୍ତା ଦୂର ହୋଇଗଲା
ଧନଜନ ଗୋପଲକ୍ଷ୍ମୀ ପ୍ରାପତ ହୋଇଲା ।
ଧାତା ଅର୍ପିତ କବଚ କଣ୍ଠେ ବା ବାହୁରେ
ବାନ୍ଧିଲେ ତେତେ ବରଷ ପୁଷ୍କର ତୀର୍ଥରେ ।
ଏହ୍ମାନେ ତାହାଙ୍କର ତପ ସିଦ୍ଧ ହେଲା
ଇହ ଜଗତରେ ଧନ ଅପାର ମିଳିଲା ।
ପ୍ରାଣ ଯିବା ସମୟରେ ବିଷ୍ଣୁଦୂତମାନେ
ଗୋଲୋକ ଧାମକୁ ନେଇ ଯିବେ ସେ ଜନମାନେ,
ଏରୂପେ ସମସ୍ତ ଗାଥା ତୁମ୍ଭ ଅଗ୍ରତରେ
ବର୍ଣ୍ଣନା କରିଲି ଆଦ୍ୟ ପ୍ରାନ୍ତ କରିବ ରେ ।
ଆଉ ଯେବେ କିଛି ଶୁଣିବାକୁ ଥାଏ ମନ
କହିଣ ତମ ସନ୍ଦେହ କରିବା ମୋଚନ ।
ଏହା କହି ମହାଦେବ ମଉନ ହୋଇଲେ
ଅଧମ କ୍ଷେତ୍ରମୋହନ ଗୀତେ ଭାବ ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ସୁଦାମଙ୍କ ଶାପ ଓ ରାଧାରାଣୀଙ୍କର ମର୍ତ୍ତ୍ୟାଗମନ
ବର୍ଣ୍ଣନେ ନାମ ଦ୍ୱିପଞ୍ଚାଶତ୍ ଅଧ୍ୟାୟଃ ।

—+✻+—

# ନବପଞ୍ଚାଶତ୍ ଅଧ୍ୟାୟ

## ସୁଯଜ୍ଞ ନୃପତିଙ୍କର ଚରିତ୍ର ସମ୍ବନ୍ଧେ ହରପାର୍ବତୀଙ୍କର କଥୋପକଥନ

ପାର୍ବତୀ ପୁଚ୍ଛିଲେ ଭୋଳାନାଥ ମୁଖ ଚାହିଁ
ଆଉ କିଛି ଶୁଣିବାକୁ ମନ ବଳୁଅଛି ।
ଦୟାକର ତାହା କହି ତୋଷକର ମନ
ଆହେ ପରମ ବନ୍ଧୁ ଜଗତଜୀବନ ।
କେଉଁ ନୃପତି ସପ୍ତଦ୍ୱୀପ ଅଧୀଶ୍ୱର
କେଉଁ ବଂଶରେ ଅବା ଉତ୍ପତ୍ତି ତାହାର ।
ବ୍ରାହ୍ମଣ ଠାରୁ କାହିଁକି ଶାପ ସେ ପାଇଲେ
କାହା ବେଳେ ଶ୍ରୀରାଧାଙ୍କୁ ଆରାଧନା କଲେ ।
ଯେଉଁ ରାଧା ପରମାତ୍ମା ଶ୍ରୀକୃଷ୍ଣଙ୍କ ନାରୀ
ସେ କେମନ୍ତେ ସେବିଲେ ତାଙ୍କୁ ନରତନୁ ଧରି ।
ପୁଣି ଯାହା ପାଦପଦ୍ମ ଦର୍ଶନ ଇଚ୍ଛାରେ
ଷାଠିଏ ସହସ୍ର ବର୍ଷ ପୁଷ୍କର ତୀର୍ଥରେ ।
କଠୋର ତପସ୍ୟା କଲେ ସାବିତ୍ରୀଙ୍କ ସାଇଁ
ଦେଖିଲେ କରୁଣେ ତାଙ୍କ ରୂପ ନ ପାଇଁ ।
ଆପଣଙ୍କ ପକ୍ଷେ ଯାହା ଦୁର୍ଲ୍ଲଭ ଅଟଇ
ମନୁଷ୍ୟମାନଙ୍କୁ ତାହା ମିଳିଲା ବା କେହି ।
ତ୍ରିଜଗତ ଅଧିପତି କରୁଣେ ତାହାଙ୍କୁ
ଦେଲେ ଦେବୀଙ୍କର ପୂଜା କବଚ ଧ୍ୟାନକୁ ।
ଏ ସମସ୍ତ କଥା ମୋତେ କହ ମହେଶ୍ୱର
ଶୁଣିଲେ ସଂଶୟ ଦୂର ହୋଇବ ମୋହର ।
ଏହିରୂପେ ପାର୍ବତୀଙ୍କ ବଚନକୁ ଶୁଣି
କହିଲେ ତାହାଙ୍କୁ ଆନନ୍ଦରେ ଶୂଳପାଣି ।
ବୋଇଲେ ଗୋ ଗିରିରାଜନନ୍ଦନୀ ସେ କଥା
କହିବା ଶୁଣ ମନଦେଇ ଦେବୀ ସର୍ବଥା ।
ମନୁଙ୍କର ଆଦିଭୂତ ସ୍ୱାୟମ୍ଭୁବ ନାମେ
ବ୍ରହ୍ମାଙ୍କଠାରୁ ଜନମ ହୋଇଲେ ପ୍ରଥମେ ।
ପରମ ତପସ୍ୱୀ ସେହି ଶତରୂପା ପତି
ଉତ୍ତାନପାଦ ନାମରେ ତାହାଙ୍କ ସନ୍ତତି ।
ସେ ଉତ୍ତାନପାଦଠାରୁ ଧ୍ରୁବ ହେଲେ ଜାତ
ତାହାଙ୍କର ଯଶ ଅଟେ ଜଗତ ବିଖ୍ୟାତ ।
ଉତ୍କଳ ନାମରେ ସୁତ ତାଙ୍କଠାରୁ ହେଲେ
ସର୍ବଦା ସେ ଶ୍ରୀହରିଙ୍କୁ ସେବା କରୁଥିଲେ ।
ପୁଷ୍କର ତୀର୍ଥେ ସହସ୍ର ରାଜସୂୟ ଯଜ୍ଞ
କରାଇ ସେ ଦେବତାଙ୍କୁ ଦେଇଥିଲେ ଭାଗ ।
ବ୍ରାହ୍ମଣଙ୍କୁ ଡାକି ସ୍ୱର୍ଣ୍ଣ ପାତ୍ରମାନଙ୍କରେ
ଦେଇଥିଲେ ଧନରତ୍ନ ଇଚ୍ଛା ଅନୁସାରେ ।
ଯଜ୍ଞ ଅନ୍ତେ ନାନାବିଧ ଉତ୍ସବ କରାଇ
ଦାନ କଲେ ବହୁ ବିତ୍ତ ପୁଣି ତୋଷ କରି ।
ଏରୂପେ ତାହାଙ୍କ ଯାଗ ଦେଖି ପ୍ରଜାପତି ।
ସୁଯଜ୍ଞ ବୋଲିଣ ନାମ ଦେଲେ କରି ପ୍ରୀତି ।
ମନୁବଂଶରେ ଜନମ ଅଟନ୍ତି ସେ ନୃପ
ଧନରତ୍ନ ଅନ୍ନବସ୍ତ୍ର ଅନନ୍ତ ଅମାପ ।
ପ୍ରତିଦିନ ଦଶଲକ୍ଷ ଗାଈଙ୍କୁ ଅଣାଇଁ,
ସୁବର୍ଣ୍ଣରେ ତାଙ୍କ ଅଙ୍ଗ ଭୂଷିତ କରାଇ ।
ଦକ୍ଷିଣା ସହିତେ ଶିଷ୍ଟ ଦ୍ୱିଜଙ୍କୁ ଅନନ୍ତ
ଏ ବାହାରେ ନାନାଦ୍ରବ୍ୟ ଦେଇଣ ଥିଲେ ସନ୍ତ ।
ଉତ୍ତମ ଅନ୍ନବ୍ୟଞ୍ଜନ ମିଷ୍ଟ ଦ୍ରବ୍ୟମାନ
ଷାଠିଏ କୋଟି ବ୍ରାହ୍ମଣଙ୍କୁ ଦିଅନ୍ତି ପ୍ରତିଦିନ ।
ସୂପ ଯୂଷ ମତ୍ସ୍ୟ ମାଂସ ଦଧି ଦୁଗ୍ଧ ଘୃତ
ପାକ କରାଇ ଭୋଜନ କରନ୍ତି ବହୁତ
ଭୋଜନ କଲାବେଳେ ସମସ୍ତ ବ୍ରାହ୍ମଣ
ରାଜାଙ୍କୁ କେ ପ୍ରଶଂସା ନ କରନ୍ତି ଜାଣ ।
କେବଳ ବୋଲନ୍ତି ରାଜା ପିତୃଙ୍କ ଧର୍ମରେ
ଜାତ ହୋଇଛନ୍ତି ଏହି ମର୍ତ୍ତ୍ୟ ଭୁବନରେ ।
ଏହିରୂପେ କେତେ ଦିନ ଗତ ହେଲାପରେ
ଦିନେ ସେ ରାଜନ ଅତି ହରଷ ଚିତ୍ତରେ ।
ଯାଗ ଅନ୍ତେ ପଞ୍ଚବିଂଶଲକ୍ଷ କୋଟି ଦ୍ୱିଜ
ଭୋଜନ ଦେବା ସକାଶେ କରାଇଣ ଯଜ୍ଞ ।
ନାନାବିଧ ଖାଦ୍ୟପେୟ ଦେଇ ତୋଷ କଲେ
ଇଚ୍ଛା ଅନୁସାରେ ସ୍ୱର୍ଣ୍ଣ ରତ୍ନମାନ ଦେଲେ ।
ବ୍ରାହ୍ମଣ ତ କେତେ ତାହା ବହି ନ ପାରିଲେ
ବଳଦ ଉପରେ ଲଦି ବୁହାଇଣ ନେଲେ ।
ଯାଚକମାନଙ୍କୁ ମଧ୍ୟ କେତେକ ତହିଁରୁ
ଦେଲେ ମାନସତେ କିଛି ନ ହୋଇଣ ଊଣୁ ।

ଏ ବାହାରେ ଯିବାବେଳେ ମାର୍ଗରେ କେତେକ
ଫିଙ୍ଗି ଦେଇ ଚାଲିଗଲେ ଗୁଢ଼ ହୃଦୁ ଦକ ।
ବିପ୍ରଙ୍କ ଭୋଜନ ପରେ ସୁଯଜ୍ଞ ନୃପତି
ଡକାଇ ଆଣିଲେ ଯେତେ ଥିଲେ ଅନ୍ୟ ଜାତି
ସମସ୍ତଙ୍କୁ ଉପଯୁକ୍ତ ଖାଦ୍ୟ ପେୟ ଦେଲେ
ଆନନ୍ଦରେ ଖାଇପିଇ ସନ୍ତୁଷ୍ଟ ସେ ହେଲେ ।
ତହିଁର ଯେ ଅବଶିଷ୍ଟ ଅନ୍ନରାଶିମାନ
ଗଦା ହୋଇ ରହିଥାଏ ପର୍ବତ ସମାନ ।
ଏହିରୂପେ ଯଜ୍ଞକର୍ମ ସମାପନ କରି
ବସିଲେ ରାଜନ ସଙ୍ଗେ ସଭାସଦ ଧରି ।
ସୁନ୍ଦର ସୁବର୍ଣ୍ଣ ରତ୍ନସିଂହାସନ ପରେ
ବିଜେ କଲେ ରତ୍ନମୟ ଛତ୍ର ଟେକି ଶିରେ ।
ସେ ସଭାରେ ନାନାବିଧ ଦ୍ରବ୍ୟ ପୂର୍ଣ୍ଣ ହୋଇ
ଦେଖିବା ମାତ୍ରକେ ମନ ନେଉଥିଲା ମୋହି ।
ସବୁଆଡ଼େ ସିଞ୍ଚାହୋଇ ଚନ୍ଦନ ଉଦକ
ସୁଗନ୍ଧ ବିସ୍ତାର କରୁଥିଲା ଚାରିପାଖ ।
ଫଳ ପଲ୍ଲବ ସହିତ ପୂର୍ଣ୍ଣକୁମ୍ଭମାନ
ଥୁଆ ହୋଇ ଦିଶୁଥିଲା ଅତି ଶୋଭାବନ ।
ବାସବ ଆଦିତ୍ୟ ଚନ୍ଦ୍ର ବସୁ ସିଦ୍ଧଗଣ
ବସିଲେ ହରଷେ ଖୋଜି ଯେ ଯାହା ଆସନ ।
ସୁବର୍ଣ୍ଣ ଆସନେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଉପବିଷ୍ଟ ହେଲେ ନୃପ କରନ୍ତେ ଆଦର ।
ଯେଉଁରୂପେ ବଇକୁଣ୍ଠ ପୁରେ ନାରାୟଣ
ବିଜୟ କରନ୍ତି ଘେନି ପାରିଷଦଗଣ ।
ସେହିପରି ମହାରାଜ ସୁଯଜ୍ଞ ନୃପତି
ସେ ସଭା ମଧ୍ୟରେ ଶୋଭା ପ୍ରକାଶିଲେ ଅତି ।
ଏମନ୍ତ ସମୟେ ଏକ ବ୍ରାହ୍ମଣ ତପସ୍ୱୀ
ତାହାଙ୍କର ସମକ୍ଷରେ ଉଭା ହେଲେ ଆସି ।
ପରିଧାନ କରିଛନ୍ତି ମଳିନ ବସନ
ବିବର୍ଣ୍ଣ ଦିଶୁଛି ତାଙ୍କ ମୁଖ ନାସା କର୍ଣ୍ଣ ।
ସିଂହାସନ ପରେ ଦେଖି ରାଜାଙ୍କୁ ସେ ଦ୍ୱିଜ
ଆଶୀର୍ବାଦ କଲେ ଜାଣ ଆହେ ଋଷିରାଜ ।
ରାଜା ମଧ୍ୟ ବ୍ରାହ୍ମଣଙ୍କୁ ନମସ୍କାର କଲେ
ମାତ୍ର ସେ ଆସନପରୁ ଉଠି ନ ଆସିଲେ ।
ସେ ସକାଶୁ ସଭାସଦେ ରାଜାଙ୍କୁ ଅନାଇଁ
କେହି ହେଲେ ଆସନରୁ ନ ଉଠିଲେ ତହିଁ ।

ତହିଁରେ ରାଜାଙ୍କର ହେଲା ଅପରାଧ
ବ୍ରାହ୍ମଣ ତପସ୍ୱୀ ମନେ ହେଲେ ଅତି କ୍ରୋଧ ।
ଏମନ୍ତ ବିଚାରି ମୁହଁ ତମ୍ଭାଇ ହୋଇଲେ
ଅଳପ ଅଳପ ହସି ମନେ କହିଲେ ।
ରାଜାଙ୍କର ଆଚରଣ ଦେଖି ଦ୍ୱିଜୋତ୍ତମ
ବ୍ରହ୍ମାଆଦି ଦେବତାଙ୍କୁ କରିଣ ପ୍ରଣାମ ।
କ୍ରୋଧଭରେ ଆପଣାର ନେତ୍ର ରଙ୍ଗକରି
କହିଲେ କେଡ଼େ ଗର୍ବିତ ହେଲୁ ଦଣ୍ଡଧାରୀ ।
ଯାଗକର୍ତ୍ତା ଦେବତାଙ୍କୁ କରିବାରୁ ତୋଷ
ବସିଅଛନ୍ତି ଯେମାନେ ସିନା ତାର ପାଶ ।
ଦେବତା ସମାନ ଅଟେ ମର୍ତ୍ତ୍ୟର ବ୍ରାହ୍ମଣ
ବ୍ରାହ୍ମଣ ଯୋଗେ ଧର୍ମ ରକ୍ଷା ହୁଏ ଜାଣ ।
ମୋତେ ଯାହା ଅପମାନ ଦେଲୁ ଜାଣି ଜାଣି
ସେ ଘେନି ମୋହର ଶାପ ଘେନ ନୃପମଣି ।
ଆଜିଠାରୁ ରାଜ୍ୟଭ୍ରଷ୍ଟ ହୋଇ ଦୂରେ ରହ
ଶରୀରରେ କୁଷ୍ଠରୋଗ ଭୋଗ କରୁଥାଅ ।
ଗର୍ଦ୍ଦଭ ଗୋପାଳ ପରି ହୁଅ ବୁଦ୍ଧିହୀନ
ଅନ୍ୟଥା ନୋହିବ କେବେ ଆମ୍ଭର ବଚନ ।
ଏହିପରି ଶାପଦେଇ ସେ ନରପତିଙ୍କୁ
ବସିଥିଲେ ଯେଉଁମାନେ ଅନାଇ ତାହାଙ୍କୁ ।
ଶାପ ଦେବାକୁ ବ୍ରାହ୍ମଣ ଉଦ୍ୟତ ହୁଅନ୍ତେ
ପ୍ରାର୍ଥନା କଲେ ବହୁତ ଉଠି ସେ ସମସ୍ତେ ।
ଯେ ସକାଶୁ ଦ୍ୱିଜବର ସନ୍ତୁଷ୍ଟ ହୋଇଲେ
କାହାକୁ କିଛି ନ କହି ମଉନେ ରହିଲେ ।
ଏହିକାଳେ ଆସନରୁ ଉଠି ନରପତି
ବିପ୍ରଙ୍କ ଚରଣ ଧରି କଲେକ ବିନତି ।
ତାହା ଦେଖିଣ ବ୍ରାହ୍ମଣ ଲେଉଟାଇ ମୁଖ
ବାହାରିଲେ ଯିବାପାଇଁ ଗୁଢ଼ ତାଙ୍କ ପାଖ ।
ସେ ସଭାରେ ମୁନିଋଷିମାନେ ଯେତେ ଥିଲେ
ସେହିକ୍ଷଣି ବ୍ରାହ୍ମଣଙ୍କ ପଛେ ଗୋଡ଼ାଇଲେ ।
ତାହାଙ୍କର ନାମସବୁ କହୁଅଛୁ ଶୁଣ
ପୁଲହ ପୁଲସ୍ତ୍ୟ ଭୃଗୁ ଅଙ୍ଗିରା ଚ୍ୟବନ ।
ପ୍ରଚେତା ମରୀଚି କ୍ରତୁ କଶ୍ୟପ ବଶିଷ୍ଠ
ଶୁକ୍ର ବୃହସ୍ପତି ଯେ ଦୁର୍ବାସା ମୁନିଶ୍ରେଷ୍ଠ ।
ଲୋମଶ ଗୌତମ କଣ୍ୱ କଠ କାତ୍ୟାୟନ
କଣାଦ ପାଣିନି ମାର୍କଣ୍ଡେୟ ବୋଲି ଜାଣ ।

ତପିଶଳ ଜାଜଳି ଯେ ମୃକୁଣ୍ଡୁ ନନ୍ଦନ
ସନକ ସନନ୍ଦ ବୋଢ଼ୁ ପୈଳ ସନାତନ ।
ସନତ୍କୁମାର ନର ନାରାୟଣ ଋଷି
ପରାଶର ଜରତ୍କାରୁ ସମ୍ବର୍ତ୍ତ ତପସ୍ୱୀ ।
କରଥ ଚ୍ୟବନ ବାଲ୍ମିକ ଭରଦ୍ୱାଜ
ଅଗସ୍ତ୍ୟ ଆସ୍ତିକ ଔର୍ବ ଅଙ୍ଗି ଋଷିରାଜ ।
ଉତଥ୍ୟ ଆସୁରି ଜାମଦଗ୍ନ୍ୟ ଲଙ୍ଗଳକ
ଶିଖାଳୀ ଶାକଟାୟନ ଗର୍ଗ ପଞ୍ଚମୁଖ ।
ଶାକଲ୍ୟ ଦେବଳ ଜୈଗୀଷବ୍ୟ ବାମଦେବ
ବସ୍ତ୍ୟ ବାଳଖିଲ୍ୟା ମୁନିଗଣଙ୍କ ପ୍ରଭାବ ।
ଶକ୍ତି ଦକ୍ଷ କର୍ଦ୍ଦମ ଯେ ପ୍ରସନ୍ନ କପିଳ
ବିଶ୍ୱାମିତ୍ର କୌତ୍ସ ଅଘମର୍ଷଣ ସୁଶୀଳ ।

ଜ୍ଞାନଦ ବାମଦ ସତ୍ୟାନନ୍ଦ ସତ୍ୟବ୍ରତ
ବାଗୀଶ ବତ୍ସସ ପୁଣି ବଶ୍ଚନସ୍ୟ ଯୁତ ।
ରୁଚକ ଆଦି ସକଳ ମୁନିଙ୍କର କୁଳେ
ଦେବତା ପିତୃଙ୍କୁ ଘେନି ସର୍ବ ଦିଗପାଳେ ।
ଉଚ୍ଚସ୍ୱରେ ବୋଇଲେ ହେ ଶୁଣ ବିପ୍ରବର
ଅନନ୍ତ ସମସ୍ତ ଲକ୍ଷ୍ମୀ ଶୁଣ ଆମ୍ଭ ଗିର ।
ଏତେ ବୋଲି ବ୍ରାହ୍ମଣଙ୍କୁ ଥୁହାଇ ସେଠାରେ
ପ୍ରବୋଧନା କଲେ ଲକ୍ଷ୍ମୀ ନାନା ପରକାରେ ।
କ୍ରମେ କ୍ରମେ ଯେ ଯାହାର ମତ ପରକାଶ
କରନ୍ତେ ସେ ଦ୍ୱିଜବର ହେଲେ ମହାତୋଷ ।
ସେ ଦେବ ଋଷିଙ୍କ ପାଦେ କରି ନମସ୍କାର
ଗୀତଛନ୍ଦେ ବିରଚିଲା ଅଧମ କ୍ଷେତ୍ରର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଈଶ୍ୱର ସୁଯଜ୍ଞ ନୃପତିଙ୍କର ଚରିତ ସମ୍ବନ୍ଧେ ହରପାର୍ବତୀଙ୍କର କଥୋପ କଥନେ ନାମ ତ୍ରିପଞ୍ଚାଶତ୍ ଅଧ୍ୟାୟଃ ।

—*—

## ଚ ତୁଃ ପ ଞ୍ଚା ଶ ତ୍ ଅ ଧ୍ୟା ୟ

### ଋଷିଗଣମାନେ ନିଜ ନିଜର ମତ ପ୍ରକାଶ କରିବା

ଶୁଣ ଆହେ ସୁଜ୍ଞଜନେ ଅପୂର୍ବ କଥନ
ପାର୍ବତୀ ଶୁଣିଣ ଭୋଳାନାଥଙ୍କ ବଚନ ।
ବୋଇଲେ ଦୀନଜନ ବନ୍ଧୁ ସୁରନାଥ
ବ୍ରାହ୍ମଣ ଋଷିଙ୍କ କଥା କହ ମୋ ଅଗ୍ରତ ।
ମୁନିଋଷି ଏ ତାହାଙ୍କ ପଛରେ ତ ଗଲେ
ତାହାଙ୍କୁ କି କଥା କହି ତୃପତ କଲେ ।
ସେ କଥା ମାନ ମୋ ଆଗେ କହନ୍ତୁ ବିସ୍ତାରି
ଶୁଣିବାପାଇଁକି ଶ୍ରଦ୍ଧା ବଳିଛି ମୋହରି ।
ତାହାଙ୍କ ବଚନେ ହର ହୋଇ ଆନନ୍ଦିତ
ବୋଇଲେ ଶ୍ରବଣ କର ପୁଚ୍ଛିଲ ଯେ ତତ୍ତ୍ୱ ।
ଦ୍ୱିଜଙ୍କ ପାଶରେ ଯାଇ ମୁନିଏ ମିଳିଲେ
ଆଦ୍ୟେ ସନତ କୁମାର ବଚନ ଭାଷିଲେ ।
ବୋଇଲେ ହେ ତପିକୁଳ ମଣ୍ଡଳ ମଣ୍ଡନ
ଯେତେବେଳେ ନୃପତିଙ୍କୁ କଲ ଶାପଦାନ ।
ସେହିକ୍ଷଣଠାରୁ ଭୟେ କୁନ୍ତ ସମିପକୁ
ଗମନ କଲା ତେଜିଣ ଯେ ରାଜ୍ୟ ଶଙ୍କାକୁ ।

ଏ ବାହାରେ ଯଶଗୁଣ ଧନ କୀର୍ତ୍ତି ଜୟ
ଦେବ ପିତୃ ଅଗ୍ନି ଆଦି ସର୍ବ ଅଭ୍ୟୁଦୟ ।
ରାଜାଙ୍କୁ ଛାଡ଼ି ସକଳ ପଳାଇଣ ଗଲେ
ବିନଷ୍ଟ ହେବେ ନୃପତି ତୁମ୍ଭେ ନ ଭାବିଲେ ।
ଆହେ ବିପ୍ରବର ତୋଷ ହୁଅ ଏବେ ତୁମ୍ଭେ
ରାଜାଙ୍କ ହିତ ସାକଶେ କହୁଅଛୁ ଆମ୍ଭେ ।
ବ୍ରାହ୍ମଣଙ୍କର ହୃଦୟ ଲବଣୀ ସମାନ
କୋମଳ ଅଟଇ ପୁଣି ଦୟାଗୁଣେ ପୂର୍ଣ୍ଣ ।
ଶୁଦ୍ଧ ସୁନିର୍ମଳ ତପ ଅଗ୍ନିବେ ମାର୍ଜିତ
ତେଣୁ କହୁଅଛୁ କ୍ଷମା କର ଦ୍ୱିଜସୁତ ।
ଏଥୁଅନ୍ତେ ବୃହସ୍ପତି ବୋଇଲେ ହେ ଦ୍ୱିଜ
ମୁଁ କହିବା କଥା ଏବେ ମାନସରେ ହେଜ ।
ଅତିଥି ହୋଇ ଆପଣ ଆସିଥିବାବେଳେ
ନ ବିଚାରି ରାଜା ନିଜ ଅପରାଧ କଲେ ।
ନିରାଶ ହୋଇ ଅତିଥି ପଳାଏ ଯା ଘରୁ
ଜଳ ନ ଘେନନ୍ତି ଦେବ ପିତୃ ତା ହସ୍ତରୁ ।

ସେ ସକାଶୁ କହୁଅଛୁ ଆପଣଙ୍କୁ ମୁହିଁ
ନୃପତିଙ୍କ ଦୋଷ କ୍ଷମାକର ଦୟାବନ୍ତ ।
ଆପଣଙ୍କୁ ନ କଲେ ଯେ ଅତିଥି ସତ୍କାର
ବ୍ରହ୍ମହତ୍ୟା ଗୋହତ୍ୟା ଦୋଷ ତାହାଙ୍କର ।
ହୋଇବ ନିଶ୍ଚୟ ଜାଣ ଦ୍ୱିଜକୁଳମଣି
ଏଥିରେ ସନ୍ଦେହ ବୋଲି ନାହିଁ କହୁ ଶୁଣି ।
ପୁଲସ୍ତ୍ୟ ବୋଇଲେ ଶୁଣ ଆହେ ଦ୍ୱିଜଶ୍ରେଷ୍ଠ
ଅତିଥିମାନଙ୍କର ଯେ କରଇ ଅନିଷ୍ଟ ।
ତାହାକୁ ଅତିଥି ନିଜ ପାପଭାଗ ଦେଇ
ଯାଏ ସେହିକ୍ଷଣି ତାର ପୁଣ୍ୟଭାଗ ନେଇ ।
ନୃପତିଙ୍କ ଦୋଷକ୍ଷମା କଲେ ଯେବେ ତୁମ୍ଭେ
ନ ଯିବ ସେ ନିଶ୍ଚେ ନାଶଯିବେ ଜାଣୁ ଆମ୍ଭେ ।
ସେ ଅନ୍ତେ ପୁଲହ ମୁନି ବ୍ରାହ୍ମଣଙ୍କୁ ଚାହିଁ
ବୋଇଲେ ମୋଠାରୁ ଶୁଣ ଦ୍ୱିଜକୁଳସାଇଁ ।
ରାଜଶିରୀ ଯୋଗେ ଅବା ବିଦ୍ୟା ସମ୍ପଦରେ
ଯେଉଁଲୋକ ଅତିଥିଙ୍କୁ ଅମାନନା କରେ ।
ବ୍ରାହ୍ମଣ ସେ ହୋଇଥିଲେ ହୁଏ ସନ୍ଧ୍ୟାହୀନ
କ୍ଷତ୍ରୀ ହୋଇଥିଲେ ଲକ୍ଷ୍ମୀ ପଳାନ୍ତି ବହନ ।
ଏକାଦଶୀଦିନ ବିଷ୍ଣୁନୈବେଦ୍ୟ ବଞ୍ଚିତ
ହୁଅଇ ସେ ଲୋକ ଜାଣ ବିପ୍ରକୁଳ ସୁତ ।
ରାଜାଙ୍କଠାରେ ସୁବସ୍ଥା କରି ତାଙ୍କୁ ଘରେ
ଉପସ୍ଥିତ ହୁଅ ଯାଇ ଆମ୍ଭ ବଚନରେ ।
ଋତୁ ବୋଇଲେ ବ୍ରାହ୍ମଣ କ୍ଷତ୍ରିୟ ଯେ ବୈଶ୍ୟ
ଶୂଦ୍ର ଆଦିକରି ଯେତେ ଅଛନ୍ତି ପୁରୁଷ ।
ସେମାନଙ୍କ ମଧ୍ୟରେ ଯେ ବ୍ରାହ୍ମଣଙ୍କୁ ଦେଖି
ପୂଜା ନ କରି ସେଠାରୁ ପଳାଏ ଉପେକ୍ଷି ।
ଧନହୀନ ପୁତ୍ରହୀନ ଭାର୍ଯ୍ୟାହୀନ ହୋଇ
ଜୀଇଥିବାଯାଏ କଷ୍ଟଭୋଗ ସେ କରଇ ।
ଏବେ ଆମ୍ଭେ ବୋଲୁଅଛୁ ରାଜାଙ୍କର ଦୋଷ
କ୍ଷମାକର ଆପଣତ ଦୟାଳୁ ପୁରୁଷ ।
ଅଙ୍ଗିରା ବୋଇଲେ ତାହା ଅଟଇ ଯଥାର୍ଥ
ନ ଜାଣି ରାଜନ ସିନା କଲେ ଏ ଅନର୍ଥ ।
ବ୍ରାହ୍ମଣଙ୍କୁ ଯେଉଁ ଲୋକ ଅମାନନା କରେ
ବୃଷବାହ ହୁଏ ସାତ ଜନ୍ମ ଭାରତରେ ।
ମରୀଚି ବୋଇଲେ ଦେବ ବ୍ରାହ୍ମଣ ଗୁରୁଙ୍କୁ
ଦେଖିକରି ଯେଉଁ ଲୋକ ନ କରେ ଭକ୍ତିକୁ ।
ବିଷ୍ଣୁଭକ୍ତ ହୀନ ହୋଇ ସକଳ ପାତକ
ଭୋଗ କରଥାଏ ଜଗତରେ ସେହି ଲୋକ ।
କଶ୍ୟପ ବୋଇଲେ ବିଷ୍ଣୁଭକ୍ତ ବ୍ରାହ୍ମଣଙ୍କୁ
ଅମାନନା କରଇ ଯେ ବହୁଣ ଗର୍ବକୁ ।
ବିଷ୍ଣୁମନ୍ତ୍ର ଉପାସନା ବିଷ୍ଣୁଙ୍କ ପୂଜନ
ଏ ଦୁଇ କର୍ମକୁ ସେହି ନୁହଇ ଭାଜନ ।
ପ୍ରଚେତା ବୋଇଲେ ଶୁଣ ମୋହର ବଚନ
ଅତିଥିକୁ ପୂଜା ନ କରଇ ଯେଉଁ ଜନ ।
ପିତୃମାତୃ ଭକ୍ତିହୀନ ହୁଏ ସେ ନରତେ
ନ ରହଇ ଧର୍ମ କେବେ ତାହାର ଅଗ୍ରତେ ।
ଦେହ ଅନ୍ତେ ସାତଜନ୍ମ ହସ୍ତୀବଂଶେ ତାର
ଜନମ ହୁଅଇ ଜାଣ ଆହେ ବିପ୍ରବର ।
ଦୟାକରି ନୃପତିଙ୍କୁ କର ଏବେ କ୍ଷମା
ବିଷ୍ଣୁଙ୍କ ସମାନ ଅଟେ ବ୍ରାହ୍ମଣ ମହିମା ।
ଦୁର୍ବାସା ବୋଇଲେ ଗୁରୁ ବ୍ରାହ୍ମଣଙ୍କୁ ଯେବେ
ଅମାନନା କରେ ଲୋକ ଅଜ୍ଞାନରେ ତେବେ ।
ଶୂକର ଜନମ ସେହି ଭାରତବର୍ଷେ
ଜାତ ହୁଅଇଟି ସେହି ନିଜ କର୍ମ ଦୋଷେ ।
ଏ ସକାଶୁ ବୋଲୁଅଛୁ ଦୟା ମନେ ବହି
ରାଜାଙ୍କର ଦୋଷ କ୍ଷମାକର ଦ୍ୱିଜସାଇଁ ।
ଏହିରୂପେ ମୁନିମାନେ କହିବା କାଳରେ
ସୁଯଜ୍ଞ ନୃପତି ଆସି ତାହାଙ୍କ ଆଗରେ ।
କୃତାଞ୍ଜଳି ହୋଇକରି ବୋଇଲେ ହେ ମୁନି
ଆପଣମାନେ ଅଟନ୍ତି ବ୍ରହ୍ମତତ୍ତ୍ୱଜ୍ଞାନୀ ।
କଥାଛଳରେ କେତେକ ଧର୍ମର ବିଷୟ
କହିଲ ତା ଶୁଣି ତୋଷ ହେଲା ମୋ ହୃଦୟ ।
ଏବେ କେତେଗୋଟି କଥା ରହସ୍ୟ ଭାବରେ
ପଚାରିବି କହ ମୋତେ କୃପାକରି ବାରେ ।
ସ୍ତ୍ରୀଘାତକ ଗୋଘାତକ ବ୍ରହ୍ମଘାତୀ ଜନ
ଆଦରି ଯେ କରୁଥାଏ ଗୁରୁସ୍ତ୍ରୀ ଗମନ ।
ଏମାନଙ୍କର ଯେଉଁ ଦୋଷ ହୁଅଇ ସେ କଥା
କହିଣ ଛଡ଼ାଅ ମୋର ମାନସରୁ ବ୍ୟଥା ।
ତା ଶୁଣି ବଶିଷ୍ଠ ମୁନି ବୋଇଲେ ରାଜନ
ଜାଣି ଶୁଣି ଗୋହତ୍ୟା କରଇ ଯେ ଜନ ।
ବରଷେ ପର୍ଯ୍ୟନ୍ତ ତୀର୍ଥ ସ୍ଥାନରେ ସେ ରହି
ଭିକ୍ଷାମାଗି ଆଣି ନିଜ ଉଦର ପୋଷଇ ।

ସେ ଅନ୍ତରେ ଶତକୋଟି ଧେନୁଙ୍କୁ ଅଣାଇ
ଦକ୍ଷିଣା ସହିତେ ବ୍ରାହ୍ମଣଙ୍କୁ ଦାନ ଦେଇ ।
ଶତେ ଆଠ ବ୍ରାହ୍ମଣଙ୍କୁ କରାଇ ଭୋଜନ
ସେ ମହାପାପରୁ ମୁକ୍ତ ହୁଅଇଟି ଜାଣ ।
ପ୍ରାୟଶ୍ଚିତରେ କଞ୍ଚନ ନଜନ ହୋଇଲେ
ପାପରୁ ଅଳପ ଅଂଶ ରହିଥାଏ ଭଲେ ।
ଦରିଦ୍ର ଚଣ୍ଡାଳ ଜନ୍ମ ହୁଅଇ ସେ ଯୋଗେ
କର୍ମ ଅନୁସାରେ ନାନା କଷ୍ଟ ଫଳ ଭୋଗେ ।
ଶୁକ ବୋଇଲେ ଭାମିନୀ ହତ୍ୟା ଯେ କରଇ
ଗୋ ହତ୍ୟାର ଦୁଇଗୁଣ ପାପ ତାର ହୋଇ ।
ଷାଠିଏ ସହସ୍ରବର୍ଷ କାଳସୂତ୍ରେ ପଡ଼ି
ଯାତନା ଭୋଗ କରଇ ଘୋର ଦୁଃଖ ସହି ।
ସେ ଅନ୍ତେ ଶୂକର ଜନ୍ମ ହୁଅଇ ଧରାରେ
ସର୍ପ ଜନ୍ମ ହୁଏ ପୁଣି ସାତଜନ୍ମ ଅନ୍ତେ ।
ବୃହସ୍ପତି ବୋଇଲେ ହେ ଶୁଣ ନରବର
ବ୍ରହ୍ମହତ୍ୟା ପାପ ସ୍ତ୍ରୀହତ୍ୟାରୁ ଦ୍ୱିଗୁଣ ।
ତାହା କଲେ ଲକ୍ଷେ ବର୍ଷ ଘୋର କୁମ୍ଭୀପାକ
ନରକରେ ପଡ଼ି ଦୁଃଖ ଭୋଗକରେ ଲୋକ ।
ସେ ଅନ୍ତରେ ଶତେବର୍ଷ ମଳକୀଟ ହୁଏ
ସପତ ଜନମ ଅନ୍ତେ ମୁକତିକ ପାଏ ।
ଗୌତମ ବୋଇଲେ ଆହେ ରାଜ ଚୂଡ଼ାମଣି
କୃତଘ୍ନ ଲୋକର ବ୍ରହ୍ମହତ୍ୟାଠାରୁ ପୁଣି ।
ଶତଗୁଣ ପାପ ହୁଏ ଏକଥା ନିଶ୍ଚୟ
କେତେ ପ୍ରାୟଶ୍ଚିତ୍ତ କଲେ ନ ହୁଅଇ କ୍ଷୟ ।
ନୃପତି ବୋଇଲେ କେବା କୃତଘ୍ନ ଅଟଇ
ତାହାର ଲକ୍ଷଣ ମୋତେ କହ ବୁଝିପାଇଁ ।
ଋଷ୍ୟଶୃଙ୍ଗ ବୋଇଲେ ହେ ଶୁଣ ନୃପବର
କୃତଘ୍ନ ଲୋକ ଅଟନ୍ତି ଷୋଡ଼ଶ ପ୍ରକାର ।
ସମସ୍ତେ ଭୁଞ୍ଜନ୍ତି ଦୋଷ ଅନୁସାରେ ଫଳ
ପ୍ରତ୍ୟେକର ରୂପ ଆହେ ଶୁଣ ମହୀପାଳ ।
ସତ୍ୟ କରିଥିବା କଥା ଭଙ୍ଗ ଯେ କରଇ
ଅଥବା ଆପଣା ଧର୍ମ ରକ୍ଷା ନ କରଇ ।
ସ୍ୱଜନଙ୍କ ପାଳନେ ଅବା ଦାନ କରିବାରେ
ହେଳା କରଇ ଯେ ଅବା କୁଟୁମ୍ବ ରକ୍ଷାରେ ।
ଗୁରୁଦେବ କାମକୃତ୍ୟ ଦ୍ୱିଜଙ୍କର ସେବା
ନିତ୍ୟକର୍ମ ଗୃହଧର୍ମ ପାଳନାରେ ଅବା ।

ବ୍ୟାଘାତ କରଇ ଯେଉଁ ମୂଢ଼ମତି ଜନ
କୃତଘ୍ନ ବୋଲିଣ ସେହି ଲୋକଟିକୁ ଜାଣ ।
ଏମାନଙ୍କ ପାଇଁ ଭିନ୍ନଭିନ୍ନ ହୋଇଛନ୍ତି
ନରକେ ଅଛନ୍ତି ଯମରାଜାଙ୍କର ପୁରୀ ।
ନୃପଙ୍କ ବୋଇଲେ କେଉଁ କୃତଘ୍ନ ପୁରୁଷ
କେଉଁ ନରକରେ ଯାଇଁ କରଇ ନିବାସ ।
ଗୋଟିଗୋଟି କରି ତାହା ଶୁଣିବାକୁ ମୋର
ଇଚ୍ଛା ହେଉଅଛି ଆହେ ମୁନିଗଣ ବର ।
ତାହା ଶୁଣି କାତ୍ୟାୟନ ବୋଇଲେ ନୃପତି
କହିବା ସେ ସବୁକଥା ଶୁଣ ଦେଇ ମତି ।
ଯେଉଁ ଲୋକ ସତ୍ୟରୂପ ଶପଥକୁ କରି
ପାଳନା ନ କରେ ମନେ ଅହଂକାର ଧରି ।
କୃତଘ୍ନ ବୋଲି ତାହାକୁ ଜାଣ ନରପାଳ
ରହଇ ସେ କାଳସୂତ୍ରେ ଷଷ୍ଠିଯୁଗ କାଳ ।
ସେ ଅନ୍ତରେ ସାତଜନ୍ମ କାକରୂପ ହୁଏ
ପେଚକ ହୋଇଣ ପୁଣି ସାତଜନ୍ମ ପାଏ ।
ସେ ଅନ୍ତରେ ସାତଜନ୍ମ ଶୂଦ୍ରରୂପ ହୋଇ
ଜନମ ଲଭିବା ପରେ ମୁକତି ଲଭଇ ।
ସନନ୍ଦ ବୋଇଲେ ପୁଣ୍ୟକରି ଯେଉଁଲୋକ
କହେ ସବୁବେଳେ ଗରଜନ୍ତ ପଣ ଭେକ ।
ତପ୍ତଶୂର୍ମୀ ନରକରେ ରହେ ତିନିଯୁଗ
ନାନା କଷ୍ଟ ସେହିଠାରେ କରୁଥାଇ ଭୋଗ ।
ସେ ଅନ୍ତରେ ସାତଜନ୍ମ ମଣ୍ଡୂକ ହୁଅଇ
କର୍କଟ ରୂପରେ ସାତଜନ୍ମ ତାର ଯାଇ ।
ଦରିଦ୍ର ମୂକ ଅଧମ ମନୁଷ୍ୟ ସେ ପୁଣି
ହେବା ପରେ ଶୁଦ୍ଧ ଲଭ କରେ ଆଅ ଜାଣି ।
ସନାତନ ବୋଇଲେ ହେ ଶୁଣ ନରରାଜ
ସ୍ୱଧର୍ମ ଘାତକ ଅଟେ ଯେଉଁ ମୂର୍ଖଦ୍ୱିଜ ।
ସ୍ନାନ ସନ୍ଧ୍ୟା ତରପଣ ବିଷ୍ଣୁ ଉପାସନା
କରିବାପାଇଁ ସର୍ବଦା ହୁଅଇ ବିମନା ।
ଏକାଦଶୀ କୃଷ୍ଣଜନ୍ମ ଅଷ୍ଟମୀ ତିଥିରେ
ଶିବରାତ୍ରି ଅବା ରାମନବମୀ ଦିନରେ ।
ପିତୃଦେବ ବନ୍ଦନେ କରେ ଯେ ଆହାର
କୃତଘ୍ନ ଅଟଇ ସେହି ଆହେ ନରବର ।
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ କୁମ୍ଭୀପାକେ ଯାଇ
ମହାଦୁଃଖ ଭୋଗ କରୁଥାଏ ପଡ଼ି ରହି ।

ସେ ଅନ୍ତରେ ସାତଜନ୍ମ ହୁଅନ୍ତେ ଚଣ୍ଡାଳ
ଗୃଧ୍ର ଶୂକର ହୁଅଇ ଶତଜନ୍ମ କାଳ ।
ସେ ଅନ୍ତେ ଭାରତବର୍ଷେ ବ୍ରାହ୍ମଣ ବଂଶରେ
ଜାତହୋଇ ଶୂଦ୍ରଙ୍କର ରନ୍ଧନ ସେ କରେ ।
ବୃଷଭବାହନ ପୁଣି ଶୂଦ୍ର ଶବଦାହୀ
ସାତଜନ୍ମ ଯାଏ ଏହିପରି ହୋଇଥାଇ ।
ପୁଣି ବ୍ରାହ୍ମଣ ବଂଶରେ ଜାତ ହୋଇକରି
ହରଣ କରଇ ବଳେ ଶୂଦ୍ରଘର ସ୍ତ୍ରୀ ।
ଏହିରୂପେ ପାପକର୍ମ କରି ପୁନଃପୁନଃ
ନରକରେ ପଡ଼ି ପୁଣି ହୋଇଥାଏ ଜନ୍ମ ।
ସେ ଅନ୍ତେ ଗଧ ମାର୍ଜ୍ଜାର ଜନମ ହୁଅଇ
ପାଞ୍ଚଗୋଟି ଜନ୍ମ ଏହି ପ୍ରକାରେ ଯାଇ ।
ବହୁତ କାଳ ଅନ୍ତରେ ଶୁଦ୍ଧି ଲାଭ କରେ
କୃତଘ୍ନ ସମାନ ପାପୀ ନାହିଁ ଜଗତରେ ।
ସୁପଜ୍ଞ ବୋଇଲେ ଶୂଦ୍ର ପାଚକ ଯେ ହୁଏ ।
ଶୂଦ୍ରଙ୍କର ଶବଦାହ କରି ଅବା ଯାଏ ।
ହୋଇଲେ ବା ଶୂଦ୍ରସ୍ତ୍ରୀ କରଇ ରମଣ
ଭୋଜନ କରଇ ଅବା ଶୂଦ୍ରଘର ଅନ୍ନ ।
ଏଥିରୁ ଯେ ଦୋଷ ହୁଏ ବିସ୍ତାରିଣ ତାହା
କହ ଶୁଣିବାରେ ମୋର ବଳୁଛି ଉତ୍ସାହ ।
ତାହା ଶୁଣି ପରାଶର ମୁନିଗଣ ଈଶ
ବୋଇଲେ କହିବା ତାହା ଶୁଣ ହେ ନରେଶ ।
ଜ୍ଞାନରେ ଯେ ଶୂଦ୍ରଙ୍କର ସୁପକାର ହୁଏ
ଆସିପତ୍ର ଏକସ୍ତର ଯୁଗ ରହିଥାଏ ।
ସେ ଅନ୍ତେ ଗର୍ଦ୍ଦଭ ପୁଣି ମୂଷିକ ହୁଅଇ
ସାତଜନ୍ମ ପରେ ଶୁଦ୍ଧି ଲଭ ସେ କରଇ ।
ଜରତ୍କାରୁ କହିଲେ ମୁଁ କହୁଅଛି ଶୁଣ
ଭୃତ୍ୟରେ ବା ନିଜେ ବୃଷବାହେ ଯେ ବ୍ରାହ୍ମଣ
କୃତଘ୍ନ ବୋଲି ତାହାକୁ ଜାଣ ନରଈଶ
ବ୍ରହ୍ମହତ୍ୟା ସମାନରେ ହୁଏ ତାର ଦୋଷ ।
ବଳଦ ପୃଷ୍ଠରେ ଭାର ବୁହାଇବ ଯେବେ
ଦ୍ୱିଗୁଣ ପାତକ ଭୋଗ ହୋଇବଟି ତେବେ ।
କ୍ଷୁଧାତୃଷାରେ ଆକୁଳ ଯେଉଁ ବଳୀବର୍ଦ୍ଦ
ତାହାକୁ ଖଟାଇ ବାହେ ଯେ ବିପ୍ର ଦୁର୍ମଦ ।
ଶତଗୁଣ ଦୋଷ ତାର ହୁଅଇଟି ଜାଣ
ତା ହସ୍ତରେ ଅନ୍ନଜଳ ବିଷ୍ଠା ମୂତ୍ର ସମ ।
ପିତୃ ଦେବ ଅର୍ଚ୍ଚନାରେ ତାର ଅଧିକାର
ନ ହୁଅଇ ଆହେ ନୃପଗଣଙ୍କ ଶେଖର ।
ଚନ୍ଦ୍ର ଦିବାକର ଥିବାଯାଏ ସେ ମନୁଷ୍ୟ
ନାନା ନରକ କୁଣ୍ଡରେ କରୁଥାଏ ବାସ ।
ବିଷ୍ଠାମୂତ୍ର ଭୋଜନ ସେ କରଇ ତହିଁରେ
ମାଡ଼ ଖାଉଥାଏ ଯମଦୂତଙ୍କ ହାତରେ ।
ସେ ଅନ୍ତେ ଷାଠିଏ ସହସ୍ର ବର୍ଷ ପର୍ଯ୍ୟନ୍ତେ
କୃମି ହୋଇଣ ବିଷ୍ଠାରେ ରହଇ ସତତେ ।
କାକ ବକ ହୁଏ ପୁଣି ପାଞ୍ଚ ପାଞ୍ଚ ଜନ୍ମ
ସାତ ଜନ୍ମ ହୁଏ ଗୃଧ୍ର ଶୃଗାଳ ସେ ପୁଣ ।
ତାପରେ ଦରିଦ୍ର ଶୂଦ୍ର ଘରେ ଜାତ ହୁଏ
କେତେକାଳ ଅନ୍ତେ ପୁଣି ଶୁଦ୍ଧି ଲଭୁଥାଏ ।
ଭରଦ୍ୱାଜ ମୁନିବର ବୋଇଲେ ରାଜନ
ଶୂଦ୍ର ଶବଦାହୀ ଦ୍ୱିଜ ଅଟଇ କୃତଘ୍ନ ।
ଯେତେ ଶବ ରହିଥାଏ ତାର ପରିମାଣ
ବ୍ରହ୍ମହତ୍ୟା ପାପ ଭୋଗ କରଇଟି ଜାଣ ।
ସେତେଥର ଯାଏ ଜନ୍ମ ହୋଇ ସେ ଅନ୍ତରେ
ନରକରେ ପଡ଼ି ପଡ଼ି ଶୁଦ୍ଧ ହୁଏ ପରେ ।
ଶୂଦ୍ର ଶବବାହନରେ ଯେଉଁ ଦୋଷ ହୁଏ
ଶୂଦ୍ର ଶ୍ରାଦ୍ଧାନ୍ନ ଭୋଜନେ କିଛୁ ଊଣା ନୁହେ ।
ଏଥିଅନ୍ତେ ବିଭାଣ୍ଡକ ବୋଇଲେ ଯେ ଦ୍ୱିଜ
ଶୂଦ୍ର ଶ୍ରାଦ୍ଧ ଅନ୍ନ ଖାଏ ଗୁଡ଼ହେଲ ନିଜ ।
ବ୍ରହ୍ମହତ୍ୟା ସୁରାପାନ ଦୋଷ ହୁଏ ତାର
ପିତୃ ଦେବତା ପୂଜାରେ ନୁହେଁ ଅଧିକାର ।
ମାର୍କଣ୍ଡେୟ ମୁନି ତାହା ଶୁଣିଣ କହିଲେ
ଯେଉଁ ଦୋଷ ବ୍ରାହ୍ମଣର ଶୂଦ୍ର ସ୍ତ୍ରୀ ରମିଲେ ।
କହୁଅଛି ତାହା ଏବେ ଶୁଣ ନୃପବର
ଯେରୂପେ ଅଟଇ ବେଦ ଶାସ୍ତ୍ରର ବିଚାର ।
ବ୍ରାହ୍ମଣ ଯଦ୍ୟପି ଶୂଦ୍ର କନ୍ୟା ଭୋଗକରେ
ପ୍ରଧାନ କୃତଘ୍ନ ସେହି ଅଟେ ଜଗତରେ ।
କୃମି ଦଂଷ୍ଟ୍ର ନରକରେ ଇନ୍ଦ୍ର ଶତଯୁଗ ।
ପଡ଼ିଥାଏ ନାନାକଷ୍ଟ କରି ଅଙ୍ଗେ ଭୋଗ ।
ଯମଦୂତମାନେ ତାକୁ ବଳେ ଘେନିଯାଇ
ତପତ ପ୍ରତିମା ଦେହେ ଦିଅନ୍ତି ଲଗାଇ ।
ଏହିରୂପେ କେତେକାଳ କଷ୍ଟ ଭୋଗକରି
ପୁଂଶ୍ଚଳୀ ଘରେ ଜନମ ହୋଇଥାଏ ମରି ।

ସହସ୍ର ବରଷ ଏଥୁପର ଗଲପରେ
ଜନମ ହୁଅଇ ପୁଣି ମାତ ଶୂଦ୍ର ଘରେ ।
ସେ ଅନ୍ତରେ ଶୁଦ୍ଧି ଲଭ କରଇଟି ଜାଣ
ଆହେ ସୁଯଜ୍ଞ ନୃପତିମାନଙ୍କ ଉତ୍ତମ ।
ଏରୂପେ ମୁନଙ୍କ ବାକ୍ୟ ଶୁଣି ନରପତି
ବୋଇଲେ ଶୁଣିବା ହେଉ ଆହେ ମହାମତି ।
ଅନ୍ୟ ପ୍ରକାର କୃତଘ୍ନ ଅଛନ୍ତି ଯେତେକ
କହିବା ହେଉନ୍ତୁ ଏବେ ତାଙ୍କ କଥାପାକ ।
ଆପଣମାନଙ୍କୁ ମୁହିଁ ଦେଖିକରି ଆଜ
କୃତାର୍ଥ ହୋଇଲି ଭବଦୁଃଖ ମୋହ ତେଜ ।
ପବିତ୍ର ହୋଇଲା ଆଜ ଏପୁର ମୋହର
ବିଜୟ କରିଲେ ଯେଣୁ ତପିଙ୍କଶେଖରେ ।
ବ୍ରାହ୍ମଣ ମାନଙ୍କ ଶାପ ଶ୍ରେୟ ହୋଇଅଛି
ସେ ଯେଣୁ ମୋହର ଲଭ ଅମାପ ହୋଇଛି ।
ସମ୍ପଦ ନ ମିଳେ କେଉଁ ବିପଦ କାଳରେ
ବିଜ୍ଞଜନେ ଲେଖିଛନ୍ତି ଏକଥା ଶାସ୍ତ୍ରରେ ।
ଅନ୍ଧାର ନ ଥିଲେ କମ୍ପା ଥାଆନ୍ତା ଆଲୋକ
ମିଥ୍ୟାନୁହେଁ ଜାଣ ମୁନି ମାନଙ୍କର ବାକ୍ୟ ।
କ୍ଷେବ ମୋହନ ବୋଲଇ ଆହେ ସାଧୁଜନ
ଦୋଷାଦୋଷ ଥିଲେ ମୋର କ୍ଷମିବେ ବଦନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଋଷିଗଣମାନେ ନଳ ନଳର ମଉ
ପ୍ରକାଶନେ ନାମ ଚତୁଃପଞ୍ଚାଶତ୍ ଅଧ୍ୟାୟଃ ।

---

## ପ ଞ୍ଚ ପ ଞ୍ଚା ଶ ତ୍ ଅ ଧ୍ୟା ୟ

## ମହାଦେବଙ୍କ କର୍ତ୍ତୃକ କୃତଘ୍ନ ବୃତ୍ତାନ୍ତ ବର୍ଣ୍ଣନ

ପାର୍ବତୀ ବୋଇଲେ ଦେବ ଭୂତ ଅଧୀଶ୍ୱର
ଅନ୍ୟ ଯେ କୃତଘ୍ନଜନେ କର୍ମ ତାହାଙ୍କର ।
ରାଜାଙ୍କ ଆଗେ ମୁନିଏ କହିଲେ କି ରୂପେ
ବୁଝାଇ ସେ କଥା ମୋତେ କହ ତୁମ୍ଭେ ଆପେ
ତାହା ଶୁଣି ସଦାଶିବ ବୋଇଲେ ପାର୍ବତୀ
କହୁଅଛି ଶୁଣ ଏବେ ସ୍ଥିରକରି ମତି ।
ଏଥୁପରେ ପଚ୍ଚରନ୍ତେ ସୁଯଜ୍ଞ ନୃପତି
କହି ଆରମ୍ଭିଲେ ନାରାୟଣ ମହାମତି ।
ବୋଇଲେ ସ୍ୱଦତ୍ତ ଅବା ପରଦତ୍ତ ହେଉ
ବ୍ରାହ୍ମଣର ବୃତ୍ତିଚ୍ଛେଦ କରଇଟି ଯେହୁ ।
ତାହାକୁ କୃତଘ୍ନ ବୋଲି ଜାଣ ନରସାଇଁ
ସେ ପାପର ଫଳାଫଳ ଶୁଣ ମନଦେଇ ।
ଯେତେ ରେଣୁ ଆର୍ଦ୍ର ହୁଏ ଦ୍ୱିଜ ଅଶ୍ରୁପାତେ
ସେତେ ସହସ୍ର ବର୍ଷ ସେ ରହଇ ଶୂଳପ୍ରୋତେ ।
ତପତ ଅଙ୍ଗାର ଖାଇ ଖାଏ ତପ୍ତ ମୁତ୍ର
ସହ୍ୟ କରୁଥାଏ ଯମଦୂତଙ୍କର ବେତ୍ର ।
ସେ ଅନ୍ତରେ ମଳକୁଣ୍ଡେ କୃମିଜନ୍ମ ପାଏ
ଷାଠିଏ ସହସ୍ର ଦେବ ସମ୍ୱତ୍ସର ଯାଏ ।
ମନୁଷ୍ୟ ଜନମ ପାଇ ପୁଣି ସେ ଭାରତେ
ଭୂମିହୀନ ପ୍ରଜାହୀନ ହୁଅଇ ସନ୍ତତେ ।
ଦରିଦ୍ରକୃପଣ ରୋଗୀ ହୁଅଇ ସେ ପୁଣି
ତାହାର ସମାନ ପାପୀ ନାହିଁ ଏ ଧରଣୀ ।
ଯେଉଁ ଲୋକ ପରର ବା ନିଜର କୀରତି
ବିନଷ୍ଟ କରଇ ମନୁ ଗ୍ରୀଡ଼ ଦେଇ ଖ୍ୟାତି ।
କୃତଘ୍ନ ଅଟଇ ଜାଣ ସେ ମହା ପାତକୀ
ଯମଦୂତେ ଯେନିଯାନ୍ତି ଧରି ତା ଚୁଟିକି ।
ଚତୁର୍ଦ୍ଦଶ ଇନ୍ଦ୍ରକାଳ ଅନ୍ଧକୂପେ ନେଇ
ରଖିଣ ବିବିଧ ମାଡ଼ ମାରନ୍ତି ନଠାଇ ।
ନକୁଳ ସମାନ କୀଟଗଣ ଘଣପଟେ
ବେଢ଼ି ତାହାର ଅଙ୍ଗକୁ ଖାଉଥାନ୍ତି ଆଣ୍ଟେ ।
ତପତ କ୍ଷାର ଉଦକ ପିଇ ଦାହ ବ୍ରତି
ଛଟପଟ ହୁଏ କଷ୍ଟ ଭୋଗକରି ଅତି ।
ଯେ ଅନ୍ତେ ସାତଜନ୍ମ ସର୍ପଜନ୍ମ ପାଏ
କାକରୂପ ବହି ପଞ୍ଚଜନମ କଟାଏ ।
ମନୁଷ୍ୟ ଜନମ ପାଇ ହୁଏ ତହୁଁ ଶୁଚି
ଏଥୁପରେ ମହାକ୍ରତେ କେତେକାଳ ବଞ୍ଚି ।

କେବଳ ବୋଇଲେ ଦେବ ଦ୍ୱିଜ ଗୁରୁଙ୍କର
ଦ୍ରବ୍ୟ ହରଣ କରଇ ଯେବଣ ପାମର ।
କୃତଘ୍ନ ସେ ମହାପାପୀ ଅଟଇ ଭାରତେ ।
ଅବଟୋଦ ନରକରେ ପଡ଼େ ଦେହ ଅନ୍ତେ ।
ସେ ଅନ୍ତରେ ସୂଚପାପୀ ଶୂଦ୍ର ଜନ୍ମ ପାଏ
ନାନାକଷ୍ଟ ଭୋଗକରି ପରେ ଶୁଚି ହୁଏ ।
ଜୈଗୀଷବ୍ୟ ବୋଇଲେ ହେ ଗୁରୁ ପିତାମାତା
ଏହାଙ୍କୁ ଯେ ପ୍ରତାଡନ କହେ ଦୁଷ୍ଟକଥା ।
ସ୍ତ୍ରୀ ବା ପୁରୁଷ ହେଉ କୃତଘ୍ନ ବୋଲାଇ
ଅନ୍ତଃକାଳେ ଅଗ୍ନିକୁଣ୍ଡେ ପଡ଼ଇ ସେ ଯାଇ ।
ଯେତେକାଳ ଆକାଶରେ ଚନ୍ଦ୍ର ଦିବାକର
ଗତାୟାତ ହେଉଥାନ୍ତି କରେ ତହିଁ ଘର ।
ସେ ଅନ୍ତରେ ଯୋକ ହୋଇ ଜନମେ ଜଳରେ
ସପ୍ତଜନ୍ମ ଭୋଗହେଲେ ଶୁଦ୍ଧି ଲଭ କରେ ।
ବାଲ୍ମୀକି ବୋଇଲେ ଶୁଣ ଆହେ ନୃପବର
ଯେରୂପେ ବୃଷତ୍ୱ ଧର୍ମ ସକଳ ବୃଷର ।
ଆଶ୍ରୟ କରଣେ ଥାଏ ସେହି ପରକାରେ
କୃତଘ୍ନତା ଦୋଷ ରହେ ସକଳ ପାପରେ ।
ମିଥ୍ୟାସାକ୍ଷୀ ହୁଅଇ ଯେ କାମକ୍ରୋଧ ଭୟେ
ଅଥବା ସଭାରେ ପକ୍ଷଭେଦ କଥା କହେ ।
ତାହାକୁ କୃତଘ୍ନ ବୋଲି ଜାଣ ନରପତି
ଯେଉଁମାନେ ଧର୍ମ କର୍ମ ବିନାଶ କରନ୍ତି ।
ତାହାଙ୍କୁ ମଧ୍ୟ ବୋଲନ୍ତି କୃତଘ୍ନ ପୁରୁଷ
ନାସ୍ତିକଠାରେ ରହଇ କୃତଘ୍ନତା ଦୋଷ ।
ମିଥ୍ୟାସାକ୍ଷୀ ପକ୍ଷଗ୍ରାହୀ ଅଟଇ ଯେ ଜନ
ଅନ୍ତଃକାଳେ ହୁଏ ତାର ସର୍ପକୁଣ୍ଡେ ସ୍ଥାନ ।
ସହସ୍ରେ ଇନ୍ଦ୍ର ବରଷ ସେହିଠାରେ ରହି
ଯାତନା ଭୋଗ କରଇ ସର୍ପାଘାତ ସହି ।
ସର୍ପଙ୍କର ମଳମୂତ୍ର କରଇ ଭକ୍ଷଣ
ସେ ଅନ୍ତେ ପାଏ ଭାରତେ କୃକଳାସ ଜନ୍ମ ।
ପୁଣି ସାତଜନ୍ମ ପାଏ ମଣ୍ଡୁକ ହୁଅଇ
ଆଉର ବନ ମଧ୍ୟରେ ବୃକ୍ଷରୂପ ହୋଇ ।
କେତେକାଳ ଷଡ଼ ଋତୁଙ୍କର ସହି ତାପ
ସେ ଅନ୍ତେ ଭାରତବର୍ଷେ ହୁଏ ନରରୂପ ।
ଶୂଦ୍ର ହୋଇ କେତେଦିନ ଭୋଗକଲା ପରେ
ସେହି ସମୁଦ୍ରରେ ଯାଇ ଶୁଦ୍ଧି ଲଭ କରେ ।

ଆସ୍ତିକ ବୋଇଲେ ଗୁରୁପତ୍ନୀ ଯେ ହରଇ
ମାତୃହରଣ କହିବା ଦୋଷ ତାର ହୋଇ ।
ମାତୃହରଣ ଦୋଷର ନାହିଁ ପ୍ରାୟଶ୍ଚିତ୍ତ
ଏକଥା ଲେଖିଅଛନ୍ତି ଧର୍ମ ଜ୍ଞାନବନ୍ତ ।
ବ୍ରାହ୍ମଣ କାମିନୀ ହରେ ଯେବେ ଶୂଦ୍ରଲୋକ
ହୁଅଇ ତାହାର ମାତୃହରଣ ପାତକ ।
ନିଜ ଇଚ୍ଛାରେ ବ୍ରାହ୍ମଣୀ ଶୂଦ୍ର ପୁରୁଷରେ
ରତହେଲେ ସେହି ପାପଫଳ ଭୋଗ କରେ ।
ଦୁହିତା ଯେ ପୁତ୍ରବଧୂ ଶ୍ୱଶ୍ରୂ ଭ୍ରାତୃଜାୟା
ଭଗିନୀ ଆଦି ହରଣ କଲେ ହୁଏ ଯାହା ।
ସେ କଥା ବିସ୍ତାରି କହୁଅଛୁ ଏବେ ଶୁଣ
ଜୀବନ୍ତ ମୃତ ଚଣ୍ଡାଳ ବୋଲି ତାକୁ ଜାଣ ।
ସୂର୍ଯ୍ୟ ଦରଶନ ଶାଳଗ୍ରାମ ଶିଳାର୍ଚ୍ଚନ
ତୁଳସୀଦଳ ସହିତ ଉଦକ ସେବନ ।
ସକଳ ତୀର୍ଥର ଜଳ ବିପ୍ର ପାଦୋଦକ
ସେବା କରିବାକୁ ଯୋଗ୍ୟ ନୁହଇ ସେ ଲୋକ ।
ଦେବ ଗୁରୁ ବ୍ରାହ୍ମଣଙ୍କୁ ସେବା ନମସ୍କାର
କରିବା ପାଇଁକ ଯୋଗ୍ୟ ନୁହଇ ଆଉର ।
ତାହାର ପରଶମାତ୍ରେ ବିଷ୍ଠାତୁଲ୍ୟ ଅନ୍ନ
ହୁଅଇ ଆଉର ଜଳ ମୂତ୍ରର ସମାନ ।
ଦେବତା ପିତୃ ବ୍ରାହ୍ମଣେ ତାହାଠାରୁ ଜଳ
ଗ୍ରହଣ କରନ୍ତି ନାହିଁ ଜାଣ ମହୀପାଳ ।
ତା ଅଙ୍ଗ ବାତରେ ତୀର୍ଥ ବ୍ରତ ଉପବାସ
ବ୍ରତଫଳ କ୍ଷଣକରେ ହୋଇଯାଏ ନାଶ ।
ତାହାକୁ ଛୁଇଁଲେ ସାତରାତି ସାତଦିନ
ଉପବାସ କଲେ ପାପ ଦୂର ହୁଏ ଜାଣ ।
ତାହାର ଭାର ବହିବା ପାଇଁ ବସୁମତୀ
ଅସମର୍ଥ ହୁଏ ଜାଣ ଆହେ ନରପତି ।
ସେ ଲୋକର ପାଦ ଯେଉଁ ଦେଶରେ ପଡ଼ଇ
ମହାପାପରେ ସେ ଦେଶ ପତିତ ହୁଅଇ ।
ଯେଉଁଲୋକ ତା ସଙ୍ଗତେ ଆଳାପ ଶୟନ
କରଇ ସେ ମଧ୍ୟ ପାପୀ ହୁଏ ତା ସମାନ ।
ଶତେବ୍ରହ୍ମ ମନ୍ୱନ୍ତର କୁମ୍ଭୀପାକେ ତାର
ନିବାସ ହୁଅଇ ଏଥେ ସନ୍ଦେହ ନ କର ।
ଚନ୍ଦ୍ର ଆଦର୍ଶ ପର୍ଯ୍ୟନ୍ତେ ଭ୍ରମେ ପ୍ରତାଡନ
ଯମଦୂତମାନେ ଆସି କରନ୍ତି ତାଡ଼ନ ।

ଏହାପରେ ରଜରବ ଯାତନାରେ ସର୍ଜ୍ଜି
କଷ୍ଟ ସହୁଥାଏ ବହୁ ଆହାରକୁ ଛାଡ଼ି ।
ଆଜ୍ଞ ସବୁ ନରକରେ ଭୋଜନ ବ୍ୟବସ୍ଥା
ଅଟଇ କୁମ୍ଭୀପାକରେ ଚାଖିଁଛି ସେ କଥା ।
ହାକୁଣ୍ଡକ ଲସ୍ଥ ହେବା ପଶ୍ଚାତେ ରକ୍ଷ
ପ୍ରଳୟ କାଳରେ ସଙ୍ଗ ସଙ୍ଗେ ନାଶଯାଇ ।
ପୁଣି ନବସୃଷ୍ଟି ହେଲେ ସେହି କୁମ୍ଭୀପାକ
ନରକ ମଧ୍ୟେ ପଡ଼ଇ ସେ ପାପିଷ୍ଠ ଲୋକ ।
ଷାଠିଏ ସହସ୍ର ବର୍ଷ କୁଳଟା ଯୋନିରେ
କୃମି ହୋଇ ରହଇ ସେ ଭାରତବର୍ଷରେ ।
ପୁଣି ଷାଠିଏ ସହସ୍ର ବର୍ଷ ପରପଶ୍ଚାତେ
ଚଣ୍ଡାଳ ଜାତିରେ ଜନ୍ମ ହୁଅଇ ଜଗତେ ।
ଭାର୍ଯ୍ୟାହୀନ ନପୁଂସକ କୁଷ୍ଠରୋଗୀ ହୁଏ
ତାହାକୁ ଅନ୍ୟ ଚଣ୍ଡାଳେ ନ ଛୁଅନ୍ତି କଏ ।
ସେ ଅନ୍ତରେ ତୀର୍ଥସ୍ଥାନେ କାଳଜନ୍ମ ହୋଇ
ସାତଜନ୍ମ ପରେ ଯେତେ ଭୋଗ ସେ କରଇ ।
ପୁଣି ଶୂଦ୍ରକୁଳେ ଜାତ ହୋଇ କେତେ ଦିନ
ଶେଷରେ ଲଭ କରଇ ବ୍ରାହ୍ମଣ ଜନମ ।
ଅନ୍ଧ କୁଷ୍ଠରୋଗୀ ପୁଣି ନପୁଂସକ ହୁଏ
ସପତ ଜନ୍ମ ଅନ୍ତରେ ଶୁଦ୍ଧି ହୋଇଥାଏ ।
ଏରୂପେ ଆତ୍ମବୃତ୍ତାନ୍ତ କହିବା କାଳରେ
ସକଳ ଋଷିଏ ମିଳି ରାଜାଙ୍କୁ କହିଲେ ।
ବୋଇଲେ ହେ ନରପତି ଆମ୍ଭେମାନେ ଯାହା
କହିଲୁ ଆମୂଳ କରି ଶୁଣିଲ ତ ତାହା ।
ଅତିଥିଙ୍କୁ ପରାଭବ କଲେ ଏହିପରି
ପ ତକ ହୁଅଇ ଜାଣ ଆହେ ଦଣ୍ଡଧାରୀ ।
ଏବେ ଆମ୍ଭ ବୋଲେ ତୁମ୍ଭେ ଏ ବିପ୍ର ମୁନିଙ୍କୁ
ପ୍ରଣାମ କରିଣ ନିଅ ଆପଣା ଗୃହକୁ ।
ଯଥାବିଧି ପୂଜାକରି ଆଶୀର୍ବାଦ ଘେନ
ତପସ୍ୟା କରିବା ପାଇଁ ଯାଅ ଘୋରବନ ।
ବ୍ରାହ୍ମଣ ଶାପରୁ ମୁକ୍ତ ହୋଇ ପୁଣି ଆସି
ରହିବ ଆପଣା ଗୃହେ ହୋଇ ମହାତୋଷୀ ।
ଏହା କହି ମୁନିଋଷି ଦେବତା ସମସ୍ତେ
ବନ୍ଧୁବର୍ଗ ଆଦିକରି ଗଲେ ଯେଝାମତେ ।
ନମସ୍ତେ ଶ୍ରୀହରି ପ୍ରଭୁ ଶଙ୍ଖ ଚକ୍ରଧର
ତୁମ୍ଭ ଚରଣେ ଶରଣ ଦୀନ କ୍ଷେତ୍ର ଘୁର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ମହାଦେବଙ୍କ କର୍ତ୍ତିକ ବୃତ୍ତାନ୍ତ ବର୍ଣ୍ଣନେ ନାମ ପଞ୍ଚାଶତ୍ତମ ଅଧ୍ୟାୟଃ ।

---

## ଷଟ୍ ପଞ୍ଚାଶତ୍ ଅଧ୍ୟାୟ

### ରାଜାଙ୍କ ପ୍ରତି ଉପଦେଶ ଦେବାକୁ ବ୍ରାହ୍ମଣ ମାନଙ୍କର ଆତ୍ମପରିଚୟ ଦାନ

ପାର୍ବତୀ ବୋଇଲେ ମୁନିଋଷିଙ୍କ ବଚନ
ସୁଯଜ୍ଞ ନୃପତି ଶୁଣି କଲେ କି ବିଧାନ ।
ଅତିଥି ବ୍ରାହ୍ମଣେ ତାଙ୍କୁ କହିଲେ ବା କିସ
ଏ କଥା ବିସ୍ତାରି କହ ଆହେ ଦେବଈଶ ।
ତାହା ଶୁଣିଣ ଈଶ୍ୱର ବୋଇଲେ ପାର୍ବତୀ
କହୁଅଛି ଶୁଣ ତାହା ସ୍ଥିର କରି ମତି ।
ମୁନିମାନେ ଗଲାପରେ ସୁଯଜ୍ଞ ରାଜନ
କହା ପାଇବାରୁ ମୁଖ କରିଣ ମଳିନ ।
ବଶିଷ୍ଠଙ୍କ ଉପଦେଶ ଘେନି ବେଗେ ଗଲେ
ବ୍ରାହ୍ମଣଙ୍କ ପାଦ ଧରି ନମସ୍କାର କଲେ ।
ତାହା ଦେଖି ଦ୍ୱିଜବର ହୋଇଣ ସନ୍ତୁଷ୍ଟ
ଆଶୀର୍ବାଦ କଲେ ସେ ତ ତପିଗଣଶ୍ରେଷ୍ଠ ।
ସସ୍ମିତ ବଦନେ ନୃପତିଙ୍କୁ ଅନାଇଲେ
ଦେଖିଣ ରାଜନ କରଯୋଡ଼ି ପଚାରିଲେ ।
ବୋଇଲେ ଆପଣ ଯେଉଁ ବଂଶରେ ଜନମ
ହୋଇଛନ୍ତି କିବା ଅଟେ ଆପଣଙ୍କ ନାମ ।
କେଉଁଠାରେ ବାସ କରିଅଛନ୍ତି ମହାଯତି
କହ ଘେନିଣ ମୋହର ଅଟେ ଏ ବିନତି ।
ବିପ୍ରରୂପେ ଅବତାରି ସ୍ୱୟଂ ଜନାର୍ଦ୍ଦନ
କପଟ ମନୁଷ୍ୟ ସେହି ପ୍ରଭୁ ନାରାୟଣ ।

ସାକ୍ଷାତରେ ମୂର୍ତ୍ତିମନ୍ତ ବୈଶ୍ୱାନର ପରି
ବ୍ରହ୍ମତେଜେ ବିରାଜିତ ଅଟନ୍ତି ସେପରି ।
ତୁମ୍ଭର ଇଷ୍ଟ ଦେବତା ଗୁରୁ ଯେ ଅଟନ୍ତି
ଆହେ ନୃପବର ମୋତେ କହ ତା ସମ୍ପ୍ରତି ।
ତୁମ୍ଭ ସକାଶରୁ ମୋର ହୃଦେ ହେଲା ଜ୍ଞାନ
ଜାଣିଲି ଅନିତ୍ୟ ଅଟେ ରାଜ୍ୟ ବିଷୟ ଧନ ।
ଏବେ ତୁମ୍ଭ ପାଦେ ସବୁ କରଇ ଅରପଣ
ସାଦରେ ଗ୍ରହଣ କର ଦ୍ୱିଜକୁଳ ରାଣ ।
ସପତ ସାଗର ସପ୍ତଦ୍ୱୀପ ବିରାଜିତା
ସୁଶୈଳ କାନନ ବୃକ୍ଷଲତାରେ ଶୋଭିତା ।
ଏ ମହାପୃଥିବୀ ବଶ ହୋଇଲା ତୁମ୍ଭର
ରତ୍ନମୟ ସିଂହାସନେ ଆସି ବିଜେ କର ।
ତୁମ୍ଭର ଭୃତ୍ୟ ହୋଇଣ ପୃଥ୍ୱୀକୁଳେ ମୁହିଁ
ଆଜ୍ଞା ପାଳନ କରିବି ଆହେ ତପି ସାଇଁ ।
ଏହିରୂପେ ରାଜାଙ୍କର ବଚନକୁ ଶୁଣି
ହସିଣ କହିଲେ ତାଙ୍କୁ ଦ୍ୱିଜକୁଳମଣି ।
ବୋଇଲେ ହେ ମହାରାଜ କହିଲ ଯା ମୋତେ
ତୁମ୍ଭପକ୍ଷେ ଉଚିତ ମୁଁ ଘେନୁଅଛି ଚିତ୍ତେ ।
ମାତ୍ର କେତେଗୋଟି କଥା ଶୁଣ ମୋରଠାରୁ
ଶୁଣିଲେ ସଂଶୟ ଦୂର ହୋଇବ ମନରୁ ।
ପୂର୍ବରେ ମରୀଚି ନାମେ ଥିଲେ ମହାଯତି
ଅଟନ୍ତି ତାହାଙ୍କ ପିତା ବ୍ରହ୍ମା ପ୍ରଜାପତି ।
କଶ୍ୟପ ଅଟନ୍ତି ସେହି ମରୀଚିଙ୍କ ସୁତ
ତାଙ୍କଠାରୁ ସବୁ ଦେବଗଣ ହେଲେ ଜାତ ।
ତ୍ୱଷ୍ଟା ଯେ ପରମ ଜ୍ଞାନୀ ତାହାଙ୍କ ମଧ୍ୟରେ
ତପସ୍ୟା କଲେ ସେ ଯାଇ ପୁଷ୍କର ତୀର୍ଥରେ ।
ଦିବ୍ୟ ସହସ୍ରେ ବରଷ ସେହି ସ୍ଥାନେ ରହି
ଶ୍ରୀହରିଙ୍କ ସେବା କଲେ ବିଧିମତେ ତହିଁ ।
ସନ୍ତୋଷରେ ନାରାୟଣ ଦେଲେ ତାଙ୍କୁ ବର
ତେଣୁ ବିଶ୍ୱରୂପ ନାମେ ପୁତ୍ର ତାହାଙ୍କର ।
ଜାତ ହୋଇଲେ ଜାଣ ଗୋ ସର୍ବଜନସ୍ୱାମୀ
ତପସ୍ୱୀମାନଙ୍କରେ ସେ ଶ୍ରେଷ୍ଠ ବ୍ରହ୍ମଜ୍ଞାନୀ ।
ବୃହସ୍ପତିଙ୍କୁ ତେଜାଇ ଇନ୍ଦ୍ର ଯେତେବେଳେ
ଆପଣାର ପୁରୋହିତ କରିଣ ରଖିଲେ ।
ସେ ସମୟେ ବିଶ୍ୱରୂପ ନିଜ ପିତାମହ
ଦୈତ୍ୟମାନଙ୍କର ଯାଗ କଲେ ବହି ସ୍ନେହ ।
ସେ କଥାକୁ ସୁନାସୀର ଇନ୍ଦ୍ର ନ ସହିଲେ
ମାତାଙ୍କଠାରୁ ଆଦେଶ ଘେନି ସେ ଯେ ଗଲେ
ବିଶ୍ୱରୂପ ଦ୍ୱିଜଙ୍କର ମସ୍ତକ ଛିଣ୍ଡାଇ
ପକାଇଣ ଦେଲେ ତେବେ ଦୟା ଛାଡ଼ିଦେଇ ।
ସେହି ବିଶ୍ୱରୂପଙ୍କର ଅଟନ୍ତି ଯେ ସୁତ
ତାହାଙ୍କ ନାମ ବରୂପ ସେ ମୋହର ତାତ ।
ସୁତପା ନାମକୁ ମୁହିଁ ବହିଅଛି ଜାଣ
କଶ୍ୟପ ବଂଶରେ ଜାତ ବଶିଷ୍ଠ ବ୍ରାହ୍ମଣ ।
କୈଳାସ ଅଧୀଶ୍ୱର ଦେବ ନିକେତନ
ଗୁରୁ ହୋଇ ମୋତେ ଦେଇଛନ୍ତି ବ୍ରହ୍ମଜ୍ଞାନ ।
ଏ ବାହାରେ ନାନାଶାସ୍ତ୍ର ପଢ଼ାଇ ଅଛନ୍ତି
ଇଷ୍ଟ ଦେବତା ମୋହର ପ୍ରଭୁ ସଧାପତି ।
ସର୍ବଦେଳେ ତାହାଙ୍କର ପାଦପଦ୍ମ ମୁହିଁ
ଚିନ୍ତା କରୁଅଛି ଅନ୍ୟେ ମୋର କାର୍ଯ୍ୟ ନାହିଁ ।
ଧନଦାର ସୁତ ଆଦି ଯେତେ ଦ୍ରବ୍ୟ ଜ୍ଞାନ
ଚିତ୍ତରେ ହୁଅଇ ମୋର ତୃଣତୁଲ୍ୟ ଜ୍ଞାନ ।
ସାଲୋକ୍ୟମୁକତିଦେଲେଦେଲେ ପ୍ରଭୁ ମୋତେ
ତାଙ୍କ ସେବା ବିନା ତାହା ନ ରୁଚେ କିଞ୍ଚିତେ
ବ୍ରହ୍ମତ୍ୱ ଇନ୍ଦ୍ରତ୍ୱ ଆଦି ଦେବତ୍ୱ ସକଳ
ଜଳବିନ୍ଦୁ ପରି ମିଥ୍ୟା ଅଟନ୍ତି କେବଳ ।
ତୁମ୍ଭେ ଯେ ଦେଉଅଛ ମୋତେ ରାଜ୍ୟ ଅଧିକାର
ଏହା ନେଇ ଅବା କିସ ହୋଇବ ମୋହର ।
ଶୁଣିଲି ସୁଯଜ୍ଞ ନୃପ କରୁଛନ୍ତି ଯାଗ
ବହୁ ମୁନିଋଷି ତହିଁ ଦେଇଛନ୍ତି ଯୋଗ ।
ସେ ସକାଶୁ ବିଷ୍ଣୁଭକ୍ତି ପାଇବା ଇଚ୍ଛାରେ
ଉପସ୍ଥିତ ହେଲି ସିନା ଆସି ଏଠାରେ ।
ଆଉ ଅନ୍ୟ କଥାରେ ମୋ କାର୍ଯ୍ୟ ନାହିଁ କିଛି
ଆହେ ନୃପତି ତୁମ୍ଭଙ୍କୁ ଯଥାର୍ଥ କହୁଛି ।
ଅନୁଗ୍ରହ କରୁଅଛି ତୁମ୍ଭଙ୍କୁ ମୁଁ ଏବେ
ଶାପଦେଲି ବୋଲି ମନେ ନ ବିଚାର ଲବେ ।
ବୁଡ଼ି ରହିଥିଲ ଘୋର ସଂସାର ସାଗରେ
ଉଦ୍ଧାର ପାଇବ ଜାଣ ଆମ୍ଭର ଯତ୍ନରେ ।
ଜଳମୟ ଅଟନ୍ତି ଯେ ପୁଣ୍ୟତୀର୍ଥମାନ
ମୃତ୍ତିକା ଶିଳାସ୍ୱରୂପ ଦେବଦେବୀଗଣ ।
ତାହାଙ୍କୁ ବହୁତକାଳ ସେବାପୂଜା କଲେ
ମୁକତି ପ୍ରାପତ ହୋଇଥାଏ ଜାଣ ଭଲେ ।

ମାତ୍ର ଯେ ବୈଷ୍ଣବମାନେ ଶ୍ରୀକୃଷ୍ଣ ଭକତ
ତାଙ୍କ ଦରଶନେ ଲୋକ ହୁଅଇ ପବିତ୍ର ।
ଆହେ ମହାରାଜ ତୁମ୍ଭେ ମୋର ବୋଲକର
ପୁତ୍ରକୁ ରାଜ୍ୟରେ ଏବେ କର ବସ୍ତ୍ରଧ ସ୍ତ୍ରୀ ।
ଭାର୍ଯ୍ୟାକୁ ପୁତ୍ର ପାଶେ କରି ସମର୍ପଣ
ତପସ୍ୟା କରିବା ପାଇଁ ଯାଅ ଘୋରବନ ।
ବ୍ରହ୍ମଆଦି ସ୍ତମ୍ବ ପର୍ଯ୍ୟନ୍ତେ ଏ ଜଗତ
ମିଥ୍ୟା ବୋଲିକରି ଜାଣ ଆହେ ନରନାଥ ।
ପରମାତ୍ମା ଶ୍ରୀକୃଷ୍ଣଙ୍କୁ ଭଜ ଏକମନେ
ଅସାଧ୍ୟ ଅଟନ୍ତି ସେହୁ ଧ୍ୟାନ ଉପାସନେ ।
ବ୍ରହ୍ମା ବିଷ୍ଣୁ ଶିବଆଦି ଦେବତା ନିକର
ଜାଣି ନ ପାରନ୍ତି ଆଦିଅନ୍ତ ତାହାଙ୍କର ।
ଯାହାଙ୍କ ଆଜ୍ଞାରେ ବ୍ରହ୍ମା କରନ୍ତି ସର୍ଜନା
ବିଷ୍ଣୁ କରନ୍ତି ସେପରି ଜଗତ ପାଳନା ।
ସଂହାର କରନ୍ତି ଶିବ ଅନ୍ତଃକାଳ ଜାଣି
ଯାହା ମାୟାରେ ଭ୍ରମନ୍ତି ଦିଗପାଳ ଶ୍ରେଣୀ ।
ଯାହା ଆଜ୍ଞା ଘେନି ବାୟୁ ବହନ୍ତି ଅବିରତ
ଉଦୟ ଭାଗରେ ଜବେ ହୁଅନ୍ତି ଆଦିତ୍ୟ ।
ନିଶାଭାଗେ ନିଶାକର ଶୀତଳ କିରଣେ
ଜଗତ ପ୍ଳାବିତ କରୁଛନ୍ତି ଅନୁକ୍ଷଣେ ।
କାଳ ଜାଣି ମୃତ୍ୟୁଦେବ ବୁଲି ସ୍ଥାନେ ସ୍ଥାନେ ।
ଜୀବଙ୍କର ଜୀବ ନେଉଅଛି ଗଣି ଦିନେ ।
ଯାହାଙ୍କ ଆଜ୍ଞାରେ ଇନ୍ଦ୍ର କରଷନ୍ତି ଜଳ
ଭକ୍ଷ୍ୟ ଅଭକ୍ଷ୍ୟ ସମସ୍ତ ଦହନ୍ତି ଅନଳ ।
ଉପୁଜିଲ ଯମରାଜ ଧର୍ମ ଅଧରମ
ସବୁବେଳେ ବୁଝୁଛନ୍ତି ବିଶ୍ୱର ନିୟମ ।
ନିଜ ନିଜ ସ୍ଥାନେ ରହି ସମୁଦ୍ର ପର୍ବତେ
ଯାହାଙ୍କ ଅନୁଜ୍ଞା ପାଳୁଛନ୍ତି ଅବିରତେ ।
ସପତ ପାତାଳ ପୁଣି ସପତ ସାଗର
ସ୍ୱର୍ଗଲୋକ ଆଦିକରି ଯେତେ ଅଛି ପୁର ।
ଏମନଙ୍କ ସହିତରେ ନିଖିଳ ବ୍ରହ୍ମାଣ୍ଡ
ଆପଣା ଗର୍ଭରେ ସବୁ କରିଅଛି ରୁଣ୍ଡ ।
ଡିମ୍ବାକାର ଅଟଇ ସେ ଜଳେ ପରିପ୍ଳୁତ
ପ୍ରଳୟକାଳେ ଅଦୃଶ୍ୟ ହୁଅଇ ନିଶ୍ଚିତ ।
ପ୍ରତି ବ୍ରହ୍ମାଣ୍ଡରେ ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଏ ବାହାରେ ଦେବଦେବୀ ପନ୍ନଗ ଅସୁର ।
ଚରେଶ ମାନବ ଆଦି ସର୍ବତତ୍ତ୍ୱଗୁଣ
ସେ ମଧ୍ୟରେ ପୂର୍ଣ୍ଣହୋଇ ରହିଥାନ୍ତି ଜାଣ ।
ବ୍ରହ୍ମାଣ୍ଡ ବୋଲିଣ ନାମ ଅଟଇ ତାହାର
କୃତ୍ରିମ ଅଟଇ ସେହି ପ୍ରଜାପତିଙ୍କର ।
କ୍ଷୁଦ୍ର ବିରାଟ ବିଷ୍ଣୁଙ୍କ ନାଭିକମଳରେ
ସ୍ଥିତ ହୋଇଅଛି ପଦ୍ମବୀଜ ପରକାରେ ।
ସେ କ୍ଷୁଦ୍ର ବିରାଟ ବିଷ୍ଣୁ ଜଳଶେଯ୍ୟା ପରେ
ଶୟନ କରି ରହନ୍ତି ସର୍ବ ସମୟରେ ।
କାଳଠାରୁ ଭୟ ପାଇ ମାନସରେ ନିତ୍ୟ
ପରମାତ୍ମା ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥାନ୍ତି ।
କାଳରେ ସେ ଲୋମମୂଳେ ମହାବିଷ୍ଣୁଙ୍କର
ଆଶ୍ରୟ ଗ୍ରହଣ କରିଥାନ୍ତି ବାରମ୍ବାର ।
ସେ ମହାବିଷ୍ଣୁଙ୍କ ପ୍ରତିଲୋମକୂପେ ରହି
ପ୍ରତ୍ୟେକ ବ୍ରହ୍ମାଣ୍ଡ ଗତାଗତ ହେଉଥାଇ ।
ତାହା ସବୁ ସଂଖ୍ୟା କରିବାକୁ ଏ ଜଗତେ
କେହି ହେଲେ ସାମରଥ ନୁହେ କଦାଚିତେ ।
ମହାବିଷ୍ଣୁ ପ୍ରକୃତିକୁ ପୁରୁଷ ଅଟନ୍ତି
ସେଣୁ ଡିମ୍ବରୁ ଅଟଇ ତାଙ୍କର ଉତ୍ପତ୍ତି ।
ପ୍ରକୃତି ଗର୍ଭରୁ ଡିମ୍ବ କୃଷ୍ଣଙ୍କ ଇଚ୍ଛାରେ
ଜାତ ହୋଇଅଛି ପୁଣ ବୃହତ ଆକାରେ ।
ସର୍ବାଧାର ମହାବିଷ୍ଣୁ କାଳଭୟ ଘେନି ।
ଧ୍ୟାନ କରୁଥାନ୍ତି କୃଷ୍ଣ ପାଦପଦ୍ମ ବେନି ।
ଏହିପରି ସର୍ବବିଶ୍ୱେ ବ୍ରହ୍ମା ବିଷ୍ଣୁ ଶିବ
ଜାତ ହେଉଛନ୍ତି ଜାଣ ଆହେ ନରଦେବ ।
ମହତ ବିରାଟ କ୍ଷୁଦ୍ର ବିରାଟ ପୁରୁଷ
ସମସ୍ତେ ଅଟନ୍ତି ସେହି ପ୍ରକୃତିଙ୍କ ବଶ ।
ସେ ସର୍ବ ବୀଜରୂପିଣୀ ପ୍ରକୃତି ଈଶ୍ୱରୀ ।
କାଳେ ଶ୍ରୀକୃଷ୍ଣଙ୍କ ଅଙ୍ଗେ ଲୀନ ହୋଇକରି ।
ତାହାଙ୍କ ରୂପକୁ ସଦା କରୁଥାନ୍ତି ଧ୍ୟାନ
ଏରୂପେ ଅଟଇ ସୃଷ୍ଟି କ୍ରିୟାର ବିଧାନ ।
ପରମାତ୍ମା କୃଷ୍ଣଙ୍କର ଅଙ୍ଗେ ରହିକରି
ଜାତ ହୋଇ ପୁଣି ନାଶ ହୁଅନ୍ତି ସେପରି ।
ମହାଦେବଙ୍କ ମୁଖରୁ ଏହି ଦିବ୍ୟଜ୍ଞାନ
ଶୁଣିଥିଲି ପୂର୍ବକାଳେ ଶୁଣ ହେ ରାଜନ ।
କଳ୍ପବୃକ୍ଷ ସମାନ ଏ ଅଟେ ଫଳପ୍ରଦ
ଏହା ଯୋଗେ ନଷ୍ଟ ହୁଏ ସକଳ ବିପଦ ।

ଆମୂଳ କରି ସମସ୍ତ ଶୁଣିଲ ତ ଏବେ
ପଚାର ଆଉ କ ଶୁଣିବାକୁ ଇଚ୍ଛା ତୋତେ ।
ବୋଲେ କ୍ଷେତ୍ରବାସୀ ଶୁଣ ଆହେ ସୁଜ୍ଞଜନେ
ରାଜା ବ୍ରାହ୍ମଣ ସମ୍ବାଦ ଶୁଣ ତୋଷମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ରାଜାଙ୍କପ୍ରତି ଉପଦେଶ ଦେବାକୁ
ବ୍ରାହ୍ମଣମାନଙ୍କର ଆତ୍ମପରିଚୟ ଦାନ ନାମ ଷଟ୍‌ପଞ୍ଚାଶତ୍ତମ ଅଧ୍ୟାୟଃ ।

## ସପ୍ତ ପଞ୍ଚାଶତ୍ ଅଧ୍ୟାୟ

### ବ୍ରାହ୍ମଣ କର୍ତ୍ତୃକ କାଳାଦି ନିରୂପଣ

ରାଜନ ବୋଇଲେ ଆହେ ଦ୍ୱିଜଙ୍କ ମଣ୍ଡନ
ଦୃଷ୍ଟିର ଆକାର ଭେଦ କରନ୍ତୁ ବଖାଣ ।
ଯେଉଁ ବିରାଟ ପୁରୁଷ ଅଟେ ସର୍ବବେଶ୍ରୁ
ବଖାଣ କରନ୍ତୁ ବାରେ ମାତ୍ର ତାଙ୍କ କଥା ।
କାଳଠାରୁ କର୍ମା ଉପୁ ତାହାଙ୍କୁ ହୁଅଇ
କେତେ କାଳ ଅଟେ ପୁଣି ତାହାଙ୍କର ଆୟୁ ।
ବିଧାତା ପ୍ରକୃତି କ୍ଷୁଦ୍ର ବିରାଟ ପୁରୁଷ
କହ କେତେ କାଳ ଅଟେ ଏହାଙ୍କ ଆୟୁଷ ।
ପୁଣି ପ୍ରାକୃତିକ ଜୀବ ଜନ୍ତୁଗଣଙ୍କର
କେତେକାଳ ପରମାୟୁ କହନ୍ତୁ ସତ୍ୱର ।
ବେଦ ପୁରାଣରେ ଲେଖା ହୋଇଅଛି ଯାହା
ବୁଦ୍ଧି ବିଚାର ସମସ୍ତ କହ ମୁନିନାଥ ।
ସଭିଙ୍କ ଉପରେ ପୁଣି ଅଛି କେଉଁ ଲୋକ
ବୁଝାଇଣ କହ ଏହା ହେ ଦ୍ୱିଜତିଳକ ।
ବ୍ରାହ୍ମଣେ ବୋଇଲେ ଶୁଣ ଆହେ ନରଶିଖ
ସଭିଙ୍କ ଊର୍ଦ୍ଧ୍ୱରେ ରହି ଅଛନ୍ତି ଗୋଲୋକ ।
ଆକାଶ ସମାନ ଲମ୍ୱ ଅଟଇ ତାହାର
ବିଶ୍ୱସନାତନ ନାମ ଅଟେ ତାହାଙ୍କର ।
ଯେତେ ସୃଷ୍ଟି କରିବାକୁ ସ୍ଥିର କଲେ ମନ
ପ୍ରକୃତି ସଙ୍ଗରେ କ୍ରୀଡ଼ା କଲେ ବନ୍ଧନ ।
ବେଦଙ୍କର ମୁଖୁଁ ଜ୍ଞାନ ହୋଇଣ କର୍ଗତ
ସାରା ବ୍ରହ୍ମାଣ୍ଡ ବକ୍ଷରେ ହୋଇଲା ପ୍ଲାବିତ ।
ସେ ବସ୍ତୃତ ଜଳରାଶି ମହାବିଷ୍ଣୁଙ୍କର
ଆଧାର ଅଟଇ ଜାଣ ଆହେ ନୃପବର ।
ଚର୍ମିରେ ଶୟନ କରି ସେ ମହାବିରାଟ
ଯଥାକାଳେ ସୃଷ୍ଟିନିମିତ୍ତ କରନ୍ତି ପ୍ରକଟ ।
ସର୍ବେଶ୍ୱର ଶ୍ରୀକୃଷ୍ଣଙ୍କ ଷୋଡ଼ଶାଂଶ ସେହି
ଦୂର୍ବାଦଳ ପରି ତାଙ୍କ ବରନ ଅଟଇ ।
ସସ୍ମିତ ବଦନ ଶ୍ରୀଚତୁର୍ଭୁଜ ବିରାଜିତ
ବନମାଳାଧର ପୀତବସନ ଶୋଭିତ ।
ଆକାଶରେ ଅବସ୍ଥିତ ବଇକୁଣ୍ଠପୁର
ବର୍ତ୍ତୁଳ ଆକୃତି ଯେହ୍ନେ ପୂର୍ଣ୍ଣ ସୁଧାକର ।
ଲକ୍ଷ ଯୋଜନ ବିସ୍ତୃତ ଆକାଶ ସମାନ
ପୂର୍ଣ୍ଣ ହୋଇଛି ଚର୍ମିରେ ଅମୂଲ୍ୟ ରତନ ।
ସେହିଠାରେ ନାରାୟଣ ଶଙ୍ଖଚକ୍ରଧାରୀ
ବାସ କରିଛନ୍ତି ସଙ୍ଗେ ପାରିଷଦ ଧରି ।
ବକ୍ଷସ୍ଥଳେ ବିରାଜିତ ରମ୍ୟ ବନମାଳ
ଶ୍ରୀଅଙ୍ଗେ ଶୋଭଇ ନାନା ଭୂଷଣେ ମଞ୍ଜୁଳ ।
ପାଶରେ ତୁଳସୀ ଗଙ୍ଗା ଲକ୍ଷ୍ମୀ ସରସ୍ୱତୀ
ସର୍ବଦା ବସି ଚରଣ ସେବା କରୁଥାନ୍ତି ।
ଶ୍ରୀକୃଷ୍ଣ ଆପଣା ଅଙ୍ଗ ଦୁଇଭାଗ କଲେ
ବାମଭାଗେ ଚତୁର୍ଭୁଜ ବିଷ୍ଣୁରୂପ ହେଲେ ।
ବଇକୁଣ୍ଠ ପୁରବାସୀ ଅଟନ୍ତି ସେହି
ଦକ୍ଷିଣ ଅଂଶ ରହିଲେ ଦୁଇଭୁଜ ବହି ।
ଶ୍ରୀକୃଷ୍ଣ ସ୍ୱରୂପ ସେହି ନିତ୍ୟ ସନାତନ
ଗୋଲୋକ ଅଟଇ ତାହାଙ୍କର ବାସସ୍ଥାନ ।
ବଇକୁଣ୍ଠ ଊର୍ଦ୍ଧ୍ୱରେ ଯେ ଅଟେ ଅବସ୍ଥିତ
ପଞ୍ଚାଶ ସହସ୍ର କୋଟି ଯୋଜନ ବିସ୍ତୃତ ।

ସର୍ବଲୋକ ଶ୍ରେଷ୍ଠ ସେହ୍ନ ବର୍ତ୍ତୁଳ ଆକାର
ଚର୍ତ୍ତିରେ ରତ୍ନ ନିର୍ମିତ ଅଦ୍ଭୁତ ମନ୍ଦିର ।
ଆବର ସୁବର୍ଣ୍ଣମୟ ସୋପାନ ଅନେକ
ଦର୍ପଣ ମଣିଗଣରେ ଦିଶେ ଜକ ଜକ ।
ନାନାଶତ ବିଭୂଷିତ ଶିଖର ଶୋଭିତ
କୁସୁମିତା ଲତା ଗୁଳ୍ମ ଗଣରେ ଆବୃତ ।
ବିରଜା ନ ମରେ ନଦୀ ବହେ ତାର ପାଶେ
ଶତଶୃଙ୍ଗ ଯୋଗେ ଦିବ୍ୟ ସୌନ୍ଦର୍ଯ୍ୟ ପ୍ରକାଶେ ।
ସେ ଶୈଳର ପରିମାଣ କୋଟିଏ ଯୋଜନ
ତାର ଅର୍ଦ୍ଧ ପରିମାଣ ଅଟେ ବୃନ୍ଦାବନ ।
ତା ଅର୍ଦ୍ଧ ପ୍ରମାଣ ରାସମଣ୍ଡଳ ଅଟଇ
ଏହାଙ୍କର ମଧ୍ୟଦେଶେ ଗୋଲୋକ ଅଛଇ ।
ଯେରୂପେ ପଙ୍କଜ ମଧ୍ୟେ ଶୋହେ କର୍ଣ୍ଣିକାର
ତେମନ୍ତ ଗୋଲୋକପୁର ଦିଶେ ମନୋହର ।
ସେ ପୁରେ ରାଧିକା ଭୁଲେ ଦେବ ସନାତନ
ଗୋପ ଗୋପୀ ଘେନି ବାସ କରନ୍ତି ଜାଣ ।
ଦ୍ୱିଭୁଜ ମୁରଲୀହସ୍ତ ଗୋପଶିଶୁ ରୂପ
ଶ୍ରୀଅଙ୍ଗେ ଶୋଭିତ ନେତ୍ର ସୁବର୍ଣ୍ଣ କଳାପ ।
ବହ୍ନି ଶୁଦ୍ଧ ବସନରେ ରମ୍ୟ କଟିଦେଶ
ପ୍ରତ୍ୟକ୍ଷ ଲେପିତ ଶୁକ୍ଳ ଚନ୍ଦନ ବିଶେଷ ।
ଗୋପିକାଗଣ ପାଶରେ ଉତ୍ତମ ସନ୍ତତେ
ବଞ୍ଚୁଥାନ୍ତି ଶୁଭ୍ର ମୃଗପୁଚ୍ଛ ଘେନି ହସ୍ତେ ।
ଉତ୍ତମ ବେଶ ସଜାଇ କେତେ ଗୋପସ୍ତ୍ରୀ
କଟାକ୍ଷରେ ଦୃଷ୍ଟି ଥାନ୍ତି ଉଲ୍ଲ ହୋଇଣ ।
ଶିବଙ୍କ ମୁଖୁଁ ଯେରୂପେ ଶୁଣିଥିଲ ମୁହିଁ
ଲୋକ ପରିମାଣ କଥା କହିଲି ବତାଇ ।
ଏବେ କାଳ ପରିମାଣ ଶୁଣ ନରପତି
କହିବା ଯେରୂପେ ତୋଷ ହେବ ତୁମ୍ଭ ମତି ।
ଷଟ୍‌ପଳ ପ୍ରମାଣ ପାତ୍ର ନିର୍ମିତ କରିବ
ତାହାର ଗର୍ଭକୁ ଷୋଡ଼ଶାଙ୍ଗୁଳ ରଖିବ ।
ସୁବର୍ଣ୍ଣମାଷରେ ତହିଁ ଛିଦ୍ର କେବ କରି
ରଖିବ ନେଇ ତାହାକୁ ଜଳ ମଧ୍ୟେ ଭରି ।
ଯେତେ ସମୟରେ ପାତ୍ର ଜଳପୂର୍ଣ୍ଣ ହେବ
ସେହି କାଳକୁ ହିଁ ଦଣ୍ଡ ବୋଲିଣ ବୁଝିବ ।
ଦୁଇଦଣ୍ଡ ହେଲେ ଏକ ମୁହୂର୍ତ୍ତ ବୋଲାଏ
ଅସ୍ତ ମୁହୂର୍ତ୍ତରେ ଯାମ ହୁଅଇ ଗୋଟିଏ ।
ଅଷ୍ଟଯାମ ଯୋଗ ହେଲେ ହୁଏ ଏକବାର
ପଞ୍ଚଦଶ ବାରେ ଏକପକ୍ଷର ବିସ୍ତାର ।
ଦୁଇପକ୍ଷରେ ଗୋଟିଏ ମାସ ପୂର୍ଣ୍ଣ ହୁଏ
ବାରମାସରେ ବରଷ ଗୋଟିଏ ବୋଲାଏ ।
ମନୁଷ୍ୟଙ୍କର ଗୋଟିଏ ମାସ ଶେଷ ହେଲେ
ପିତୃଙ୍କର ଏକ ଦିନରାତ୍ରି ହୁଏ ଭଲେ ।
କୃଷ୍ଣପକ୍ଷରେ ଦିବସ ଶୁକ୍ଳପକ୍ଷେ ନିଶା
ହୁଅଇ ନୃପରେ ଜାଣ ଆହେ ମହାଯଶା ।
ଗୋଟିଏ ବରଷ ପୂର୍ଣ୍ଣ ହେଲେ ନରଙ୍କର
ଦେବଙ୍କ ପକ୍ଷରେ ଏକ ରଜନୀ ବାସର ।
ଉତ୍ତରାୟଣ କାଳରେ ଦିନ ହୋଇଥାଏ
ଦକ୍ଷିଣାୟନ ହୋଇଲେ ନିଶା ଆସି ହୁଏ ।
ଯୁଗକର୍ମ ଅନୁରୂପେ ନରଆଦିଙ୍କର
ହୋଇଛୁ ବୟସ କାଳ ଯୋଗର ବିସ୍ତାର ।
ପ୍ରକୃତି ସଙ୍ଗତେ ବ୍ରହ୍ମା ବିଷ୍ଣୁ ସଦାଶିବ
ଏହାଙ୍କ ଆୟୁଷ କାଳ ଶୁଣ ନରଦେବ ।
ପ୍ରଥମରେ ଚାରିଗୋଟି ଯୁଗ ହେଲା ସ୍ଥିର
ସତ୍ୟ ତ୍ରେତୟା ଦ୍ୱାପର କଳି ଏ ପ୍ରକାର ।
ଦ୍ୱାଦଶ ସହସ୍ର ଦିବ୍ୟବରଷ ପ୍ରମାଣ
ପ୍ରତ୍ୟେକ ଯୁଗର ହୋଇଅଛଇଟି ଜାଣ ।
ନରସଂଖ୍ୟା ପ୍ରମାଣରେ ତାହାର ସମସ୍ତ
କହୁଅଛୁ ସାବଧାନେ ଶୁଣ ମହାଶୟ ।
ଚତ୍ୱାରିଂଶ ଲକ୍ଷ ବିଂଶସହସ୍ର ବରଷ
ପ୍ରମାଣରେ ଚାରିଯୁଗ କାଳ ହୁଏ ଶେଷ ।
ସପ୍ତଦଶ ଲକ୍ଷ ଅଷ୍ଟବିଂଶତି ସହସ୍ର
ମନୁଷ୍ୟ ବର୍ଷରେ ସତ୍ୟଯୁଗ ହୁଏ ଶେଷ ।
ଦ୍ୱାଦଶଲକ୍ଷ ଯେ ଷଣ୍ଣବତି ହଜାର
ବର୍ଷକାଳ ନିରୂପିତ ତ୍ରେତୟା ଯୁଗର ।
ଅଷ୍ଟଲକ୍ଷ ଚତୁଃଷଷ୍ଠିସହସ୍ର ବର୍ଷ ହେଲେ
ଦ୍ୱାପରଯୁଗ ଅତୀତ ହୁଅଇଟି ଭଲେ ।
ଚାରିଲକ୍ଷ ପରେ ପୁଣି ବତିଶ ସହସ୍ର
ବରଷ ଅନ୍ତରେ କଳିଯୁଗ ହୁଏ ଶେଷ ।
ପେଣ୍ଡପର ସପ୍ତବାର ଷୋଡ଼ଶ ଯେ ତିଥି
ବର୍ଷ ମାସ ପକ୍ଷ ଯେ ଆବର ଦିନରାତି ।
ଉତ୍ପତ୍ତି ପର କରୁଅଛନ୍ତି ଭ୍ରମଣ
ସେହିପରି ଭ୍ରମୁଥାନ୍ତି ଚାରିଯୁଗ ଜାଣ ।

ଯୁଗ ଭ୍ରମଣ ଚତୁଷ୍ଟୟେ ପ୍ରତି ମନ୍ୱନ୍ତର
ଭ୍ରମଣ କରନ୍ତି ଜାଣ ଆହେ ନରବର ।
ଏବଂ ଏକସ୍ତର ଯୁଗ ହୋଇଲେ ଗୋଟିଏ
ମନ୍ୱନ୍ତର ନାମରେ ସେ କାଳ ଭୋଗ ହୁଏ ।
ଏହିପରି ଚତୁର୍ଦ୍ଦଶ ମନୁଙ୍କର ଗତି
କ୍ରମେ କ୍ରମେ ହୋଇଥାଏ ଜାଣ ନରପତି
ପାଞ୍ଚଶ ସହସ୍ର ପାଞ୍ଚଶହ ଯେ ଷାଠିଏ ।
ନର ଯୁଗରେ ଗୋଟିଏ ମନ୍ୱନ୍ତର ହୁଏ ।
ଏବେ ମନୁଙ୍କ ଆଖ୍ୟାନ କହୁଅଛୁ ଶୁଣ
ଯେରୂପେ ଶିବଙ୍କ ମୁଖୁଁ କରିଛୁ ଶ୍ରବଣ ।
ଆଦ୍ୟମନୁ ଅଟନ୍ତି ଯେ ବ୍ରହ୍ମାଙ୍କ କୁମର
ପତିବ୍ରତା ଶତରୂପା ପ୍ରିୟା ତାହାଙ୍କର ।
ସକଳ ମନୁଙ୍କ ମଧ୍ୟେ ମୁଖ୍ୟ ସେ ଅଟନ୍ତି
ଧାର୍ମିକ ପଣରେ ଯାଙ୍କୁ ସରି କେ ନୁହନ୍ତି ।
ମହାଦେବଙ୍କର ଶିଷ୍ୟ ସ୍ୱାୟମ୍ଭୁବ ମନୁ ।
ତାହାଙ୍କୁ ତେଜରେ ସମାନ ହୋଇବେ ଭାନୁ ।
ବିଷ୍ଣୁବ୍ରତ ପରାୟଣ ପଣ୍ଡିତ ଅଟନ୍ତି
ତୁମ୍ଭର ସେ ପିତାମହ ଆହେ ନରପତି ।
ସହସ୍ରେକ ରାଜସୂୟ ଯାଗ କରିବାକୁ
ଗମନ କରିଥିଲେ ସେ ନର୍ମଦା ତଟକୁ ।
ତିନିଲକ୍ଷ ଅଶ୍ୱମେଧ ନରମେଧ କରି
ଗୋମେଧ ତ୍ରିଶଲକ୍ଷ ଯେ କଲେ ସେହିପରି ।
ତିନିକୋଟି ବ୍ରାହ୍ମଣଙ୍କୁ ଡକାଇ ଆଣିଲେ
ନାନା ମିଷ୍ଟ ଦ୍ରବ୍ୟମାନ ଭୁଞ୍ଜିବାକୁ ଦେଲେ ।
ନବଲକ୍ଷ ରତ୍ନ ପୁଣି ସ୍ୱର୍ଣ୍ଣ ଶତକୋଟି
ଦକ୍ଷିଣା ସହିତେ ତାଙ୍କ ମଧ୍ୟେ ଦେଲେ ବାଣ୍ଟି ।
ସୁବର୍ଣ୍ଣ ଭୂଷିତ କରି ଲକ୍ଷେ କାମଧେନୁ
ଦାନ କଲେ ବ୍ରାହ୍ମଣଙ୍କୁ ପ୍ରଜାପତ୍ୟ ମନୁ ।
ବହ୍ନିଶୁଦ୍ଧ ବସ୍ତ୍ର ନେଇ ଲକ୍ଷ ଲକ୍ଷ ଦେଲେ
କେତେ ବ୍ରାହ୍ମଣଙ୍କୁ ନଗ୍ର ଗ୍ରାମ ଦାନ କଲେ ।
ଗଜ ଅଶ୍ୱ ରଥ ଧନ ପଦାତି ସହିତେ
ଉତ୍ତମ ଦ୍ୱିଜଙ୍କୁ ଡାକ ଦେଲେ ଅପ୍ରମିତେ ।
ତିନିକୋଟି ସ୍ୱର୍ଣ୍ଣପାତ୍ରେ ଅନ୍ନ ଜଳ ଭରି
ଆନନ୍ଦେ ପ୍ରଦାନ କଲେ ମନୁ ଦଣ୍ଡଧାରୀ ।
କର୍ପୂର ବାସିତ ଦ୍ରବ୍ୟ ତାମ୍ବୁଳ ରଖାଇ
ସ୍ୱର୍ଣ୍ଣପାତ୍ର କେତେ ଦାନ କଲେ ତୋଷ ବହି ।

ଏହିରୂପେ ନାନାବିଧ ଦ୍ରବ୍ୟ ଦେଲେ ଯେତେ
କେ କହିପାରିବ ସଂଖ୍ୟା ବୋଲି ଏତେ ଏତେ ।
ଶିବଙ୍କଠାରୁ ସେ ପାଇ ଦିବ୍ୟ ତତ୍ତ୍ୱଜ୍ଞାନ
ଶ୍ରୀକୃଷ୍ଣ ମନ୍ତ୍ର ସ୍ମରଣ କଲେ ତାଙ୍କୁ ଧ୍ୟାନ ।
ଆଉର ଶ୍ରୀକୃଷ୍ଣଙ୍କର ଦାସତ୍ୱ ପାଇଲେ
ଅନ୍ତଃକାଳେ ଯାଇ ଗୋଲୋକରେ ବାସକଲେ ।
ମୁକତ ହେବାର ଦେଖି ଆପଣା ତନୟ
ଆନନ୍ଦର ପ୍ରଜାପତି ଲୋକ ପିତାମହ ।
ଭକ୍ତିଭରେ ଶଙ୍କରଙ୍କୁ ବହୁ ସ୍ତୁତି କଲେ
ଆଉ ଗୋଟିଏ ମନୁଙ୍କୁ ପୁଣି ସରଜିଲେ
ସ୍ୱୟଂଭୂ ତେଜରୁ ସେ ତ ହୋଇଲେ ଜନମ
ତେଣୁ ସ୍ୱାୟଂଭୂବମନୁ ହେଲ ତାଙ୍କ ନାମ ।
ଅଗ୍ନିଙ୍କଠାରୁ ଦ୍ୱିତୀୟ ମନୁ ହେଲେ ଜାତ
ସ୍ୱାରୋଚିଷମନୁ ତାଙ୍କ ନାମ ହେଲ ଖ୍ୟାତ ।
ଧାର୍ମିକ ଦୟାଳୁପଣେ ତାଙ୍କପରି ସେହି
ସ୍ୱାୟଂଭୂବମନୁଙ୍କର ସମ ଥିଲେ ହୋଇ ।
ସେ ଅନ୍ତରେ ପ୍ରିୟବ୍ରତଙ୍କର ଦୁଇ ସୁତ
ଜାତହୋଇ ଦୁଇଗୋଟି ମନୁ ହେଲେ ଖ୍ୟାତ ।
ବୈଷ୍ଣବ ମଧ୍ୟରେ ସେହି ଅଟନ୍ତି ଅଧିକ
ସଦାଶିବଙ୍କର ପ୍ରିୟଶିଷ୍ୟ ଦୁହେଁସାକ ।
ତୃତୀୟ ଚତୁର୍ଥ ମନୁ ଅଟନ୍ତି ସେ ଦୁହେଁ ।
ତାଙ୍କପରି ଗୁଣବନ୍ତ ସଂସାରେ କେ ନୁହେଁ ।
ରୈବତ ନାମେ ପଞ୍ଚମ ମନୁ ଜାତ ହେଲେ
ଷଷ୍ଠମନୁ ଚାକ୍ଷୁଷକ ନାମକୁ ବହିଲେ ।
ସପ୍ତମ ମନୁ ଅଟନ୍ତି ସୂର୍ଯ୍ୟଙ୍କର ସୁତ
ଶ୍ରାଦ୍ଧଦେବ ବୋଲିକରି ତାଙ୍କ ନାମ ଖ୍ୟାତ ।
ସାବର୍ଣ୍ଣି ନାମରେ ମନୁ ହୋଇଲେ ଅଷ୍ଟମ
ଦକ୍ଷସାବର୍ଣ୍ଣି ନବମ ମନୁଙ୍କର ନାମ ।
ଦଶମ ବ୍ରହ୍ମସାବର୍ଣ୍ଣି ନାମେ ଜାତହେଲେ
ଏକାଦଶ ମନୁ ଧର୍ମ ସାବର୍ଣ୍ଣି ହୋଇଲେ ।
ସମସ୍ତେ ଅଟନ୍ତି ବିଷ୍ଣୁଭକ୍ତପରାୟଣ
ଆଉର ସକଳ ଶାସ୍ତ୍ରଜ୍ଞାନରେ ଉତ୍ତମ ।
ରୁଦ୍ରସାବର୍ଣ୍ଣି ଦ୍ୱାଦଶ ମନୁ ବୋଲାଇଲେ
ଦେବସାବର୍ଣ୍ଣି ଯେ ତ୍ରୟୋଦଶ ମନୁ ହେଲେ ।
ଚନ୍ଦ୍ରସାବର୍ଣ୍ଣି ହୋଇଲେ ଚତୁର୍ଦ୍ଦଶ ମନୁ
ଏରୂପେ ମନୁଙ୍କ ସଂଖ୍ୟା ଆହେ ନୃପସୂନୁ ।

ମନୁଙ୍କର ପରମାୟୁ ଅଟେ ଯେତେଦିନ
ସେତିକ କାଳ ବଞ୍ଚନ୍ତି ଦେବ ମଘବାନ ।
ଚତୁର୍ଦ୍ଦଶ ଇନ୍ଦ୍ର ଜାତ ହୁଅନ୍ତି ଯେତେ
ବ୍ରହ୍ମାଙ୍କର ଏକଦିନ ଭୋଗ ହୁଏ ତେବେ ।
ପୁଣି ସେତିକ କାଳରେ ଏକରାତ୍ର ହୁଏ
ବ୍ରହ୍ମ ନିଶା ବୋଲି ତାକୁ ବୋଲନ୍ତି ସଭିଏଁ ।
ବେଦରେ ତାହାର ନାମ ଅଟେ କାଳରାତ୍ରି
ସଂହାରରୂପିଣୀ ସେହି ଦେବୀ ଜଗଦ୍ଧାତ୍ରୀ ।
ବ୍ରହ୍ମାଙ୍କର ଦିନକରେ କ୍ଷୁଦ୍ର କଳ୍ପ ହୁଏ
ତହିଁରେ ବହୁତ ନର ଧନ ଲୟପାଏ ।
ଏହିପରି ସାତକଳ୍ପ ମାର୍କଣ୍ଡେୟ ମୁନି
ଜୀଇଥିଲେ ଶିବଙ୍କର ଅନୁଗ୍ରହ ଘେନି ।
ବ୍ରହ୍ମଲୋକେ ତଳଭାଗେ ଯେତେ ଲୋକ ଥିଲେ
ସଙ୍କର୍ଷଣ ମୁଖାଗ୍ନିରେ ଦଗଧ ହୋଇଲେ ।
ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମସୁତ ଏମାନେ କେବଳ
ବ୍ରହ୍ମଲୋକକୁ ଗମନ କଲେ ତତକାଳ ।
ବ୍ରହ୍ମରାତ୍ରି ଗତ ହୋନ୍ତେ ପୁଣି ବେଦବର
ସର୍ଜ୍ଜନା କରନ୍ତି ଜୀବ ସଙ୍ଗେ ଚରାଚର ।
ସେହି ବ୍ରହ୍ମ ରଜନୀରେ କ୍ଷୁଦ୍ର ଲୟ ହୁଏ
ଦଗ୍ଧ ହୁଅନ୍ତି ଦେବତା ମାନବ ସଭିଏଁ ।
ଏପରି ତିରିଶଦିନ ରାତ୍ରି ହେଲେ ଗତ
ବ୍ରହ୍ମାଙ୍କର ଏକ ମାସ ହୁଅଇ ଅଗତ ।
ପଞ୍ଚାଶ ବରଷ ବ୍ରହ୍ମା ଭୋଗ କଲାପରେ
ସାମାନ୍ୟ ପ୍ରଳୟ ତହିଁ ହୋଇଗଲା ଥରେ ।
ଚନ୍ଦ୍ର ସୂର୍ଯ୍ୟ ଦିଗପାଳ ବସୁ ରୁଦ୍ରଗଣ
ଗନ୍ଧର୍ବ ଦାନବ ଯକ୍ଷ କିନ୍ନର ଚାରଣ ।
ମୁନି ଋଷି ପଶୁପକ୍ଷୀ ମନୁଷ୍ୟ ସହିତେ
ଏକ କାଳରେ ବିନଷ୍ଟ ହୋଇଲେ ସମସ୍ତେ ।
ଲୋମଶ ଯେ ମାର୍କଣ୍ଡେୟ ଆଦି ମୁନିମାନେ
ଇନ୍ଦ୍ରଦ୍ୟୁମ୍ନ ଅକୂପାର କଚ୍ଛପ ଏମାନେ ।
କଳ୍ପଜୀବୀ ହୋଇଥିଲେ ହେଲେ ସେକାଳରେ
ବିନଷ୍ଟ ହୋଇପଡ଼ିଲେ କାଳ କବଳରେ ।
ବ୍ରହ୍ମଲୋକ ଅଧୋଭାଗେ ଆଉ ଯେତେ ଲୋକ
ନିପାତ ହୁଅନ୍ତି ଜାଣ ନରକ ନାୟକ ।
ବ୍ରହ୍ମପୁତ୍ର ଆଦିକରି କେତେକ ତପସ୍ୱୀ
ଶରୀର ରଖିଲେ ବ୍ରହ୍ମଲୋକ ମଧ୍ୟେ ପଶି ।

ସାମାନ୍ୟ ପ୍ରଳୟକାଳ ହୁଅନ୍ତେ ଅତୀତ
ସର୍ଜ୍ଜନା କଲେକ ବ୍ରହ୍ମା ପୁଣି ଏ ଜଗତ ।
ଏହିପରି ଶତବର୍ଷ ବ୍ରହ୍ମାଙ୍କର ଆୟୁ
ନିରୂପିତ ହୋଇଅଛି ଆହେ ମହାବାହୁ ।
ଶତ ସମ୍ବତ୍ସର ଅନ୍ତେ ବ୍ରହ୍ମାଙ୍କର ଲୟ
ହେବା ବେଳେ ଜଗତରେ ବଶିଷ୍ଟ ପ୍ରଳୟ ।
ସଂଘଟିତ ହୁଏ ଜାଣ ଆହେ ନରପତି
ମହାପ୍ରଳୟ ବୋଲିଣ ତାହାକୁ ବୋଲନ୍ତି ।
ମହାରାତ୍ର ନାମ ମଧ୍ୟ ଅଟଇ ତାହାର
ନିପାତ ହୁଅଇ ଯେଣୁ ପ୍ରଜାପତିଙ୍କର ।
ନିଖିଳ ବ୍ରହ୍ମାଣ୍ଡ ମଧ୍ୟେ ପୂର୍ଣ୍ଣ ହୁଏ ଜଳ
ଦେଖିବାକୁ କେଉଁଠାରେ ନ ରହଇ ସ୍ଥଳ ।
ପ୍ରକୃତି ଶିବଙ୍କୁ ଛାଡ଼ି ସର୍ବ ଦେବଦେବୀ
ନିମଗ୍ନ ହୁଅନ୍ତି ଜଳେ କାଳଗତି ଲଭି ।
ବୈଷ୍ଣବେ ହୁଅନ୍ତି ଲୀନ ବିଷ୍ଣୁଙ୍କ ଅଙ୍ଗରେ
ବିଷ୍ଣୁଭକ୍ତ ଯୋଗୀଜନେ ତାହାଙ୍କ ସଙ୍ଗରେ ।
କାଳାଗ୍ନି ରୁଦ୍ର ଯେ ଲୋକ ସଂହାରକରତା
ରୁଦ୍ରଗଣଙ୍କ ସଙ୍ଗରେ ଘେନି ଛାଡ଼ି ଚିନ୍ତା ।
ମୃତ୍ୟୁଞ୍ଜୟ ଶିବଙ୍କର ଅଙ୍ଗରେ ମିଶନ୍ତି
ତମୋଗୁଣ ଯାଏ ସତ୍ତ୍ୱ ଗୁଣକୁ ଝଟତି
ବ୍ରହ୍ମା ନାରାୟଣ ଶିବ ବିରାଟ ପୁରୁଷ
ଏହାଙ୍କ ପାତରେ ପଡ଼େ ପ୍ରକୃତି ନିମେଷ ।
ପ୍ରକୃତି ନିମେଷ ଅନ୍ତେ କୃଷ୍ଣଙ୍କ ଇଚ୍ଛାରେ
ପୁଣି ନବସୃଷ୍ଟି ଜାତ ହୁଏ କ୍ଷଣକରେ ।
ନିର୍ଗୁଣ ପ୍ରକୃତିପତି ଶ୍ରୀକୃଷ୍ଣ ଅଟନ୍ତି
ନିମେଷ ନ ଯାଏ ତେଣୁ ତାଙ୍କ ନେତ୍ର କତି ।
ସଗୁଣ ଯେ ବସ୍ତୁମାନେ ତାହାଙ୍କ ଚକ୍ଷୁରେ
ନିମେଷ ପଡ଼ଇ ଜାଣ ସବୁ ସମୟରେ ।
ନିର୍ଗୁଣ ନିତ୍ୟ ଯେ ଆଦିଅନ୍ତ ବିବର୍ଜ୍ଜିତ
ତାହାଙ୍କର ଚକ୍ଷୁ ହୁଏ ନିମେଷ ରହିତ ।
ପ୍ରକୃତିଦେବୀଙ୍କି ହେଲେ ସହସ୍ର ନିମେଷ
ଗୋଟିଏ ଦଣ୍ଡ ହୁଅଇ ଯେ କାଳରେ ଶେଷ ।
ଷାଠିଏ ଦଣ୍ଡରେ ଭୋଗ ହୁଏ ଏକବାର
ସେହିପରି ଏକରାତ୍ର ହୁଅଇ ଆବର ।
ତିରିଶ ଦିନ ରାତ୍ରରେ ଏକମାସ ହୁଏ
ବାରମାସ ଭୋଗ ହେଲେ ବରଷେ ବୋଲାଏ ।

ଏହିପରି ଶତେବର୍ଷ ହେଲେ କୃଷ୍ଣଙ୍କର
ପ୍ରକୃତି ଦେବୀଙ୍କ ଲୟ ହୁଏ ମନେକର ।
ଶ୍ରୀକୃଷ୍ଣ ଅଙ୍ଗେ ପ୍ରକୃତି ମିଶିଯାନ୍ତି ଯେବେ
ପ୍ରାକୃତିକ ଲୟ ଜାତ ହୁଅଇଟି ତେବେ ।
ଧ୍ୱଂସକାରୀ ସଂହାର କରି ଏକା ସେ ପ୍ରକୃତି
ଅକ୍ଷତ ଦେହରେ ସ୍ଥିତ ହୋଇଣ ରହନ୍ତି ।
ସେ ପୁଣି ହୁଅଇ ଲୀନ କୃଷ୍ଣଙ୍କ ବକ୍ଷରେ
ମହାବିରାଟଙ୍କ ଜାତ କରନ୍ତି କାଳରେ ।
ଶକ୍ତି ଉପାସକଗଣେ ସେ ମହାମାୟାଙ୍କୁ
ଦୁର୍ଗା ବୋଲିଣ ବନ୍ଦନ୍ତି ପ୍ରକାଶି ଭକ୍ତିକୁ ।
ସର୍ବଶକ୍ତି ସ୍ୱରୂପିଣୀ କୃଷ୍ଣ ପ୍ରାଣପ୍ରିୟା
କୃଷ୍ଣଙ୍କର ବୁଦ୍ଧି ଅଧିଷ୍ଠାତ୍ରୀ ମହାମାୟା ।
ବଇଷ୍ଣବମାନେ ତାଙ୍କୁ ବୋଲନ୍ତି ରାଧିକା
ଅଟନ୍ତି ସେ ଶ୍ରୀହରିଙ୍କ ପ୍ରାଣରୁ ଅଧିକା ।
ନାରାୟଣ ପ୍ରିୟପତ୍ନୀ ମହାଲକ୍ଷ୍ମୀ ସତୀ
ତାହାଙ୍କର ଅର୍ଦ୍ଧ ଅଙ୍ଗ ସମ୍ଭବା ଅଟନ୍ତି ।
ନାରାୟଣ ଶିବ ଦୁହେଁ ନିଜ ଭୃତ୍ୟଗଣ
ସଙ୍ଗେ ଘେନି ଶ୍ରୀକୃଷ୍ଣଙ୍କ ଅଙ୍ଗେ ହୋନ୍ତି ଲୀନ ।
ଗୋପ ଗୋପୀଗଣ ଆସି ସୁରଥିଙ୍କ କୂଳେ
ପ୍ରକୃତି ଅଙ୍ଗରେ ଲୀନ ହୋଇଯାନ୍ତି ଭଲେ ।
ମହାବିଷ୍ଣୁଙ୍କ ଅଙ୍ଗରେ କ୍ଷୁଦ୍ର ବିଷ୍ଣୁଗଣ
ଲୀନ ହୁଅନ୍ତିଟି ଜାଣ ଆହେ ନରରାଣ ।
ମହାବିଷ୍ଣୁ ପ୍ରକୃତିଙ୍କ ଅଙ୍ଗରେ ମିଶନ୍ତି
ପ୍ରକୃତି ସେ ପରମାତ୍ମାଠାରେ ଲୀନ ହୋନ୍ତି ।
ଯୋଗନିଦ୍ରା ପ୍ରକୃତିଙ୍କ ସଙ୍ଗେ ସଙ୍ଗେ ଯାଇ
ଶ୍ରୀକୃଷ୍ଣଙ୍କ ନେତ୍ରପଦ୍ମେ ଯାଆନ୍ତି ସମ୍ଭାଇ ।
ଏହିପରି ଈଶ୍ୱରଙ୍କ ଇଚ୍ଛାରେ ସମସ୍ତ
ଜୀବଗଣ ଯଥାସ୍ଥାନେ ହୋନ୍ତି ଅବସ୍ଥିତ ।
ପ୍ରକୃତିଙ୍କ ଦିନ ଯେତେକାଳ ପରିମାଣ
ସେତେଦିନ ଶ୍ରୀକୃଷ୍ଣଙ୍କ ନିଦ୍ରା ହୁଏ ଜାଣ ।
ମନୋହର ବୃନ୍ଦାବନ ମଧ୍ୟେ ଦେବଈଶ
ନିଦ୍ରାମାୟା ପ୍ରଭାବରେ ହୁଅନ୍ତି ଅବଶ ।
ଅମୂଲ୍ୟ ରତନ ଶଯ୍ୟା ତହିଁ ଉପାଧାନ
ଆବୃତ ହୋଇ ଚର୍ବିରେ ସୁଷ୍ଠୀନ ବସନ ।
ସୁଗନ୍ଧ ଚନ୍ଦନ ଦ୍ରବ୍ୟ ପୁଷ୍ପମାଳା ଥାଇ
ଦର୍ଶକଙ୍କ ନେତ୍ର ମନ ହରଣ କରଇ ।

ଏମନ୍ତ ଶଯ୍ୟାରେ ଯେବେ ଶୟନ କରନ୍ତେ ପୁନ
ପ୍ରଳୟ ଜଳରେ ପୂରିଥାଏ ତ୍ରିଭୁବନ ।
ଯେତେବେଳେ ପ୍ରଭୁଙ୍କର ନିଦ୍ରାଭଙ୍ଗ ହୁଏ
ପୁଣି ଆଉଥରେ ନବସୃଷ୍ଟି ଦେଖାଯାଏ ।
ସେହି ପରମାତ୍ମା ଦେବ ଜଗତ ଈଶ୍ୱର
ବନ୍ଦନ ସ୍ମରଣ ଧ୍ୟାନ ପୂଜା ତାହାଙ୍କର ।
ଅଶେଷ ପାତକ ନାଶ କରଇ ନିଶ୍ଚୟ
ଏମନ୍ତ ଅଟଇ ଧର୍ମ ଶାସ୍ତ୍ରର ନିର୍ଣ୍ଣୟ ।
ମୃତ୍ୟୁଞ୍ଜୟଙ୍କ ମୁଖରୁ ଯାହା ଶୁଣିଥିଲି
ସକଳ ତୁମ୍ଭ ଆଗରେ ବିସ୍ତାରି କହିଲି ।
ଇଚ୍ଛାଥିଲେ ଆଉ କେଉଁ କଥା ଶୁଣିବାକୁ
ପଚ୍ଚର କହିବା ବର୍ଷେ ବତାଇ ତୁମ୍ଭଙ୍କୁ ।
ସୁପଜ୍ଞ ବୋଇଲେ ସୃଷ୍ଟି ସଂହାର କରତା
ଅଟନ୍ତି କାଳାଗ୍ନି ରୁଦ୍ର ନାମ ସେ ଦେବତା ।
ବ୍ରହ୍ମାଙ୍କର ଅବସାନେ ତମୋଗୁଣ ଅଙ୍ଗେ
ଲୀନ ହୋନ୍ତି ମୃତ୍ୟୁଞ୍ଜୟ ଦେବଙ୍କର ଅଙ୍ଗେ ।
ମୃତ୍ୟୁଞ୍ଜୟ ଦେବ ପୁଣି ଶ୍ରୀକୃଷ୍ଣ ଶରୀରେ
ଲୀନ ହୁଅନ୍ତି ପ୍ରକୃତ ପ୍ରଳୟ କାଳରେ ।
ତାହା ହେଲେ ତୁମ୍ଭ ଗୁରୁ ମୃତ୍ୟୁଞ୍ଜୟ ବୋଲି
କରୁପେ କହିଲ ମୋ ଆଗରେ ତପଶାଳୀ ।
କେଉଁରୂପେ ଅବା ମୁନି ପ୍ରକୃତି ଈଶ୍ୱରୀ
ମହାବିରାଟ ବିଷ୍ଣୁଙ୍କୁ ଥିଲେ ଜାତକରି ।
ଏଥିରେ ସନ୍ଦେହ ଜାତ ହେଉଛି ମୋହର
ବିଶଦ ଭାବରେ କହ ଆହେ ଦ୍ୱିଜବର ।
ତା ଶୁଣି ସୁତପା ମୁନି ବୋଇଲେ ରାଜନ
କହୁଅଛୁ ଶୁଣ ତାହା ହୋଇ ସାବଧାନ ।
ବ୍ରହ୍ମାଦି ସକଳ ଲୋକ ସଂହରିବା ପରେ
ବିନଷ୍ଟ ହୁଅଇ ମୃତ୍ୟୁକନ୍ୟା କାଳାନ୍ତରେ ।
ଏହିପରି କେତେ ମୃତ୍ୟୁ କେତେ ବ୍ରହ୍ମାଙ୍କର
ବିନାଶ ହୋଇବା ପରେ ଦେବ ମହେଶ୍ୱର ।
ନିର୍ଗୁଣ ବିଷ୍ଣୁଙ୍କଠାରେ ଲୀନ ସେ ହୁଅନ୍ତି
ମୃତ୍ୟୁ ପଶି ନ ପାରଇ ତାହାଙ୍କର ଅନ୍ତ ।
ସତତରେ ଜୟ କରିଥାନ୍ତି ସେ ମୃତ୍ୟୁକୁ
ମୃତ୍ୟୁ ଧରଷଣା କରି ନ ପାରେ ତାହାଙ୍କୁ ।
ପ୍ରକୃତି ସେ ନାରାୟଣ ଦେବ ମୃତ୍ୟୁଞ୍ଜୟ
ଏମାନେ ଯାହା ପ୍ରଳୟ କାଳେ ହୋନ୍ତି ଲୟ ।

ସ୍ୱୟଂ ପରମେଶ୍ୱ ମାୟା ରୂପ ଯେ ଅଟଇ
ବାସ୍ତବ କଥା ତାହା କେବେହିଁ ନୁହଇ
ନିର୍ଗୁଣ ସ୍ୱରୂପ ଯେହୁ ବହୁତ କାଳରେ
ବିନାଶ ନୁହନ୍ତି ଯେହୁ ପ୍ରକୃତ ଭାବରେ ।
ନାରାୟଣ ଶିବ ପୁଣି ପ୍ରକୃତି ଦେବୀ ।
ନିଜ ମାୟା ଯୋଗରେ ଏ ସ୍ୱୟଂ ଅବସ୍ଥିତା ।
ଅଗ୍ନିରୁ ସ୍ଫୁଲିଙ୍ଗ ଜାତ ହୋଇଲା ପରିପ୍ସେ ।
ଜାତ ହୁଅନ୍ତି ନୂତନ ସର୍ଜନା ସମୟେ ।
ବ୍ରହ୍ମା ଯେତେ ଯେତେ ଲୋକ ସର୍ଜନା କରନ୍ତି
ସମସ୍ତେ ମୃତ୍ୟୁ ହସ୍ତରେ ଜୀବନ ତେଜନ୍ତି ।
କେବଳ ସେ ମୃତ୍ୟୁଞ୍ଜୟ ତାଙ୍କୁ କେତେବେଳେ
ମୃତ୍ୟୁଦେବତା ସ୍ପର୍ଶ ନ କରଇ ତିଳେ ।
ସେ ମୃତ୍ୟୁଞ୍ଜୟଙ୍କୁ ବ୍ରହ୍ମା ସରିକି ନାହାନ୍ତି
ସ୍ୱୟଂ ପ୍ରକାଶିତ ନିତ୍ୟରୂପ ସେ ଅଟନ୍ତି ।
କେତେ କେତେ ଥର ବ୍ରହ୍ମା ବିଷ୍ଣୁଙ୍କର ପାତ
ତାହାଙ୍କ ନୟନ କରି ଅଛଇ ସାକ୍ଷାତ
ଆଦ୍ୟସୃଷ୍ଟି ସମୟରେ ପ୍ରକୃତିଙ୍କ ସଙ୍ଗେ
ବିହାର କଲେ ଶ୍ରୀକୃଷ୍ଣ କାମରସ ବେଗେ ।
ମନୋହର ବୃନ୍ଦାବନ ମଧ୍ୟରେ ଶ୍ରୀହରି
ଭ୍ରମଣ କରି ବୁଲିଲେ ପ୍ରିୟାକର ଧରି ।
ସେ ସମୟେ ତାହାଙ୍କର ଗର୍ଭେ ବୀର୍ଯ୍ୟ ଦେଲେ
ରହିଲା ସେ ବାମଅଂଶ ଆବୋରିଣ ଭଲେ ।
ସେହିକ୍ଷଣି ଦେହଭାଗ ହୋଇଲେ ପ୍ରକୃତି
ବାମ ଅଂଶରୁ ରାଧିକା ହେଲେ ଉତପତ୍ତି ।
ବ୍ରହ୍ମାଙ୍କ ବୟସକାଳ ଗର୍ଭ ତାହାଙ୍କର
ରହିଲା ସେ ସମୟରେ ଆହେ ନୃପବର ।
ସେ ଅନ୍ତେ ଡିମ୍ବ ଗୋଟାଏ ଜନମ ହୋଇଲା
ତାକୁ ଦେଖି ରାଧାଙ୍କର କ୍ରୋଧ ପ୍ରବର୍ତ୍ତିଲା
ସେହିକ୍ଷଣି ଆପଣାର ପାଶରୁ ତାହାକୁ
ଦୂରକରି ଫିଙ୍ଗି ଦେଲେ ଗୋଲୋକ ତଳକୁ ।
ଅପତ୍ୟକୁ ଛାଡ଼ି ପୁଣି ଅନୁତାପ କଲେ
ଶ୍ରୀକୃଷ୍ଣ ବହୁତ ତାଙ୍କୁ ପ୍ରବୋଧି କହିଲେ ।
ସେ ଡିମ୍ବ ମଧ୍ୟରୁ ମହାବିରାଟ ପୁରୁଷ
ଜାତ ହୋଇଲେ ଯେ ଜନ ଭୁବନର ଈଶ ।
ଏରୂପେ ଦ୍ୱିଜଙ୍କଠାରୁ ଶୁଣିଣ ନୃପତି
ଆନନ୍ଦସାଗରେ ମଗ୍ନ ହେଲେ ସେ ସୁମତି ।

ଯେ ଅନ୍ତରେ ଦ୍ୱିଜଙ୍କର ମୁଖକୁ ଅନାଇ
ବୋଇଲେ ହେ ତପିବର ବ୍ରାହ୍ମଣ ଗୋସାଇଁ ।
ଆଜ ମୋହର ଜନମ ସଫଳ ହୋଇଲା
ପୂର୍ବ ତପସ୍ୟାର ଫଳ ଆଜ ଦେଖାଗଲା ।
ଆପଣ କ୍ରୋଧରେ ଯେଉଁ ଶାପଦେଲେ ମୋତେ
ଉତ୍ତମ ବର ବୋଲି ମୁଁ ଭାବୁଅଛି ଚିତ୍ତେ ।
ମଙ୍ଗଳକାରକ ଯେଉଁ ଶ୍ରୀହରି ଭକତି
ଦୁର୍ଲ୍ଲଭ ବୋଲିଣ ମୁହିଁ ଭାବୁଅଛି ମତି ।
ଯେରୂପେ କୃଷ୍ଣଙ୍କଠାରେ ଭକ୍ତି ହେବ ମୋର
ତହିଁର ଉପାୟ ମୋତେ କହ ମୁନିବର ।
ତୀର୍ଥଜଳେ ସ୍ନାନ ଅବା ଶିଳା ଉପାସନା
ଛୁଟାଇ ପାରନ୍ତି ନାହିଁ ସଂସାର ଯାତନା ।
କେବଳ ବୈଷ୍ଣବଙ୍କର ଦରଶନ ମାତ୍ରେ
ଦୁର୍ଲ୍ଲଭ ପବିତ୍ର ଭାବ ବିରାଜଇ ଗାତ୍ରେ ।
ଅନ୍ୟଦେବଙ୍କୁ ସେବିଲେ ବହୁତ କାଳରେ
ଯେବଣ ମୁକତି ମିଳିପାରେ ବା ନ ପାରେ ।
ଶ୍ରୀକୃଷ୍ଣ ଭକତି ତାହା ଦିଏ ଅଳ୍ପଦିନେ
ଏଥିରେ ସଂଶୟ ନାହିଁ ବିଚାରୁଛି ମନେ ।
ସକଳ ଜାତିରେ ବିପ୍ରଜାତି ଅଟେ ଶ୍ରେଷ୍ଠ
ସ୍ୱଧର୍ମ ପାଳକ ଦ୍ୱିଜ ତହିଁରେ ଉତ୍କୃଷ୍ଟ ।
ତହିଁରେ ଯେ କୃଷ୍ଣଭକ୍ତ ମନ୍ତ୍ର ଉପାସକ
ସମସ୍ତଙ୍କଠାରୁ ସେହି ଅଟଇ ଅଧିକ ।
ଆପଣ ବ୍ରାହ୍ମଣ ପୁଣି ଶ୍ରୀକୃଷ୍ଣ ଭକତ
ଆପଣଙ୍କ ସମାନେ କେ ନାହିଁ ଜ୍ଞାନବନ୍ତ ।
ବିଶେଷରେ ମୃତ୍ୟୁଞ୍ଜୟ ଶିବଙ୍କର ଶିଷ୍ୟ
ଏଥିରେ କହିବାପାଇଁ ଅଛି ଆଉ କିସ ।
ଆପଣଙ୍କୁ ପାଇ ଆଉ ଅନ୍ୟ କାହାଠାକୁ
ଯିବି ପୁଣି ଆଜି ଥରେ ଶରଣ ନେବାକୁ ।
ଦେଖ ଆହେ ଦ୍ୱିଜବର ତୁମ୍ଭ ଶାପଯୋଗେ
କୁଷ୍ଠରୋଗ ପ୍ରବେଶିଲା ଆସି ମୋର ଅଙ୍ଗେ ।
ତପସ୍ୟା କରିବାପାଇଁ ମୋର ଅଧିକାର
ଏହି ଅବସ୍ଥାରେ ହୋଇ ନ ପାରେ ବିସ୍ତର ।
ତେବେ କେଉଁ ପ୍ରକାରେ ମୁଁ ପାଇବି ମୁକତି
ସେ କଥା ମୋତେ କହିବା ହେଉ ମହାମତି ।
ସୁତପା ବୋଇଲେ ବିଷ୍ଣୁମାୟା ସନାତନୀ
ଅଟଇ ସେ ଶ୍ରୀହରିଙ୍କ ଭକତି ଦାୟିନୀ ।

ଯାହାଠାରେ ଅନୁଗ୍ରହ ହୁଅଇ ତାହାର
ତାହାପକ୍ଷେ ହରିଭକ୍ତି କୋଟିକେ ମାତର ।
ଯାହାକୁ କପଟେ ମୋହ କରଇଟି ସେହି
ବିପତ୍ତେ ପକାଇ ତାକୁ ବଞ୍ଚିତ କରଇ ।
କୃଷ୍ଣ ପ୍ରାଣପ୍ରିୟା ସେହ ଶକତ ରୁପିଣୀ
ଅଟନ୍ତି ଯେ ରାଧା ତାଙ୍କୁ ଭଜ ନରମଣି ।
ତାହାଙ୍କର ଦୟା ହେଲେ ସମ୍ପଦ ପାଇବ
ଶେଷ ଅନ୍ତେ ଗୋଲୋକରେ ଯାଇଣ ରହିବ ।
ଶ୍ରୀକୃଷ୍ଣ ପ୍ରଥମେ ତାଙ୍କୁ ଆରାଧନା କଲେ
ସେ ସକାଶୁ ତାହାଙ୍କର ପତ୍ନୀ ସେ ହୋଇଲେ ।
ବିଷ୍ଣୁଙ୍କୁ ବହୁତ କାଳ ନ କଲେ ସେବନ
ମୁକ୍ତି ମିଳ ନ ପାରଇ ଜାଣ ହେ ରାଜନ ।
ଅଳପ ସମୟ ମାତ୍ର ରାଧିକା ଦେବୀଙ୍କୁ
ସେବା କରି ଭକ୍ତଗଣ ଲଭନ୍ତି ମୁକ୍ତିକୁ ।
ମହା ବିଷ୍ଣୁଙ୍କର ସେହି ପ୍ରସନ୍ନକାରିଣୀ
ଆବର ସକଳ ଲୋକ ସମ୍ପଦରୂପିଣୀ ।
ତାହାଙ୍କର ସେବା ତୁମ୍ଭେ କରିବଟି ଯେବେ
ମୁକ୍ତି ପାଇବ ଏଥିରେ ମିଥ୍ୟା ନାହିଁ ଲବେ ।
ବ୍ରାହ୍ମଣଙ୍କ ପାଦୋଦକ ସେବାକରି ନିତ
ସହସ୍ରେ ବରଷ ଯେବେ କରିବ ଭକତ ।
ଦେହରୁ ସକଳ ରୋଗ ହୋଇଯିବ ଦୂର
କନ୍ଦର୍ପ ସମାନ ରୂପ ହୋଇବ ଆବର ।
ଯେତେକାଳ ଯାଏ ବିପ୍ର ପାଦୋଦକ ସେନ
ପବିତ୍ର ହୋଇଣ ରହିଥାଏ ଏ ମେଦିନୀ ।
ଯେତେଦିନ ଯାଏ ତୋର ବନ୍ଧୁ ପିତୃଗଣ
ପୁଷ୍କର ପାହରେ ଜଳ କରନ୍ତି ସେବନ ।
ପୃଥିବୀରେ ଯେତେ ପୁଣ୍ୟତୀର୍ଥ ରହିଛନ୍ତି
ସମୁଦ୍ର ମଧ୍ୟରେ ଅଛି ତାହାଙ୍କର ସ୍ଥିତି ।
ହୁଅଇ ସମୁଦ୍ରେ ସ୍ନାନ କଲେ ଯେଉଁ ଫଳ
ସେ ଫଳ ହୁଅଇ ବିପ୍ର ପାଦଧୌତ ଜଳ ।
ବ୍ରାହ୍ମଣ ସ୍ୱରୂପ ବନ୍ଧୁ ଦେବ ନାରାୟଣ
କପଟରେ ମହୀତଳେ କରନ୍ତି ଭ୍ରମଣ ।
ବିପ୍ର ଯେଉଁ ଦ୍ରବ୍ୟ ନେଇ ଦିଏ ଦେବତାଙ୍କୁ
ଆନନ୍ଦରେ ଦେବଗଣ ଭୁଞ୍ଜନ୍ତି ତାହାକୁ ।
ଏହିରୂପେ କହିକରି ସୁତପା ବ୍ରାହ୍ମଣ
ରାଜାଙ୍କଠାରୁ ଆତିଥ୍ୟ କରିଣ ଗ୍ରହଣ ।

ବୋଇଲେ ଯାଉଛି ମୁହିଁ ନିଜ ଆଶ୍ରମକୁ
ବର୍ଷକ ଅନ୍ତରେ ପୁଣି ଆସିବି ଏଠାକୁ ।
ଏମନ୍ତ ବୋଲି ରାଜାଙ୍କୁ ମେଲଣି ମାଗିଲେ
ଆପଣାର ଆଶ୍ରମକୁ ତହୁଁ ଚଳିଗଲେ ।
ସେହିଦିନଠାରୁ ନିତ ସୁଯଜ୍ଞ ରାଜନ
କଲେ ବ୍ରାହ୍ମଣଙ୍କ ପାଦ ଉଦକ ସେବନ ।
ବରଷକଠାରେ କୁଷ୍ଠରୋଗ ତାହାଙ୍କର
ସ୍ୱତଃ ସ୍ୱତଃ ସେହିକ୍ଷଣି ହୋଇଗଲା ଦୂର ।
ଏମନ୍ତ ସମୟେ ଆସି ସୁତପା ବ୍ରାହ୍ମଣ
ରାଜାଙ୍କ ପାଶରେ ପରବେଶ ହେଲେ ପୁଣ ।
ରାଧା ଦେବୀଙ୍କ କବଚ ସ୍ତୋତ୍ର ପୂଜାଧ୍ୟାନ
ସେକାଳେ ରାଜାଙ୍କୁ ସବୁ କଲେ ସମର୍ପଣ ।
ବୋଇଲେ ହେ ମହାରାଜ ଗୃହତ୍ୟାଗ କରି
ତପ କରିବାକୁ ଯାଅ ବନକୁ ବାହାରି ।
ଏହିରୂପେ ଉପଦେଶ ଦେଇ ଦ୍ୱିଜବର
ତପସ୍ୟା କରିବାପାଇଁ ଗଲେ ସେ ସତ୍ୱର ।
ରାଜା ମଧ୍ୟ ସେହିକ୍ଷଣି ପୁତ୍ରେ ରାଜ୍ୟଦେଇ
ବାହାର ହୋଇଲେ ପୁଷ୍କ ବନେ ଯିବାପାଇଁ ।
ପୁରଜନମାନେ ତାହା ଦେଖି ଶୋକ କଲେ
ପ୍ରବୋଧନା କରି ତାଙ୍କୁ ରାଜା ଚଳିଗଲେ ।
ପୁଷ୍କର ତୀର୍ଥରେ ଯାଇ ହୋଇଲେ ପ୍ରବେଶ
ଦୁଷ୍କର ତପରେ କଳାଇଲେ ସେ ମାନସ ।
ଦିବ୍ୟ ଶତେ ବର୍ଷ ଗତ ହେଲା ଏହିପରି
ପ୍ରସନ୍ନ ହୋଇଲେ ତହୁଁ ଜଗତ ଈଶ୍ୱରୀ ।
ଗରୁଡ଼ ବାହନେ ବସି ଶୂନ୍ୟେ ଦେଖାଦେଲେ
ତାଙ୍କୁ ଚାହିଁ ନୃପତି ସେ ଦେହତ୍ୟାଗ କଲେ ।
ସକଳ ପାତକ ଦୂର ହେଲା ତାହାଙ୍କର
ଦିବ୍ୟ ରଥଯାନ ଆସି ମିଳିଲା ପାଶର ।
ଶ୍ରୀକୃଷ୍ଣଙ୍କ ପାରିଷଦଗଣ ତହିଁ ଥିଲେ
ରାଜାଙ୍କୁ ନେଇ ତାଙ୍କର ପାଶେ ବସାଇଲେ ।
ଦେବୀଙ୍କ ଆଜ୍ଞା ପ୍ରମାଣେ ଗୋଲୋକ ଭୁବନେ
ଯାନ ସେନ ପରବେଶ ହେଲେ ତତକ୍ଷଣେ ।
ସୁଯଜ୍ଞ ନୃପତି ତହିଁ ଉପସ୍ଥିତ ହୋଇ
ଦେଖିଲେ ସେ ପୁର ଦିବ୍ୟ ଶୋଭା ପ୍ରକାଶଇ ।
ବିରଜା ନାମରେ ନଦୀ ବହୁଅଛି ପାଶେ
ଶତଶୃଙ୍ଗ ଗିରିବର ଶୋଭା ଶରକାଶେ ।

ରମ୍ୟ ବୃନ୍ଦାବନ ରାସମଣ୍ଡଳ ମଣ୍ଡିତ
ନାନାବିଧ ବୃକ୍ଷଲତା ଗୁଳ୍ମରେ ଶୋଭିତ ।
ସ୍ଥାନେ ସ୍ଥାନେ ଥାଇ ପାରିଜାତ ପୁଷ୍ପବନ
ଦେଖିବାମାତ୍ରକେ ହରି ନେଉଛନ୍ତି ମନ ।
ବତ୍ସା ସହିତରେ କେତେ କାମଧେନୁ ଚରି
ବୁଲୁଛନ୍ତି ଚାରିଆଡ଼େ ହୃଷ୍ଟପୁଷ୍ଟ ହୋଇ ।
ଆକାଶ ସମାନ ହୋଇଅଛି ସେ ବିସ୍ତୃତ
ବର୍ତ୍ତୁଳ ଅଟଇ ପୂର୍ଣ୍ଣ ଚନ୍ଦ୍ର-ବିମ୍ବବତ ।
ବୈକୁଣ୍ଠରୁ ପାଞ୍ଚାଶତ କୋଟି ଯୋଜନରେ
ଅନ୍ତର ହୋଇଣ ରହିଅଛି ଆକାଶରେ ।
ନାରାୟଣ ରୁଦ୍ର ମହାବିରାଟ ପୁରୁଷ
ମୁଁ ପୁଣି ଧର୍ମଦେବତା ନାଗଗଣ ଈଶ ।
ବିଷ୍ଣୁମାୟା ମହାଲକ୍ଷ୍ମୀ ଗଙ୍ଗା ସରସ୍ୱତୀ
ତୁମ୍ଭ ସହିତରେ ଦେବୀ ସାବିତ୍ରୀ ତୁଳସୀ ।
ସନକ କୁମାର ସ୍କନ୍ଦ ନରନାରାୟଣ
ଗଣେଶ କାର୍ତ୍ତିକ ପଞ୍ଚ ବ୍ରହ୍ମପୁତ୍ର ଗଣ ।
ପବନ ବରୁଣ ଚନ୍ଦ୍ର ସୂର୍ଯ୍ୟ ହୁତାଶନ
କୃଷ୍ଣମନ୍ତ୍ର ଉପାସକ ଭାରତୀୟ ଜନ ।
ଏମାନେ ସମର୍ଥ ମାତ୍ର ଗୋଲୋକ ଦର୍ଶନେ
ଦେଖି ନ ପାରନ୍ତି ଅନ୍ୟ ସାଧାରଣ ଜନେ ।
ସେହି ପୁରେ ରତ୍ନମୟ ସିଂହାସନ ପରେ
ବସେ ବସିଥିଲେ ପ୍ରଭୁ ପାର୍ଷଦ ମଧ୍ୟରେ ।
ରତ୍ନ ଭୂଷଣ ପୀତ ବସନ ରାଜିତ
ସର୍ବ ଅବୟବେ ଗନ୍ଧ ଚନ୍ଦନ ଲେପିତ ।
ନୂତନ ଜଳଦ ପ୍ରାୟେ ଶ୍ୟାମଳ ବରନ
ଶରତ ପଙ୍କଜପତ୍ର ସମାନ ଲୋଚନ ।
ଦ୍ୱିଭୁଜ ମୁରଲୀ ହସ୍ତ ମନୋହର ଦୃଶ୍ୟ
ମୁଖ ପଦ୍ମେ ସୁଶୋଭିତ ମନ୍ଦ ମନ୍ଦ ହାସ ।
ପରଂବ୍ରହ୍ମ ନିର୍ଗୁଣ ସେ ପ୍ରକୃତିରୁ ପର
ଧ୍ୟାନ ଆରାଧନା ଯୋଗେ ନୁହନ୍ତି ଗୋଚର ।
ଚାମର ଘେନିଣ ହସ୍ତେ କେତେକ ଗୋପାଳ
ବୀଜନ କରନ୍ତି ତୋଷେ ହୋଇ ଉତଫୁଲ୍ଲ ।
ଯୌବନ ବୟସୀ ଗୋପୀଗଣ ପାଶେ ଥାଇ
ଦେଉଥାନ୍ତି ଥରେ ଥରେ କଟାକ୍ଷରେ ଚାହିଁ ।
ଏରୂପେ ରାସମଣ୍ଡଳ ମଧ୍ୟରେ କୃଷ୍ଣଙ୍କୁ
ଦେଖିଣ ନୃପତି ତୋଷ କଲେ ମାନସକୁ ।

ରତ୍ନପାଶେ ଚାରିବେଦ ମୂର୍ତ୍ତିମନ୍ତ ହୋଇ
ସ୍ତୁତି କରୁଛନ୍ତି ଶବ୍ଦର ବେଦନର ଦେଇ ।
ଗାୟକ ଗନ୍ଧର୍ବମାନେ ବୀଣାଯନ୍ତ୍ର ଧରି
ଗାନ କରୁଛନ୍ତି ସ୍ୱର ସୁମଧୁର କରି ।
ସେ ରାଗ ରାଗିଣୀ ପ୍ରଭୁ ମନକର୍ଣ୍ଣ ଦେଇ
ଶ୍ରବଣ କରୁଅଛନ୍ତି ପ୍ରଭୁ ରାଧାସାଇଁ ।
ତୁଳସୀଦଳ ଘେନିଣ ଭକତି ଭାବରେ
ପ୍ରକୃତ୍ୟାଦି ଦେବଗଣ ପୂଜନ୍ତି ପାଦରେ ।
ଆଦରେ ଧୂପଦୀପ ଯେ ତାମ୍ବୁଳ କର୍ପୂର
ସମର୍ପଣ କରନ୍ତି ସେ ହୋଇ ତତପର ।
ପ୍ରସନ୍ନ ବଦନ ପ୍ରଭୁ ଜଗତ କାରଣ
ସର୍ବ ଅନ୍ତର୍ଯ୍ୟାମୀ ସର୍ବ ବିଘ୍ନ ନିବାରଣ ।
ସର୍ବାଧାର ବ୍ରହ୍ମଜ୍ୟୋତି ମୂରତି ନିର୍ମଳ
ସକଳ ସମ୍ପଦଦାତା ଦେବ ଆଦିମୂଳ ।
ସର୍ବ ମଙ୍ଗଳ ସ୍ୱରୂପ ଶୁଭ ନିକେତନ
ଭକତବତ୍ସଳ ପ୍ରଭୁ ନିତ୍ୟ ସନାତନ ।
ଏମନ୍ତ ରୂପକୁ ଦେଖି ସୁଯଜ୍ଞ ନୃପତି
ରଥରୁ ଅବରୋହଣ କଲେ ଯେ ଝଟତି ।
ପୁଲକିତ ଅଙ୍ଗ ପାଦେ ଦଣ୍ଡବତ ହେଲେ
କରଯୋଡ଼ି ଉଭାହୋଇ ବହୁସ୍ତୁତି କଲେ ।
ପ୍ରସନ୍ନ ହୋଇଣ ପ୍ରଭୁ ରାଧିକାବଲ୍ଲଭ
ତାହାଙ୍କୁ ପ୍ରଦାନ କଲେ ନିଜ ଦାସ୍ୟ ଭାବ ।
ସେକାଳେ ପୁଣି ରାଧିକା ଯାନରୁ ଓହ୍ଲାଇ
ପ୍ରବେଶ ହେଲେ ପତିଙ୍କ ସମୀପରେ ଯାଇ ।
ଶ୍ରୀକୃଷ୍ଣ ତାହାଙ୍କୁ ଦେଖି ହରଷିତ ହେଲେ
ପାଶେ ବସାଇ ବହୁତ ଆଳାପ ସେ କଲେ ।
ସେହି ରାଧାଙ୍କ ମହିମା ଅଟଇ ଅପାର
କଳ୍ପ ବୃକ୍ଷ ଅଟନ୍ତି ସେ ଭକ୍ତଜନଙ୍କର ।
ପ୍ରଥମେ ରାଧିକା ନାମ ଉଚ୍ଚାରଣ କରି
ଯେ ଅନ୍ତେ ଶ୍ରୀକୃଷ୍ଣ ନାମ ପଢିବ ଉଚ୍ଚାରି ।
ବିପରୀତ କଲେ ମହାଦୋଷ ଜାତ ହୁଏ
କୁପିତ ହୁଅନ୍ତି ରାଧାଦେବୀ ଅତିଶୟେ ।
ନ ଜାଣି ଯେ କରେ ତାର ହୁଏ ସର୍ବନାଶ
ଅନ୍ତଃକାଳେ କାଳସୂତ୍ରେ କରଇ ସେ ବାସ ।
ରାଧିକା ଆଖ୍ୟାନ କଥା ଶୁଣିଲ ତ ବସି
ଆଉ କିସ ଇଚ୍ଛାଥିଲେ ପୁଚ୍ଛ ହୋଇ ତୋଷି ।

ଏରୂପେ କହିଣ ଶିବ ପାର୍ବତୀ ଆଗରେ
ରହିଲେ ମଉନ ଗବ ନଷ୍ଟ ମେ ଜାଣନ୍ତେ ।
ବୋଲେ ଦାସ ଧ୍ୟେୟବାସୀ ଆହେ ଭଗବାନ
ତୁମ୍ଭ ପାଦପଦ୍ମେ ସଦା ରହୁ ମୋର ମନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ବ୍ରାହ୍ମଣ କର୍ତ୍ତୃକ ରାଜାଙ୍କ ନିରୂପଣ
କର୍ତ୍ତନେ ନାମ ସପ୍ତପଞ୍ଚାଶତ୍ ଅଧ୍ୟାୟଃ ।

---

## ଅ ଷ୍ଟ ପ ଞ୍ଚା ଶ ତ୍ ଅ ଧ୍ୟା ୟ

## ରାଧାଙ୍କର ପୂଜାବିଧି ନିର୍ଣ୍ଣୟ ବର୍ଣ୍ଣନା

ପାର୍ବତୀ ବୋଇଲେ ତୁମ୍ଭ ଇଷ୍ଟଦେବ ହରି
ମନ୍ତ୍ରମାନ ତାହାଙ୍କର ଯେ ମଙ୍ଗଳକାରୀ ।
ଯେନ୍ତ ମନ୍ତ୍ର ଥାଉ ଥାଉ କମ୍ଭାଇ ରାଜନ
କଲେ ରାଧାରାଣୀଙ୍କର ନାମକୁ ଭଜନ ।
କିରୂପେ ବିଧାନ ଅବା ତାହାର ଅଟଇ
ଧ୍ୟାନ ସ୍ତୋତ୍ର ଆଦି ବାଟଇ କୃପନ୍ତୁ ବୁଝାଇ ।
ବ୍ରାହ୍ମଣମାନେ ରାଜାଙ୍କୁ କପର କହିଲେ
ବିସ୍ତାରିଣ ସବୁ କଥା କହିଦ୍ୟନ୍ତୁ ଭଲେ ।
ଈଶ୍ୱର ବୋଇଲେ ଯେତେବେଳେ ନରପତି
ବ୍ରାହ୍ମଣଙ୍କୁ ବୋଇଲେ ହେ ଦ୍ୱିଜ ମହାମତି ।
କାହାକୁ ମୁଁ ଆରାଧନା କଲେ ଅଳ୍ପଦିନେ
ଉପସ୍ଥିତ ହେବି ଯାଇ ଗୋଲୋକ ଭୁବନେ ।
ସେ କଥା କହିଣ ମୋତେ ଅନୁଗ୍ରହ କର
ତୁମ୍ଭ ପ୍ରସାଦରେ କାର୍ଯ୍ୟସିଦ୍ଧି ହେଉ ମୋର ।
ରାଜାଙ୍କ ବଚନ ଶୁଣି ଦ୍ୱିଜକୁଳଈଶ
ବୋଇଲେ ରାଧାଦେବୀଙ୍କୁ ଭଜ ହେ ନରେଶ ।
ଶ୍ରୀକୃଷ୍ଣଙ୍କ ପ୍ରାଣତୁଲ୍ୟ ଅଟନ୍ତି ସେ ଦେବୀ
ମୁକତି ପାଇବ ତୁମ୍ଭେ ତାଙ୍କ ପାଦ ସେବି ।
ଏମନ୍ତ ବୋଲି ତାହାଙ୍କୁ ରାଧାଙ୍କର ମନ୍ତ୍ର
ଦେଲେ ବିଧି ଅନୁସାରେ ଦ୍ୱିଜ ହୋଇ ପ୍ରୀତ ।
ଓଁକାର ଉପରେ ରାଧାନାମ ଚତୁର୍ଥ୍ୟନ୍ତ
ବସାଇବ କରି ତାକୁ ବହ୍ନିଜାୟା ଅନ୍ତ ।
ପ୍ରାଣାୟାମ ଭୂତଶୁଦ୍ଧି ମନ୍ତ୍ର ନ୍ୟାସକରି
କର ଅଙ୍ଗନ୍ୟାସ ପରେ ସ୍ତୋତ୍ରକୁ ଉଚ୍ଚାରି ।
କବଚ ସଙ୍ଗତେ ସବୁ ଶିଖାଇଲେ ବସି
ଗ୍ରହଣ କଲେ ରାଜନ ହୋଇ ମହାତୋଷୀ ।

ସେ ଅନ୍ତରେ ବିଧିମତେ ଆରାଧନା କଲେ
କବଚ ସ୍ତୋତ୍ର ସଙ୍ଗତେ ଭକ୍ତିରେ ପଢ଼ିଲେ ।
ଯେବଣ ଧ୍ୟାନରେ ପୂର୍ବେ ଦେବ ନରହରି
ପୂଜା କରିଥିଲେ ରାଧା ଦେବୀଙ୍କୁ ସୁମରି ।
ସେହି ଧ୍ୟାନ ପାଠକରି ସୁପକ୍ଷ ନୃପତି
ପ୍ରାର୍ଥନା କଲେ ସେକାଳେ ପ୍ରକାଶି ପୀରତି ।
ବୋଇଲେ ନମସ୍ତେ ଦେବୀ କୃଷ୍ଣ ପ୍ରାଣପ୍ରିୟା
ଭକ୍ତ ଅନୁଗ୍ରହକାରୀ ପ୍ରଭୁ ଯୋଗମାୟା ।
ଶରତପଙ୍କଜନେତ୍ରୀ ଚନ୍ଦ୍ରମା ବଦନୀ
ବହ୍ନିଶୁଦ୍ଧା ଶୁକ୍ଳ ବସ୍ତ୍ର ରତ୍ନ ବିଭୂଷଣୀ ।
ସୁଶ୍ରୋଣୀ କଠିନ ପୀନପୟୋଧରବକ୍ଷ
ପୂର୍ଣ୍ଣିମା ରଜନୀନାଥ ପ୍ରଭାତୁଲ୍ୟ କାନ୍ତି ।
ରୂପ ଅଧିଷ୍ଠାତ୍ରୀ ଗଜ ମନ୍ଥରଗମନା
ଦଶଇ କୃଷ୍ଣର ତେଜ ସୂର୍ଯ୍ୟ ପ୍ରଭା ଜିଣି ।
କୃଷ୍ଣପ୍ରାଣ ଅଧିଷ୍ଠାତ୍ରୀ କୃଷ୍ଣଭକ୍ତିପ୍ରଦା
ମହାବିଷ୍ଣୁ ବିଧାତ୍ରୀ ମା ତୈଲୋକ୍ୟ ବରଦା ।
ବୈଷ୍ଣବୀ ଶ୍ରୀଯୋଗେଶ୍ୱରୀ କୃଷ୍ଣ ପ୍ରେମମୟୀ
ରାସମଣ୍ଡଳ ଈଶ୍ୱରୀ ଦେବୀ ମହାମାୟୀ ।
ରାସେଶ୍ୱରଙ୍କ ସହିତେ ତୁମ୍ଭଙ୍କୁ ଭଜନ
କରୁଅଛି ହୁଅ ଦେବୀ ମୋଠାରେ ପ୍ରସନ୍ନ ।
ଏହିରୂପେ ଧ୍ୟାନକରି ଶିରେ ପୁଷ୍ପ ଦେଇ
ପୁଣି ପ୍ରାର୍ଥନା କଲେ ସେ କୃତାଞ୍ଜଳି ହୋଇ ।
ସେ ଅନ୍ତେ ଦେଲେ ଷୋଡ଼ଶ ଉପଚାର ଆଣି
ବୋଇଲେ ନମସ୍ତେ ଦେବୀ ରାଧା ଠାକୁରାଣୀ ।
ରତ୍ନସାର ବିନିର୍ମିତ ରମ୍ୟ ସିଂହାସନ
ବିଶ୍ୱକର୍ମାଙ୍କର ଯାହା ହୋଇଛି ନିର୍ମାଣ ।

ପୂଜା ଅର୍ଥେ ସମର୍ପଣ କରୁଅଛୁ ମୁହିଁ
ଗ୍ରହଣ କର ତା ଦୟାକର ମହାମାୟି ।
ଅମୂଲ୍ୟ ରତନମୟ ସୂକ୍ଷ୍ମ ସୁନିର୍ମଳ
ଯେନ ଦେବୀ ବହ୍ନିଶୁଦ୍ଧ ବସନ ଯୁଗଳ ।
ରତ୍ନପାତ୍ର ଅବସ୍ଥିତ ନାନା ଅର୍ଘ ଜାତ
ପାଦ୍ୟ ଉଦକ ଗ୍ରହଣ କର ଆଦ୍ୟମାତ ।
ଦକ୍ଷିଣ ଆବର୍ତ୍ତ ଶଙ୍ଖ ମଧ୍ୟସ୍ଥିତ ଜଳ
ଚନ୍ଦନ କୁସୁମମୟ ଅତ୍ୟନ୍ତ ନିର୍ମଳ ।
ଏମନ୍ତ ଅର୍ଘ୍ୟଉଦକ ଦେଉଅଛୁ ମୁହିଁ
ଗ୍ରହଣ କର ସାଧକେ ପ୍ରୀତମନ୍ତ ହୋଇ ।
ପାର୍ଥିବ ଦ୍ରବ୍ୟ ପଲ୍ଲବ ଦ୍ରବ୍ୟ ସୁବାସିତ
ଚନ୍ଦନ ଗ୍ରହଣ କର ତୋଷ ହୁଅ ମାତ ।
ଶ୍ରୀଖଣ୍ଡ ଚନ୍ଦନମୟ କସ୍ତୁରୀ କୁଙ୍କୁମ
ମିଶ୍ରିତ ହୋଇ ସୁବାସ ବଢ଼ରେ ଉତ୍ତମ ।
ଏମନ୍ତ ଅନୁଲେପନ ଯେନ ତୋଷରେ
ପ୍ରସନ୍ନ ହୋଇଣ ଦୟାକର ମୋହଠାରେ ।
ଗୁଗ୍ଗୁଳ ଶାଳ ନିର୍ଯ୍ୟାସ ପୂର୍ଣ୍ଣ ଗନ୍ଧମୟ
ଧୂପ ଯେନ ମହାମାୟୀ ହୋଇଣ ସଦୟ ।
ଅନ୍ଧକାର ବିନାଶକ ତେଜ ସୁନିର୍ମଳ
ବିରାଜଇ ଯେହ୍ନେ ଦୀପ୍ତ ଆଦିତ୍ୟମଣ୍ଡଳ ।
ଏମନ୍ତ ପ୍ରଦୀପ ଦେବୀ ଘେନ ମୋହଠାରୁ
ତୁମ୍ଭ କୃପାବଳେ ମୋର ମନୋରଥ ପୂରୁ ।
ସୁବାସିତ ପାରିଜାତ ଆଦି ପୁଷ୍ପଗଣ
ତୁମ୍ଭ ପାଦତଳେ କରୁଅଛୁ ସମର୍ପଣ ।
ସୁଗନ୍ଧ ତଇଳ ଦ୍ରବ୍ୟସ୍ନାନୀୟ ଚୂର୍ଣ୍ଣରେ
ମିଶ୍ରିତ କରିଣ ଦେଉଅଛୁ ଭକ୍ତିଭରେ ।
ଆବର ଅମୂଲ୍ୟ ରତ୍ନମୟ ଆଭରଣ
ଆନନ୍ଦରେ ମହାମାୟେ କରନ୍ତୁ ଗ୍ରହଣ ।
ଲଡ଼ୁ ପିଷ୍ଟକ ଆଦି ଭକ୍ଷ୍ୟଦ୍ରବ୍ୟମାନ
ନାନାପକ୍ୱ ଫଳସହ କରୁଛୁ ଅର୍ପଣ ।
ନୈବେଦ୍ୟ ସ୍ୱରୂପେ ଏହା ଘେନ ରାସେଶ୍ୱରୀ
ସନ୍ତୋଷେ ଖଣ୍ଡନ କର ବିପଦ ମୋହର ।
କର୍ପୂରାଦି ସୁବାସିତ ତାମ୍ବୁଳକୁ ମୁହିଁ
ଦେଉଅଛୁ ଆନନ୍ଦରେ ଘେନ ମହାମାୟି ।
ସୁବର୍ଣ୍ଣ ନିର୍ମିତ ଦ୍ରବ୍ୟ ବସନ ଭୂଷିତ
ପର୍ଯ୍ୟଙ୍କ ଗ୍ରହଣ କର ହୋଇ ତୋଷଚିତ୍ତ ।

ଏହିରୂପେ ଉପଚାରେ ସୁପଞ୍ଚ ସରଜନ
ପୁଣି କଲେ ତିନିଗୋଟି ପୁଷ୍ପାଞ୍ଜଳି ଦାନ ।
ସେ ଅନ୍ତରେ ଅଷ୍ଟଦଳେ ଅଷ୍ଟନାୟିକାଙ୍କୁ
ପୂଜା କଲେ ଉଚ୍ଚାରଣ କରିଣ ମନ୍ତ୍ରକୁ ।
ସମସ୍ତଙ୍କୁ ପଞ୍ଚଧା ଉପଚାର ଦେଲେ
ବିସ୍ତାରି କହୁଛୁ ତାହା ଶୁଣ ଏବେ ଭଲେ ।
ପୂର୍ବେ ମାଳାବତୀ ବହ୍ନି କୋଣରେ ମାଧବୀ
ଦକ୍ଷିଣ ଦିଗରେ ପୁଣି ରତ୍ନମାଳା ଦେବୀ ।
ନୈଋତ କୋଣରେ ସୁରୁହାସିନୀ ସୁଶୀଳା
ପଶ୍ଚିମ ଦିଗରେ ଶଶିମୁଖୀ ଶଶିକଳା ।
ବାୟୁକୋଣେ ପାରିଜାତା କୁନ୍ଦସୁରୁଦନ୍ତୀ
ଉତ୍ତର ଦିଗରେ ପଦ୍ମନେତ୍ରୀ ପଦ୍ମାବତୀ ।
ଈଶାନ୍ୟ କୋଣେ ସୁନ୍ଦରୀ ରମଣୀଙ୍କ ବର
ଏମାନଙ୍କୁ ପୂଜା କରି ପୁଣି ନୃପବର ।
ଯୂଥିକା ମାଳତୀ ପଦ୍ମମାଳମାନ ଦେଲେ
ନାନାସ୍ତୁତି ସ୍ତୋତ୍ର ପଢ଼ି ତୋଷ କରାଇଲେ ।
ସେ ଅନ୍ତେ ରାଧାଙ୍କ ସ୍ତୋତ୍ର ପଢ଼ିଲେ ଯେପରି
କହୁଅଛୁ ଶୁଣ ଦେବୀ ପବିତ୍ରକୁମାରୀ ।
ବୋଇଲେ ଗୋ ଦେବୀ ତୁମ୍ଭେ ହିଁ ଜଗତମାତା
ପରମାତ୍ମା ଶ୍ରୀକୃଷ୍ଣଙ୍କ ଅଟ ପ୍ରିୟକାନ୍ତା ।
କୃଷ୍ଣପ୍ରେମମୟୀ ସର୍ବ ସୌଭାଗ୍ୟଦାୟିନୀ
ନମସ୍ତେ ଭକ୍ତବତ୍ସଳେ ଶୁଭ ବିଧାୟିନୀ ।
ମୋହର ଜନମ ଆଜ ସଫଳ ହୋଇଲା
ତୁମ୍ଭ ପୂଜା ବିଧିରେ ଯା ମାନସ ବଳିଲା ।
ରାସମଣ୍ଡଳରେ ତୁମ୍ଭେ ଅଟ ରାସେଶ୍ୱରୀ
ବୃନ୍ଦାବନେ ରାଧାକୃଷ୍ଣ ପ୍ରିୟ ସହଚରୀ ।
ଗୋଲୋକରେ କୃଷ୍ଣପ୍ରିୟା ତୁଳସୀ ବନରେ
ପ୍ରକାଶିତ ହୋଇଅଛ ଅତୁଳା ନାମରେ ।
ଚମ୍ପାବତୀ ଅଟ କୃଷ୍ଣଚମ୍ପକ କାନନେ
ଚମ୍ପାବଲ ଶତଶୃଙ୍ଗମୟ ଚନ୍ଦ୍ରବନେ ।
ବିରଜା ତଟ ବନରେ ବିରଜା ଜୟମା
କୃଷ୍ଣହ୍ରଦ ପଦ୍ମବନେ ପଦ୍ମାବତୀ ପୁଣି ।
କାମ୍ୟକ ବନରେ କାମ୍ୟ ଭଦ୍ରା କୁଞ୍ଜବନେ
ମହାଲକ୍ଷ୍ମୀ ବୋଲାଉଛ ବୈକୁଣ୍ଠ ଭୁବନେ ।
ନାରାୟଣ ବକ୍ଷସ୍ଥଳେ ଦେବୀ ସରସ୍ୱତୀ
କ୍ଷୀରସାଗର ମଧ୍ୟରେ ସମୁଦ୍ର ଦୁହିତା ।

ମର୍ତ୍ତ୍ୟପୁରେ ଦଶପ୍ରିୟା ଲକ୍ଷ୍ମୀ ନାମ ବହି
ସ୍ୱର୍ଗ ଲକ୍ଷ୍ମୀ ବୋଲାଉଛ ସ୍ୱର୍ଗପୁରେ ରହି ।
ଶଙ୍କରଙ୍କ ବକ୍ଷସ୍ଥଳେ ଦୁର୍ଗା ବିଷ୍ଣୁମାୟା
ବ୍ରହ୍ମଲୋକରେ ସାବିତ୍ରୀ ପ୍ରଜାପତି ଜାୟା ।
କନ୍ୟାମାନେ ଧର୍ମ ହ୍ରୀ ନାରାୟଣ ମାତା
ଆବର ତୁଳସୀ ଗଙ୍ଗା ଭୁବନ ବିଖ୍ୟାତା ।
ଜାତକର ପ୍ରେମମୂର୍ତ୍ତି ଗୋପାଳ ଯୁବତୀ
ଜନ୍ମିଲେ ତୁମ୍ଭ ଅଂଶରେ ଗୋପୀ ଯେ ରତି ।
କଳାଅଂଶରୁ ହୋଇଲେ ଶତରୂପା ଦିତି
ଆବର ଦେବ ଜନନୀ କଲ୍ୟାଣୀ ଅଦିତି ।
ଦେବର୍ଷି ମୁନିପତ୍ନୀ ଯେତେ ନାରୀଗଣ
ତୁମ୍ଭ କଳାଅଂଶରୁ ଜାତ ହୋଇଛନ୍ତି ଜାଣ ।
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି ଦିଅ ମୋତେ ଦେବୀ
କୃତାର୍ଥ ହୋଇବି ମୁହିଁ ତାଙ୍କ ପାଦ ସେବି ।
ଏହିରୂପେ ସ୍ତୁତି କରି ସେ ନରରାଜନ
ଅନ୍ତରେ ପାଇଲେ ନିଜ କର୍ମ ଫଳମାନ ।
ପ୍ରତିଦିନ ଏହିପରି ରାଧିକା ଦେବୀଙ୍କୁ
ପୂଜା କରିବ ଯେ ମନେ ପ୍ରକାଶି ଭକ୍ତିକୁ ।
ତାହାର ଅଭୀଷ୍ଟ ସିଦ୍ଧ ହୋଇବ କହୁଛି
ପ୍ରସନ୍ନ ହୋଇବେ ପ୍ରଭୁ ତା ପ୍ରତି ସନ୍ତତି ।
ପ୍ରଥମରେ ବୃନ୍ଦାବନେ ରାସ ମଣ୍ଡଳରେ
ଆରାଧନା କଲେ କୃଷ୍ଣ ବିଧି ଅନୁସାରେ ।
ସେ ଅନ୍ତରେ ପ୍ରଜାପତି ପୁଣି ପୂଜାକଲେ
ତୁମ୍ଭ ବର ଯୋଗେ ଦେବମାତାଙ୍କୁ ପାଇଲେ ।
ଏ ବାହାରେ ଆଉ କେତେ ପ୍ରଧାନ ଦେବତା
ରାଧିକା ଦେବୀଙ୍କୁ ପୂଜାକଲେ ଘୁଞ୍ଚି ଚିନ୍ତା ।
ତୁମ୍ଭଠାରୁ ବର ପାଇ କ୍ରମରେ ସମସ୍ତେ
ବାଞ୍ଛିତ ପଦାର୍ଥ ଲାଭ କଲେ ଯେ ଯା ମତେ ।
ନାରାୟଣ ମହାଲକ୍ଷ୍ମୀ ଗଙ୍ଗା ଯେ ତୁଳସୀ
ଏମାନଙ୍କୁ ପାଇ ମନେ ହେଲେ ମହାତୋଷୀ ।
କଶ୍ୟପ ମୁନିଙ୍କୁ ପ୍ରାପ୍ତ ହୋଇଲେ ଅଦିତି
ପଞ୍ଚଶରଙ୍କର ପ୍ରିୟା ହେଲେ ପୁଣି ରତି ।
ମୁନି ଋଷିମାନେ ପୂଜାକଲେ ଯେତେବେଳେ
ଧର୍ମ ଅର୍ଥ କାମ ମୋକ୍ଷ ଲଭିଲେ ସକଳେ ।
ଯହିଁ ତୁଳସୀ ସଙ୍ଗରେ କଳହ ଆଚରି
ଅଦୃଶ୍ୟ ହୋଇଲେ ଦେବୀ ରାଧିକା ସୁନ୍ଦରୀ ।

ଆପଣାର ମୂର୍ତ୍ତି କଳା ଅଂଶରୁ ଯେତେକ
ଦେବୀ ଜନ୍ମିଥିଲେ ସହିତେ ସବୁଯାକ ।
ସେ ସକାଶୁ ବ୍ରହ୍ମା ବିଷ୍ଣୁ ଶିବ ଆଦିକରି
ସକଳ ଦେବତା ଯନ୍ତ୍ରଣା ହେଲେ ହତଶିରି ।
ଶ୍ରୀକୃଷ୍ଣଙ୍କ ପାଦେ ଯାଇ ଶରଣ ପଶିଲେ
ତାହାଙ୍କୁ ଶ୍ରୀକୃଷ୍ଣ ଚନ୍ଦ୍ର ଆଶ୍ୱାସନା କଲେ ।
ସେ ଅନ୍ତରେ ପୁଣି ନିଜ କାନ୍ତା ରାଧିକାଙ୍କୁ
ସ୍ତୁତିକଲେ ମାନସରେ କେବଳ ପ୍ରୀତିକୁ ।
କହିଲେ ଗୋ ପ୍ରିୟସଖି ମୋଠାରେ ଯେ ସ୍ନେହ
ଥିଲା ତାହା କରୁଣରେ ପାସୋରିଲ କହ ।
ମୋହର ପ୍ରାଣ ସମାନ ଅଟ ତୁମ୍ଭେ କାନ୍ତ
ସବୁବେଳେ ମୋତେ କହୁଥାଅ ଯେ ଏମନ୍ତ ।
ସେ କଥା କେମନ୍ତ ଏବେ ଗଲା ଅପହରି
ଜାଣିଲି ସ୍ତ୍ରୀଙ୍କ ହୃଦ କ୍ଷୁରଧାର ପରି ।
ତୁମ୍ଭେ ଅଟ ଯେଣୁ ମୋର ଆରାଧ୍ୟଦେବତା
ତୁମ୍ଭ ବିନା ମୋତେ ଲାଗୁଅଛି ଘୋରଚିନ୍ତା ।
ସର୍ବ ଦେବୀଙ୍କର ତୁମ୍ଭେ ଅଟ ଗୋ ଜନନୀ
ଜଗତ ଅଟଇ ସୁଖମୟ ତୁମ୍ଭ ଯୋଗେ ।
ତୁମ୍ଭ ଅନୁଗ୍ରହ ବିନା ନିଖିଳ ଜଗତ
ନିର୍ଜୀବ ହୋଇ ରହିବ ଯେସନେ ଜଡ଼ୀଭୂତ ।
ଯେଉଁରୂପେ କୁମ୍ଭକାର ମୃତ୍ତିକା ପିଣ୍ଡରେ
କରଇ ବିବିଧ ମାତ୍ର ଇଚ୍ଛା ଅନୁସାରେ ।
ସେରୂପେ ତୁମ୍ଭଙ୍କୁ ସଙ୍ଗତରେ ଘେନି ମୁହିଁ
ଦେଶରେ ସୃଷ୍ଟି ସରଜନା କରିଥାଇ ।
ଏବେ ତୁମ୍ଭଙ୍କୁ ନ ଦେଖି ମୁହିଁ ପରାୟେ
ରହିଅଛି ମୋତେ କର୍ପୂର ମାହାମାୟେ ।
ସମସ୍ତ ଦ୍ରବ୍ୟରେ ତୁମ୍ଭେ ଅଟ ଶକ୍ତିରୂପ
ତୁମ୍ଭ ଦୟାବଳେ ନାଶ ହୋଇଯାଏ ପାପ ।
ଏହିରୂପେ ସ୍ତୁତି ଯହୁଁ କଲେ ଦେବହରି
ମିଳିଲେ ତାହାଙ୍କ ପାଶେ ରାଧିକା ସୁନ୍ଦରୀ ।
ତାଙ୍କୁ ଦେଖି ଦେବଗଣ ସନ୍ତୁଷ୍ଟ ହୋଇଲେ
ଯୋଡ଼ିହସ୍ତ ନାନାରୂପେ ସ୍ତୁତି ଆରମ୍ଭିଲେ ।
ଧନ ସମ୍ପଦ ଲଭିଲେ ତାଙ୍କ ପ୍ରସାଦରେ
ପାଇଣ ଗମନ କଲେ ସେ ଯାହାର ପୁରେ ।
ଗୋଲୋକ ପୂର୍ଣ୍ଣ ହୋଇଲା ଗୋପିକା ଗଣରେ
ପ୍ରସ୍ତୀକ ହୋଇଲେ ଲୋକେ ତିନି ଭୁବନରେ ।

ଏହି ସ୍ତୋତ୍ର ପାଠକରି ସୁଯଜ୍ଞ ରାଜନ
ଆରୋ ରାବଣ ଗୋଲୋକ ପାଇଲେଟି ଜାଣ ।
ଶ୍ରୀକୃଷ୍ଣ ରଚିତ ଏହି ରାଧାଦେବୀ ସ୍ତୋତ୍ର
ପଢ଼ନ୍ତି ଯେ ଭକ୍ତିଭରେ ହୁଏ ସେ ପବିତ୍ର ।
ମାସେ ପର୍ଯ୍ୟନ୍ତେ ଯେବା ଭକ୍ତିରେ ଶୁଣଇ
ଧନଭାର୍ଯ୍ୟା ନଷ୍ଟ ହୋଇଥିଲେ ତାହା ପାଇ ।
ପୂର୍ବରେ ଏହି ସ୍ତୋତ୍ରକୁ ପାଠକରି ମୁହିଁ
ଭାର୍ଯ୍ୟା ରୂପରେ ତୁମ୍ଭଙ୍କୁ ଥିଲି ଜାଣ ପାଇ ।
ଦୁର୍ବାସା ପ୍ରଭୃତି କେତେ ବ୍ରହ୍ମଋଷିଗଣ
ଶାପରୁ ମୁକତ ହେଲେ ଏହା ଯେନ ଜାଣ ।
କାର୍ତ୍ତିକ ପୂର୍ଣ୍ଣିମା ଦିନ ଏହା ଯେ ପଢ଼ିବ
ସକଳ ବିପଦ ନାଶି ସମ୍ପଦ ପାଇବ ।
କେତେ ମୁନି ଋଷି ଦ୍ୱିଜ ରାଜା ଭାଗ୍ୟବାନ
ରାଧାଦେବୀ ସ୍ତୋତ୍ର ପଢ଼ି ହୋଇଛନ୍ତି ଧନ୍ୟ ।
ବୋଲେ ଦ୍ୱିଜ କ୍ଷେତ୍ରବାସୀ ଆହେ ସାଧୁଜନେ
ରାଧିକା ଦେବୀଙ୍କ ସ୍ତୋତ୍ର ପଢ଼ି ନିତିଦିନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ରାଧାଙ୍କର ପୂଜାବିଧି ବର୍ଣ୍ଣନେ
ନାମ ଅଷ୍ଟପଞ୍ଚାଶତ୍ ଅଧ୍ୟାୟଃ ।

# ଉନଷଷ୍ଟିତମ ଅଧ୍ୟାୟ

## ରାଧାଙ୍କର କବଚ ପଠନ ନିର୍ଣ୍ଣୟ

ଶୁଣ ୨ ସାଧୁଜନେ ଦେଇ ମନକର୍ଣ୍ଣ
ରାଧା ଉପାଖ୍ୟାନ ଶୁଣି ତୋଷ ହେଲା ମନ ।
କବଚ ଶୁଣିବି ବୋଲି ବଳୁଅଛି ଆଶ
ଦୟାକରି ବାରେ ମାତ୍ର କରନ୍ତୁ ପ୍ରକାଶ ।
ତାହାଙ୍କ ବଚନ ଶୁଣି ବୋଲେ ମହେଶ୍ୱର
ବୋଇଲେ ପୁଚ୍ଛିଲ ଶୁଣ ହୋଇ କରି ଧିର ।
ପୂର୍ବେ ଗୋଲକ ଭୁବନେ ପ୍ରଭୁ ଦଇତାରି
ଗୁପତରେ କହିଥିଲେ ମୋତେ ଡାକକରି
ଧାରଣ କରି ମୁଁ ସେହି ଦିବ୍ୟ କବଚକୁ
ଭାଜନ ହୋଇଛି ଦେବ ସ୍ୱାମୀର ପଦକୁ ।
ବ୍ରହ୍ମା ନାରାୟଣ ଆଦି ମୁଖ୍ୟ ଦେବତାଏ
ଯାହା ଦୟାବଳେ ରହିଅଛନ୍ତି ନିର୍ଭୟେ ।
ଶୁଣି ଯେ ଯାହାର ପତ୍ନୀମାନଙ୍କୁ ପାଇଣ
ସକଳ ଜନଙ୍କ ମଧ୍ୟେ ପୂଜ୍ୟ ହୋଇ ପୁଣ ।
ଧାରଣ କରି ଯାହାକୁ ଶ୍ରୀରାଧାଙ୍କ ପତି
ସୃଷ୍ଟି ସରଜନା ଲାଗି ଲଭିଲେ ଶକତି ।
ବିଷ୍ଣୁ ସମର୍ଥ ହୋଇଲେ ସୃଷ୍ଟି ପାଳିବାକୁ
ଆବର ଅନନ୍ତ କରି ପାରିଲେ ମହୀକୁ ।
ଧରମ ଦେବତା ସାକ୍ଷୀ ରହିଲେ ସକଳ
କୁବେର ଯାର ପ୍ରସାଦେ ହେଲେ ଧନପାଳ ।
ସ୍ୱର୍ଗ ଅଧିପତି ହେଲେ ଦେବ ପୁରନ୍ଦର
ଅମୃତମୟ ଶରୀର ହେଲେ ସୁଧାକର ।
ସୂର୍ଯ୍ୟ ହୋଇଲେ ସେପରି ତ୍ରିଲୋକ ଈଶ୍ୱର
ସ୍ୱଚ୍ଛନ୍ଦ ଭାବରେ ନିତ୍ୟେ ବହଇ ସମୀର ।
ଯାହାକୁ ଧାରଣ କରି ଯମଦଗ୍ନି ସୁତ
କଲେ ଏକବିଂଶଥର କ୍ଷତ୍ରିୟ ନିପାତ ।
ଯେଉଁ କବଚ ପ୍ରଭାବେ ଦିଗପାଳଗଣ
ଯେ ଯାହା ସ୍ଥାନରେ ରହି କରନ୍ତି ପାଳନ ।
କାଳଅଗ୍ନି ରୁଦ୍ରଲୋକ ସଂହାର କରନ୍ତି
ତାହା ପ୍ରଭାବେ କଶ୍ୟପ ହେଲେ ପ୍ରଜାପତି ।
ଯାହାକୁ ଯେଜଣ ପୂର୍ବେ ନଳ ମହୀପତି
ବହୁତ ସମୟେ ଲଭି କଲେ ଦମୟନ୍ତୀ ।
ଯେଉଁ କବଚକୁ ଯତ୍ନେ ବାହୁମୂଳେ ଧରି
ଶ୍ରୀରାମ ପାଇଲେ ସୀତା ରାବଣକୁ ମାରି ।
ଯାହା ଯୋଗରେ ବୃଷଭ ବହୁଅଛି ମୋତେ
ଗରୁଡ଼ ବହନ କରେ ବିଷ୍ଣୁଙ୍କୁ ସାନନ୍ଦେ ।
ଲକ୍ଷ୍ମୀ ସରସ୍ୱତୀ ଆଦି ସର୍ବ ଦେବୀଗଣ
ଯାହା ଯୋଗରେ କରନ୍ତି ସଂସାର ପାଳନ ।
ଧାରଣ କରି ଯାହାକୁ ଦେବୀ ବସୁନ୍ଧରା
ନାନାବିଧ ଶସ୍ୟଧନ ଦେଉଅଛି ତୋରା ।

ଏହ୍ନପରି ଯେତେ ଲୋକ ଏହାକୁ ଘେନଲେ
ସମସ୍ତେ ସେ ଯାହା ଇଷ୍ଟ ସମ୍ପଦ ପାଇଲେ ।
ଜଗତ ମଙ୍ଗଳକର ଏହ୍ନ କବଚର
ଋଷି ହୋଇଛନ୍ତି ବ୍ରହ୍ମା ବେଦ ଅଧୀଶ୍ୱର ।
ଗାୟତ୍ରୀ ଛନ୍ଦ ଦେବତା ରାସ ଅଧୀଶ୍ୱରୀ
ଶ୍ରୀକୃଷ୍ଣ ଭକତି ଅର୍ଥେ ବିନଯୋଗ କରି ।
ଆଜ୍ଞାପାଳନ ଆଦର୍ କୃଷ୍ଣଭକ୍ତ ଶିଷ୍ୟ
ଅଟଇ ଯେ ତା ଆଗରେ କହିବ ପ୍ରକାଶ ।
ନାସ୍ତିକ ଶଠ ଯେ କୃଷ୍ଣନାମ ବିବାଦକ
ଲୋକକୁ ଦେଲେ କଷ୍ଟରେ ଦଣ୍ଡିବେ ଅନ୍ତକ ।
ରାଜ୍ୟ ଧନଆଦି ସବୁ ଦେଲେ ପଛେ ଦେବ
ଆସ୍ଥାକରେ ଏହ୍ନି ଦିବ୍ୟ କବଚ ନ ଦେବ ।
ଶ୍ରୀକୃଷ୍ଣ ଏହାକୁ ପୂର୍ବେ ଭକତି ଭାବରେ
ଗ୍ରହଣ କରିଣ ଥିଲେ ଆପଣା କଣ୍ଠରେ ।
ତାହାର ସ୍ୱରୂପ ଏବେ କହୁଅଛୁ ଶୁଣ
ଶ୍ରୀକୃଷ୍ଣ ଯେରୂପେ ମୋତେ କହିଥିଲେ ପୁଣ
ପ୍ରଥମେ ଓଁକାର ପରେ ରାଧାଙ୍କର ନାମ
ଚତୁର୍ଥୀ ବିଭକ୍ତି ସଙ୍ଗେ ରଖିବଟି ଜାଣ
ସେ ଅନ୍ତରେ ସ୍ୱାହା ଦେଇ ଅକ୍ଷରକୁ ଦେବ
ଏ ମନ୍ତ୍ର ମସ୍ତକ ରକ୍ଷା କରନ୍ତୁ ବୋଲିବ ।
ମାୟା ଲକ୍ଷ୍ମୀବୀଜାକ୍ଷର ଯୁକ୍ତକରି ତାକୁ
ବୋଲିବ ରଖନ୍ତୁ କର୍ଣ୍ଣ ନେତ୍ର କପାଳକୁ ।
ମସ୍ତକ କେଶସମୂହ ରଖ ମନ୍ତ୍ରରାଜ
ତୁମ୍ଭ ପ୍ରଭାବରେ କାର୍ଯ୍ୟସିଦ୍ଧ ହେଉ ଆଜ ।
ଚତୁର୍ଥ୍ୟନ୍ତ ରାଧା ନାମ ବହ୍ନିଜାୟା ତୁଲେ
କପୋଳ ନାସିକା ମୁଖ ରଖନ୍ତୁ ସେ ଭଲେ ।
ହ୍ରୀଂ କ୍ଲୀଂ କୃଷ୍ଣପ୍ରିୟା ଚତୁର୍ଥ୍ୟନ୍ତ ପଦ
କଣ୍ଠଦେଶ ରକ୍ଷାକରି ନାଶନ୍ତୁ ବିପଦ ।
ଓଁକାରାଦ୍ୟ ଚତୁର୍ଥ୍ୟନ୍ତ ରାସେଶ୍ୱରୀ ମୋର
ବେକସ୍କନ୍ଧ ରଖିବାକୁ ହୁଅନ୍ତୁ ତତ୍ପର ।
ରାସବିଳାସିନୀ ପୃଷ୍ଠଦେଶକୁ ରଖନ୍ତୁ
ବୃନ୍ଦାବନ ବିଳାସିନୀ ବକ୍ଷକୁ ପାଳନ୍ତୁ ।
ତୁଳସୀବନ ବାସିନୀ ସ୍ୱାହା ଯନ୍ତ୍ରକରେ
ହେଉନ୍ତୁ ନିତମ୍ବ ବସ୍ତ୍ର ରକ୍ଷଣ କାର୍ଯ୍ୟରେ ।
କୃଷ୍ଣପ୍ରାଣ ଅଧୀଶ୍ୱରୀ ସ୍ୱାହାଅନ୍ତ ହୋଇ
ସକଳ ଶରୀର ରକ୍ଷା କର ଦୟା ବହି ।
ପୂର୍ବଦିଗେ ରଖ ମାତା ରାଧା ଠାକୁରାଣୀ
ଅଗ୍ନିକୋଣେ ରକ୍ଷା କର ଶ୍ରୀକୃଷ୍ଣ ଘରଣୀ ।
ଦକ୍ଷିଣ ଦିଗରେ ରାସେଶ୍ୱରୀ ରକ୍ଷାକର
ନୈର୍ଋତ କୋଣରେ ରଖ ଗୋପିକାସୁନ୍ଦରୀ ।
ପଶ୍ଚିମେ ନିର୍ଗୁଣା ବାୟୁକୋଣେ କୃଷ୍ଣପ୍ରିୟା
ଉତ୍ତର ମୂଳପ୍ରକୃତି ଦେବୀ ମହାମାୟା ।
ସର୍ବେଶ୍ୱରୀ ରଖ ସଦା ଅଇଶାନ୍ୟ କୋଣେ
ଜଳେ ସ୍ଥଳେ ଅନ୍ତରୀକ୍ଷେ ସ୍ୱପ୍ନେ ଜାଗରଣେ ।
ମହାବିଷ୍ଣୁ ଜନନୀ ରଖ ସବୁଠାରେ
ସମାପ୍ତ ହୋଇଲା ରାଧା କବଚ ଏଠାରେ ।
ଏ ଦିବ୍ୟକବଚ ଅଟେ ଅତ୍ୟନ୍ତ ଗୁପତ
ସାମାନ୍ୟ ଲୋକଙ୍କୁ ନ କହିବ କଦାଚିତ ।
ସ୍ନେହବଶେ ତୁମ୍ଭ ଆଗେ କହିଲଟି ମୁହିଁ
ଶୁଣିବାକୁ ତୁମ୍ଭ ବିନା ଯୋଗ୍ୟ ନୁହେ କେହି ।
ଏ କବଚ ହୁଏ ଶତଲକ୍ଷ ଜପେ ସିଦ୍ଧ
ସିଦ୍ଧିକଲା ଲୋକ ନୁହେ ଅନଳରେ ଦଗ୍ଧ ।
ପୂର୍ବକାଳେ ଦୁର୍ଯ୍ୟୋଧନ ରାଜା ସିଦ୍ଧି କଲେ
ଅଗ୍ନିସ୍ତମ୍ଭ ଜଳସ୍ତମ୍ଭ ବିଦ୍ୟାକୁ ଜାଣିଲେ ।
ସନତ୍କୁମାର ମୁନି ମୋହଠାରୁ ଶୁଣି
ସାନ୍ଦୀପନିଙ୍କ ଆଗରେ କହିଲେ ସେ ପୁଣି ।
ଦୁର୍ଯ୍ୟୋଧନ ରାଜନକୁ ଦେଲେ ସାନ୍ଦୀପନି
ସେ ଯେଣୁ କୌରବରାଜ ହେଲେ ତତକ୍ଷଣ ।
ଏହାକୁ ଯେ ପ୍ରତିଦିନ ପଠନ କରଇ
ଜୀବିତ ଦଶାରେ ସେହୁଁ ମୁକତ ହୁଅଇ ।
ଅଶେଷ ତୀର୍ଥରେ ସ୍ନାନ ନାନାଯାଗ ଫଳ
ଆଦର ତାହାକୁ ପ୍ରାପ୍ତ ହୁଏ ତତକାଳ ।
ଶ୍ରୀରାଧାଙ୍କ ପ୍ରସାଦରେ ସକଳ ବିପଦ
ଖଣ୍ଡିତ ହୋଇ ମିଳଇ ବହୁତ ସମ୍ପଦ ।
ଏ ପକାଶୁ ଆଗୋ ଦେବୀ ସର୍ବତକୁମାରୀ
ଅଟନ୍ତି ରାଧିକା ସର୍ବଭୂତ ଅଧୀଶ୍ୱରୀ ।
କହନ୍ତି ନାରଦ ଆଗେ ଋଷି ନାରାୟଣ
ଆହେ ମୁନିବର ମନକର୍ଣ୍ଣ ଦେଇ ଶୁଣ ।
ସୁଯଜ୍ଞ ନୃପତି ଏହ୍ନ କବଚ ପଢ଼ିଲେ
ରାଧାକୃଷ୍ଣଙ୍କୁ ମନରେ ସୁମରଣା କଲେ ।
ଶ୍ରୀକୃଷ୍ଣଙ୍କ ପର ଦେବ ନାହିଁ କେ ଜଗତେ
ନ ମିଳିବ ଗଙ୍ଗାସମ ନଦୀ କଦାଚିତେ ।

ପୁଷ୍କର ସମାନ ତୀର୍ଥ ନାହିଁ କେଉଁଠାରେ
ବ୍ରହ୍ମଚର୍ଯ୍ୟ ଶ୍ରେଷ୍ଠ ଅଟେ ସର୍ବ ଆଶ୍ରମରେ ।
ପରମାଣୁଠାରୁ ସୂକ୍ଷ୍ମଦ୍ରବ୍ୟ ଆଉ ନାହିଁ
ବିସ୍ତାରଗୁଣେ ଆକାଶ ଅଧିକ ଅଟଇ ।
ବଇଷ୍ଣବଠାରୁ ବଳ ନାହିଁ ଜ୍ଞାନଶୀଳ
ଯୋଗୀଗଣରେ ଶଙ୍କର ଅଟନ୍ତି ଅତୁଲ୍ୟ ।
ସ୍ୱପ୍ନ ଜାଗରଣ କାଳେ ଶ୍ରୀକୃଷ୍ଣଙ୍କୁ ହର
ଧ୍ୟାନ କରିବାରେ ସଦା ଅଟନ୍ତି ତତ୍ପର ।
ଶିବ ବିଷ୍ଣୁ ଦୁହିଙ୍କର ଭେଦଭାବ ନାହିଁ
ଦାମ୍ଭିକ ଲୋକେ ସେରୂପେ ଭାନ୍ତି ଯିନା କହି ।
ବୈଷ୍ଣବଗଣରେ ଶମ୍ଭୁ ଅଟନ୍ତି ଯେପରି
ଦେବତାଙ୍କ ମଧ୍ୟେ ଯଥା ଶଙ୍ଖ ଚକ୍ରଧାରୀ ।

ସବୁଠାରୁ ଏ କବଚ ଶ୍ରେଷ୍ଠ ଯେ ଅଟଇ
ଏହା ଲାଗି ସର୍ବପାପ ବିନାଶ ହୁଅଇ ।
ଶ୍ରଦ୍ଧାଭାବେ ଏ କବଚ କରିଲେ ଧାରଣ
ଦୁଃଖ ନାଶ ଯାଇ ସୁଖ ମିଳଇ ତକ୍ଷଣ ।
ବ୍ରହ୍ମାଦି ସକଳ ଦେବଗଣ ଋଷିମୁନି
ଏମାନେ ଅଟନ୍ତି ମହା ମହିମା ଯେ ଘେନି ।
ତାହାଙ୍କର ଦେବତା ଯେ ଅଟନ୍ତି ଶଙ୍କର
ତେଣୁ ମହାଦେବ ବୋଲି ନାମ ତାହାଙ୍କର ।
ସେ ମହାଦେବ ତ ହୋଇଛନ୍ତି ତୁମ୍ଭ ଗୁରୁ
ଅଧିକ କବା ଶୁଣିବ ତୁମ୍ଭେ ମୋଠାରୁ ।
ବୋଲେ ଦୀନହୀନ କ୍ଷେତ୍ରବାସୀ ଯୋଡ଼ିକର
ଉଦ୍ଧାର କରନ୍ତୁ ପ୍ରଭୁ କମଳାର ବର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ରାଧିକାଙ୍କର କବଚ ପଠନ
କର୍ତ୍ତବ୍ୟେ ନାମ ଊନଷଷ୍ଠିତମ ଅଧ୍ୟାୟଃ ।

## ଷଷ୍ଠିତମ ଅଧ୍ୟାୟ

### ଦୁର୍ଗା ଦେବୀଙ୍କ ଉପାଖ୍ୟାନ

ନାରଦ ବୋଇଲେ ଦେବ ସକଳ ଆଖ୍ୟାନ
ଆପଣଙ୍କଠାରୁ ଶୁଣି ହେଲି ତୋଷମନ ।
ଏବେ ଦୁର୍ଗାଦେବୀଙ୍କର ଉପାଖ୍ୟାନ କହି
ମୋହ ମନରୁ ସଂଶୟ ନାଶନ୍ତୁ ଗୋସାଇଁ ।
ଦୁର୍ଗାନାରାୟଣ ଆଦି ଷୋଡ଼ଶ ପ୍ରକାର
ନାମ କୀର୍ତ୍ତିତ ହୋଇଣ ଅଛି ଏ ସଂସାର ।
ତାହା ସର୍ବ ମୋ ଅଗ୍ରତେ କରନ୍ତୁ ବର୍ଣ୍ଣନ
ଆଦ୍ୟରେ ପୂଜା କରିଲେ ତାଙ୍କୁ କେଉଁଜନ ।
ଦ୍ୱିତୀୟ ତୃତୀୟ ଚତୁର୍ଥରେ ଅବା କେହି
ପୂଜା କରିଥିଲେ ମୋତେ କହନ୍ତୁ ବତାଇ ।
ତାହା ଶୁଣି ନାରାୟଣ ମୁନିଙ୍କ ଶେଖର
ବୋଇଲେ ହେ ସୁର ଶିଷ୍ୟଗଣ ଶୁଣ ଧୀର ।
ଷୋଡ଼ଶ ନାମର ଅର୍ଥ ବିସ୍ତୃତ ବେଦରେ ।
କହୁଛନ୍ତି ତୁମ୍ଭେ ଶୁଣି ପୂର୍ବ ଆଜଅରେ ।
ଯେଣୁ ପୂଛୁ ଅଛ ତାହା କହୁଛି ବୁଝାଇ
ଦୁର୍ଗା ଶବ୍ଦର ଅର୍ଥ ବୈଦ୍ୟଠାରେ ଥାଇ ।

ମହାବିଘ୍ନ ସାଂସାରିକ କର୍ମ ଦୁଃଖ ଶୋକ
ଯମଦଣ୍ଡ ଜନ୍ମ ପୁଣି ଦୁସ୍ତର ନରକ ।
ଆକାର ଅଟଇ ହନ୍ତୁବାଚକ ଯେ ଜାଣ
ଏମାନଙ୍କୁ ନାଶକ ଯେ ଦୁର୍ଗା ତାଙ୍କ ନାମ ।
ରୂପ ଗୁଣ ଯଶରେ ଯେ ନାରାୟଣ ସମ
ନାରାୟଣୀ ବୋଲି ଅଟେ ତାହାଙ୍କର ନାମ ।
ଈଶାନ ସକଳ ସିଦ୍ଧିବାଚକ ଅଟଇ
ଆକାର ଦାତୃବାଚକ ଅର୍ଥ ପ୍ରକାଶଇ ।
ସର୍ବସିଦ୍ଧି ପ୍ରଦାତ୍ରୀ ସେ ବୋଲନ୍ତି ଈଶାନା
ପୁରାଣ ପ୍ରସିଦ୍ଧି ଏହିରୂପେ ଅଟେ ଯିନା ।
ବିଷ୍ଣୁଙ୍କର ମାୟାରୂପ ହେବାରୁ ସେହି
ବିଖ୍ୟାତ ଅଟନ୍ତି ବିଷ୍ଣୁମାୟା ନାମ ବହି ।
କଲ୍ୟାଣଦାୟିନୀ ପୁଣି ପତ୍ନୀ ଶିବଙ୍କର
ହେବାରୁ ଶିବା ନାମ ହୋଇଛି ତାଙ୍କର ।
ଉତ୍ତମ ବୁଦ୍ଧିଶାଳିନୀ ସାଧ୍ୱୀ ପତିବ୍ରତା
ଅଟନ୍ତି ସେ ତେଣୁ ସତୀ ନାମରେ ବିଖ୍ୟାତା ।

ଯେଉଁ ଦେବୀ ବ୍ରହ୍ମମୟୀ ନିତ୍ୟ ସନାତନୀ
ପ୍ରକାଶିତ ଅଟନ୍ତି ଯେ ନିତ୍ୟାନାମ ଘେନି ।
ଅଶେଷ ବ୍ରହ୍ମାଣ୍ଡ ଅଟେ ମିଥ୍ୟାର ଭଣ୍ଡାର
ମାତ୍ର ସତ୍ୟ ସ୍ୱରୂପିଣୀ ପ୍ରକୃତିରୁ ପର ।
ହେବାରୁ ସେ ଦୁର୍ଗାଦେବୀ ସତ୍ୟ ବୋଲାଇଲେ
ତିନିଭୁବନ ମଧ୍ୟରେ ବିଖ୍ୟାତ ହୋଇଲେ ।
ସକଳ ସିଦ୍ଧିରେ ଭଟେଣ୍ଡ ପ୍ରବର୍ତ୍ତଇ
ଯେ ଯାହାର ଅଛି ଭଗବତୀ ଜାଣ ସେହି ।
ସକଳ ଲୋକଙ୍କୁ ଯେଣୁ କରନ୍ତି ମୁକତ
ସର୍ବାଣୀ ବୋଲିଣ ତାଙ୍କ ନାମ ଅଟେ ଖ୍ୟାତ ।
ମଙ୍ଗଳ ଶବଦ ଅଟେ ମୋକ୍ଷାର୍ଥ ବୋଧକ
ଆକାର ଅଟଇ ଦାତୃ ଶବଦ ବାଚକ ।
ସେ ସକାଶୁ ସର୍ବଶୁଭଦାୟୀ ସେ ଅଟନ୍ତି
ସର୍ବମଙ୍ଗଳା ନାମକୁ ବହି ସେ ଅଛନ୍ତି ।
ଅମ୍ବ ଶବଦଟି ମାତା ଅର୍ଥକୁ ବୁଝାଏ
ଆବର ବନ୍ଦନ ପୂଜା ଅର୍ଥବନ୍ତ ହୁଏ ।
ସେ ସକାଶୁ ଜଗତରେ ପୂଜିତା ଜନନୀ
ଅଟନ୍ତି ଯେ ଅମ୍ବାନାମ ଅଟେ ତାହା ଘେନି ।
ବିଷ୍ଣୁଙ୍କର ଶକ୍ତିରୂପା ହୋଇବାରୁ ସେହି
ବୈଷ୍ଣବୀ ବୋଲି ନାମ ଅଛନ୍ତି ଯେ ବହି ।
ସକଳ ଲୋକର ଗୁରୁ ଅଟନ୍ତି ଶଙ୍କର
ଦୁର୍ଗା ଅଟନ୍ତି ତ ଶକ୍ତିମୟୀ ତାହାଙ୍କର ।
ଗୌରୀ ବୋଲିକରି ତେଣୁ ନାମ ପାଇଛନ୍ତି
ବେଦ ଶାସ୍ତ୍ରର ବିଗ୍ରହ ଅଟେ ଏହି ମତ ।
ମହାଉତ୍ସବ ବାଚକ ପର୍ବତ ଶବଦ
ତାର ଅଧିଦେବତାଙ୍କୁ ବୁଝାଏ ଯେ ପଦ ।
ପାର୍ବତୀ ସ୍ୱରୂପ ସେହି ଅଟନ୍ତିଟି ଜାଣ
କହନ୍ତି ନାରଦ ଆଗେ ଋଷି ନାରାୟଣ ।
ଅଥବା ପର୍ବତରାଜ ହିମାଳୟ ପୁତ୍ରୀ
ହେବାରୁ ପାର୍ବତୀ ନାମ ବହି ସେ ଅଛନ୍ତି ।
ସର୍ବକାଳ ଅଟଇ ସେ ସିନା ଶବ୍ଦ ଅର୍ଥ
ବିଦ୍ୟାମାନାର୍ଥରେ ତହିଁ ଶବଦ ଯଥାର୍ଥ ।
ପ୍ରକାଶିତ ଅଟନ୍ତି ଯେ ସର୍ବ ସମୟରେ
ସନାତନୀ ବୋଲନ୍ତି ସେ ଜାଣ ସେ ହେତୁରେ

ଏରୂପେ ଷୋଡ଼ଶ ନାମ ଅର୍ଥ ମୁଁ ତୁମ୍ଭଙ୍କୁ
କହିଲି ବିସ୍ତାରି ମୁନିଦେବ ପ୍ରତ୍ୟୟରୁ ।
ଏବେ ମନଦେଇ କହୁ ଶୁଣ ଉପାଖ୍ୟାନ
ଯେରୂପେ ଦେବୀଙ୍କୁ ପୂଜା କଲେ ସର୍ବଜନ ।
ପ୍ରଥମରେ ଗୋଲୋକରେ ରମ୍ୟ ବୃନ୍ଦାବନେ
ପୂଜିଲେ ଶ୍ରୀକୃଷ୍ଣ ନିଜେ ହରଷିତ ମନେ ।
ଦ୍ୱିତୀୟେ ମଧୁକୈଟଭ ଭୟେ ବେଦକର
ତୃତୀୟେ ତ୍ରିପୁର ନାଶ କରିବାରୁ ହର ।
ଚତୁର୍ଥରେ ଦୁର୍ବାସାଙ୍କ ଶାପରୁ ମୁକତି
ପାଇବା ସକାଶେ ପୂଜା କଲେ ସୁରପତି ।
ସେ ଅନ୍ତରେ ତିନିଲୋକେ ଥିଲେ ଯେଉଁମାନେ
ସମସ୍ତେ ଅର୍ଚ୍ଚନା କଲେ ତୋଷ ବହିମନେ ।
ପୂର୍ବକାଳେ ସର୍ବଦେବଙ୍କର ତେଜ ଘେନି
ଅସୁରଙ୍କୁ ମାରିବାକୁ ଜନ୍ମିଲେ ଭବାନୀ ।
ଆନନ୍ଦିତ ହୋଇ ତାଙ୍କୁ ଦେଖି ସୁରଗଣ
ଦାନକଲେ ନିଜ ନିଜ ଶସ୍ତ୍ର ଆଭରଣ ।
ମହିଷ ଆଦି ଦୈତ୍ୟଙ୍କୁ ମାରି ମହାମାୟା
ଦେବତାଙ୍କୁ ରାଜ୍ୟ ଧନ ଦେଲେ କରି ଦୟା ।
କଳ୍ପାନ୍ତରେ ପୁଣି ତାଙ୍କୁ ସୁରଥ ନୃପତି
ପୂଜା କରିଥିଲେ ଭକ୍ତିଭରେ ହୋଇ ମତି ।
ମେଧସ ମୁନିଙ୍କଠାରୁ ଉପଦେଶ ପାଇ
ଦେବୀଙ୍କ ସ୍ୱରୂପ ନିଜ ମାନସରେ ଧ୍ୟାୟି ।
ବେଦବିଧି ଅନୁସାରେ ନାନା ଉପଚାର
ଗନ୍ଧ ପୁଷ୍ପ ଧୂପ ଆଦି ନେଇ ନୃପବର ।
ଧ୍ୟାନ କବଚସ୍ତୋତ୍ରକୁ ପଠନ ସେ କଲେ
ଅଭୀଷ୍ଟ ବର ଦେବୀଙ୍କଠାରୁ ଲାଭ କଲେ ।
ସମାଧି ନାମରେ ବୈଶ୍ୟ ପ୍ରଭାସ ତୀର୍ଥରେ
ଦୁଷ୍କର ତପସ୍ୟା କରି ଦେବୀଙ୍କର ବରେ ।
ମହା ସୁଖରେ ଗୋଲୋକ ଭୁବନେ ରହିଲେ
ଏହି ପ୍ରକାରେ ଅନେକ ଲୋକ ପୂଜା କଲେ ।
ସକଳେ ଯେସନ୍ତ ଯାହାର ଇଷ୍ଟ ଲଭିକରି
ଆନନ୍ଦ ମନେ ରହିଲେ ସର୍ବ ତପସ୍ୱୀ ।
ନାରଦଙ୍କର ଅଗ୍ରତେ ନାରାୟଣ ଧୀରେ
ପ୍ରକାଶ କଲେ ଷୋଡ଼ଶ କହଇ ଗୀତରେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଦୁର୍ଗାଦେବୀଙ୍କ ଉପାଖ୍ୟାନ ବର୍ଣ୍ଣନେ ନାମ ଷଷ୍ଟିତମ ଅଧ୍ୟାୟଃ ।

# ଏକଷଷ୍ଟିତମ ଅଧ୍ୟାୟ

## ଚନ୍ଦ୍ର ଓ ତାରାମାନଙ୍କର ଉପାଖ୍ୟାନ

ନାରଦ ବୋଇଲେ ଆହେ ତପିଙ୍କ ମଣ୍ଡନ
ସୁରଥ କେଉଁ ବଂଶରେ ହୋଇଥିଲେ ଜନ୍ମ ।
କହୁଛେ ମେଧସ ଠାରୁ ଜ୍ଞାନ ଲଭିକଲେ
ନାନା ପ୍ରକାର ତତ୍ତ୍ୱ କହୁଛେ ଜାଣିଲେ ।
କାହା ବଂଶରେ ସେ ମୁନି ଜାତ ହୋଇଥିଲେ
ରାଜାଙ୍କର ସଙ୍ଗେ କେଉଁ ରୂପେ ଦେଖାହେଲେ ।
ମୁନି ନୃପ ବୈଶ୍ୟଙ୍କର ମିଳନ କେମନ୍ତ
ହୋଇଲା ଏ ସବୁକଥା କହ ତପୋବନ୍ତ ।
ନାରଦଙ୍କର ବଚନ ଶୁଣି ଏଥୁଉତ୍ତର
କହି ଆରମ୍ଭିଲେ ନାରାୟଣ ତପସ୍ୱୀ ।
ବୋଇଲେ ଅତ୍ରି ମହର୍ଷି ବ୍ରହ୍ମାଙ୍କ କୁମର
ତାହାଙ୍କ ବୀର୍ଯ୍ୟରୁ ଜାତ ହେଲେ ନିଶାକର ।
ରାଜସୂୟ ଯାଗକରି ଦ୍ୱିଜରାଜ ନାମ
ପାଇଥିଲେ ହେତୁ ଜାଣ ମୁନିଙ୍କ ଉତ୍ତମ ।
ଗୁରୁପତ୍ନୀଙ୍କ ଗର୍ଭରେ ତାଙ୍କଠାରୁ ଜାତ
ହେଲେ ବୁଧ ନାମରେ ସେ ଏକ ଦିବ୍ୟସୁତ ।
ବୁଧଙ୍କର ଚୈତ୍ରନାମେ ପୁତ୍ର ଜାତ ହେଲେ
ସକଳ ଗୁଣରେ ପରିପୂର୍ଣ୍ଣ ସେ ହୋଇଲେ ।
ତାହାଙ୍କର ପୌତ୍ର ନାମ ଅଟଇ ସୁରଥ
ବିଷ୍ଣୁଙ୍କ ସମାନ ଅଟନ୍ତି ସେ ସାମରଥ ।
ନାରଦ ବୋଇଲେ ଏତ ଅତି ଅଦଭୁତ
ଗୁରୁପତ୍ନୀଠାରେ କେମନ୍ତେ ହେଲା ତାଙ୍କ ସୁତ ।
ବେଦ ବ୍ୟତିକ୍ରମ କଥା କହିଲେଟି ଯେଣୁ
ମୋହର ସଂଶୟ ଜାତ ହେଉଅଛି ତେଣୁ ।
ନାରାୟଣ ବୋଇଲେ ହେ ଶୁଣ ସେ ବୃତ୍ତାନ୍ତ
ଦିନେ ଗଙ୍ଗାନଦୀ ତଟେ ଥିଲେ ଅତ୍ରି ସୁତ ।
ସେଠାରେ ଗୁରୁଙ୍କ ପତ୍ନୀ ତାରା ପତିବ୍ରତା
ଫେରି ଯାଉଥିଲେ ଘରେ ହୋଇ ଋତୁସ୍ନାତା ।
ସୁନ୍ଦରୀ ତ ଅଟନ୍ତି ସେ ରମଣୀଙ୍କ ବର
ଉନ୍ନତ ବର୍ତ୍ତୁଳ ଦିଶୁଥିଲା ପୟୋଧର ।
ଫୁଟି ଉଠୁଥିଲା ଅଙ୍ଗେ ନବ ଯଉବନ
ସୁଶ୍ରୋଣୀ ନିତମ୍ବ ବିମ୍ବ ଅତି ଶୋଭମାନ ।
ପରିଧାନ କରିଥିଲେ କ୍ଷୀନ ଦିବ୍ୟବାସ
ଭରିଥିଲେ ଅଙ୍ଗେ ରତ୍ନଭୂଷଣ ବିଶେଷ ।
କସ୍ତୁରୀ ଚନ୍ଦନ ବିନ୍ଦୁ ଲଲାଟ ପଟରେ
ଶୋଭା ପାଉଥିଲା ରକ୍ତ ସିନ୍ଦୂର ପାଶରେ ।
ବାୟୁରେ ଚଳିତ ହୋଇ କଟିରୁ ବସନ
ଆଡ଼ ହୋଇକରି ଯାଉଥିଲା ପୁନଃପୁନଃ ।
ସସ୍ମିତ ଈଷତ ନମ୍ର ଚନ୍ଦ୍ରମା ବଦନ
କଟାକ୍ଷ ଦର୍ଶନେ ହୋଇଥିଲା ଶୋଭାବନ ।
ହରଷରେ ଆପଣାର ଗୃହକୁ ସୁନ୍ଦରୀ
ଯିବାବେଳେ ଚନ୍ଦ୍ରଙ୍କୁ ସେ ଆଗେ ଦେଖିକରି ।
ଖଣ୍ଡେଦୂର ଆଡ଼ହୋଇ ଗଲେ ଧୀରେ ଧୀରେ
ତାଙ୍କରୂପ ଦେଖି ଚନ୍ଦ୍ର ମନମଥ ଶରେ ।
ପୀଡ଼ିତ ହୋଇଣ ଲଜ୍ଜା ପରିତ୍ୟାଗ କଲେ
ଆତୁର ହୋଇ ବାଟ ଓଗାଳି କହିଲେ ।
ବୋଇଲେ ମୁହୂର୍ତ୍ତେ ମାତ୍ର ରହ ଗୋ ରମଣୀ
ପ୍ରିୟେ ମୋହଠାରୁ କଥା ପଦେମାତ୍ର ଶୁଣି ।
ତୁମ୍ଭଙ୍କୁ ଦେଖିଣ ମୋର କାମଶରେ ମନ
ଧୈର୍ଯ୍ୟରୁ ଛାଡ଼ି ହେଉଅଛି ଛନ୍ନଛନ୍ନ ।
କପଟରେ ବୃହସ୍ପତି ପାଇଲେ ତୁମ୍ଭଙ୍କୁ
ଏକଥା ନିଶ୍ଚୟ ବୋଲି ଆସୁଛି ମନକୁ ।
କିନ୍ତୁ ଅଟେ ବିଡ଼ମ୍ବନ ଧାତାଙ୍କର ଏହା
ତପସ୍ୱୀ ସଙ୍ଗରେ ଯୋଗକଲେ ଯା ସୁଦେହା ।
ଚତୁର ପୁରୁଷ ପାଶେ ଚତୁରୀ କାମିନୀ
ସନ୍ତୁଷ୍ଟ ହୁଅଇ ପ୍ରିୟା ଅଙ୍ଗସଙ୍ଗ ଘେନି ।
ତୁମ୍ଭେ ତ କନ୍ଦର୍ପ ଶରେ ହେଉଛ ଆକୁଳ
ଅଟନ୍ତି ତୁମ୍ଭର ପତି ବୃଦ୍ଧ ତପଃଶୀଳ ।
ଦିବ୍ୟକୁନ୍ଦନ ସୁନ୍ଦର ନବ ଯଉବନ
ଅରଣ୍ୟ ମାଳତୀ ପରି ହେଉଅଛି ଶୀର୍ଣ୍ଣ ।
ତୁମ୍ଭଙ୍କ ସକଳ କାମଶାସ୍ତ୍ର ଅଛି ଜଣା
ମାତ୍ର ପତିଙ୍କର ତହିଁ ବୁଦ୍ଧି ହେବ ଊଣା ।
କାମୁକୀ କାମିନୀ ଯୁବା ପୁରୁଷ ସଙ୍ଗକୁ
ଇଚ୍ଛା କରୁଥାଏ ସବୁବେଳେ ପାଇବାକୁ ।

କୁମର ମନ ଅଟଇ କାମରେ ଆସକ୍ତ
ଏତ ହୋଇଛନ୍ତି ସଦା ତପସ୍ୟାରେ ରତ ।
ତାଙ୍କ ଯୋଗେ କବା ସୁଖ ହୋଇବ କୁମର
ଅସନ୍ତୋଷ ହେଉଥିବ ସିନା ବାରମ୍ବାର ।
ମୋର ବୋଲ କର ତାଙ୍କ ସଙ୍ଗ ଛାଡ଼ ଏବେ
ଯଉବନ ସୁଖଭୋଗ ଇଚ୍ଛା ଅଛି ଯେବେ ।
ଦେଖ ଏ ବସନ୍ତ କାଳ ଅତି ମନୋରମ
ମାରସ ମନରେ ଉଦେ ହେଉଅଛି କାମ ।
ଚମ୍ପକ କୁସୁମ ବନେ ଯେମନ୍ତ ମୋତେ
ଆନନ୍ଦେ ବହାର କର ବୁଲଣ ସନ୍ତତେ ।
ନର୍ଜନ ସୁରଭି ରମ୍ୟ ନିକୁଞ୍ଜ ଟନ୍ତ୍ରରେ
ଆଗୋ ରସବନ୍ତ କ୍ରୀଡ଼ାକର-ମୋ ସଙ୍ଗରେ ।
ନର୍ମଦା ସୁବର୍ଣ୍ଣରେଖା ନଦୀନନ୍ଦେ ବସି
ମଳୟ ମରୁତ ସେବା କର ସ୍ବଚ୍ଛନ୍ଦବାସୀ ।
ଏମନ୍ତେ ବୋଲଣ ଚନ୍ଦ୍ର ତାରକା ପାଦରେ
ପଡ଼ଣ କହିଲେ ତାଙ୍କୁ କରଯୁ ବାକ୍ୟରେ ।
ତା ଦେଖି ତାରକା ଦେବୀ ହୋଇଲେ କାତର
ଶୁଖିଗଲା କଣ୍ଠ ଓଷ୍ଠ ତାଳୁ ତାହାଙ୍କର ।
କ୍ରୋଧଭରେ ନେତ୍ର ରଙ୍ଗ କରି ଅନାଇଲେ
ଧିକରେ ଚନ୍ଦ୍ରମା ତୋତେ ବୋଲଣ ବୋଇଲେ
ଆବର ବୋଇଲେ ତୁହି ଅଟୁ ମୂଢ଼ଜନ
ଦୁଷ୍କୃତ ଫଳରୁ ଜାତ ହୋଇଲୁ କୁମର ।
ରାଜସୂୟ ଯାଗ କରି ଧର୍ମବନ୍ତ ତୁହି
ବୋଲାଉଅଛ ତୋତେ କି ଲାଜ ଲାଗୁନାହିଁ ।
ବ୍ରାହ୍ମଣ କାମିନୀ ଠାରେ ହେଉଛୁ ଆସକ୍ତ
ଏ ଯେଣୁ ତୋହର ସବୁ ପୁଣ୍ୟ ହେବ ବ୍ୟର୍ଥ ।
କରିବୁ ଯେବେ ମୋହର ସତୀପଣ ନଷ୍ଟ
ରାଜଯକ୍ଷ୍ମା ରୋଗ ଯେଣୁ ଭୋଗିବୁ ତୁ କଷ୍ଟ ।
ଅତ୍ୟନ୍ତ ପାତକ ଯୋଗେ ହୁଅଇ ପତନ
ଏ କଥା ଅଟଇ ଶ୍ରୁତି ଶାସ୍ତ୍ରର ପ୍ରମାଣ ।
ହୁସ୍ତଙ୍କର ବର୍ପଦର ଶ୍ରୀରାଧିକା ପତି
ନାଶିବେ ତୋହର ଗର୍ବ ଆରେ ଦୁଷ୍ଟମତି ।
ବିଶେଷରେ ତୋର ଗୁରୁପତ୍ନୀ ଅଟେ ମୁହିଁ
ଧର୍ମକୁ ବିଚାର ବେଗେ ଯାଅ ଆଡ଼ ହୋଇ ।
ଏମନ୍ତ ବୋଲି ତାରକା ନେତ୍ରେ ଅଶ୍ରୁ ରଖି
ଅଷ୍ଟଦିଗପାଳଙ୍କୁ ସେ କରାଇଲେ ସାକ୍ଷୀ ।

ଆବର ପବନ ମହୀ ଦିନ ସନ୍ଧ୍ୟା ନିଶା
ଏମାନଙ୍କୁ ମଧ୍ୟ ସାକ୍ଷୀକଲେ ବିପ୍ର ଯୋଷା ।
ତାହାଙ୍କର ଏ ଶପତ ଦେଖି ନିଶାକର
ପଦେହେଲେ ସେ କାଳରେ ନ ଦେଇ ଉତ୍ତର
ବଳାତ୍କାରେ ବେଗେ ହସ୍ତଧରି ଘେନିଗଲେ
ରଥରେ ବସାଇ ନିଜ ପୁରକୁ ଚଳିଲେ ।
ସେ ଅନ୍ତେ ତାହାଙ୍କୁ ଘେନି ନାନାରଙ୍ଗେ କେଳି
କଲେ ବନ ଉପବନ ପ୍ରଦେଶରେ ମିଳି ।
ପୁଷ୍କର ସରିତ ତଟରେ ପୁଷ୍ପିତ କାନନେ
ସୁଗନ୍ଧ ଶୀତଳ ରମ୍ୟ ମନୋହର ବନେ ।
କାମ ଉପଭୋଗ କରି ସେ ନବ ଦମ୍ପତି
କ୍ଷଣପରି ଶେଷ କଲେ କେତେ ଦିନରାତି ।
ଏହିରୂପେ ଶତେବର୍ଷ ଅତୀତ ହୋଇଲା
ସେ କାଳେ ଚନ୍ଦ୍ରଙ୍କ ମନେ ଭୟ ଜାତ ହେଲା
କାଳେ ବୃହସ୍ପତି ପରାଭବ ଦେବେ ବୋଲି
ଚିନ୍ତାରେ ସେ ସ୍ବସ୍ଥାନରୁ ନ ପାରିଲେ ଚଳି ।
ସେ ଅନ୍ତେ ବିଚାର କରି ଅସୁରଙ୍କ ପାଶେ
ଶରଣ ପଶିଲେ ଦୈତ୍ୟ ଗୁରୁଙ୍କ ଆଦେଶେ ।
ଅଭୟ ଦେଇଣ ତାଙ୍କୁ ଭୃଗୁ ଋଷିସୁତ
କହିଲେ ଦୈତ୍ୟଙ୍କ ଆଗେ ସକଳ ବୃତ୍ତାନ୍ତ ।
ତାହା ଶୁଣି ନିଶାଚରେ ହସିଣ ଉଚ୍ଚରେ
ଚନ୍ଦ୍ରଙ୍କୁ ବୋଇଲେ ଭୟ ନ କର ମନରେ ।
ସତୀଙ୍କର ସତୀପଣ କରିବାରୁ ନାଶ
କଳଙ୍କ ହୋଇଲା ଚନ୍ଦ୍ର ମଣ୍ଡଳରେ ଦୃଶ୍ୟ ।
ନିଷ୍କଳଙ୍କ ହୋଇଥିଲେ ସେହିଦିନ ଯାଏ
ପାପ ପ୍ରବେଶିଲା ଶୁଦ୍ଧ ଶଶାଙ୍କ ହୃଦୟେ
ବେଦବିଦ ଶୁକ୍ରମୁନି ଦୈତ୍ୟକୁଳ ଗୁରୁ
ଚନ୍ଦ୍ରଙ୍କୁ ବୋଇଲେ ବତ୍ସ ଭୟ କାହିଁ ପାଉ ।
ଜାଣି ଜାଣି କଲ ତୁମ୍ଭେ ଅନୁଚିତ କରମ
ସେ ଯେଣୁ କୁମର ଛାଡ଼ ଯାଉଅଛି ଧର୍ମ ।
ରାଜସୂୟ ଯାଗକରି ଯଶ ଅର୍ଜିଥିଲ
ନିର୍ମଳ କୁଳରେ ଏବେ କଳଙ୍କ ଲେପିଲ ।
ଧାମିକ ଅଟନ୍ତି ଯେହୁଁ ଦ୍ୱିଜ ବୃହସ୍ପତି
ହରିଲ ମୂରୁଖ ପଣେ ତାହାଙ୍କ ଯୁବତୀ ।
ସୁରଗୁରୁ ଉଭୟ ଗୁଣ ଗୁରୁଙ୍କର ଦୋଷ
ନିଶ୍ଚିତ ସେ ଦେବ ନାଶି କରିବ ପ୍ରକାଶ ।

ବିଦଗ୍ଧଠାରୁ ବଳ ଶତ୍ରୁ ମୋର ନାହିଁ
ତଥାପି ତାହାଙ୍କ ଗୁଣ ନେଉଛନ୍ତି ମୂର୍ଖ ।
ଯେଉଁଠାରେ ଧର୍ମବନ୍ତ ଲୋକଙ୍କର ବାସ
ସନାତନ ଧର୍ମ ତହିଁ ରହଇ ଅବଶ୍ୟ ।
ଧର୍ମଥିବା ସ୍ଥାନରେଟି ଶ୍ରୀକୃଷ୍ଣ ବସନ୍ତ
ଶ୍ରୀକୃଷ୍ଣଙ୍କ ଯୋଗେ ଜୟ ହୁଏ ସର୍ବପଟ ।
ବିଦ୍ୱେଷୀ ନାସ୍ତିକ ଶଠ କ୍ଷମ୍ପ୍ର ଯେଉଁ ଲୋକ
ଅଳ୍ପକେ ବିନଷ୍ଟ ହୋଇ ଭୋଗେ କୁମ୍ଭୀପାକ ।
ଧାର୍ମିକ ଲୋକଙ୍କୁ ଧର୍ମ ରକ୍ଷାକରେ ନିତ
କଦାପି ତାହାଙ୍କୁ ବାଧା ନ ହୁଏ ବିପତ୍ତି ।
ଭୂକଷ୍ଟା ବ୍ରାହ୍ମଣ ସ୍ତ୍ରୀଙ୍କ ଉପଭୋଗ କଲେ
ବ୍ରହ୍ମହତ୍ୟା ପାପ ଆସି ଗ୍ରାସକରେ ତକେ ।
ବିଶେଷରେ ପତିବ୍ରତା ଅଟେ ଯେ ବ୍ରାହ୍ମଣୀ
ତାହାଙ୍କୁ ସମ୍ଭୋଗ କଲେ ବଳାତ୍କାରେ ଆଣି ।
ଶତ ବ୍ରହ୍ମହତ୍ୟା ପାପ ହୁଅଇ ନିଶ୍ଚୟ
ସେ ଲୋକ ପୌରୁଷ ଧର୍ମ ଯଶ ପାଏ କ୍ଷୟ ।
ଏବେ ମୋର ବୋଲକର ଛାଡ଼ ବ୍ରାହ୍ମଣୀଙ୍କୁ
ଧର୍ମ କରିବାରେ ତୁମ୍ଭେ ଦିଅ ହେ ମନକୁ ।
ନାନା ଉପାୟରେ ବ୍ରହ୍ମହତ୍ୟାକୁ ତୁମ୍ଭର
ଦୂର କରାଇବି ମୁହିଁ ସନ୍ଦେହ ନ କର ।
ଶରଣାଗତ ଲୋକଙ୍କୁ ରକ୍ଷା ଯେ ନ କରେ
ତାହାକୁ ଛାଡ଼ିଣ ଧର୍ମ ପଳାଏ ସତ୍ୱରେ ।
ତୁମ୍ଭେ ତ ମୋହର ପାଶେ ପଶିଲ ଶରଣ
ନିଶ୍ଚୟ ତୁମ୍ଭଙ୍କୁ ରକ୍ଷାକରିବି ମୁଁ ଜାଣ ।
ଏହିରୂପେ କହି ତାଙ୍କୁ ଭୃଗୁଙ୍କ ନନ୍ଦନ
କରାଇଲେ ନେଇ ମନ୍ଦାକିନୀ ଜଳେ ସ୍ନାନ ।
ତବେ ସ୍ନାନକରି ପୁଣି ଶୁଚିମନ୍ତ ହେଲେ
ଚନ୍ଦ୍ରଙ୍କ ହସ୍ତରେ ବିଷ୍ଣୁପୂଜା କରାଇଲେ ।
ବିଷ୍ଣୁଙ୍କର ନୈବେଦ୍ୟ ପାଦ ଧୌତ ଜଳ
ଗଙ୍ଗୋଦକ ସଙ୍ଗତରେ କରାଇଲେ ଠୁଳ ।
ସେବନ କରାଇ ତାହା ବୋଇଲେ ହେ ତାତ
ବଦେ ଶ୍ଲୋକରେ ତୁମ୍ଭ ହୃଦ ଆଜ ଖ୍ୟାତ ।
ଯେବେ ମୋର ତପଫଳ ସତ୍ୟ ହୋଇଥିବ
ତେବେ ତୁମ୍ଭେ ପାତକରୁ ମୁକତି ପାଇବ ।
ସନ୍ଧ୍ୟା ବିଷ୍ଣୁସେବା ପୂଜାହୀନ ଯେ ବ୍ରାହ୍ମଣ
ତାହାଠାରୁ ଯାଉ ତୁମ୍ଭ ପାପଫଳମାନ ।

ଆପଣାର ଭାର୍ଯ୍ୟାକୁ ବଞ୍ଚିତ କରାଇ
ପରସ୍ତ୍ରୀଠାରେ ଯେବା ରତ ହୋଇଥାଇ ।
ସେହି ଲୋକ ଚନ୍ଦ୍ରକୃତ ପାପଫଳ ପାଇ
ଯୁଗେ ଯୁଗେ କୁମ୍ଭୀପାକେ ପଡ଼ି ରହିଥାଇ ।
ଦେବତା ପୂଜା ନ କରି ଭୁଞ୍ଜଇ ଯେ ଅନ୍ନ
ଚନ୍ଦ୍ର ପାପରେ ପାତକୀ ହେଉ ସେହି ଜନ ।
ଯେଉଁ ସ୍ତ୍ରୀ ନିଜପତି ସଙ୍ଗମକୁ ଛାଡ଼ି
ଲୋଭେ ପରପୁରୁଷକୁ ଖଳବାକ୍ୟେ ପଡ଼ି ।
ଆକ୍ରମଣ କରନ୍ତି ତାକୁ ଚନ୍ଦ୍ରକୃତ ପାପ
ନରକରେ ଦାରୁଣ ଭୋଗ କରୁ ସେ ସନ୍ତାପ ।
ମାତାପିତା ଭାର୍ଯ୍ୟାଙ୍କୁ ନ ପାଳେ ଯେ ଲୋକ
ଚନ୍ଦ୍ରଙ୍କ ପାପରେ ଭୋଗକରୁ ସେ ନରକ ।
ଦିବସରେ ସ୍ତ୍ରୀସଙ୍ଗ କରେ ଯେ ଦୁର୍ମତି
ଆବର କରେ ଗୁର୍ବିଣୀ ରଜସ୍ୱଳା ରତି ।
ଚନ୍ଦ୍ରକୃତ ପାପରେ ସେ କାଳସୂତ୍ରେ ପଡ଼ି
ବହୁଯୁଗ ରହୁ ତହିଁ ଘୋର ଦୁଃଖେ ସଢ଼ି ।
ପର କାମିନୀର ମୁଖ ସ୍ତନ ନାଭି ଜନ୍ତୁ
ନିରୀକ୍ଷଣ କରଇ ଯେ କାମେ ହୋଇ ଖାନ୍ତୁ ।
ଚନ୍ଦ୍ରକୃତ କଳଙ୍କରେ ଲିପ୍ତ ହୋଇକରି
ନରକରେ ପଡ଼ିଣ ସେ ଦୁଃଖେ ହେଉ ଘାରି ।
ଶିବରାତ୍ରି ଏକାଦଶୀ କୃଷ୍ଣଜନ୍ମ ଦିନେ
ଉପବାସ ନ କରନ୍ତି ଯେଉଁ ମୂର୍ଖଜନେ ।
ଚନ୍ଦ୍ରଙ୍କ ପାପରାଶି ତାଙ୍କଠାରୁ ଯାଉ
ଆମ୍ଭର ବଚନ କେବେ ଅନ୍ୟଥା ନ ହେଉ ।
ସୂର୍ଯ୍ୟ ଥିବା ସମୟରେ ଅନ୍ନ ଦୁଇଥର
ଭୋଜନ କରଇ ଯେଉଁ ଜ୍ଞାନହୀନ ନର ।
ଚନ୍ଦ୍ରକୃତ ମହାପାପ ତାହାଠାରେ ରହି
ଅନ୍ତଃକାଳେ ହେଉ ଅନ୍ଧକୂପରେ ଥିବଇ ।
ଅଶ୍ୱତ୍ଥବୃକ୍ଷକୁ ଶସ୍ତ୍ରେ ହାଣଇ ଯେ ଲୋକ
ଯେ ଅବା ଅଟଇ ବିଷ୍ଣୁ ବୈଷ୍ଣବ ନିନ୍ଦକ ।
ଚନ୍ଦ୍ରଙ୍କ ପାପରେ ସେହି ହେଉ ହତଶିରୀ
ନିଅନ୍ତୁ ତାହାକୁ ଯମଦୂତେ ବାନ୍ଧିକରି ।
ତଇଳ ଲବଣ ମାଂସ ଲାକ୍ଷା ଲୌହ କିଣି
ବିକ୍ରୟ କରେ ଯେ ଦ୍ୱିଜ ଦୋଷାଦୋଷ ଜାଣି
ଚନ୍ଦ୍ରକୃତ ପାପରେ ସେ କ୍ଷୁରଧାର କୁଣ୍ଡେ
ପଡ଼ି ଯମଦୂତଙ୍କର ଘାତ ସହୁ ମୁଣ୍ଡେ ।

ଯେଉଁ ଲୋକ ଦେବ ଦ୍ୱିଜ ଦ୍ରବ୍ୟ ହରଇ ଏ
ଅଥବା ମନୁଷ୍ୟ ବଧ କରେ ଧନ ମୋହେ ।
ଏମନ୍ତ ଲୋକଙ୍କୁ ଚନ୍ଦ୍ରକୃତ ପାପରାଶି
ଚନ୍ଦ୍ରକୁ ବହୁ ପରସ୍ୱେ ଦେଇ ବେଗେ ଗ୍ରାସି ।
ଆଜଠାରୁ ପାପଶୂନ୍ୟ ହେଇ ନିଶାକର
ଯେବେ ସତ୍ୟ ଅଟେ ହରୁ ଧର୍ମ କର୍ମ ମୋର ।
ଏରୂପେ ଚନ୍ଦ୍ରଙ୍କ ଆଗେ କହି ମୁନିଗଣ
ତାରକା ମୁଖକୁ ଚାହିଁ କହିଲେ ଏ ହିତ ।
ବୋଇଲେ ଗୋ ପତିବ୍ରତେ ଆମ୍ଭ ବଚନରେ
ଆପଣା ପତି ପାଶକୁ ଯାଅ ହରଷରେ ।
ତୁମ୍ଭେ ଅଟ ପତିବ୍ରତା ସତୀ ଶିରୋମଣି
ପ୍ରାୟଶ୍ଚିତ୍ତ ବିନା ଶୁଦ୍ଧ ହୋଇବ ସେ ଯେଣି ।
ପର ପୁରୁଷରେ ମନ ନ ଥାଏ ଯାହାର
ବଳାତ୍କାରେ ତାକୁ ଭୋଗ କରେ ଯେବେ ଜାର
ତଥିରେ ସେ ବ୍ୟଭିଚାର ଦୋଷ ନ ହୁଅଇ
ଏମନ୍ତ ଧର୍ମଶାସ୍ତ୍ରରେ ବିଚାର ଅଟଇ ।
ଏହିରୂପେ ସେ ଦୁହିଙ୍କୁ କହି ମୁନିମାନ
ଶୁଭ ଆଶୀର୍ବାଦ କରି ହୋଇଲେକ ଭିନ ।
ବୋଲେ ବନ କ୍ଷେତ୍ରବାସୀ ଆହେ ସାଧୁଜନେ
ବ୍ରହ୍ମବୈବର୍ତ୍ତ ପୁରାଣ ଶୁଣ ଶ୍ରୋତ୍ରମନେ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଚନ୍ଦ୍ର ଓ ତାରମାନଙ୍କର ଉପାଖ୍ୟାନ ବର୍ଣ୍ଣନେ ନାମ ଏକଷଷ୍ଟିତମ ଅଧ୍ୟାୟଃ ।**

—o—

## ଦ୍ୱିଷଷ୍ଟିତମ ଅଧ୍ୟାୟ

### ବୃହସ୍ପତି ଓ ଇନ୍ଦ୍ରଙ୍କର ମନ୍ତ୍ରଣା ଓ ଧାତାଙ୍କଠାରୁ ବୃହସ୍ପତିଙ୍କ ଜନ୍ମ ବୃତ୍ତାନ୍ତ ଶ୍ରବଣ କରିବା

ପୁଚ୍ଛିଲେ ନାରଦ ଶୁଣ ଆହେ ମୁନିବର
ଚନ୍ଦ୍ରତ ହରିଲେ ଭାର୍ଯ୍ୟା ବୃହସ୍ପତିଙ୍କର ।
ବୃହସ୍ପତି ପୁଣି ତାଙ୍କୁ ପାଇଲେ କିପରି
କହ ଏ ବୃତ୍ତାନ୍ତ ମୋ ଆଗରେ ଭଲକରି ।
ନାରାୟଣ ବୋଇଲେ ହେ ଶୁଣ ମହାମତି
ଭାରିଯା ନ ଆସିବାର ଜାଣି ବୃହସ୍ପତି ।
ଖୋଜିବା ପାଇଁକି ଶିଷ୍ୟ ଜଣେ ପଠାଇଲେ
[illegible] ପାଶରେ ଶିଷ୍ୟ ଯାଇଣ ମିଳିଲେ ।
ଲୋକମୁଖୁଁ ଶୁଣି ଗୁରୁପତ୍ନୀଙ୍କ ବୃତ୍ତାନ୍ତ
କାନ୍ଦଣ ଲେଉଟି ଗୃହେ ହେଲେ ଉପସ୍ଥିତ ।
ତାରକା ହରଣ କଥା କହିଲେ ଗୁରୁଙ୍କୁ
ତା ଶୁଣି ମୁହୂର୍ତ୍ତେ ଗୁରୁ ହାରିଣ ଜ୍ଞାନକୁ ।
ମହୀପରେ ପଡ଼ି ପୁଣି ଚେତନା ପାଇଲେ
ଶିଷ୍ୟ ସହିତରେ ବସି ରୋଦନ ସେ କଲେ ।
ସେ ଅନ୍ତରେ ଲଜ୍ଜା ଶୋକେ ବ୍ୟାକୁଳିତ ହୋଇ
ଶିଷ୍ୟଙ୍କୁ କହିଲେ ଶାସ୍ତ୍ରତତ୍ତ୍ୱ ସମଝାଇ ।
ବୋଇଲେ ହେ ଶିଷ୍ୟଗଣ ପୂର୍ବକାଳେ ମୁହିଁ
କାହାଠାରୁ ଶାପ ପାଇଥିଲି ଜଣା ନାହିଁ ।
ନୋହିଲେ କାହିଁକି ମୋର କଷ୍ଟ ହେଲା ଜାତ
ଅଧାର୍ମିକ ଲୋକ କଷ୍ଟେ ହୁଅଇ ଦୁଷିତ ।
ଯାହା ଘରେ ନାହିଁ ସତୀ ପତିବ୍ରତା ପ୍ରିୟା
ଅଟଇ ତା ଘର ଘୋର ଅରଣ୍ୟ ଯେପରି ।
ଗୁଣବତୀ ଭାର୍ଯ୍ୟାକୁ ନେହୁନେବ ଯାର
ଅରଣ୍ୟକୁ ଯିବା ଭଲ ଅଟଇ ତାହାର ।
ସୁବର୍ଣ୍ଣ ରତ୍ନରେ ଗୃହ ହେଲେହେଁ ସମ୍ପୂର୍ଣ୍ଣ
ପ୍ରିୟାହୀନ ହେଲେ ତାହା ଅରଣ୍ୟ ସମାନ ।
ଭାର୍ଯ୍ୟାହୀନ ଲୋକ ଦେବ ପିତୃଙ୍କ କାର୍ଯ୍ୟକୁ
ଯୋଗ୍ୟ ନ ହୁଅଇ ଜାଣ କହିଲି ତୁମ୍ଭଙ୍କୁ ।
ଯେଉଁରୂପେ ଅନଳ ହେଲେ ଦାହଶକ୍ତି ହୀନ
ଚନ୍ଦ୍ର ସୂର୍ଯ୍ୟ ହେଲେ ନିଜ ଶୋଭା ପ୍ରଭାଶୂନ୍ୟ
ଆଉର ସୁବର୍ଣ୍ଣକାର ସ୍ୱର୍ଣ୍ଣହୀନ ହେଲେ
ନିଜ ନିଜ କାର୍ଯ୍ୟକରି ନ ପାରନ୍ତି ଭଲେ ।

ଯେରୂପେ ବ୍ରାହ୍ମଣୀ ଶୂନ୍ୟ ହୋଇଲେ ଗୃହସ୍ଥ
ତେଉଁ କାର୍ଯ୍ୟ କରିବ କୁ ନୁହଇ ସମର୍ଥ ।
ଗୃହଯା ମୂଳ ଅଟଇ ସକଳ ଧରମ
ଭାର୍ଯ୍ୟାହୀନ ଉପାର୍ଜିତ ହୁଅଇନି ଧର୍ମ ।
ଭାର୍ଯ୍ୟା ଅଟେ ସର୍ବ ସୁଖ ସମ୍ପଦର ହେତୁ
କାମରେ ସାଗରର ସନ୍ତରଣ ସେତୁ ।
ସକଳ ରତ୍ନରେ ସାର ଅଟେ ସ୍ତ୍ରୀରତ୍ନ
ପାଳନା କରିବ ତାକୁ କରି ଅତିଯତ୍ନ ।
ଜଳହୀନା ଯେସ୍ନେ ନଦୀ ଶୋଭା ନ ଲଭଇ
ବ୍ରାହ୍ମଣୀ ନ ଥିଲେ ଗୃହ ତେମନ୍ତ ଅଶୀଳ ।
ଏରୂପେ ଶିଷ୍ୟଙ୍କ ଆଗେ କହି ବୃହସ୍ପତି
ଆପଣା ମନ୍ଦିରେ ଯାଇ ମିଳିଲେ ଝଟତି ।
ବାହାରକୁ ଆସି ପୁଣି କରିଣ ବିଳାପ
ବୋଲନ୍ତେ ମୋହର ସବୁ ସୁଖ ହେଲା ଲୋପ ।
ବାଳୁକ ପରାଯେ ପୁନଃପୁନଃ ଶୋକ କରି
ଗୃହକୁ ଯାଇଣ ପୁଣି ଆସନ୍ତି ବାହାର ।
ଘଡ଼ିଏ ଅନ୍ତରେ ମୂର୍ଚ୍ଛା ଯାଇଣ ପଡ଼ନ୍ତେ
ପାଶରେ ଥିବା ବ୍ୟକ୍ତି ଏ ଚେତା କରାନ୍ତେ ।
ଆଶ୍ୱସ୍ତ ହୋଇ ଶିଷ୍ୟଙ୍କୁ ଘେନି ସଙ୍ଗତରେ
ପ୍ରବେଶ ହୋଇଲେ ଯାଇ ବାସବଙ୍କ ପୁରେ ।
ଗୁରୁଙ୍କୁ ଦେଖିଣ ଇନ୍ଦ୍ର ଆସନୁ ଉଠିଲେ
ପାଦ୍ୟ ଅର୍ଘ୍ୟ ଦେଇ ବିଧିମତେ ପୂଜା କଲେ ।
ଦୁଃଖିତ ହୋଇଣ ଗୁରୁ ସକଳ ବୃତ୍ତାନ୍ତ
ଇନ୍ଦ୍ରଙ୍କ ଆଗରେ ବସି କରନ୍ତେ ବ୍ୟକତ ।
କ୍ରୋଧଭରେ ପୁରନ୍ଦର ନେତ୍ର ରଙ୍ଗକରି
ଅନାଇଲେ ଚାରିଆଡ଼େ ଦହିଦେଲା ପରି ।
ଗୁରୁଙ୍କ ମୁଖକୁ ଚାହିଁ କହିଲେ ବଚନ
ବୋଇଲେ ହେ ଦେବ ବୃଥା ନକର କାରୁଣ୍ୟ ।
ସହସ୍ର ସଂଖ୍ୟକ ଦୂତ ଅଛନ୍ତି ମୋହର
ସବୁଆଡ଼େ ଯାଇ ଏବେ ଖୋଜନ୍ତୁ ସତ୍ୱର ।
ପାପିଷ୍ଠ ଚଣ୍ଡାଳ ଚନ୍ଦ୍ର ଥିବ ଯେଉଁଠାରେ
ବେଗି ଆଣିଣ କହନ୍ତୁ ମୋହର ଆଗରେ ।
ସକଳ ଦେବଙ୍କୁ ଘେନି ଯାଇ ମୁଁ ସେଠାକୁ
କ୍ଷଣକରେ ଚୂର୍ଣ୍ଣ କରି ଦେବି ତା ଗର୍ବକୁ ।
ଚନ୍ଦ୍ରାଗ୍ରହ ଏବେ ତୁମ୍ଭେ ହୁଅ ଆଶ୍ୱାସିତ
ତୁମ୍ଭର ମଙ୍ଗଳ ମୁହିଁ କରିବି ନିଶ୍ଚିତ ।

ଏରୂପେ କହିଣ ଇନ୍ଦ୍ର ସହସ୍ର ଦୂତଙ୍କୁ
ପଠାଇଲେ ଗୁରୁଙ୍କର କାର୍ଯ୍ୟ କରିବାକୁ ।
ଆଜ୍ଞା ପରମାଣେ ଦୂତେ ବେଗେ ଚଳିଗଲେ
ବହୁତ ଦୁର୍ଗମ ସ୍ଥାନ ବୁଲିଣ ଖୋଜିଲେ ।
ବାହୁଡ଼ି ଆସି ବାସବ ଆଗେ ଯୋଡ଼ି କର
ବୋଇଲେ ଶୁଣିବା ହେଉ ସୁର ଅଧୀଶ୍ୱର ।
ଶୁକ୍ରମୁନିଙ୍କ ଭବନେ ସ୍ୱାନ୍ତ ହେଲା ଶଶି
ଅଛନ୍ତି ରଜନୀକର ତାରକାଙ୍କୁ ଧରି ।
ଏହା ଶୁଣି ପୁରନ୍ଦର ଚିନ୍ତିତ ହୋଇଲେ
ବୃହସ୍ପତିଙ୍କ ପାଶକୁ ଯାଇଣ କହିଲେ ।
ବୋଇଲେ ହେ ଦେବ ଚନ୍ଦ୍ର ପାଇ ମହାଶ୍ରିତ
ଶୁକ୍ର ମୁନିଙ୍କ ପାଶରେ ଯାଇ ରହିଛନ୍ତି ।
ଜିଣି ନ ପାରିବେ ଶୁକ୍ରମୁନିଙ୍କୁ ଆପଣ
ମୁଁ ମଧ୍ୟ ଦୈତ୍ୟଙ୍କୁ ଜିଣି ନ ପାରିବି ଜାଣ ।
ଏହିପରି ଆଲୋଚନା କରି ନିଶାକର
ଶୁକ୍ରଙ୍କ ଶରଣାଗତ ହେଲେ ମନେକର ।
ଗୋଟିଏ ଉପାୟ ଆମ୍ଭେ ଏଥିକୁ କରିବା
ବ୍ରହ୍ମାଙ୍କୁ ସଙ୍ଗରେ ଘେନି କୈଳାସକୁ ଯିବା ।
ଶିବଙ୍କ ଆଗରେ ସବୁ ଜଣାଇବା ବସି
ନିଶ୍ଚୟେ ଆମ୍ଭର କଷ୍ଟ ଦେବେ ସେ ବିନାଶି ।
ଏମନ୍ତ ବିଚାର କରି ଶଚୀଦେବୀ କାନ୍ତ
ଗୁରୁଙ୍କୁ ଘେନିଣ ବ୍ରହ୍ମ ଲୋକରେ ଉଭତ ।
ଉପସ୍ଥିତ ହୋଇ ସବୁ ବ୍ରହ୍ମାଙ୍କୁ କହିଲେ
ତାହା ଶୁଣି ପ୍ରଜାପତି ଅଳପ ହସିଲେ ।
ସେ ଅନ୍ତରେ ହିତ ତଥ୍ୟ ବଚନ ବିଶେଷି
କହିଲେ ସେ ଦୁହିଙ୍କର ଆଗେ ହୋଇ ତୋଷି
ବୋଇଲେ ପରଲୋକକୁ ଦିଅଇ ଯେ କ୍ଲେଶ
ଶ୍ରୀକୃଷ୍ଣ ତାହାକୁ କ୍ଲେଶ ଦିଅନ୍ତି ଅବଶ୍ୟ ।
ମୁଁ ଅଟଇ ତ୍ରୈଲୋକ୍ୟ ସୃଷ୍ଟି ବିଧାୟକ
ଆବର ଶ୍ରୀ ନାରାୟଣ ଅଟନ୍ତି ପାଳକ ।
କାଳାଗ୍ନି ରୁଦ୍ର ଅଟନ୍ତି ସଂହାର କରତା
ଶଙ୍କର ଅଟନ୍ତି ସର୍ବ ଶୁଭଫଳ ଦାତା ।
ସର୍ବସାକ୍ଷୀ ହୋଇଛନ୍ତି ଧର୍ମ ସନାତନ
ବିଜୟୀ ଶ୍ରୀକୃଷ୍ଣଭକ୍ତ ସର୍ବ ଦେବଗଣ ।
ବୃହସ୍ପତି ଉତଥ୍ୟ ଯେ ସମ୍ବର୍ତ୍ତ ଏ ତିନି
ଅଙ୍ଗିରାଙ୍କ ପ୍ରିୟ ପୁତ୍ର ବେଦତତ୍ତ୍ୱଜ୍ଞାନୀ ।

ଧର୍ମଋଷିଙ୍କୁ ଗୁରୁ କରୁ ନ ଦେବାରୁ ସେହି
ଶ୍ରୀକୃଷ୍ଣଙ୍କୁ ଧ୍ୟାନ କଲେ ତପୋବନେ ରହି ।
ଆବର ଉତଥ୍ୟଙ୍କର ପ୍ରିୟ ଭାର୍ଯାଙ୍କୁ
ଭ୍ରାତୃଜାୟା ବୋଲି ଜାଣି ହରିଲେ ତାହାଙ୍କୁ ।
ସେହି ପାପଫଳ ଏବେ ହେଲା ଉପସ୍ଥିତ
ଏଥିରେ ଶୋକ କରିବା ନୁହଇ ଉଚିତ ।
ଭ୍ରାତୃଜାୟା ଅପହାରୀ ଅଟଇ ଯେ ଲୋକ ।
ହୁଅଇ ତାହାର ମାତୃହରଣ ପାତକ ।
ସେହି ପାପ ବ୍ରହ୍ମହତ୍ୟା ସମାନ ଅଟଇ
ତାହାହେଲେ କୁମ୍ଭୀପାକ ନର୍କ ଭୋଗ ହୋଇ ।
ସେ ଅନ୍ତେ କୋଟିଏ ଜନ୍ମେ ଗୃଧ୍ର ପକ୍ଷୀ ହୁଏ
କୁକୁର ହୁଅଇ ପୁଣି ଶତଜନ୍ମ ଯାଏ ।
ବଳାତ୍କାରେ ସ୍ତ୍ରୀଭଗ ହରଣ ଯେ କରେ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ପଡ଼େ ନରକରେ ।
ପୂର୍ବକୃତ ଶୁଭାଶୁଭ କର୍ମଫଳ ଯେତେ
ଭୋଗ ନ କରିଲେ କ୍ଷୟ ନୁହେ କଦାଚିତେ ।
ସକଳ ଲୋକର ଗୁରୁ ପ୍ରଭୁ ଉମାପତି
ତାହାଙ୍କର ନିଜ ଗୁରୁପୁତ୍ର ବୃହସ୍ପତି ।
ଏବେ ସଦାଶିବଙ୍କର ସମୀପକୁ ଯାଇ
କହନ୍ତୁ ଆମୂଳ କରି ସମସ୍ତ ବୁଝାଇ ।
ଯାନ ବାହନ ସଙ୍ଗରେ ଘେନି ସୁରଭ୍ରାତ
ରହନ୍ତୁ ନର୍ମଦା ତଟେ ହୋଇଣ ମଧ୍ୟସ୍ଥ ।
ଅଳ୍ପକ୍ଷଣ ପରେ ମୁହିଁ ଯିବି ସେହିଠାକୁ
ପୁତ୍ର ଭୁଲେ ଯାନ୍ତେ ଗୁରୁ ଶିବଙ୍କ ପାଶକୁ ।
ବାସବ ବୋଇଲେ ତୁମ୍ଭ ପୁତ୍ର ତ ଅଙ୍ଗିର
ତାହାଙ୍କର ଜ୍ୟେଷ୍ଠପୁତ୍ର ବୃହସ୍ପତି ପର ।
କରୂପେ ସେ ଗୁରୁସୁତ ହେଲେ ଶମ୍ଭୁଙ୍କର
ତୁମ୍ଭଠାରୁ ବଳି ଜ୍ଞାନୀ ଯେ ପ୍ରଭୁ ଶଙ୍କର ।
ବୃହସ୍ପତି ପିତାଙ୍କର କରୂପେ ସେ ଶିଷ୍ୟ
ବୋଇଲେ ଏ କଥା କରି ମୋ ଆଗେ ପ୍ରକାଶ ।
ବ୍ରହ୍ମା ବୋଇଲେ ଯେ ତାହା ଅତ୍ୟନ୍ତ ଗୁପତ
ତଥାପି ତୁମ୍ଭ ଆଗରେ କରିବା ବ୍ୟକତ ।
ପୂର୍ବକାଳେ ଅଙ୍ଗିରଙ୍କ ଭାର୍ଯ୍ୟା ସୁନ୍ଦରୀ
ମୃତବତ୍ସା ହେଲେ ପୂର୍ବକର୍ମ ଅନୁସରି ।
ସେ ସକାଶୁ ମୋହଠାରୁ ଉପଦେଶ ପାଇ
ପୁଂସବନ ବ୍ରତ ଆଚରଣ କଲେ ଯାଇ ।

ସନତ୍କୁମାର ମୁନି ହେଲେ ପୁରୋହିତ
ବରଷକଠାରେ ତାହା କଲେ ସମାପତ ।
ତାଙ୍କ ତପସ୍ୟାରେ ପରଂବ୍ରହ୍ମ କୃପାମୟ
ଶ୍ରୀକୃଷ୍ଣ ଆସିଲେ ତହିଁ ହୋଇଣ ସଦୟ ।
ଦେଖି ତାଙ୍କୁ ତପସ୍ୱିନୀ ଦଣ୍ଡବତ ହେଲେ
ଆଶୀର୍ବାଦ କରି ପ୍ରଭୁ ଏମନ୍ତ କହିଲେ ।
ବୋଇଲେ ଗୋ ପତିବ୍ରତେ ଘେନ ବ୍ରତଫଳ
ଅଚିରେ ତୁମ୍ଭର ନଷ୍ଟ ହୋଇବ ମଙ୍ଗଳ ।
ସନ୍ତୁଷ୍ଟ ହୋଇଣ ବର ଦେଉଅଛୁଁ ଆମ୍ଭେ
ପାଇବ ଆମ୍ଭର ଅଂଶେ ବର୍ଯ୍ୟପୁତ୍ର ତୁମ୍ଭେ ।
ଦେବତାମାନଙ୍କର ସେ ହେବ କୁଳଗୁରୁ
ସକଳ ଲୋକରେ ପୂଜ୍ୟ ହେବ ସେ ଯୋଗ୍ୟରୁ ।
ଆମ୍ଭ ବର ଘେନି ତୁମ୍ଭ ଗର୍ଭ ଜାତ ହେବ
ସେ ସକାଶୁ ଆମ୍ଭ ବରପୁତ୍ର ବୋଲାଇବ ।
ବରଜ ବୀର୍ଯ୍ୟଜ ପୁଣି କ୍ଷେତ୍ରଜ ପାଳିତ
ବିଦ୍ୟାମନ୍ତ୍ର ଗ୍ରହୀତା ଯେ ଷଡ଼ବିଧ ସୁତ ।
ଏରୂପେ ଅଟଇ ଶ୍ରୁତି ଶାସ୍ତ୍ରର ବିଧାନ
ଏମନ୍ତ କହିଣ ପ୍ରଭୁ ହେଲେ ଅନ୍ତର୍ଦ୍ଧାନ ।
ସେ ସକାଶୁ ବୃହସ୍ପତି ପରମାତ୍ମାଙ୍କର
ବରପୁତ୍ର ଅଟନ୍ତି ହେ ଜାଣ ପୁରନ୍ଦର ।
ଏଥୁଅନନ୍ତରେ ମୃତ୍ୟୁଞ୍ଜୟ ମହାଜ୍ଞାନ
ଶ୍ରୀକୃଷ୍ଣ ମହାଦେବଙ୍କୁ କଲେକ ପ୍ରଦାନ ।
ଜଗତକରତା ଶିବ ହିମାଳୟେ ରହି
ତପ କଲେ ତିନିଲକ୍ଷ ବର୍ଷ କଷ୍ଟ ସହି ।
ତାହା ଜାଣି ପୁଣି ପ୍ରଭୁ ସେଠାକୁ ଆସିଲେ
ଆପଣା କବଚ ଶୂଳ ତାଙ୍କୁ ସମର୍ପିଲେ ।
ଆବର ବୈଷ୍ଣବୀ ମାୟା ମନ୍ତ୍ର ସ୍ତୋତ୍ରଆଦି
ସକଳ ପ୍ରଦାନ କଲେ ସେକାଳେ ସମ୍ପାଦି ।
ଏରୂପେ କୃଷ୍ଣଙ୍କ ବରେ ଶିବ ବଳୀୟାର
ଅଟନ୍ତି ଯେ ଦୁର୍ଗାଦେବୀ ପ୍ରିୟା ତାହାଙ୍କର ।
ଯେହିଁକି ବୈଷ୍ଣବୀମାୟା ସର୍ବ ଶକ୍ତିମୟୀ
ପୂର୍ବେ ସବୁ ଦେବଙ୍କର ତେଜୁ ଜାତ ହୋଇ ।
ଅସୁରବଳ ନିପାତି ଦେବଙ୍କୁ ପାଳିଲେ
କଳ୍ପାନ୍ତରେ ପୁଣି ଦକ୍ଷସୁତା ସେ ହୋଇଲେ ।
କେତେଦିନ ଅନ୍ତେ ହେଲେ ପର୍ବତ ତନୟା
ତପବଳେ ବୋଲାଇଲେ ଶିବଙ୍କର ଜାୟା ।

ଏଣୁକରେ ଶ୍ରୀକୃଷ୍ଣ ମହାଦେବଙ୍କର ଗୁରୁ
ତାଙ୍କ ପରେ ବୃହସ୍ପତି ଜଗତେ ହୋଇବେ ଗୁରୁ ।
ଶିବଙ୍କର ଗୁରୁପୁତ୍ର ବୋଲାଇଲେ ଜାଣ
ପ୍ରଧାନ ସମ୍ବନ୍ଧ ଏହି ଆହେ ସୁରଗଣ ।
ପାରମ୍ପରିକ ସମ୍ବନ୍ଧ କଥା ଏବେ ମୁହିଁ
କହୁଅଛି ମନଦେଇ ଶୁଣ ଶଚୀପାଇଁ ।
ବ୍ରହ୍ମାହା ଚତୁର୍ଥ ପୁତ୍ରେ ଶିବଅଂଶେ ଜନ୍ମ
ତାହାଙ୍କ ଗୁରୁ ଅଙ୍ଗିରା ତପସ୍ୱୀ ଉତ୍ତମ ।
ଏଣୁ ନାରଦେନ୍ଦ୍ର ମଧ୍ୟ ମହାଦେବଙ୍କର
ବୃହସ୍ପତି ଗୁରୁପୁତ୍ର ଜ୍ଞାନୀଗଣବର ।
ଏଣୁ କହୁଅଛୁ ତୁମ୍ଭେ ଶିବଙ୍କ ପାଖକୁ
ଯାଇ ଜଣାଅ ସକଳେ ଆପଣା ଦୁଃଖକୁ ।
ମିଳିତ ହୋଇଣ ଯାଇ ନର୍ମଦା କୂଳରେ
ରହ ଗୁରୁଦେବଙ୍କର ମଙ୍ଗଳ ଇଚ୍ଛାରେ ।
ଏମନ୍ତ କହିଣ ଧାତା ମଉନ ହୋଇଲେ
ପାନସ୍ଥାନ ସେବକାରୀ ଚିତ୍ତେ ସ୍ତବ୍ଧ ହୋଇଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ଶ୍ରୀକୃଷ୍ଣ ଖଣ୍ଡେ ବୃହସ୍ପତି ଓ ଇନ୍ଦ୍ରଙ୍କର ମନ୍ତ୍ରଣା ଓ ଧାତାଙ୍କଠାରୁ ବୃହସ୍ପତିଙ୍କ ଜନ୍ମ ବୃତ୍ତାନ୍ତ ଶ୍ରବଣ କହିବା ନାମ ଦ୍ୱିଷଷ୍ଟିତମ ଅଧ୍ୟାୟଃ ।

—*——*—

## ତ୍ରିଷଷ୍ଟିତମ ଅଧ୍ୟାୟ

### ତାରକା ଦେବୀଙ୍କର ଉଦ୍ଧାର ସକାଶେ ମନ୍ତ୍ରଣା

ନାରଦ ବୋଇଲେ କହ ୨ ମୁନିବର
ବେଦ ବର୍ଣ୍ଣାରେ ଅନନ୍ତ ଯେଣୁ ଧୁରନ୍ଧର ।
ଆପଣଙ୍କ ମୁଖଚନ୍ଦ୍ର ଦମ୍ଭରୁ ନିର୍ଗତ
ହେଲ ଯେଉଁ ସୁଧାରସ ସମାନ ଅମୃତ ।
ପାନକରି ତାହା ମୋର ଶ୍ରବଣ ଚକୋର
ଆନନ୍ଦ ନୀରେ ହୋଇଅଛି ଯେ ବିଭୋର ।
ବୃହସ୍ପତି କଇଳାସ ଭୁବନକୁ ଗଲେ
ଶିବଙ୍କୁ କିରୂପେ ନିଜ ବୃତ୍ତାନ୍ତ କହିଲେ ।
ସର୍ବ ଦେବଙ୍କ ଈଶ୍ୱର ଜଗତ କାରଣ
ତାହାଙ୍କୁ ଉତ୍ତର ଦେଲେ କେବଣ ଘଟଣ ।
ଏହା ଶୁଣିବା ପାଇଁକି ଅଟେ ମୋର ମନ
କୃପା କରିବାରେ ମାତ୍ର କୁହ ତପୋଧନ ।
ବୋଇଲେକ ନାରାୟଣ ଶୁଣ ମନଦେଇ
କଇଳାସ ଭୁବନରେ ପ୍ରବେଶ ହୋଇ ।
ଦେବଗୁରୁ ବୃହସ୍ପତି ମଳିନେ ରହିଲେ
ଶିବଙ୍କ ଆଗରେ ମୁଖଟେକି ନ ପାରିଲେ ।
ଦେଖିଣ ତାହାଙ୍କୁ କୃଶ ଆସନୁ ଶଙ୍କର
ଉଠି ଆଲିଙ୍ଗନ କଲେ ତାହାଙ୍କୁ ସ୍ନେହର ।
ଉପଯୁକ୍ତ ଆସନରେ ବସାଇଲେ ନେଇ
କୁଶଳ ପ୍ରଶ୍ନ ପୁଚ୍ଛିଲେ ମନତୋଷ କହି ।
ବଦନ ମଳିନ ଭାବ ଦେଖି ତାହାଙ୍କର
ବୋଇଲେ କାହିଁକି ମୁଖ ଶୁଖିଛି ତୁମ୍ଭର ।
କାହାଠାରୁ ଅବା ଭୟ ପାଇଅଛ ତୁମ୍ଭେ
ଯଥାର୍ଥ କାରଣ କହ ପଚାରୁଛୁ ଆମ୍ଭେ ।
କି ଅବା ଶ୍ରୀକୃଷ୍ଣ ସେବା ରହିତ ହୋଇଲ
ଗୁରୁଙ୍କଠାରେ ବିଶେଷ ଦୋଷ କିବା କଲ ।
ଅତିଥି ସତ୍କାର କରି ନ ପାରି ଯତନେ
କି ଅବା ଦୁଃଖ ପୋଷିତ କରିଅଛ ମନେ ।
କି ଅବା ତୁମ୍ଭର ସ୍ତ୍ରୀ ସତୀ ପତିବ୍ରତା
କୁଳଧର୍ମ ପଥ ଛାଡ଼ି ହେଲେ ପରରତା ।
ଇଷ୍ଟଦେବତା ଗୁରୁ କି ବିମୁଖ ହୋଇଲେ
ବ୍ରାହ୍ମଣେ ବୈଷ୍ଣବେ କିବା ଶାପ ଦେଇଗଲେ ।
ପ୍ରବଳ ଶତ୍ରୁ କି ଆକ୍ରମଣ କଲା ଆସି
କି ଅବା ସଞ୍ଚିତ ଧନ ପରେ ନେଲେ ଗ୍ରାସି ।
ଖଳଲୋକଙ୍କ ମୁଖରୁ ଗୁରୁ ବନ୍ଧୁଙ୍କର
ନିନ୍ଦା ହୋଇଲା କି ଅବା ଶ୍ରବଣ ଗୋଚର ।
ସାଧୁଲୋକଙ୍କର ଗୁରୁ ନିନ୍ଦାଠାରୁ କଳ
ମରଣାନ୍ତକ ଯାତନା ନାହିଁ କହି ଦେଲ ।
ଉତ୍ତମ ଲୋକଙ୍କୁ ନିନ୍ଦା କରେ ଯେଉଁ ଜନ
ନରକ ମଧ୍ୟରେ ତାର ହୁଅଇଟି ସ୍ଥାନ ।

ପୁଣ୍ୟବନ୍ତ ଲୋକ ସେହିପରି ପରଶଂସା
କରଇ ସର୍ବଦା ନିଜ ମୁଖମଧ୍ୟେ ବସି ।
ପୁତ୍ର ଯଶ ଧନ ବିଦ୍ୟା ସ୍ୱଭାବ ଉତ୍ତମ
ଐଶ୍ୱର୍ଯ୍ୟ ବିଷୟ ଜ୍ଞାନ ପୁଣ୍ୟ ଅନୁତ୍ତମ ।
ଆବର ଉତ୍ତମ ବାକ୍ୟ କାର୍ଯ୍ୟ ବ୍ୟବହାର
ଦେଖିଲେ ହୃଦୟ ଜଣା ପଡ଼ଇ ଲୋକର ।
ଯହାର ହୃଦୟ ଅଟେ ଯେରୂପେ ନିର୍ମଳ
ସେହି ଅନୁସାରେ ତାର ହୁଅଇ ମଙ୍ଗଳ ।
ଏହିରୂପେ କହି ଶିବ ବିରତ ହୋଇଲେ
ତାହା ଶୁଣି ବୃହସ୍ପତି କଥା ଆରମ୍ଭିଲେ ।
ବୋଇଲେ ହେ ମହାପ୍ରଭୁ ଯେବଣ ବୃତ୍ତାନ୍ତ
ଅକଥ୍ୟ ଅଟଇ ତାହା କହିବି କେମନ୍ତ ।
ତଥାପି ମୋହର ବଳ ପଡ଼ିବାରୁ ଦୁଃଖ
କହୁଅଛି ତୁମ୍ଭ ଆଗେ ଆହେ ଦେବମୁଖ୍ୟ ।
ପ୍ରାଣୀମାନେ ପୂର୍ବ କୃତ କର୍ମ ଅନୁସାରେ
ପାପ ପୁଣ୍ୟ ଫଳ ଭୋଗ କରନ୍ତି ସଂସାରେ ।
ଭୋଗ ନ ସରିଲେ କର୍ମ କ୍ଷୟ ନ ହୁଅଇ ।
ଏରୂପେ ପୁରାଣ ଶାସ୍ତ୍ର ପ୍ରମାଣ ଅଟଇ ।
କର୍ମ ଅନୁସାରେ ଭୋଗହୁଏ ସୁଖ ଦୁଃଖ
ଉଚିତ ନୁହେଁ ଚିନ୍ତିତ ହେବାର ବିମୁଖ ।
ପୂର୍ବକୃତ କର୍ମରେ ସେ ହୁଏ ବୋଲି କରି
କହନ୍ତି କେତେକ ବିଜ୍ଞ ପଣ୍ଡିତେ ବିଚାରି ।
କେ ବୋଲଇ ହୁଅଇ ସେ ଦଇବ ଯୋଗରେ
କେ ବୋଲଇ ଆପଣାର ସ୍ୱଭାବ ପ୍ରକାରେ ।
ମାତ୍ର ତିନି ପ୍ରକାରେ ବେଦ ଶାସ୍ତ୍ରମତ
ସ୍ୱତନ୍ତ୍ର ଉତ୍ପନ୍ନ ଅବା ଦୈବବଶେ ଜାତ ।
ହୁଅଇ କର୍ମ ସ୍ୱଭାବ ଜନ୍ମେ ତାହା ଯୋଗେ
କର୍ମରୁହିଁ ଜୀବ ଶୁଭାଶୁଭ ଫଳ ଭୋଗେ ।
ସଗୁଣ ଅଟଇ ଜୀବ କର୍ମଫଳ ଭୋକ୍ତା
ଆତ୍ମା ଯେ ନିର୍ଗୁଣ ପୁଣି ଫଳ ଭୋଗପ୍ରୀତା ।
ସେହି ଆତ୍ମା ଦୈବଗୁଣ ସ୍ୱଭାବ ଏ ତିନି
ସରଜନା କରେ ଶୁଭାଶୁଭ ଫଳ ଜାଣି ।
କର୍ମ ଯୋଗ ମନୁଷ୍ୟର ଲଜ୍ଜା ପରଶଂସା
ପ୍ରଫୁଲ୍ଲିତା ଆଦି ନିଜ ଅଙ୍ଗେ କରେ ବସା ।
ଲଜ୍ଜାର କାରଣ ଅଟେ ଯେବଣ ବୃତ୍ତାନ୍ତ
ତୁମ୍ଭ ଆଗରେ ତା ମୁହିଁ କରିବି ବ୍ୟକତ ।

ଏମନ୍ତ ବୋଲିଣ ବୃହସ୍ପତି ଯେ କାଳରେ
ଶିବଙ୍କ ଆଗରେ ସବୁ ବୃତ୍ତାନ୍ତ କହିଲେ ।
ତାହା ଶୁଣି ମହାଦେବ ହୋଇଲେ ଲଜ୍ଜିତ
ଜପାମାଳା ହସ୍ତୁ ଖସି ହେଲା ଭୂମିଗତ ।
ସେ ଅନ୍ତରେ କ୍ରୋଧଭରେ ରଙ୍ଗ ହେଲା ନେତ୍ର
ଥରହର ହୋଇ ପୁଣି କମ୍ପି ଗଲା ଗାତ୍ର ।
ବୃହସ୍ପତିଙ୍କୁ ଅନାଇଁ କହିଲେ ବଚନ
ବୋଇଲେ ମୋଠାରୁ ଶୁଣ ଆହେ ତପୋଧନ
ବିଷ୍ଣୁ ଭକ୍ତମାନଙ୍କୁ ଯେ ଦିଅଇ କଷଣ
ଶ୍ରୀକୃଷ୍ଣ ତାହାକୁ ଦୁଃଖ ଦିଅନ୍ତି ଜାଣ ।
ଶ୍ରୀକୃଷ୍ଣ ମନ୍ତ୍ର ସ୍ମରଣ କରଇ ଯେ ନିତ୍ୟ
ତାର ହୃଦୟ ନିର୍ମଳ ହେବାର ନିଶ୍ଚିତ ।
ଅବୈଷ୍ଣବମାନଙ୍କର ମନ କେତେବେଳେ
ବିଶୁଦ୍ଧ ନୁହଇ କେଉଁ ପ୍ରକାରେ ହେଲେ ।
ବିଷ୍ଣୁ ମନ୍ତ୍ର ଉପାସନା କରିବା ଲୋକର
ହୃଦୟ ନୁହଇ କେବେ କ୍ରୋଧରେ ଅଧୀର ।
ଆପଣାର ଭାର୍ଯ୍ୟାକୁ ହରିଲା ଯେ ବଳେ
ତାକୁ ଯାହା କ୍ରୋଧେ ଶାପ ନ ଦେଇ ସେକାଳେ
ଏ ସକାଶୁ ତୁମ୍ଭ ହୃଦ ଅତ୍ୟନ୍ତ ନିର୍ମଳ
ବୋଲିକରି ଜଣାଗଲା ଆହେ ତପଶୀଳ ।
ତୁମ୍ଭ ଗୁରୁ ଯେ ବଶିଷ୍ଠ କ୍ରୋଧ ବିବର୍ଜିତ
ଯେତୁ ନାଶ କଲା ତାହାଙ୍କର ପୁତ୍ର ଶତ ।
ତାଙ୍କୁ ଶାପ ନ ଦେଇଣ ରହିଲେ ନିବୃତ୍ତି
ସେହିପରି ଅଟ ତୁମ୍ଭେ ଆହେ ମହାମତି ।
ତୁମ୍ଭେ ଯେବେ କ୍ରୋଧଭରେ ଦେଇଥାନ୍ତ ଶାପ
କ୍ଷଣକରେ ଶତଚନ୍ଦ୍ର ହୋଇଯାନ୍ତେ ଲୋପ ।
ଜାଣିଲି ମହାପାତକୀ ଅତ୍ରିଙ୍କ ନନ୍ଦନ
ପରସ୍ତ୍ରୀଠାରେ ଯାହା ସେ ବଳାଇଲା ମନ
ଏ ସକାଶୁ ତାହାଠାରେ ତାମସିକ ଭାବ
ସକଳ ପ୍ରକାରେ କରି ରହିଅଛି ଠାବ ।
ସାତ୍ତ୍ୱିକଭାବ ବହଇ ବ୍ରାହ୍ମଣଙ୍କଠାରେ
ରାଜସିକ ଭାବ ରହେ କ୍ଷତ୍ରିୟ ଦେହରେ ।
ତାମସିକ ଭାବକୁ ଯେ ଚଣ୍ଡାଳେ ଆଗ୍ରହ
କରନ୍ତି ସର୍ବଦା ଜାଣ ଆହେ ମୁଖ୍ୟ ଗ୍ରହ ।
ସ୍ୱତନ୍ତ୍ର ବୈଷ୍ଣବ ଅଟେ ଯେଉଁ ଦ୍ୱିଜବର
ଅନ୍ତଃକାଳେ ଭୋଗ କରେ ବଇକୁଣ୍ଠପୁର ।

ସକଳ ବର୍ଣ୍ଣମଧ୍ୟରେ ଦ୍ୱିଜ ଏକା ଶ୍ରେଷ୍ଠ
ବିଷ୍ଣୁଭକ୍ତ ହୋଇଥିଲେ ଅତ୍ୟନ୍ତ ଉତ୍କୃଷ୍ଟ ।
ଯେଉଁ ବିପ୍ର ବିଷ୍ଣୁମନ୍ତ୍ରହୀନ ହୋଇଥିବ
ଚଣ୍ଡାଳରୁ ହୀନ ବୋଲି ତାହାକୁ ଜାଣିବ ।
ସ୍ୱପଚ ବୈଷ୍ଣବ ସାଧୁ ଯେଉଁ ଜନ
ତାହାକୁ ସର୍ବଦା ରକ୍ଷା କରେ ସୁଦର୍ଶନ ।
ଅନଳର ଶୁଷ୍କ ତୃଣ ପୋଡ଼ିଗଲା ପ୍ରାୟେ
ବୈଷ୍ଣବଙ୍କଠାରେ ପାପ ଭସ୍ମ ହୋଇଯାଏ ।
ବୈଷ୍ଣବମାନେ ପିତୃ ମାତୃ ଦୁଇକୁଳ
ଉଦ୍ଧାର କରିଣ ବଂଶ କରନ୍ତି ଉଜ୍ଜ୍ୱଳ ।
ବିଷ୍ଣୁଙ୍କ ମନ୍ତ୍ର ଗ୍ରହଣ କରେ ଯେଉଁ ନର
ଜୀବତ ଦଶାରେ ମୁକ୍ତ ହୁଅଇ ତାହାର ।
ତାକୁ ଦେଖି ଯମରାଜ ଗରୁଡ଼କୁ ସର୍ପ
ଭୟ କରି ପରି ଯାଇ ନ ପାରେ ସମୀପ ।
ତୀର୍ଥରେ ସକଳ ପାପ ବିନାଶ ହୁଅଇ
ତୀର୍ଥ ତୁଲ୍ୟ ପାତକ ଯେ ବଜ୍ରତୁଲ୍ୟ ହୋଇ ।
ସେହି ପାପ ବିଷ୍ଣୁମନ୍ତ୍ର ଉପାସକଙ୍କର
ପରଶ ମାତ୍ରକେ ଗୁଡ଼ ହୋଇଯାଏ ଦୂର ।
ଅନଳ ପବନ ସୂର୍ଯ୍ୟ ନିଜ ପ୍ରଭାବରେ
ସ୍ୱବଶ କରନ୍ତି ତିନିଲୋକ ନିରନ୍ତରେ ।
ତଥାପି ସେମାନେ ବିଷ୍ଣୁ ଭକ୍ତଙ୍କ ପରଶେ
ପାତକ ବିନାଶି ପୂତ ହୁଅନ୍ତି ବିଶେଷେ ।
ଭାରତବର୍ଷ ମଧ୍ୟରେ କର୍ମ ଅନୁରୂପେ
ପ୍ରାଣୀଏ ଭୁଞ୍ଜନ୍ତି ଶୁଭାଶୁଭ ଫଳ ଆପେ ।
ବିନଷ୍ଟ ହୁଏ ତାହା ବୈଷ୍ଣବଙ୍କଠାରେ
ଯେସନେ ସିଦ୍ଧ ଧାନ୍ୟରୁ ଗଛ ନ ବାହାରେ ।
ଭକତ ବତ୍ସଳ ପ୍ରଭୁ ଦୟାକରି ମନେ
ସ୍ଥାନ ଦିଅନ୍ତି ତାହାଙ୍କୁ ଗୋଲୋକ ଭୁବନେ ।
ପରମ ବୈଷ୍ଣବ ଭୃଗୁମୁନିଙ୍କ ନନ୍ଦନ
ତାଙ୍କ ପାଶେ ଯାଇ ଚନ୍ଦ୍ର ପଶିଲେ ଶରଣ ।
ସମସ୍ତଙ୍କଠାରୁ ଶୁକ୍ର ବଳରେ ଅଧିକ ।
ତାଙ୍କୁ ଜିଣି ନ ପାରଇ ସାଧାରଣ ଲୋକ ।
ତଥାପି ମନ୍ତ୍ରଣାବଳେ ଚନ୍ଦ୍ରଠାରୁ ମୁହିଁ
ଉଦ୍ଧରିବି ତାରକାକୁ ସନ୍ଦେହ ଯେ ନାହିଁ ।
ତହିଁକି ଉପାୟ ଏବେ କହୁଅଛୁ ଶୁଣ
ଶ୍ରୀକୃଷ୍ଣ ଅଟନ୍ତି ବ୍ରହ୍ମମୟ ସନାତନ ।

ତାଙ୍କୁ ଯେବେ ସୁମରଣା କରିବଟି ତୁମ୍ଭେ
ପତ୍ନୀଙ୍କୁ ପାଇବ ନିଶ୍ଚେ ଜାଣୁଅଛୁ ଆମ୍ଭେ ।
କଳ୍ପବୃକ୍ଷ ସମାନ ଯେ କୃଷ୍ଣଙ୍କର ମନ୍ତ୍ର
ଗ୍ରହଣ କର ମୋଠାରୁ ଅହେ ଗୁରୁପୁତ୍ର ।
ସେ ପ୍ରଭୁଙ୍କୁ ଉପାସନା କର ତାହା ଘୋଷି
ପ୍ରସନ୍ନ ହୋଇଣ ବର ଦେବେ ବ୍ରହ୍ମରାଶି ।
ଶ୍ରୀକୃଷ୍ଣଙ୍କ ମନ୍ତ୍ରକୁ ଯେ ଗ୍ରହଣ କରଇ
ତାହାକୁ ସକଳ ଧନ ସମ୍ପଦ ମିଳଇ ।
ସେହି ମନ୍ତ୍ର ପ୍ରଭାବରେ ବୈଷ୍ଣବମାନେ
ଇନ୍ଦ୍ରପଦ ଦେଲେ ମଧ୍ୟ ନ ବାଞ୍ଛନ୍ତି ମନେ ।
କେବଳ ଶ୍ରୀକୃଷ୍ଣଙ୍କର ଦାସ ହୋଇବାର
ଉତ୍କଟାପାଇଁକି ଇଚ୍ଛା ହୁଅଇ ତାଙ୍କର ।
ଯେଉଁମାନେ ଭକ୍ତି ଛାଡ଼ି ବିଷୟ ଲୋଡନ୍ତି
ଅମୃତ ତେଜିଣ ବିଷପାନ ସେ କରନ୍ତି ।
ବ୍ରହ୍ମା ବିଷ୍ଣୁ ମୁହିଁ ପୁଣି କଶ୍ୟପ ଅନନ୍ତ
ପରାଶର ଭୃଗୁ ଆଦି ଯେତେ ବିଷ୍ଣୁଭକ୍ତ ।
ସେ ଯେଉଁ କାଳରୁ ଜାତ ହୋଇଛନ୍ତି ଜାଣ
ଅଟନ୍ତି ସେ ସେହି ଅଂଶେ ଭକ୍ତି ପରାୟଣ ।
ଏରୂପେ କହି ଶଙ୍କର ବୃହସ୍ପତିଙ୍କର
କର୍ଣ୍ଣରେ ଶ୍ରୀକୃଷ୍ଣ ମନ୍ତ୍ର ଦେଲେକ ସତ୍ୱର ।
ଲକ୍ଷ୍ମୀମାୟା କାମବୀଜ ସେ ମନ୍ତ୍ର ଆଦ୍ୟରେ,
ଚତୁର୍ଥ୍ୟନ୍ତ କୃଷ୍ଣପଦ ରହଇ ଶେଷରେ ।
ସେ ଅନ୍ତରେ ପୂଜା ସ୍ତୋତ୍ର କବଚ ଯେ ଧ୍ୟାନ
ପୁରଶ୍ଚରଣ ସହିତେ ଦେଲେ ତତକ୍ଷଣ ।
ସେ ସକାଶୁ ବୃହସ୍ପତି ପାଇ ଦିବ୍ୟ ଜ୍ଞାନ
ବୋଇଲେ ଶୁଣିବାହେଲ ଅହେ ତ୍ରିଲୋଚନ ।
ସଂସାର ସୁଖରେ ମୋର ପ୍ରୟୋଜନ ନାହିଁ
ଆଜ୍ଞା ଦିଅ ବନସ୍ତକୁ ଯିବି ଉଦସ ହୋଇ ।
ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରି ଆଚରିବି ତପ
ଖଣ୍ଡନ ହୋଇବ ପୂର୍ବେ କରିଥିବା ପାପ ।
ତାହା ଶୁଣି ମହାଦେବ ବୋଇଲେ ତା ସତ
ମାତ୍ର ମୋଠାରୁ ଶୁଣ ସ୍ଥିରକରି ଚିତ୍ତ ।
ପତିର ଅଧୀନ ହୋଇଥିବା କାମିନୀକି
ଛାଡିଗଲେ ଲୋକେ ନିନ୍ଦା କରିବେ ନାହିଁକି ।
ସେ ସକାଶୁ କହୁଅଛୁ ଆଗ ତୁମ୍ଭେ ଯାଅ
ନର୍ମଦା ନଦୀ ତଟରେ ପରବେଶ ହୁଅ ।

ତୁମ୍ଭ ପଛେ ପଛେ ମୁହିଁ ଏହିକ୍ଷଣି ଯିବି
ବ୍ରହ୍ମାଆଦି ଦେବେ ଥିବା ସ୍ଥାନରେ ମିଳିବି ।
ଶିବଙ୍କ ବଚନ ଶୁଣି ସୁରକୁଳ ଗୁରୁ
ନର୍ମଦା ତୀରକୁ ଗଲେ ହୋଇ ଜନ୍ତୁ ଖରୁ ।
ତା ଦେଖି ଶଙ୍କର ରୁଦ୍ରଗଣ ସେନ ତୁଲେ
ସେ ମଧ୍ୟ ନର୍ମଦା ନଦୀ ସମୀପକୁ ଗଲେ ।
ତାହାଙ୍କୁ ଦେଖି ଆସନୁ ଉଠି ଦେବବୃନ୍ଦ
ପ୍ରଣାମ କଲେ ମନରେ ପ୍ରକାଶି ଆନନ୍ଦ ।
ଏ ସମୟେ ବୃହସ୍ପତି ମିଳି ସେହିଠାରେ
ପ୍ରଣମିଲେ ବ୍ରହ୍ମା ବିଷ୍ଣୁ ଶିବଙ୍କ ପଦରେ ।
ଆଉର ଯେତେକ ମାନ୍ୟବ୍ୟକ୍ତି ତହିଁ ଥିଲେ
ସେମାନଙ୍କୁ ଯଥାଯୁକ୍ତ ସମ୍ମାନନା କଲେ ।
ଏଥୁଅନ୍ତେ ବ୍ରହ୍ମା ଶିବ ଦୁହିଙ୍କୁ ଅନାଇ
କହିଲେ ଶ୍ରୀନାରାୟଣ ଅଳ୍ପ ହସିଦେଇ ।
ମୁନିଙ୍କୁ ସଙ୍ଗରେ ଘେନି ତୁମ୍ଭେ ଦୁହେଁ ଯାଅ
ମଧ୍ୟସ୍ଥ ଭାବରେ ଶୁକ୍ରମୁନି ଆଗେ କହ ।
ବିରୋଧ କଲେ କଦାପି ମଙ୍ଗଳ ନୋହିବ
ଏ କଥା ନିଶ୍ଚୟ ବୋଲି ଜାଣ ସର୍ବଦେବ ।
ଶୁକ୍ରଙ୍କୁ ବଳରେ କେହି ନୋହିବ ସମାନ
ରକ୍ଷା କରିଅଛି ତାଙ୍କୁ ଚକ୍ର ସୁଦର୍ଶନ ।
ଶମ୍ଭୁ ଯେବେ ବଳବନ୍ତ ହେବାର ଦେଖିବ
ସ୍ତୁତି ସ୍ତୋତ୍ରରେ ତାହାଙ୍କୁ ସନ୍ତୁଷ୍ଟ କରିବ ।
ତେଣୁ ତୁମ୍ଭେମାନେ ପ୍ରିୟ ବଚନ କହିଣ
ଶୁକ୍ର ମୁନିଙ୍କୁ ସନ୍ତୁଷ୍ଟ କରିଅ ଯାଇଣ ।
ବିନୟ ବଚନେ ଯେବେ ମନୋପ୍ରୀତ କରିବ
ଅସାଧ୍ୟ କାର୍ଯ୍ୟ ନିଶ୍ଚୟ ସାଧନ ହୋଇବ ।
ଏହା କହି ଭଗବାନ ଅନ୍ତର ହୋଇଲେ
ବ୍ରହ୍ମାଦି ଦେବତାମାନେ ସ୍ତୁତି ଆରମ୍ଭିଲେ ।
ଏଥୁଅନ୍ତେ ଦେବଋଷି ଗଣଙ୍କୁ ଅନାଇଁ
କହିଲେ ସଭା ମଧ୍ୟରେ ପାର୍ବତୀଙ୍କୁ ଚାହିଁ ।
ବୋଇଲେ ହେ ସୁରଗଣ ବିଷ୍ଣୁଙ୍କର ମୋର
ଆଉର ଯେ ସଦାଶିବ ଧର୍ମ ଦେବଙ୍କର ।
ତୁମ୍ଭଠାରେ ଯେଉଁପରି ସ୍ନେହଭାବ ଅଛି
ଦୈତ୍ୟମାନଙ୍କର ଠାରେ ତେମନ୍ତ ରହିଛି ।
ଶିକ୍ଷାଗୁରୁ ତାହାଙ୍କର ଶୁକ୍ର ମହାମୁନି
ସକଳ ବେଦ ଶାସ୍ତ୍ରରେ ଅଟନ୍ତି ଯେ ଜ୍ଞାନୀ ।
ଶରଣ ପଶିଅଛନ୍ତି ଚନ୍ଦ୍ର ତାଙ୍କଠାରେ
କିଏ ଅବା ଜିଣିପାରେ ଶୁକ୍ରଙ୍କୁ ତ୍ରିପୁରେ ।
ତେଣୁ ତାରକାକୁ ମୁହିଁ ଉଦ୍ଧାରିବା ପାଇଁ
ଶୁକ୍ରଙ୍କର ଭବନକୁ ଯାଉଅଛି ମୁହିଁ ।
ତୁମ୍ଭେମାନେ ଶ୍ରୀ ବିଷ୍ଣୁଙ୍କ ଆଜ୍ଞା ପରମାଣେ
ପରବେଶ ହୁଅ ଯାଇ ସାଗର ପୁଳିନେ ।
ଏହିରୂପେ ବେଦବ୍ୟାସ ଅମରଙ୍କୁ କହି
ମଗନ ହେଲେ ଗୀତରେ ଖେଚର କହଇ ।

**ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ତାରକା ଦେବୀଙ୍କର ଉଦ୍ଧାର ସକାଶେ ମନ୍ତ୍ରଣା କଥନେ ନାମ ତ୍ରିଷଷ୍ଠିତମ ଅଧ୍ୟାୟଃ ।**

## ଚତୁଃଷଷ୍ଠିତମ ଅଧ୍ୟାୟ

### ଦେବତା ଓ ଋଷିମାନେ ଏକତ୍ରିତ ହୋଇ ଶୁକ୍ରଆଦି ଦାନବମାନଙ୍କ ସହିତ ଆଲୋଚନା କରିବା

କହନ୍ତି ନାରଦ ଆଗେ ଋଷି ନାରାୟଣ
ସମୁଦ୍ର ତୀରକୁ ଗଲେ ଦେବଋଷିଗଣ ।
ଶୁକ୍ରଙ୍କ ପାଖରେ ବ୍ରହ୍ମା ପ୍ରବେଶ ହୋଇଲେ
ସେ ପୁର ଦୈତ୍ୟରେ ପୂର୍ଣ୍ଣ ହୋଇଛି ଦେଖିଲେ ।
ଆଉରି ବିବିଧ ରତ୍ନ ସ୍ୱର୍ଣ୍ଣ କୋଟି କୋଟି
ରହିଛନ୍ତି ସ୍ଥାନେ ସ୍ଥାନେ ହୋଇକରି ଗୋଟି ।
ପଞ୍ଚଶତ କୋଟି ଶିଷ୍ୟ ଶୁକ୍ର ମୁନିଙ୍କର
ବେଦ ପଠନରେ ହୋଇଅଛନ୍ତି ତତ୍ପର ।

ସପ୍ତପରିଖା ଆବୃତ ହୋଇଛି ଯେ ଦୁର୍ଗ
ରକ୍ଷା କରନ୍ତି ମୁଖ୍ୟ ମୁଖ୍ୟ ଦୈତ୍ୟବର୍ଗ ।
ବଣପାଖ ପଦ୍ମରାଗ ପ୍ରକାରେ ବେଷ୍ଟିତ
ରତ୍ନଗିରି ଶୃଙ୍ଗପରି ଦିଶଇ ଶୋଭିତ ।
ଏମନ୍ତ ସେ ପୁରଶୋଭା ଦେଖି ପ୍ରଜାପତି
ଶୁକ୍ରଙ୍କ ସଦନରେ ଯାଇ ମିଳିଲେ ଝଟିତ ।
ଦେଖିଲେ ବସିଅଛନ୍ତି ଶୁକ୍ର ମହାମୁନି
କେତି ରହିଛନ୍ତି କେତେ ଶାସ୍ତ୍ର ତତ୍ତ୍ୱଜ୍ଞାନୀ ।
ଶ୍ରୀକୃଷ୍ଣଙ୍କୁ ମନ ମଧ୍ୟେ କରୁଛନ୍ତି ଧ୍ୟାନ
ତେଜ ଦିଶୁଅଛି ସୂର୍ଯ୍ୟକିରଣ ସମାନ ।
ସମୀପରେ ବିଧାତାଙ୍କୁ ଦେଖି ମୁନିବର ।
ଆସନରୁ ଉଠି ପାଦେ କଲେ ନମସ୍କାର ।
ନାନା ଉପଚାର ଦେଇ ଅର୍ଚ୍ଚନା କଲେ
ଏ ବାହାରେ ସ୍ତୁତି ସ୍ତୋତ୍ର ବହୁତ ପଢ଼ିଲେ ।
ସନ୍ତୁଷ୍ଟ ହୋଇଣ ବ୍ରହ୍ମା ରଥରୁ ଓହ୍ଲାଇ
ରତ୍ନ ନିର୍ମିତ ଆସନେ ବସିଲେକ ଯାଇ ।
ସେକାଳେ ସନକ ନନ୍ଦ ମରୀଚି ବଶିଷ୍ଠ
କପିଳ ଅଙ୍ଗିର ଆଦି ଯେତେ ମୁନିଶ୍ରେଷ୍ଠ ।
ସେ ସଭା ମଧ୍ୟରେ ଆସି ପ୍ରବେଶ ହେଲେ
ଶୁକ୍ରଙ୍କପାଶରେ ବ୍ରହ୍ମା ଅଛନ୍ତି ଦେଖିଲେ ।
ସମସ୍ତଙ୍କୁ ପୂଜାକରି ଶୁକ୍ର ମୁନିବର
ବସାଇଲେ ଆସନରେ ହୋଇ ତତପର ।
ସେ ଅନ୍ତରେ ସମସ୍ତଙ୍କ ମୁଖକୁ ଅନାଇ
କହି ଆରମ୍ଭିଲେ ଶିରେ ଯୋଡ଼ି କର ଦୁଇ ।
ବୋଇଲେ ମୋହର ଜନ୍ମ ହେଲା ଆଜ ସାର୍ଥ
ବନ୍ଧୁବର୍ଗ ସହିତରେ ହୋଇଲି କୃତାର୍ଥ ।
ସର୍ବଲୋକ ପିତାମହ ଆସି ମୋର ପୁରେ
ପ୍ରବେଶ ହେଲେ ଯା ମୁନି ଋଷି ସହିତରେ ।
ଏହାଠାରୁ ବଳି ମୋର ଭାଗ୍ୟ ଆଉ ନାହିଁ
ପବିତ୍ର ହୋଇଲି ଦେହ ସାଧୁସଙ୍ଗ ପାଇ ।
କୁଶଳ ପୁଚ୍ଛିବା କଥା ଅଟେ ବିଡ଼ମ୍ବନା
ଜାଣିଲି ମୋ ପୂର୍ବ ପୁଣ୍ୟ ଫଳ ଏହି ବିନା ।
ମୋହର ଜୀବନ ସାର୍ଥ କରିବାର ପାଇଁ
ଆସିଲ ଆପଣମାନେ ଜାଣୁଅଛି ମୁହିଁ ।
ତଥାପି ପଚାରୁଅଛି ଆଜ ଯେଉଁକାର୍ଯ୍ୟ
କରିବାକୁ ଅଛି ଯେବେ ଆଜ୍ଞାଦିଅ ଆଜ ।

ତାହା ଶୁଣି ପ୍ରଜାପତି ହରଷ ହୋଇଲେ
ମଧୁର ବଚନେ ତାଙ୍କୁ ଏମନ୍ତ କହିଲେ ।
ବୋଇଲେ ହେ ମୁନି ମୋର ପୌତ୍ର ଅଟ ତୁମ୍ଭେ
ତୁମ୍ଭଙ୍କୁ ଦେଖିବାପାଇଁ ଆସିଲୁଁଟି ଆମ୍ଭେ ।
ବହୁତ କାଳରୁ ଦେଖି ନ ଥିବାରୁ ଜାଣ
ମନକୁ ବିରହ ଦୁଃଖ କଲା ଆକ୍ରମଣ ।
ପୁତ୍ର ପତ୍ନୀ ସହିତରେ ଅଛଟି କି ଭଲ
ଯଥାର୍ଥରେ ଆମ୍ଭ ଆଗେ କହ ତପଶୀଳ ।
ପ୍ରତିଦିନ ଶ୍ରୀକୃଷ୍ଣଙ୍କ ସେବାରେ ମାନସ
ଦେଉଅଛଟି କି ଲବେ ନ ହୋଇ ବିରସ ।
ଆଉର ନିଜ ଗୁରୁଙ୍କୁ ବିଧିମତେ ପୂଜା
କରୁଅଛଟି କି ଧର୍ମେ ମଜାଇଣ ମଜ୍ଜା ।
ଉପାସନା କରି ଇଷ୍ଟ ଦେବତାଙ୍କୁ ନିତି
ଯାପନ କରୁଛଟି କି ସୁଖେ ଦିନରାତି ।
ଯାହାଠାରେ ଗୁରୁ ଇଷ୍ଟ ଦେବତା ସନ୍ତୋଷ
ହୁଅନ୍ତି ବଢ଼ଇ ତାର କଲ୍ୟାଣ ବିଶେଷ ।
ତୁମ୍ଭ ଭକତି ଯୋଗରେ ଦେବ ସନାତନ
ସନ୍ତୁଷ୍ଟ ହୋଇଅଛନ୍ତି ଆହେ ତାତ ଜାଣ ।
ଶ୍ରୀହରିଙ୍କ ସନ୍ତୋଷରେ ସକଳ ଦେବତା
ସନ୍ତୁଷ୍ଟ ହୁଅନ୍ତି ଏଥେ ନାହିଁ କିଛି ଚିନ୍ତା ।
ଆସିବା କାରଣ ମୋର କହୁଅଛି ଶୁଣ
ପଠାଇ ଅଛନ୍ତି ମୋତେ ସର୍ବ ଦେବଗଣ ।
ଆଉର ସଂହାରକର୍ତ୍ତା ପ୍ରଭୁ ସଦାଶିବ
ସେ ମଧ୍ୟ ପଠାଇଛନ୍ତି କହି ମନେ ଭାବ ।
ତାହାଙ୍କର ନିଜଗୁରୁ ସୁତ ବୃହସ୍ପତି
ତାହାଙ୍କ ପତ୍ନୀ ତାରକା ପତିବ୍ରତା ସତୀ ।
ବଳାତ୍କାରେ ଚନ୍ଦ୍ର ତାଙ୍କୁ ହରି ନେଇଗଲେ
ତୁମ୍ଭ ପାଶରେ ଆସିଣ ଶରଣ ପଶିଲେ ।
ସେ ସକାଶୁ ମହାଦେବ ଧର୍ମ ସନାତନ
ଅନଳ ବାସବ ସୂର୍ଯ୍ୟ ଦିଗପାଳଗଣ ।
ତେତିଶକୋଟି ଦେବତା ସଙ୍ଗତରେ ନେଇ
ଇଚ୍ଛନ୍ତି ଯୁଝିବାକୁ ହୋଇ ଅଭିମାନୀ ।
ମଧ୍ୟସ୍ଥ ରୂପରେ ଆସିଅଛି ଜାଣ ମୁହିଁ
କହୁଅଛି ଯାହା ଏବେ ଶୁଣ ମନଦେଇ ।
ଚନ୍ଦ୍ରଙ୍କ ପାଶରୁ ବେଗେ ପରିତ୍ୟାଗ କରି
ତାରକାଙ୍କୁ ଦିଅ ବୃହସ୍ପତିଙ୍କ ଛାମୁର ।

ଶୁକ୍ର ବୋଇଲେ ଶ୍ରୀ ଦେବ କହିଲଟି ଯାହା
ଯଥାର୍ଥରେ ସେହିପରି ଅଟେ ଯେବେ ତାହା ।
ତଥାପିକ ନାହିଁ ତ ମୋର ଲବେ ମାତ୍ର ଭୟ
କରିବ ଶିବଙ୍କୁ ଛାଡ଼ି ସମସ୍ତଙ୍କ କ୍ଷୟ ।
ଏରୂପେ ଶୁକ୍ରଙ୍କଠାରୁ ଶୁଣି ଦୈତ୍ୟଗଣ
ବ୍ରହ୍ମାଙ୍କୁ ଅନାଇ ସର୍ବେ କହିଲେ ବଚନ ।
ଦେବତା ଅସୁରଙ୍କର ମାନ୍ୟ ସଦାଶିବ
ତିନି ଭୁବନରେ କର୍ମସାକ୍ଷୀ ଧର୍ମଦେବ ।
ଆପଣ ଅଟନ୍ତି ସର୍ବଲୋକ ପିତାମହ
ଏଣୁ ତୁମ୍ଭ ସଙ୍ଗତରେ ଯୁଝିବ କେ କହ ।
ତୁମ୍ଭ ତିନିଙ୍କୁ ଛାଡ଼ିଣ ଆଉ ଯେତେ ସୁର
ଅଛନ୍ତି କହ ଆସନ୍ତୁ ଯୁଦ୍ଧକୁ ସତ୍ୱର ।
ଗୁରୁତ୍ୱପଣଠାରେ ସ୍ନେହ କରି ଅବା ଯେବେ
ଆସିବେ ଯୁଦ୍ଧକୁ କେବେ ପ୍ରଭୁ ସଦାଶିବେ ।
ଆଗକରି ତାଙ୍କୁ ଆମ୍ଭେମାନେ ନ ଯୁଝିବୁ
ସେ ଯେବେ ଯୁଝିବେ ପଛେ ନିଶ୍ଚୟ ମାରିବୁ ।
ବିଧାତା ବୋଇଲେ ସୃଷ୍ଟି ସଂହାରକରତା
କାଳାଗ୍ନିରୁଦ୍ର ନାମରେ ଯେବଣ ଦେବତା ।
ଖଡ୍ଗ ଖର୍ପରହସ୍ତା ଦେବୀ ଭଦ୍ରକାଳୀ
ଭୟଙ୍କର ନାହିଁ ଆଉ ଯାହାଙ୍କର ଭଳି ।
ଯେ ଦେବୀ ସହସ୍ର ଭୁଜା ମୁଣ୍ଡ ବିଭୂଷିତା
ଭୟଙ୍କରମୁଖୀ ସପ୍ତତାଳ ପରିମିତା ।
ଆଉର ପ୍ରମଥ ଗଣ ଭୀଷଣ ମୂରତି
ଭୈରବ ନନ୍ଦୀ ଭୃଙ୍ଗୀ ଆଦି ଯେ ଅଛନ୍ତି ।
ସମସ୍ତେ ଅଟନ୍ତି ସଦାଶିବଙ୍କ କିଙ୍କର
ତାହାଙ୍କୁ ଜିଣିବାପାଇଁ ଶକତି କାହାର ।
ଯାହାଙ୍କର ପାଶୁପତ ଅସ୍ତ୍ର ଏକାଥରେ
କ୍ଷଣକରେ ତିନିଲୋକ ନାଶ କରିପାରେ ।
ଯାହାଙ୍କର ଶୂଳଘାତେ ବୀର ଶଙ୍ଖଚୂଡ଼
ଶୋଇଲା ସମର ମଧ୍ୟେ ଯର୍ଜି ମେରୁ ଦାଢ଼ ।
ଅବଜ୍ଞା କରୁଛ ତୁମ୍ଭେ ସେ ଦେବଦେବଙ୍କୁ
ଆଗେ ଛାଡ଼ାହୋଇ ଯୁଝି ପାରିବ କି ତାଙ୍କୁ ।
ମଧୁକୈଟଭଙ୍କର ଦର୍ପ ବିନାଶକ
ଅଟନ୍ତି ଯେ ପ୍ରଭୁ ଲକ୍ଷ୍ମୀଦେବୀଙ୍କ ନାୟକ ।
ସେ ମଧ୍ୟ ଆସୁଅଛନ୍ତି ଯୁଦ୍ଧ ଇଚ୍ଛାକରି
ତାହାଙ୍କ ସଙ୍ଗେ ସମର କରିବ କପରି ।

ଏରୂପେ କହି ବିଧାତା ମଉନେ ରହିଲେ
ଦସିଣ ପ୍ରହ୍ଲାଦ ତହୁଁ ବଚନ କହିଲେ ।
ବୋଇଲେ ହେ ତାତ ଦେବ ଜଗତଈଶ୍ୱର
ତୁମ୍ଭ ଚରଣରେ ମୋର କୋଟି ନମସ୍କାର ।
ସକଳ ଲୋକରେ ପୂଜ୍ୟ ଅଟ ପ୍ରଭୁ ତୁମ୍ଭେ
କି କରିପାରିବୁ ତୁମ୍ଭ ଆଗେ ଅବା ଆମ୍ଭେ ।
ହିରଣ୍ୟକଶିପୁ ମଧୁକୈଟଭହନ୍ତା
ଅଟନ୍ତି ଶ୍ରୀକୃଷ୍ଣ ସବୁଠାରୁ ବଳବନ୍ତା ।
ଆୟୁଧ ଯେ ସୁଦର୍ଶନ ଚକ୍ର ତାହାଙ୍କର
କରନ୍ତି ଆମ୍ଭଙ୍କୁ ସବୁ ବିପଦୁଁ ଉଦ୍ଧାର ।
ତାଙ୍କ ତହୁଁ ମହାଦେବ ପାଶୁପତ ବାଣ
କାଳୀ ନନ୍ଦୀ ଆଦି କରି କହନ୍ତି କେ ଟାଣ ।
ସକଳ ଦେବଙ୍କ ସଙ୍ଗେ ସେନ ପଶୁପତି
ଆସିଲେ ଯୁଦ୍ଧକୁ ମୋର ନାହିଁ କିଛି ଭୀତି ।
ସେ ଦେବ ଦେବଙ୍କ ପାଦେ ମୋର ନମସ୍କାର
ଆଉର ବୈଷ୍ଣବ ସାଧୁଜନଙ୍କୁ ଜୁହାର ।
ଶ୍ରୀକୃଷ୍ଣଙ୍କ ପ୍ରସାଦରେ ଅଟେ ମୁଁ ଦୁର୍ଜ୍ଜୟ
ମୃତ୍ୟୁଠାରୁ ହେଲେ ମୋର ନାହିଁ ତିଳେଭୟ ।
ମୋହର ତାତ ହିରଣ୍ୟକଶିପୁ ଦୁର୍ମତି
ବସିଲା ନିଜ ପାପରେ ଯମରାଜ କତି ।
ଏ ବାହାରେ ଶଙ୍ଖଚୂଡ଼ ଆଦି କେତେ ଦୈତ୍ୟ
ବିଷ୍ଣୁଠାରେ ଦ୍ରୋହକରି ହୋଇଲେ ନିହତ ।
ଏରୂପେ କହି ପ୍ରହ୍ଲାଦ ନୀରବ ହୋଇଲେ
ସମ୍ବୋଧନ କରି ତାଙ୍କୁ ବିଧାତା କହିଲେ ।
ବୋଇଲେ ଦେବ ଦାନବେ କରନ୍ତେ ସମର
ଦୁଇପକ୍ଷେ ଅମଙ୍ଗଳ ହୋଇବ ଅପାର ।
ଏ ସକାଶୁ କହୁଅଛି ତାରକାଙ୍କୁ ଆଣି
ମୋ ପାଶରେ ସମର୍ପଣ କର ଏହିକ୍ଷଣି ।
ଭିକ୍ଷୁକ ବ୍ରାହ୍ମଣରୂପେ ମାଗୁଛି ମୁଁ ଆସି
ବିମୁଖ କରିଲେ ମୋତେ ହେବ ଅବିଶ୍ୱାସୀ ।
ସେ ଅନ୍ତେ କହିଲେ ମୁନି ସନତକୁମାର
ଆହେ ମହାରାଜ ତୁମ୍ଭେ ଧର୍ମ ରକ୍ଷାକର ।
ଫେରାଇ ନ ଦିଅ କେବେ ଭିକ୍ଷୁକଙ୍କୁ ହାତୁ
ପାଇବ ଅଶେଷ କୀର୍ତ୍ତି ଧର୍ମ ସକାଶରୁ ।
ସେ ଅନ୍ତରେ ସନାତନ ବୋଇଲେ ରାଜନ
ଶ୍ରୀକୃଷ୍ଣ ଭକତ ତୁମ୍ଭେ ଅତି ପୁଣ୍ୟବାନ ।

ସନକ ବୋଇଲେ ଯା'ର ଇଷ୍ଟଦେବ ହରି
ତା ସଙ୍ଗେ ସାମାନ୍ୟଲୋକ ହେବ କାହୁଁ ସରି ।
ଆବର ଶୁନ ମହର୍ଷି ଯାହାଙ୍କର ଗୁରୁ
ଜୟଲକ୍ଷ୍ମୀ ନେବ କେବା ତାହାଙ୍କ ହସ୍ତରୁ ।
ସନକ ବୋଇଲେ ପୁଣ୍ୟବନ୍ତ ଯେ ଅଟଇ
ତାହାଙ୍କୁ କେବଣ ଲୋକ ଜିଣି ନ ପାରଇ ।
ସେ ଅନ୍ତେ ସକଳ ମୁନି ଏକତ୍ରିତ ହେଲେ
ପ୍ରହ୍ଲାଦ ମୁଖରୁ ବର୍ଣ୍ଣି ବଚନ କହିଲେ ।
ବୋଇଲେ ରାଜନ ପୁଣ୍ୟକୀର୍ତ୍ତି ରକ୍ଷାକର
ତାରକାକୁ ଦିଅ ପିତାମହଙ୍କ ପାଶର ।
ଚନ୍ଦ୍ର ଦେବତାଙ୍କୁ ମଧ୍ୟ କର ସମର୍ପଣ
ଆମ୍ଭେ ଯେ ପ୍ରାର୍ଥନା କରୁଅଛୁ ପୁନଃ ପୁନଃ ।
ପ୍ରହ୍ଲାଦ ବୋଇଲେ ଶୁକ୍ରମୁନି ଆମ୍ଭ ଗୁରୁ
ଅନୁମତି ନେଇ ତୁମ୍ଭେ ଆସ ତାଙ୍କଠାରୁ ।
ସେ ଅନ୍ତରେ ତାହାଙ୍କର ଆଜ୍ଞା ପରମାଣେ
କରିବୁ ଯା ବୋଲୁଅଛ ଆହେ ସୁରଗଣେ ।
ଏହିରୂପେ ପ୍ରହ୍ଲାଦଙ୍କ ବଚନକୁ ଶୁଣି
ଶୁକ୍ରଙ୍କୁ ପ୍ରାର୍ଥନା କଲେ ସର୍ବ ସୁରମୁନି ।
ଭୃଗୁଙ୍କ ତନୟ ତାହା ଦେଖି ତୋଷ ହେଲେ
ବ୍ରହ୍ମାଙ୍କ ପାଶରେ ଚନ୍ଦ୍ର ତାରକାଙ୍କୁ ଦେଲେ ।
ସେ ଅନ୍ତରେ ନମସ୍କାର କରି ଭକ୍ତିଭରେ
ପ୍ରଶଂସିଲେ ପୁଣି ମୁନି ଋଷିଙ୍କୁ ତୋଷରେ ।
ଆପଣା ମନ୍ଦରେ ତହୁଁ ହେଲେ ପରବେଶ
ରହିଲେ ତାରକା ଚନ୍ଦ୍ର ବିଧାତାଙ୍କ ପାଶ ।
ପ୍ରଣାମ କରନ୍ତେ ଦୁହେଁ ବ୍ରହ୍ମାଙ୍କ ପାଦରେ
ପ୍ରଶଂସା କରିଣ ବ୍ରହ୍ମା ତାଙ୍କୁ ସେ କାଳରେ ।
ଚନ୍ଦ୍ରଙ୍କୁ ବସାଇ କୋଳେ ଆଶ୍ୱାସନା କଲେ
ତାରକା ମୁଖରୁ ଶୁଣି ବର୍ଣ୍ଣିଣ କହିଲେ ।
ବୋଇଲେ ଗୋ ପତିବ୍ରତେ ଭୟ ତ୍ୟାଗ କର
ସର୍ବଭାଗ୍ୟବତୀ ହୁଏ ଯେମନ ଆମ୍ଭ ବର ।
ବଳିଷ୍ଠ ପୁରୁଷ ଯେବେ ଅବଳାକୁ ବଳେ
ହରଣ କରଇ ଜାଣ ଆଗୋ ଗୁରୁଣୀକେ ।
ଦୁଷ୍ଟତା ନୁହଇ କେତେବେଳେ ସେ କାମିନୀ
ପ୍ରାୟଶ୍ଚିତ୍ତ କଲେ ଶୁଦ୍ଧ ହୁଅଇ ସେ ପୁଣି ।
ଯେଉଁସ୍ତ୍ରୀ ସ୍ୱଇଚ୍ଛାରେ ଜାରକୁ ଭଜଇ
ପ୍ରାୟଶ୍ଚିତ୍ତ କଲେ ମଧ୍ୟ ଶୁଦ୍ଧ ସେ ନୁହଇ ।

ତା ବସ୍ତ୍ରର ଅନ୍ନଜଳ ବିଷ୍ଠାମୂତ୍ର ସମ
ହୁଅଇ ଏଥିରେ ଜାଣ ନାହିଁ କିଛି ଭ୍ରମ ।
ତାହାର ଏ ଗର୍ଭ ଯାହା ଧରି ଅଛ ତୁମ୍ଭେ
ଲଜ୍ଜା ତ୍ୟାଗ କରି କହ ପଚାରୁଛୁ ଆମ୍ଭେ ।
ବ୍ରହ୍ମାଙ୍କ ବଚନ ଶୁଣି ସୁନ୍ଦରୀ ତାରକା
କହିଲେ ମନରେ କିଛି ନ ରଖିଣ ଢକା ।
ଆହେ ତାତ ଚନ୍ଦ୍ରଙ୍କର ଗର୍ଭ ଏ ଅଟଇ
ବଳବ ଯୋଗେ ଧାରଣ କରିଅଛୁ ମୁହିଁ ।
ଯେତେବେଳେ ଚନ୍ଦ୍ର ମୋତେ ଆକ୍ରମଣ କଲେ
ରକ୍ଷକ ହୋଇ ପାଖରେ କେହି ତ ନଥିଲେ ।
କେବଳ ମୋହର ସାକ୍ଷୀ ଦିଗପାଳଗଣ
ଆହେ ତାତ ହୋଇଛନ୍ତି ବୋଲିକରି ଜାଣ ।
ଏରୂପେ କହି ତାରକା ଦେବୀ ମହାସତୀ
ପ୍ରସବ କଲେ ଉତ୍ତମ ତନୟ ଝଟିତି ।
କନକ ସମାନ କାନ୍ତି ଦିଶଇ ତାହାର
କନ୍ଦର୍ପପୁରୁଷ ପରି ରୂପ ମନୋହର ।
ପୁତ୍ରକୁ ଘେନିଣ ଚନ୍ଦ୍ର ବ୍ରହ୍ମାଙ୍କ ପଦୁରେ
ନମସ୍କାର କରିଗଲେ ଆପଣାର ପୁରେ ।
ସେ ଅନ୍ତରେ ପ୍ରଜାପତି ସମୁଦ୍ର ତଟକୁ
ଗଲେ ସଙ୍ଗତରେ ନେଇ ତାରକା ଦେବୀଙ୍କୁ ।
ବୃହସ୍ପତିଙ୍କ ପାଶରେ ସମର୍ପଣ କଲେ
ଦେବତାଙ୍କୁ ନିଜ ନିଜ ସ୍ଥାନେ ପଠାଇଲେ ।
ବ୍ରହ୍ମଲୋକ ଯାଇଁ ତହୁଁ ହେଲେ ପରବେଶ
ବୃହସ୍ପତି ତାରକାକୁ ରଖି ନିଜ ପାଶ ।
ପୂର୍ବପରି ଅନୁରାଗ ପରସ୍ପରଙ୍କର
ହେଲା ସେ କାଳରେ ଜାଣ ଆହେ ମୁନିବର ।
ସେ ତାରକାଠାରୁ ଚନ୍ଦ୍ର ବୀର୍ଯ୍ୟେ ଯେଉଁ ସୁତ
ହୋଇଥିଲେ ବୁଧଗ୍ରହ ତାଙ୍କ ନାମ ଖ୍ୟାତ ।
ତେଜସ୍ୱୀ ସୁନ୍ଦର ମହାବଳବନ୍ତ ସେହି
ତାହାଙ୍କ ସମାନ ଶୁଭଗ୍ରହ କେ ନୁହଇ ।
ଯଉବନ ସମୟରେ ନନ୍ଦନ କାନନେ
ବୁଲୁଥିଲେ ଆନନ୍ଦିତ ମନରେ ସେ ବନେ ।
ବରୁଣ ଦେବଙ୍କ ବୀର୍ଯ୍ୟ ଘୃତାଚୀ ଗର୍ଭରୁ
ଜାତ ହୋଇଥିଲେ ଚିତ୍ରା ନାମେ ସ୍ୱରୁ ଭୂରୁ ।
ଯଉବନ ହୋଇଥିଲା ସେ ନବବାଳାର
ଦେଖିଲେ ବନରେ ତାକୁ ଚନ୍ଦ୍ରାଙ୍କ କୁମର ।

ରୂପ ଦେଖିଣ ମୋହିତ ହୋଇ ସେହିକ୍ଷଣି
ଗାନ୍ଧର୍ବ ବିଧାନ କ୍ରମେ ଧଇଲେ ତା ପାଣି ।
ତାହା ଦେବୀଙ୍କ ଗର୍ଭରୁ ଯଥା ସମୟରେ
ଯେଉଁ ସୁତ ହେଲେ ଖ୍ୟାତ ସେ ଚୈତ୍ର ନାମରେ
ଧାର୍ମିକପଣରେ ସେହି ଅଟନ୍ତି ନିପୁଣ
ସପ୍ତଦ୍ୱୀପା ପୃଥିବୀ ତାହାଙ୍କ ଅଧୀନ
ପ୍ରତିଦିନ ବ୍ରାହ୍ମଣଙ୍କୁ ଡକାଇ ସେ ନୃପ
ଧନରତ୍ନ ସ୍ୱର୍ଣ୍ଣ ଆଦି ଦିଅନ୍ତି ଅମାପ ।
ଆବର ବହୁତ ମିଷ୍ଟ ଦ୍ରବ୍ୟମାନ ଆଣି
ଭୋଜନ କରନ୍ତି ତାହାଙ୍କର ମନ ଜାଣି ।
ସେହି ଚୈତ୍ର ରାଜାଙ୍କର ପୁତ୍ର ଅଧିରଥ
ଅଧିରଥଙ୍କ ତନୟ ନାମ ଯେ ସୁରଥ ।
ସୁରଥନୃପ ସମାନେ ଧର୍ମବନ୍ତ କେହି
ନ ଥିଲେ ତିନି ଲୋକରେ ଆହେ ଋଷିସାଇଁ ।
ମେଧସ ମୁନିଙ୍କ ଠାରୁ ମହାଜ୍ଞାନ ପାଇ
ଶରତ କାଳେ ଦୁର୍ଗାଙ୍କ ପୂଜାକଲେ ସେହି ।
ସମାଧି ନାମକ ଏକ ବୈଶ୍ୟ ସେତେବେଳେ
ଯୋଗ ସାଧୁଥିଲେ ସେହି ନୃପତିଙ୍କ ମେଳେ ।
ତାଙ୍କର ପିତା କ୍ରୁମିଣ ବହୁ ତପ କରି
ଜାତ କରିଥିଲେ ତାଙ୍କୁ ଆହେ ତପସ୍ୱୀ ।
ରାଜାଙ୍କ ସଙ୍ଗରେ ମିଶି ସେ ଧାର୍ମିକବର
ଆରାଧନା କଲେ ବିଷ୍ଣୁମାୟାଙ୍କୁ ଅପାର ।
ସନ୍ତୋଷରେ ମହାମାୟା ମୁକ୍ତିଦାନ କଲେ
ସେ ଯୋଗରେ ବୈଶ୍ୟ ଇହଲୋକରୁ ତରିଲେ
ସୁରଥ ରାଜାଙ୍କୁ ପୁଣି ମନୁତ୍ୱ ପ୍ରଦାନ
କଲେ ସନ୍ତୋଷରେ ମହାମାୟା ତହିଁ ଜାଣ ।
ବୋଲେ ଦୀନ କ୍ଷେତ୍ରବାସୀ ଆହେ ସାଧୁଜନେ
ଶ୍ରୀକୃଷ୍ଣଙ୍କୁ ସୁମରଣା କର ନିତ ମନେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ଦେବତା ଓ ଋଷିମାନେ ଏକତ୍ରିତହୋଇ ସ୍କନ୍ଦ ଆଦି ଦାନବମାନଙ୍କ ସମ୍ବନ୍ଧ ଆଲୋଚନା କରିବା ନାମ ଚତୁଃଷଷ୍ଟିତମ ଅଧ୍ୟାୟଃ ।

## ପଞ୍ଚଷଷ୍ଟିତମ ଅଧ୍ୟାୟ

### ସୁରଥ ଓ ମେଧସଙ୍କର ପରସ୍ପର ଆଲାପ

ନାରଦ ବୋଇଲେ ଆହେ ସୁରଥ ରାଜନ
କରୁପେ ମୁନିଙ୍କଠାରୁ ଲଭ କଲେ ଜ୍ଞାନ ।
ବୈଶ୍ୟମାନେ ମୁକତ ହୋଇଲେ କେଉଁପରି
ଏହାସବୁ ମୋ ଆଗରେ କହନ୍ତୁ ବିସ୍ତାରି ।
ବୋଇଲେକ ନାରାୟଣ ଶୁଣ ମନଦେଇ
ଧ୍ରୁବଙ୍କର ସୁତ ନନ୍ଦୀ ତା ନାମ ଅଟଇ ।
ଜିତେନ୍ଦ୍ରିୟ ସତ୍ୟବାଦି ଆବର ସୁଜାଣ
ଜଗତରେ ନାହିଁକେହି ତାହାଙ୍କ ସମାନ ।
ଯେତେ ଅକ୍ଷୌହିଣୀ ସେନା ଘେନି ସଙ୍ଗତରେ ।
ପ୍ରବେଶିଲେ ଯବେ ଯାଇ କୋଲାନାମ ପୁରେ
ସେହି ପୁରରେ ସୁରଥ ଅଟଇ ରାଜନ
ଏକବର୍ଷ ଯାଏ ତାଙ୍କ ସଙ୍ଗେ କଲେ ରଣ ।
ନନ୍ଦୀ ତ ଅଟନ୍ତି ସବୁ ଗୁଣରେ ଅଧିକ
ହାରିଲେ ତାଙ୍କଠୁ କୋଲାପୁରର ନାୟକ ।
ମହାଭୟ କରି ଅର୍ଦ୍ଧରାତ୍ର ସମୟରେ
ବନସ୍ତକୁ ଗଲେ ବସି ଘୋଟକ ଉପରେ ।
କେତେଦୂର ଅନ୍ତେ ପୁଷ୍ପଭଦ୍ରା ନଦୀତଟେ
ବୈଶ୍ୟ ଜଣେ ଉପସ୍ଥିତ ହୋଇଲେ ନିକଟେ ।
କଥାବାର୍ତ୍ତା ହୋଇ ତାଙ୍କ ସଙ୍ଗତରେ ପ୍ରୀତି
କଲେ ସେହି ସମୟରେ ସୁରଥ ନୃପତି ।
ସେ ଅନ୍ତରେ ଦୁହେଁଯାକ ଏକମନ ହୋଇ
ପୁଷ୍କର ପୁଣ୍ୟକ୍ଷେତ୍ରରେ ପ୍ରବେଶିଲେ ଯାଇ ।
ମେଧସ ନାମରେ ମୁନି ଥିଲେ ସେହି ସ୍ଥାନେ
ତାହାଙ୍କୁ ଦେଖିଣ ରାଜା ନମିଲେ ଚରଣେ ।
ବୈଶ୍ୟ ମଧ୍ୟ ଦଣ୍ଡବତ ହେଲେ ସେ କାଳରେ
ଆଶୀର୍ବାଦ କଲେ ମୁନି ଦୁହିଁଙ୍କୁ ତୋଷରେ ।
ଭିନ୍ନ ଭିନ୍ନ କରି ଜାତି ନାମ ପଚାରିଲେ
ତା ଶୁଣି ସୁରଥ ନୃପ କହି ଆରମ୍ଭିଲେ ।

ବୋଇଲେ ହେ ମୁନିବର ମୁଁ ଅଟେ କ୍ଷତ୍ରିୟ ।
ସୁରଥ ବୋଲି ମୋହର ଅଟେ ନାମଧେୟ ।
ମୋ ରାଜ୍ୟକୁ ଆକ୍ରମଣ କଲେ ଆସି ନନ୍ଦୀ
ସହଜରେ ପୁଣି ମୋତେ କରିବାକୁ ବନ୍ଦୀ ।
ସେ ସକାଶୁଁ ମହାଭୟ କରି ମୁଁ ମନରେ
ବନକୁ ଆସିଲି ଅର୍ଦ୍ଧରାତ୍ର ସମୟରେ ।
ଆପଣଙ୍କ ପାଦତଳେ ପଶିଲି ଶରଣ
କହ କି ରୂପରେ ରାଜ୍ୟ ପାଇବି ମୁଁ ପୁଣ ।
ସମାଧି ନାମକ ଏହି ବୈଶ୍ୟ ମହାମତି
ପୁତ୍ର ଭାର୍ଯ୍ୟାଙ୍କଠାରୁ ପାଇ ବହୁ ଶାସ୍ତି ।
ଗୃହ ତ୍ୟାଗ କରି ସେହୁଁ ବନକୁ ଆସିଲେ
ପୁତ୍ରମାନେ ପୁଣି କେତେ ଅନୁତାପ କଲେ ।
ପିତାଙ୍କ ବିରହଦୁଃଖେ ହୋଇଣ ଆକୁଳ
ଧନରତ୍ନ ସବୁ ଦାନକରି ତତକାଳ ।
ସକଳ ବିଷୟ ଛାଡ଼ି ବନମଧ୍ୟେ ଯାଇ
ତପ ଆଚରଣ କଲେ ଫଳମୂଳ ଖାଇ ।
ଏବେ ଏହି ବୈଶ୍ୟଙ୍କର ଶ୍ରୀହରିଙ୍କ ଦାସ
ହୋଇବା ପାଇଁକ ବଳ ରହିଛି ମାନସ ।
କିରୂପେ ଏହାଙ୍କ ବାଞ୍ଛା ହୋଇବ ପୂରଣ
ବିସ୍ତରି ଏକଥା ମୋତେ କହ ଋଷିଗଣ ।
ମେଧସା ବୋଇଲେ ଆହେ ନୃପଗଣଈଶ
ତୁମ୍ଭ ଦୁହିଙ୍କର ଏହା ପୂର୍ବକର୍ମ ଦୋଷ ।
ଶ୍ରୀକୃଷ୍ଣଙ୍କ ଅନୁଜ୍ଞାରେ ଦେବୀ ବିଷ୍ଣୁମାୟା
ରହିଛନ୍ତି ତ୍ରିଭୁବନେ ବିସ୍ତାରିଣ କାୟା ।
ଅନୁଗ୍ରହ କରନ୍ତି ସେ ଯେଉଁ ଲୋକଠାରେ
ସେହିଟି ଶ୍ରୀକୃଷ୍ଣଭକ୍ତି ଲାଭ କରିପାରେ ।
ତାହାଙ୍କ ଦୟାରୁ ଯେଉଁ ପାପିଷ୍ଠ ପୁରୁଷ
ବଞ୍ଚିତ ହୁଅଇ ତାର ଘଟେ ସର୍ବନାଶ ।
କେତେ ମୂର୍ଖଲୋକ ଏହି ଅନିତ୍ୟ ସଂସାରେ
ବିଦ୍ରୋହ କରନ୍ତି ସଦା ପରମ ଈଶ୍ୱରେ ।
ଅନ୍ୟ ଦେବତାଙ୍କଠାରେ କରନ୍ତି ଭକତି
ତାହାଙ୍କର ମନ୍ତ୍ର ସବୁବେଳେ ଜପୁଥାନ୍ତି ।
ସେ ସକାଶୁଁ ସାତଜନ୍ମ ଯାଏ ସେହିପରି
କାଳ ନେଉଥାନ୍ତି ସେବା ପୂଜା କରି କରି ।
ପ୍ରକୃତିଙ୍କ କୃପାବଳେ ପୁଣି ସେହିମାନେ
ସେ ପ୍ରକୃତି ଦେବତାଙ୍କୁ ପୂଜନ୍ତି ସୁମନେ ।

କେତେଜନ ଗଳ୍ପପରେ ଶଙ୍କରଭକତ
ସେମାନଙ୍କ ମାନସରେ ହୁଏ ଉତପତ୍ତି
ଜ୍ଞାନମୟ ସଦାଶିବ ସର୍ବଅଧୀଶ୍ୱର
ଶ୍ରୀକୃଷ୍ଣ ଭକତ ତାଙ୍କୁ ହଅନ୍ତି ସତ୍ୱର ।
ସାତ୍ତ୍ୱିକ ଗୁଣବିଶିଷ୍ଟ ବଇଷ୍ଣବ ନରେ
ମନ ଦିଅନ୍ତି ସର୍ବଦା ଶ୍ରୀହରି ସେବାରେ ।
କରନ୍ତି ପୁଣି ଶ୍ରୀକୃଷ୍ଣ ମନ୍ତ୍ରକୁ ଗ୍ରହଣ
ଉପାସନା କରୁଥାନ୍ତି ତାଙ୍କୁ ପୁଣ ପୁଣ ।
ଅନ୍ତଃକାଳେ ତାହାଙ୍କର ଗୋଲୋକରେ ବାସ
ହୁଅଇ ନିଶ୍ଚୟ ଆହେ ମୁନିଗଣଈଶ ।
ଦେଖନ୍ତି ଯେ ଶତ ଶତ ବ୍ରହ୍ମାଙ୍କ ପତନ
ଦାସତ୍ୱ ଦିଅନ୍ତି ତାଙ୍କୁ ପ୍ରଭୁ ଭଗବାନ ।
ଦାସଦାସୀ ସନ୍ନିଧିରେ ସପତ ପୁରୁଷ
ଉଦ୍ଧାର କରଇ ଯେହୁ ଶ୍ରୀହରିଙ୍କ ଦାସ ।
ସଂସାର ସାଗରେ କର୍ଣ୍ଣଧାର ସ୍ୱରୂପିଣୀ
ମହାମାୟା ଶ୍ରୀକୃଷ୍ଣଙ୍କ ଭକ୍ତିଭାବ ଦେଇ ।
ଉଦ୍ଧାର କରନ୍ତି ସେହୁ ଭକତମାନଙ୍କୁ
ଛିନ୍ନ କରିବା ସକାଶେ କର୍ମବନ୍ଧନକୁ ।
ମହାମାୟାଙ୍କର ଦୁଇ ଶକ୍ତି ବିଦ୍ୟମାନ
ବିବେଚନା ଆବରଣୀ ତାହାଙ୍କର ନାମ ।
ଭକ୍ତମାନଙ୍କୁ ପ୍ରଥମ ଶକ୍ତି ସେ ଦିଅନ୍ତି
ଅଭକ୍ତଙ୍କଠାରେ ରହେ ଦ୍ୱିତୀୟ ଶକତି ।
ଶ୍ରୀକୃଷ୍ଣ ଅଟନ୍ତି ନିତ୍ୟ ପ୍ରକୃତିରୁ ପର
ତାହାଙ୍କ ବ୍ୟତୀତ ସବୁ ଅଟଇ ନଶ୍ୱର ।
ଏମନ୍ତ ସେ ବୁଦ୍ଧି ତାର ନାମ ବିବେଚନା
ଆବରଣୀ ଅର୍ଥ ଏବେ ଶୁଣ ମହାମନା ।
ନିତ୍ୟରୂପା ଅଟେ ଶିବା ମୋହର ଅଧୀନ
ଏ ରୂପେ ସର୍ବଦା ହେଉଥାଏ ଯେଉଁ ଜ୍ଞାନ ।
ଆବରଣୀ ବୋଲି ତାକୁ ଜାଣ ଆହେ ନୃପ
ତାହାଯୋଗେ ଧର୍ମ ବୁଦ୍ଧି ଜ୍ଞାନ ହୁଏ ଲୋପ ।
ବ୍ରହ୍ମାଙ୍କର ନାତି ମୁହିଁ ପ୍ରଚେତାଙ୍କ ସୁତ
ଶଙ୍କରଙ୍କଠାରୁ ଜ୍ଞାନ ପାଇଣ ବହୁତ ।
ଶ୍ରୀକୃଷ୍ଣଙ୍କୁ ଉପାସନା କରୁଅଛି ନିତ
ତୁମ୍ଭେ ଏବେ କର ଦୁର୍ଗା ଦେବୀଙ୍କ ଭକତି ।
ଆବରଣୀ ଶକ୍ତି ନଷ୍ଟେ ହେବେ ସେ ତୁମ୍ଭଙ୍କୁ
ଯେଣୁ ତୁମ୍ଭର କାମନା ଭୋଗ କରିବାକୁ ।

ନଷ୍ଟାମ ଅଟନ୍ତି ବୈଶ୍ୟ ତେଣୁ ମହାମାୟୀ
ବିବେଚନା ଶକ୍ତି ତାଙ୍କୁ ଦେବେ କୃପାବନ୍ତ ।
ଏମନ୍ତ କହିଣ ମୁନି ସେ ଦୁଇ ଜଣଙ୍କୁ
ଦେଲେ ଦେବୀଙ୍କର ଧ୍ୟାନ କବଚ ମନ୍ତ୍ରକୁ ।
ତା ଘେନ କ୍ଷତ୍ରିୟ ବୈଶ୍ୟ ଦୁହେଁ ଚଳିଗଲେ
ବିଧିପ୍ରକାରେ ଦେବୀଙ୍କୁ ଆରାଧନା କଲେ ।

ରାଜ୍ୟ ଧନ ଆଦି ସବୁ ପାଇଲେ ସୁରଥ
ବୈଶ୍ୟବରଙ୍କୁ ପ୍ରାପତ ହେଲା ମୁକ୍ତିପଥ ।
ସୁରଥ ବୃତ୍ତାନ୍ତ ସବୁ ଶୁଣିଲ ତ ଏବେ
ପଚାର ଆଉ କ ଇଚ୍ଛା ହେଉ ଅଛୁ ଯେବେ ।
ଏହା କହିଣ ମଉନ ହେଲେ ମୁନିବର
ଗୀତଛନ୍ଦେ ବିରଚିଲା ଦୀନ ଷେନ ଗୁର ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତ ଖଣ୍ଡେ ସୁରଥ ଓ ମେଧସଙ୍କର ପରସ୍ପର ଆଳାପେ ନାମ ପଞ୍ଚଷଷ୍ଟିତମ ଅଧ୍ୟାୟଃ ।

—*—

## ଷ ଷ୍ଠ ଷ ଷ୍ଟି ତ ମ  ଅ ଧ୍ୟା ୟ

## ପ୍ରକୃତ ଦେବୀଙ୍କଠାରୁ ବୈଶ୍ୟମାନଙ୍କର ବରଲାଭ ବର୍ଣ୍ଣନ

ଏଥିଅନନ୍ତରେ ପୁଣି ଧାତାଙ୍କ ନନ୍ଦନ
ନାରାୟଣଙ୍କର ପାଦ କରିଣ ବନ୍ଦନ ।
ବୋଇଲେ ହେ ମୁନିଗଣମାନଙ୍କ ଉତ୍ତମ
ରାଜାବୈଶ୍ୟ ଗାଥା କହି ଛୁଟାଅ ମୋ ଭ୍ରମ ।
ବିଶଦ ରୂପରେ ତାହା କରିଣ ବର୍ଣ୍ଣନ
ଶୁଣାଇ ମନ ସନ୍ତାପ କରନ୍ତୁ ବନ୍ଦନ ।
କିରୂପେ ସୁରଥ ରାଜା ବୈଶ୍ୟ ସହିତରେ
ପ୍ରକୃତ ଦେବୀଙ୍କ ପୂଜା କଲେ ଭକତିରେ ।
ମହାମାୟା କେଉଁପରି ତାଙ୍କୁ ବରଦେଲେ
ଦୟାବନ୍ତ ଏ ସମସ୍ତ କହନ୍ତୁ ଭଲେ ।
ବୋଇଲେକ ନାରାୟଣ ଶୁଣ ମନ ଦେଇ
ମେଧସ ମୁନିଙ୍କଠାରୁ ରାଜା ବୈଶ୍ୟ ଦୁଇ ।
ଦେବୀଙ୍କ କବଚ ମନ୍ତ୍ର ଧ୍ୟାନ ଆଦି ନେଲେ
ପୁଷ୍କରତୀର୍ଥରେ ଯଥାବିଧି ପୂଜାକଲେ ।
ମୂଳ ପ୍ରକୃତ ଈଶ୍ୱରୀ ସାକ୍ଷାତ ହୋଇଣ
ରାଜାଙ୍କୁ ରାଜ୍ୟସମ୍ପଦ କଲେକ ଅର୍ପଣ ।
ସମାଧି ବୈଶ୍ୟ ଆଗରେ ଉପସ୍ଥିତ ହେଲେ
ଦୟା କରିଣ ଉତ୍ତମ ଜ୍ଞାନ ତାଙ୍କୁ ଦେଲେ ।
ଆହାର ତେଜିଣ ବୈଶ୍ୟ ହେଲେ ଅଚେତନ
ଦେବୀ ତାଙ୍କୁ କୋଳେ ଘେନି କଲେ ସନ୍ଦନ ।
ଚୈତନ୍ୟ ରୂପିଣୀ କଲେ ଚେତନା ପ୍ରଦାନ
ସେ ସକାଶୁ ବୈଶ୍ୟବର ଉଠିଲେ ବହନ ।
ରୋଦନ କରନ୍ତେ ଦେବୀଙ୍କର ପାଦେପଡ଼ି
କହିଲେ ପ୍ରସନ୍ନ ହୋଇ ଦେବୀ ସବୁ ଫେଡ଼ି ।

ଆହେ ବତ୍ସ ତପସ୍ୟାରେ ହୋଇଲି ସନ୍ତୋଷ
କେଉଁ ବର ଦେବ ତାହା କର ପରକାଶ ।
ବ୍ରହ୍ମତ୍ୱ ଇନ୍ଦ୍ରତ୍ୱ ଅବା ଦେବତ୍ୱକୁ ଯେବେ
ଲୋଡ଼ିବ ଏକ୍ଷଣି ତେଇପିବ ଏଠାବେ ।
ତାହାଶୁଣି ବୈଶ୍ୟବର ବୋଇଲେ ଗୋ ମାତ
ଇନ୍ଦ୍ରତ୍ୱ ଦେବତ୍ୱ ନୁହେ ମୋହର ବାଞ୍ଛିତ ।
ଶୁଦ୍ଧିବାଞ୍ଛାକରି ମୋତେ ଦିଅ ସେହି ବର
ଏ ସକାଶୁଁ ଯାହା ଇଚ୍ଛା ହେଉଛି ତୁମ୍ଭର ।
ତା ଶୁଣି ପ୍ରକୃତଦେବୀ ସନ୍ତୁଷ୍ଟ ହୋଇଲେ
ସମାଧି ବୈଶ୍ୟଙ୍କୁ ଗୃହି ଏମନ୍ତ କହିଲେ ।
ବୋଇଲେ ତୁମ୍ଭଙ୍କୁ ମୋର ନ ଦେବାର ହୋଇ
କେଉଁବର ଅଛି ବୋଲି ମନେ ହେଉନାହିଁ ।
ଦେଉଅଛୁ ଘେନ ଏବେ ସୁଦୁର୍ଲ୍ଲଭ ଜ୍ଞାନ
ଯାହାଯୋଗେ ପ୍ରାପ୍ତହେବ ଗୋଲୋକରେ ସ୍ଥାନ
ଶ୍ରବଣ ବନ୍ଦନ ଧ୍ୟାନ ଅର୍ଚ୍ଚନ କୀର୍ତ୍ତନ
ସ୍ମରଣ ସ୍ତବନ ସେବା ସର୍ବ ନିବେଦନ ।
ଏହି ନବ ଲକ୍ଷଣଟି ଅଟଇ ଭକ୍ତିର
ପ୍ରଧାନ ଅଟଇ ଏହା ବଇଷ୍ଣବଙ୍କର ।"
ଏ ନବ ଲକ୍ଷଣଯୁକ୍ତ ଭକ୍ତିରେ ବନ୍ଧନ
ଅଟନ୍ତି ଯେମାନେ ତାଙ୍କ ଆୟୁ ହୁଏ କ୍ଷୀଣ ।
ଯେଉଁମାନେ ଶ୍ରୀକୃଷ୍ଣଙ୍କ ଭକତ ଅଟନ୍ତି
ମର୍ତ୍ତ୍ୟଭୁବନରେ ଚିରଜୀବୀ ସେ ହୁଅନ୍ତି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ବିରାଟପୁରୁଷ
ଧର୍ମ ସନତକୁମାର କପିଳ ସେ ଶେଷ ।

ସନକ ସନନ୍ଦ ବୋଢ଼ୁ ପଞ୍ଚଶିଖ ଦକ୍ଷ
ନାରଦ ସେ ସନାତନ ଭୃଗୁ ମୁନିମୁଖ୍ୟ ।
ମରୀଚି କଶ୍ୟପ ଶୁକ ଦୁର୍ବାସା ଲୋମଶ
ବଶିଷ୍ଠ କ୍ରତୁ ପୁଲହ କର୍ଦ୍ଦମ ମେଧସ ।
ପରାଶର ମାର୍କଣ୍ଡେୟ ଆଦି ମୁନିଗଣ
ଆବର ଗଣେଶ ଯମ ଅନଳ ବରୁଣ ।
ବାସବ ଆଦିତ୍ୟ ବାୟୁ ବିରୋଚନ ସୁତ
ପ୍ରହ୍ଲାଦ ଜମ୍ବୁକ ନାଡ଼ିଜଙ୍ଘ ହନୁମନ୍ତ ।
ଅକୂପାର ଇନ୍ଦ୍ରଦ୍ୟୁମ୍ନ ନରନାରାୟଣ
ନାଗଚୂଡ଼ କୂର୍ମ ମହାସ୍ୱର ବିଭୀଷଣ ।
ଏମାନେ ଶ୍ରୀକୃଷ୍ଣଙ୍କର ପରମ ଭକତ
ଅଟନ୍ତି ଜଗତ ମଧ୍ୟେ ଜୀବନମୁକତ ।
ଊର୍ଦ୍ଧ୍ୱରେ ସପତ ସ୍ୱର୍ଗ ମଧ୍ୟେ ବସୁମତୀ
ସପତ ଦ୍ୱୀପ ଅଟଇ ତାର ମଧ୍ୟବର୍ତ୍ତୀ ।
ଅଧୋଦେଶରେ ବିଦ୍ୟମାନ ସପତ ପାତାଳ
ଏମନ୍ତ ଅଟଇ ଯେଉଁ ବ୍ରହ୍ମାଣ୍ଡ ମଣ୍ଡଳ ।
କେତେଥର ଜାତ ହୋଇ ହୁଅଇ ବିନାଶ
କେ କରି ପାରିବ ତାର ସଂଖ୍ୟା ପରକାଶ ।
ପ୍ରତ୍ୟେକ ବିଶ୍ୱରେ ବ୍ରହ୍ମା ବିଷ୍ଣୁ ତ୍ରିଲୋଚନ
ଇନ୍ଦ୍ର ଆଦି ଦେବଗଣ ହୁଅନ୍ତି ଉତ୍ପନ୍ନ ।
ଶ୍ରୀକୃଷ୍ଣଙ୍କ ଷୋଡ଼ଶାଂଶ ସେ ମହାବିରାଟ
ସୃଷ୍ଟି ଆଦ୍ୟେ ନିଜ ରୂପ କରନ୍ତି ପ୍ରକଟ ।

ତୁମ୍ଭେ ଶ୍ରୀହରିଙ୍କୁ ଭଜ ଆହେ ବୈଶ୍ୟବର
ଅଟନ୍ତି ସେ ବ୍ରହ୍ମମୟ ବ୍ରହ୍ମାଣ୍ଡ ଠାକୁର ।
ନିର୍ଗୁଣ ନିର୍ଲିପ୍ତ ହରି ପ୍ରକୃତିରୁ ପର
ନିର୍ବିକାର ନିରଞ୍ଜନ ପ୍ରଭୁ ଚକ୍ରଧର ।
ଭକ୍ତ ରକ୍ଷାକାରୀ ସ୍ୱେଚ୍ଛାମୟ ଜନାର୍ଦ୍ଦନ
ଯୋଗୀଜନମାନଙ୍କର ମାନସ ମୋହନ ।
ଅଣୁଠାରୁ ସୂକ୍ଷ୍ମ ପର୍ବତଠାରୁ ଭାରି
ତାହାଙ୍କର ଲୋମମୂଳେ ଯାବନ୍ତ ପୁରୀ ।
ଆପଣା ଭୁବନେ ତୁମ୍ଭେ ଯାଅ ଇଚ୍ଛା ସୁଖେ
ଶ୍ରୀକୃଷ୍ଣଙ୍କ ମହାମନ୍ତ୍ର ଭଜ ସର୍ବେ ମୁଖେ ।
ସେ ଦୁଇ ଅକ୍ଷର ଅଟେ ପରମ ସମ୍ପଦ
ପୁଷ୍କର ତୀର୍ଥକୁ ଯାଇ ଜପ ସେହି ପଦ ।
ପୂର୍ଣ୍ଣ କଲେ ଦଶଲକ୍ଷ ସିଦ୍ଧି ସେ ହୋଇବ
ଏହାର ନିମନ୍ତେ ଇଷ୍ଟ ଦେବତା ପାଇବ ।
ଏମନ୍ତ କହିଣ ଦେବୀ ଅନ୍ତର୍ଦ୍ଧାନ ହେଲେ
ଏ ଅନ୍ତେ ପୁଷ୍କର ତୀର୍ଥେ ପ୍ରବେଶ ହୋଇଲେ ।
ଶ୍ରୀକୃଷ୍ଣଙ୍କ ମହାମନ୍ତ୍ର ଅନ୍ତରେ ଜପିଲେ
ବଞ୍ଚ ପଦ୍ମରେ ଧ୍ୟାନ ସର୍ବଦା ରଖିଲେ ।
ଅନ୍ତକାଳେ ଦେବୀଙ୍କର ଅନୁଗ୍ରହ ବଳେ
ଗୋଲୋକେ ଶ୍ରୀହରିଙ୍କର ବାସଭୂ ପାଇଲେ ।
କ୍ଷେତ୍ରମୋହନ କହଇ ଅହେ ସାଧୁଜନ
ପୁରାଣ ପଠନ କରି ହୁଅ ମୋକ୍ଷମାନ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ପ୍ରକୃତି ଦେବୀଙ୍କଠାରୁ ବୈଶ୍ୟମାନଙ୍କର ବରଲାଭ ବର୍ଣ୍ଣନେ ନାମ ଷଟ୍‌ଷଷ୍ଟିତମ ଅଧ୍ୟାୟଃ ।

—✳— —✳—

## ସ ପ୍ତ ଷ ଷ୍ଟି ତ ମ ଅ ଧ୍ୟା ୟ

## ସୁରଥ ରାଜାଙ୍କର ଦେବୀ ଉପାସନାଆଦି ବର୍ଣ୍ଣନ

ନାରଦଙ୍କ ଆଗେ କହୁଛନ୍ତି ନାରାୟଣ
ଆହେ ମୁନିବର ଏବେ ମନ ଦେଇ ଶୁଣ ।
ପ୍ରକୃତି ଦେବୀଙ୍କୁ ଧ୍ୟାନ କରିଣ ସୁରଥ
ସ୍ନାନ ସନ୍ଧ୍ୟା ତର୍ପଣ କଲେ ସମାପତ ।
ପୂଜା କରିବାକୁ କୁଶ ଆସନରେ ବସି
ଭୂତଶୁଦ୍ଧି ଆଦି ଶେଷ କଲେ ହୋଇ ତୋଷି
ମୃତ୍ତିକା ମୂରତି ଆଣି ସ୍ଥାପିଲେ ଆଗରେ
ଆବାହନ କଲେ ମହାମାୟାଙ୍କୁ ତହିଁରେ ।

ପ୍ରଥମରେ ପୂର୍ଣ୍ଣରୂପେ ଷଡ଼ ଦେବତାଙ୍କୁ
ପୂଜା କଲେ ଆନନ୍ଦିତ କରିଣ ମନକୁ ।
ଦେବୀଙ୍କ ଧ୍ୟାନ ପଠନ କଲେ ସେ ଅନ୍ତରେ
ସେ ଧ୍ୟାନସ୍ୱରୂପ କହୁଅଛୁ ଶୁଣ ଥରେ ।
ଜୟ ଜୟ ମହାମାୟା ପ୍ରକୃତି ଈଶ୍ୱରୀ
ବ୍ରହ୍ମା ବିଷ୍ଣୁ ସଦାଶିବ ବନ୍ଦିତା ସୁନ୍ଦରୀ ।
ନାରାୟଣୀ କୃଷ୍ଣପ୍ରିୟା କୃଷ୍ଣଭକ୍ତିପ୍ରଦା
ସର୍ବସ୍ୱରୂପିଣୀ ... ମହାବିଦ୍ୟା

ମହାବିଷ୍ଣୁଙ୍କ ଜନନୀ ଅଟ ଭଗବତୀ
କୃଷ୍ଣ ବୁଦ୍ଧି ଅଧିଷ୍ଠାତ୍ରୀ ଦେବୀ କୃଷ୍ଣଶକ୍ତି ।
ତପତ କାଞ୍ଚନ ପରି ତୁମ୍ଭର ଶରୀର
କୋଟି ସୂର୍ଯ୍ୟ ଜିଣି ପ୍ରଭା ଦିଶେ ମନୋହର ।
ଈଷତ ହାସ୍ୟ ବଦନ ରୁଚିର ଲୋଚନ
ମସ୍ତକରେ ଅର୍ଦ୍ଧଚନ୍ଦ୍ର ଦିଶେ ଶୋଭାବନ ।
ରତନ କୁଣ୍ଡଳ ଯୁଗ କର୍ଣ୍ଣଦେଶେ ଥାଇ
ଚନ୍ଦ୍ର ସୂର୍ଯ୍ୟ ବିମ୍ବପରି ସୁନ୍ଦର ଦିଶଇ ।
ଆଉରି ବିବିଧ ସ୍ୱର୍ଣ୍ଣ ରତ୍ନ ଅଳଙ୍କାର
ଥିବାରୁ ସୌନ୍ଦର୍ଯ୍ୟ ଦିଶେ ଅଙ୍ଗରେ ଅପାର ।
ବହ୍ନି ଶୁଦ୍ଧ ବସନରେ ରମ୍ୟ କଟିଦେଶେ
ଶ୍ରୀଅଙ୍ଗେ ଲେପିତ ଗନ୍ଧ ଚନ୍ଦନ ବିଶେଷ ।
ବର୍ତ୍ତୁଳ କଠିନ ସ୍ତନଯୁଗ୍ମ ସୁଶୋଭିନୀ
ମନୋହର ମତ୍ତଗଜ ମନ୍ଥର ଗାମିନୀ ।
କୋଟି କନ୍ଦର୍ପ ଲାବଣ୍ୟ ସୁନ୍ଦର ଶରୀର
କପାଳେ ସିନ୍ଦୂର ବିନ୍ଦୁ ଅତି ଚମତ୍କାର ।
ରତ୍ନସ୍ୱର୍ଣ୍ଣମୟ ସିଂହାସନ ପରେ ବିଜେ
ମସ୍ତକରେ ଦିବ୍ୟ ରତ୍ନ ମୁକୁଟ ବିରାଜେ ।
ପାଳନ କରନ୍ତାଙ୍କର ଦୟା ରୂପେ ଥାଇ
ସଂହାରକଙ୍କର ସଂହାରିଣୀ ଶକ୍ତି ହୋଇ ।
କରୁଛ ଜଗତ ରକ୍ଷା ବିନାଶ ଯେ ତୁମ୍ଭେ ।
ତୁମ୍ଭର ମହିମା ଅବା କି ବର୍ଣ୍ଣିବୁ ଆମ୍ଭେ ।
ଯେତେ ଯେତେ ରୂପ ଧରି ଦେବ ନାରାୟଣ
ଦୁଷ୍ଟ ରାକ୍ଷସଗଣଙ୍କୁ କଲେ ନିପାତନ ।
ସେହି ସବୁ ଅବତାରେ ଶକ୍ତି ସ୍ୱରୂପରେ
ଯୁକ୍ତ ହୋଇଥାଅ ତୁମ୍ଭେ ପ୍ରଭୁଙ୍କ ଦେହରେ ।
ଏବେ ତୁମ୍ଭ ପାଦରେ ମୁଁ କରୁଛି ଭକତି
ପ୍ରସନ୍ନ ହୋଇ ସୁଦୟା କର ଭଗବତୀ ।
ଏହିରୂପେ ଧ୍ୟାନ କରି ଶିରେ ପୁଷ୍ପ ଦେଇ
ପୁଣି ଧ୍ୟାନମନ୍ତ୍ର ଉଚ୍ଚାରିବ ତୋଷ ବହି ।
ପ୍ରକୃତି ପ୍ରତିମା ଗୋଟି ହସ୍ତରେ ଧରିବ
ମନ୍ତ୍ର ପଠନରେ ଜୀବନ୍ୟାସ କରାଇବ ।
ବୋଲିବ ଗୋ ମହାମାୟୀ ଦେବୀ ସନାତନୀ
ଶିବଲୋକରୁ ଆଗତ ହୁଅ ଭକ୍ତି ଘେନି ।
ମୋହରି ପୂଜା ଗ୍ରହଣ କରି ତୋଷ ଚିତ୍ତେ
ମନ ଦେଇଅଛି ମୁହିଁ ତୁମ୍ଭ ପାଦାଗତେ ।

ହେଳନ ହେତୁ ସର୍ବଶକ୍ତି ସମ୍ମତରେ
ଏ ସ୍ଥାନକୁ ଆସ ଦୟା କରି ମୋହଠାରେ
ଆଉରି ଅସନ୍ତୁ ପ୍ରଭୁ ତ୍ରୈଲୋକ୍ୟ ଈଶ୍ୱର
ତୁମ୍ଭଯୋଗେ ମନୋବାଞ୍ଛା ପୂର୍ଣ୍ଣ ହେଉ ମୋର
ଏହିରୂପେ ଆବାହନ କରି ସେ ଅନ୍ତରେ
ପଠନ କରିବ ମନ୍ତ୍ର ଅତି ଯତନରେ ।
ପ୍ରଥମେ ଓଁକାର ପରେ ମାୟା ଲକ୍ଷ୍ମୀବୀଜ
ତାହାପରେ କାମବୀଜାକ୍ଷର ମନେ ହେଜ ।
ଚତୁର୍ଥୀ ବିଭକ୍ତି ଅନ୍ତ ଦୁର୍ଗାୟୈ ପରେ
ସ୍ୱାହା ଦେଇ ଅକ୍ଷରକୁ ବସାଇବ ଧୀରେ ।
ଏହିରୂପେ ମନ୍ତ୍ର ପଢ଼ି ପୁଣି ପରିହାର
କରିବ ଯେଉଁରୂପେ ତାହା ଶୁଣ ମୁନିବର ।
ବୋଲିବ ଶ୍ରୀ ଭଗବତୀ ଦେବୀ ସଦାଶିବେ
ତୁମ୍ଭର ସ୍ୱାଗତ ହୋଇ ଅଛୁଟି କି ଏବେ ।
ଶିବଲୋକରୁ ଆଗତ ହେଲେଟି କି ମାତ
ତୁମ୍ଭ ଯୋଗେ ଆଜ ମୁହିଁ ହୋଇଲି କୃତାର୍ଥ ।
ଗୃହକୁ ଆଗତ ଯାହା ହୋଇଲ ଈଶ୍ୱରୀ
ସଫଳ ହୋଇଲା ଏଣୁ ଜୀବନ ମୋହରି ।
ବୈଷ୍ଣବୀ ଅଟ ତୁମ୍ଭେ ଦୁର୍ଗା ମହାମାୟୀ
ତୁମ୍ଭଙ୍କୁ ପୂଜିଲେ ସର୍ବ ମଙ୍ଗଳ ହୁଅଇ ।
ସାତ୍ତ୍ୱିକୀ ତାମସୀ ପୁଣି ରାଜସୀ ନାମରେ
ମହାମାୟୀଙ୍କର ପୂଜା ତିନି ପ୍ରକାରରେ ।
କ୍ରମରେ ଉତ୍ତମ ପୁଣି ମଧ୍ୟମ ଅଧମ
ସେହି ତିନି ଗୋଟି ପୂଜା ଅଟଇଟି ଜାଣ ।
ସାତ୍ତ୍ୱିକୀ ପୂଜା କରନ୍ତି ବୈଷ୍ଣବମାନେ
ରାଜସ ପୂଜନ ଶକ୍ତି ଉପାସକଗଣେ ।
ଯେଉଁମାନେ ଅଦୀକ୍ଷିତ ସଦା ବନବାସୀ
ଆଉରି ଅସାଧୁ ତାଙ୍କ ପୂଜାଟି ରାଜସୀ ।
ଜୀବହତ୍ୟା ନ ହୁଅଇ ବୈଷ୍ଣବ ପୂଜାରେ
ଗୋଲୋକେ ବସନ୍ତି ସେହି ପୂଜା କରି ନରେ ।
ରାଜସୀ ପୂଜାକୁ ମାହେଶ୍ୱରୀ ବୋଲିପାଏ
ତହିଁରେତି ବଳିଦାନ ବିଧି ରହିଥାଏ ।
ସେହି ପୂଜାକଲେ ଲୋକ ଶିବଲୋକ ବାସ
କରଇ ନିଶ୍ଚୟ ଏହା ଶାସ୍ତ୍ରରେ ପ୍ରକାଶ ।
ତାମସୀ ପୂଜାରେ ନାନାଜୀବ ବଧ ହୁଏ
କିରାତମାନେ ଯେ ପୂଜା କରୁଥାନ୍ତି ସ୍ନେହେ ।

ତନ୍ତ୍ରିରୁ ନରକ ଗତ ହୁଏ ତାହାଙ୍କର
ଏଣୁକରି ଫଳ ଭିନ୍ନ ଭିନ୍ନ ପ୍ରକାର ।
ଜଗତର ମାତ ତୁମ୍ଭେ ସର୍ବଫଳଦାତ୍ରୀ
ସର୍ବଶକ୍ତି ସ୍ୱରୂପିଣୀ ଦେବୀ ଜଗଦ୍ଧାତ୍ରୀ ।
ଏମନ୍ତରେ ପ୍ରକାର କରିଣ ସାଧକ
ବିଧିମତେ ବାମଭାଗେ ନିବେଶିବ ଶଙ୍ଖ ।
ମନ୍ତ୍ର ପଢ଼ି ଜଳ ପୂର୍ଣ୍ଣ କରିଣ ତାହାକୁ
ସ୍ଥାପନ କରିବ ପୁଣି ଅର୍ଘ୍ୟ ଭାଜନକୁ ।
ସେ ଅନ୍ତରେ କ୍ରମେ ଷୋଳ ଉପଚାର ଦେବ
ଶଙ୍ଖପରେ ହସ୍ତ ଦେଇ ତୀର୍ଥ ସୁମରିବ ।
ଗଙ୍ଗା ଯମୁନା ନର୍ମଦା ସିନ୍ଧୁ ଗୋଦାବରୀ
ସରସ୍ୱତୀ ସ୍ୱର୍ଣ୍ଣରେଖା ଗଣ୍ଡକୀ କାବେରୀ ।
ଶ୍ୱେତଗଙ୍ଗା ଚନ୍ଦ୍ରାବତୀ ସର୍ବାବତୀ ପମ୍ପା
ଗୋମତୀ ଯେ ମନ୍ଦାକିନୀ ଶତଦ୍ରୁବା ଚମ୍ପା ।
ଏହିପରି ପୁଣ୍ୟତୀର୍ଥଗଣ ଆବାହନ
କଲା ପରେ ଦେବପୂଜା ଆରମ୍ଭିବ ଜାଣ ।
ତୁଳସୀଦଳ ଚନ୍ଦନ ମିଶାଇ ଜଳରେ
ପ୍ରୋକ୍ଷଣ କରିବ ନୈବେଦ୍ୟକୁ ତନ୍ତ୍ରିରେ ।
ସେ ଅନ୍ତରେ ମନ୍ତ୍ର ପଢ଼ି ଗୋଟି ଗୋଟି କରି
କ୍ରମେ ଉପଚାରମାନ ଦେବ ହସ୍ତେ ଧରି ।
ଆସନ ବସନ ପାଦ୍ୟ ସ୍ନାନୀୟ ଲେପନ
ମଧୁପର୍କ ଗନ୍ଧପୁଷ୍ପ ଧୂପ ଦୀପ ପୁଣ ।
ନୈବେଦ୍ୟ ଆଦି କରି ସବୁ ଉପଚାର
ସମର୍ପିବ ବିଧିମତେ ଆହେ ମୁନିବର
ଉପଚାର ଦାନ ଅନ୍ତେ କୁସୁମ ଅଞ୍ଜଳି
ଦେବ ମହାମାୟାଙ୍କର ସ୍ୱରୂପକୁ ଭଜି ।
ତାହା ପରେ ପୁଣି ଅଷ୍ଟ ନାୟିକା ପୂଜିବ
ତାହାଙ୍କର ନାମ ଏବେ କହୁଛୁ ଶୁଣିବ ।
ଉଗ୍ରଚଣ୍ଡା ପ୍ରଚଣ୍ଡା ହରଚଣ୍ଡା ଯେ ଚଣ୍ଡା
ଚଣ୍ଡୋଗ୍ରା ଚଣ୍ଡନାୟିକା ଚଣ୍ଡିକା ଚାମୁଣ୍ଡା ।
ଅଷ୍ଟଦଳ ପଦ୍ମ ଦେଖି ପୂର୍ବାଦି କ୍ରମରେ
ଆବାହନ କରି ଅଷ୍ଟଦେବୀଙ୍କୁ ତନ୍ତ୍ରିରେ ।
ପଞ୍ଚ ଉପଚାର ପୂଜା କରିବ ତାହାଙ୍କୁ
ତା ପରେ ପୂଜିବ ପୁଣି ଭୈରବମାନଙ୍କୁ ।
ମହତ ସଂହାରରୂପ ଅସିତାଙ୍ଗ ରୁରୁ
କାଳ କ୍ରୋଧ ତାମ୍ରଚୂଡ଼ ଶଙ୍ଖଚୂଡ଼ ମେରୁ ।

ଏରୂପେ ଭୈରବଗଣ ପୂଜାକଲା ପରେ
ପୂଜିବ ଦେବୀଗଣଙ୍କୁ ସେ ପଦ୍ମ ମଧ୍ୟରେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୁଦ୍ର ନରସିଂହ
ବରାହ କାର୍ତ୍ତିକ ଇନ୍ଦ୍ର ଏହାଙ୍କର ସଙ୍ଗ ।
ଅଟନ୍ତି ଯେ ଶକ୍ତିଗଣ ତାଙ୍କୁ ପୂଜାକରି
ପୂଜିବ ସର୍ବ ଶକ୍ତି ସ୍ୱରୂପା ଈଶ୍ୱରୀ ।
ଏରୂପେ ସର୍ବଶକ୍ତିଙ୍କ ପୂଜା ଶେଷ ହେଲେ
ଷଡ଼ଦେବଙ୍କୁ ଘଟରେ ପୂଜା କରିବଟି ଭଲେ ।
ଶଙ୍କର କାର୍ତ୍ତିକ ସୂର୍ଯ୍ୟ ସୋମ ହୁତାଶନ
ବାୟୁ ବରୁଣ ଦେବଙ୍କୁ କରିଣ ଅର୍ଚ୍ଚନ ।
ଦେବୀଙ୍କର ଚେଟି ବଟୁ ଦୁର୍ଗଙ୍କୁ ପୂଜିବ
ଚତୁଃଷଷ୍ଟି ଯୋଗିନୀଙ୍କୁ ବଳିଦାନ ଦେବ ।
ସ୍ତୁତିସ୍ତୋତ୍ର ପାଠକରି କବଚ ପଢ଼ିବ
କବଚକୁ ନେଇ ପୁଣି ଗଳାରେ ବାନ୍ଧିବ ।
ଯେଉଁରୂପେ ବଳିଦାନ କରିବା ଉଚିତ
ବିସ୍ତାରି କହିବି ତାହା ଶୁଣ ଦେଇ ଚିତ୍ତ ।
ମାନବ ମହିଷ ଛାଗ ମେଷ ଆଦି କରି
ଦେବ ବଳି ସ୍ୱରୂପରେ ବିଧି ଅନୁସରି ।
ମାନବ ବଳିରେ ଦେବୀ ସହସ୍ର ବରଷ
ସନ୍ତୁଷ୍ଟ ହୁଅନ୍ତି ଜାଣ ଆହେ ମୁନୀଶ ।
ମହିଷରେ ଶତବର୍ଷ ଛାଗଳରେ ଦଶ
ମେଷ କୁଷ୍ମାଣ୍ଡ ପକ୍ଷୀଙ୍କୁ ଦେଲେ ଏକବର୍ଷ ।
ଏ ବାହାରେ କୃଷ୍ଣସାରେ ଦଶବର୍ଷ ଜାଣ
ଗଣ୍ଡାବଳି ଦେଲେ ଦଶଶତବର୍ଷ ପୁଣ ।
ପିଷ୍ଟକ ନିର୍ମିତ ପଶୁ ଦେଲେ ଛଅମାସ
ଆନନ୍ଦ ମନରେ ଦେବୀ ହୁଅନ୍ତି ସନ୍ତୋଷ ।
ଅଳାବୁ କର୍କଟି ଆଦି ଅକ୍ଷତ ଫଳରେ
ସନ୍ତୋଷ ହୁଅନ୍ତି ମାସେ ପର୍ଯ୍ୟନ୍ତ ତନ୍ତ୍ରିରେ ।
ଯେଉଁ ପଶୁ ଦେବ ତାର ଲକ୍ଷଣକୁ ଶୁଣ
ଯୁବକ ସର୍ବାଙ୍ଗ ବ୍ୟାଧିହୀନ ସୁଲକ୍ଷଣ ।
ପୃଷ୍ଟାଙ୍ଗ ଉତ୍ତମ ରୂପ ବର୍ଣ୍ଣ ପରିପୂର୍ଣ୍ଣ
ଏମନ୍ତ ପଶୁକୁ ଦାନ କରିବଟି ଜାଣ ।
ବାଳକ ପଶୁକୁ ଦେଲେ ପୁତ୍ରନାଶ ହୁଏ
ବୃଦ୍ଧ ଦେଇଥିଲେ ଗୁରୁ ହୋଇଯାନ୍ତି କ୍ଷୟେ ।
କୃଶ ଦେଲେ ବନ୍ଧୁଙ୍କର ଧନନାଶ ଘଟଇ
ଅଙ୍ଗବୃଦ୍ଧି ହୋଇଥିଲେ ଧନ ନାଶ ପାଇ ।

ସ୍ଥାନଭଙ୍ଗ ହେଲେ ପ୍ରଜା ହୁଅନ୍ତି ବିନାଶ
ଶୃଙ୍ଗଭଙ୍ଗ ହୋଇଥିଲେ ଭାର୍ଯ୍ୟା ହୁଏ ନାଶ ।
କାଣ ହେଲେ ଭାଇମାନେ ବିନଷ୍ଟ ହୁଅନ୍ତି
ଘଣ୍ଟିକା ନ ଥିଲେ ତହୁଁ ହୁଏ ମୃତ୍ୟୁ ଖ୍ୟାତି ।
ତିଳ ମସ୍ତକରେ ନାନାବର୍ଣ୍ଣ ଜାତ ହୁଏ
ତାମ୍ରପୃଷ୍ଠ ହେଲେ ମିତ୍ର ଜୀବନ ନ ରହେ ।
ପୁଚ୍ଛହୀନ ହୋଇଥିଲେ ହୁଏ ଶିଶୁମୃତ୍ୟୁ
ନର ପଶୁର ଲକ୍ଷଣ ଶୁଣ ବିଧିସୁତ ।
ନବେଗ ଯୁବକ ପୁଣି ପିତୃ ମାତୃଶୂନ୍ୟ
ବିବାହିତା ଭାର୍ଯ୍ୟା କନ୍ୟା ପରିବାର ହୀନ ।
ଅଜାରଜ ଶୂଦ୍ରଭାବ ଶୂଦ୍ର କୁଳ ଜାତ
ଏମନ୍ତ ନରକୁ ବାଛି କେହିଁଣ ନ ଦିଅ ।
ବହୁ ମୂଲ୍ୟଦେଇ ବନ୍ଧୁ ବାନ୍ଧବ ମାନଙ୍କୁ
ବସ୍ତ୍ର ଗନ୍ଧାକ୍ଷ ଚନ୍ଦନେ ପୂଜିବଟି ତାଙ୍କୁ ।
ରକ୍ଷକ ସଙ୍ଗତେ ଦେଇଅନ୍ତେ ବର୍ଷେ ଯାଏ
ଇଚ୍ଛାମତେ ବୁଲାଇବ ନାନାସ୍ଥାନ ମଧ୍ୟେ ।
ଏକ ବରଷ ପୂରିଲେ ଫେରାଇ ଆଣିବ
ଅଷ୍ଟମୀ ନବମୀ ସନ୍ଧିକାଳେ ବଳିଦେବ ।
ଏହିରୂପେ ଅଟେ ବଳି ଦାନର ଚରିତ
ଶ୍ରବଣ କରିଲ ଆଦ୍ୟ ପ୍ରାନ୍ତ ଯେ ସମସ୍ତ ।
ଆଉ ଯେବେ କିଛି ଶୁଣିବାକୁ ଅଛି ମନ
ପଚ୍ଛର ବିସ୍ତାର ଭାବେ କରିବା ବଖାଣ ।
ଏମନ୍ତ କହିଣ ନାରାୟଣ ତୁନ ହେଲେ
ଧାନହୀନ କ୍ଷେତ୍ରବାସୀ ଗୀତରେ କହିଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତ ଖଣ୍ଡେ ସୁରଥ ରାଜାଙ୍କର ଦେବୀ ଉପାସନା ଆଦି ବର୍ଣ୍ଣନେ ନାମ ସପ୍ତଷଷ୍ଠିତମ ଅଧ୍ୟାୟଃ ।

—*—

## ଅ ଷ୍ଟ ଷ ଷ୍ଟି ତ ମ ଅ ଧ୍ୟା ୟ
## ପ୍ରକୃତି ଦେବୀଙ୍କ ଚରିତ ବର୍ଣ୍ଣନ

ନାରଦ ବୋଇଲେ ଆହେ ମୁନିଙ୍କ ଉତ୍ତମ
ତୁମ୍ଭ କଥାମୃତ ଶୁଣି ତୁଟିଗଲା ଭ୍ରମ ।
ଏବେ ପ୍ରକୃତ ଦେବୀଙ୍କ ପୂଜା ସ୍ତୋତ୍ର ମାନ
ତୁହ ଆବର କବଚ ପାଠର ବିଧାନ ।
ନାରାୟଣ ବୋଇଲେ ତା ଶୁଣ ମନଦେଇ
କହୁଅଛି ଗୋଟି ୨ ସକଳ ବୁଝାଇ ।
ଆର୍ଦ୍ରା ନକ୍ଷତ୍ରେ ଦେବୀଙ୍କୁ ବୋଧନ କରିବ
ମୂଳା ନକ୍ଷତ୍ର ଯୋଗରେ ପୀଠେ ବସାଇବ ।
ଉତ୍ତରଷାଢ଼ା ସମୟେ କରିବ ପୂଜନ
ଶ୍ରବଣା ନକ୍ଷତ୍ରେ କରାଇବ ବିସର୍ଜନ ।
ନବମୀ ତିଥିରେ ଆର୍ଦ୍ରା ନକ୍ଷତ୍ର ହୋଇଲେ
ପ୍ରକୃତ ଦେବୀଙ୍କୁ ପୂଜା କରିବ ଶୟନେ ।
ତା ହେଲେ ପାଇବ ଶତେ ବରଷର ଫଳ
ଅନ୍ୟଥା ନୁହଇ ଏହା ଆହେ ଧାତାବାଳ ।
ବାଜପେୟ ଯାଗଫଳ ସେ ଲଭ କରଇ
ବିସର୍ଜନରେ ସକଳ ସମ୍ପଦ ମିଳଇ ।
ନବମୀରେ ବସାଇଣ ପଞ୍ଚେ ପୂଜାକରି
ଦଶମୀରେ ବିସର୍ଜନ କରେ ଯେ ବିଶ୍ୱାସ ।
ଅଶ୍ୱମେଧ ଯାଗଫଳ ହୁଏ ନିଶ୍ଚେ ତାର
ଏମନ୍ତ ସକଳ ତନ୍ତ୍ରଶାସ୍ତ୍ରର ବିଚାର ।
ସପ୍ତମୀ ପୂଜାରେ ବଳି ଦେବାର ପ୍ରଶସ୍ତ
ଅଷ୍ଟମୀ ପୂଜାରେ ଦେବା ଅତ୍ୟନ୍ତ ଗର୍ହିତ ।
ନବମୀରେ ଦେଲେ ତନ୍ତ୍ରବିଧି ଅନୁସାରେ
ମଙ୍ଗଳ ହୁଅଇ ଜାଣ ଆହେ ତପସ୍ୱୀର ।
ବଳରେ ଦେବତା ତୁଷ୍ଟ ହୁଅନ୍ତି ନିଶ୍ଚୟେ
କିନ୍ତୁ ପଶୁବଧ ପାପ ସବୁଙ୍କର ହୁଏ ।
ଉତ୍ସର୍ଗକରିତା ଦାତା ଛେଦିବାର ଲୋକ
ପୋଷକ ରକ୍ଷକକର୍ତ୍ତା ଯେବା ପ୍ରବର୍ତ୍ତକ ।
ଏମାନେ ପାତକ ଭୋଗ କରନ୍ତି ସମାନ
ଅନ୍ତଃକାଳେ ହୁଅନ୍ତି ସେ ଦଣ୍ଡକୁ ଭାଜନ ।
ସେ ସକାଶୁ ବଇଷ୍ଣବେ ବୈଷ୍ଣବୀ ପୂଜାରେ
ଦେବୀଙ୍କୁ ତୋଷ କରନ୍ତି ସମସ୍ତ ପ୍ରକାରେ ।
ଏହିରୂପେ ପୂଜାକରି ସୁରଥ ରାଜନ
ବର୍ଷକ ଅନ୍ତରେ ସବୁ କଲେ ସମାପନ ।
ସ୍ତୋତ୍ର ପଢ଼ିଣ ଦେବୀଙ୍କୁ ବହୁସ୍ତୁତି କଲେ
ତେଣୁ ତାଙ୍କ ଆଗେ ଦେବୀ ପ୍ରକାଶିତ ହେଲେ ।

ମଧ୍ୟାହ୍ନ ସୂର୍ଯ୍ୟ ପରାୟେ ତାହାଙ୍କର ତେଜ
ଦେଖି ତାଙ୍କୁ କରଯୋଡ଼ି ସେ ସୁରଥ ରାଜ ।
ମସ୍ତକ ନୁଆଇଁ ପୁଣି କଲେ ବହୁସ୍ତୁତି
ପ୍ରସନ୍ନ ହୋଇଲେ ତାଙ୍କଠାରେ ଭଗବତୀ ।
ସଧୀରେ ଅନାଇଁ ପୁଣି କହିଲେ ବଚନ
ବୋଇଲେ ହେ ମହାରାଜ ବର ମାଗି ନେନ ।
ବାଞ୍ଛା କରଅଛ ଯାହା ମାନସରେ ତୁମ୍ଭେ
ତାହା ଲଭକର ଏବେ ଦେଉଅଛୁ ଆମ୍ଭେ ।
ଶତ୍ରୁ ଜିଣି ଅକଣ୍ଟକ ରାଜ୍ୟକୁ ଭୁଞ୍ଜିବ
ସାବର୍ଣ୍ଣି ଅଷ୍ଟମ ମନୁ ନାମେ ଖ୍ୟାତ ହେବ ।
ଆଉର ପ୍ରାପତ ହେବ ଦିବ୍ୟ ତତ୍ତ୍ୱଜ୍ଞାନ
ଶ୍ରୀକୃଷ୍ଣଙ୍କଠାରେ ଭକ୍ତି ଦାସତ୍ୱ ଯେ ପୁଣ ।
ଯେଉଁ ଲୋକ ମୋତେ ଦେଖି ପ୍ରମାଦ ମାଗଇ
ଅମୃତ ତେଜିଣ ବିଷ ଭକ୍ଷଣ କରଇ ।
ସଂସାରଟି ବିନଶ୍ୱର ଅଟଇ ନିଶ୍ଚିତ
କେବଳ ଶ୍ରୀକୃଷ୍ଣ ଗୁଣମୟ ନିତ୍ୟ ସତ୍ୟ ।
ମୂଳ ପ୍ରକୃତି ଈଶ୍ୱରୀ ଅଟଇଟି ମୂର୍ତ୍ତି
ଶ୍ରୀକୃଷ୍ଣଙ୍କ ପ୍ରାଣ ହେଲୁ ଦେବତା ଅଟଇ ।
ଦୁର୍ଗା ମହାଲକ୍ଷ୍ମୀ ସରସ୍ୱତୀ ଆଦିକରି
ସମସ୍ତେ ଜାତ ହୋଇଣ ଅଂଶରୁ ମୋହରି ।
ପ୍ରକାଶିତ ହୋଇଛନ୍ତି ଆହେ ନରପତି
ଆଉର ଜଗତେ ଦେବୀଗଣ ଯେ ଅଛନ୍ତି ।
ମୋହର କଳାରେ ସବୁ ହୋଇଛନ୍ତି ଜନ୍ମ
ମୋର ପ୍ରତିରୂପ ବୋଲି ସେମାନଙ୍କୁ ଜାଣ ।
ପରମାତ୍ମା ଶ୍ରୀକୃଷ୍ଣଙ୍କ ଇଚ୍ଛାରେଟି ମୂର୍ତ୍ତି
ଜାତ ହୋଇଅଛୁ ଆହେ ନୃପକୁଳସାଇଁ ।

ନିଖିଳ ଜଗତ ଲୋମମୂଳେ ଯାହାଙ୍କର
ମହାବିରାଟ ଅଙ୍ଗରୁ ଉତ୍ପନ୍ନ ଯାହାର ।
ସପତ ସାଗର ସପ୍ତଦ୍ୱୀପ ମହୀ ଭୂକେ
ଉତ୍ପନ୍ନ ହୋଇଛି ଯାହା ମହିମାର ବଳେ ।
ସପତ ପାତାଳ ତାଙ୍କ ଆଜ୍ଞାରେ ହୋଇଛି
ବ୍ରହ୍ମା ବିଷ୍ଣୁ ଶିବଙ୍କର ସହ ସବୁ କିଛି ।
ଦଣ୍ଡିଗପାଳ ତାଙ୍କ ଆଜ୍ଞାରେ ଚଳନ୍ତି
ସେହି ଶ୍ରୀକୃଷ୍ଣ ଅଟନ୍ତି ସର୍ବଭୂତ ପତି ।
ଦେବଙ୍କ ମଧ୍ୟରେ ସେହୁ ପ୍ରଧାନଟି ଜାଣ
ତାଙ୍କଠାରୁ ଉତପତ୍ତି ସର୍ବ ଜୀବଗଣ ।
ଭକତି କରଇ ଯେହୁ ତାହାଙ୍କ ପଦରେ
ସପତପୁରୁଷ ତାର ବସନ୍ତି ସ୍ୱର୍ଗରେ ।
ମୂରୁଖପଣରେ ଯେହୁ ଭକ୍ତି ନ କରଇ
କ୍ରମେ କ୍ରମେ ଅଧୋଗତି ତାହାର ହୁଅଇ ।
କହିଲି ତୁମ୍ଭ ଅଗ୍ରତେ ଏହି ଜ୍ଞାନମାନ
କାଳ ଅନ୍ତରେ କରିବ ହରିଭକ୍ତି ଦାନ ।
ପୁଣି ପରହନ୍ନ ହୁଏ ମୂର୍ତ୍ତି ଯାହାଠାରେ
ଶ୍ରୀହରି ଭକତି ତାକୁ ମିଳଇ ଅଚିରେ ।
କପଟୀ ଜନଙ୍କୁ ସଦା କରଇ ବଞ୍ଚନା
କଦାପି ପୂର୍ଣ୍ଣ ନ କରେ ତାହାର କାମନା ।
ଆହେ ବତ୍ସ ଶୁଣିଲତ ସକଳ ବିଷୟ
ସନ୍ତୋଷ ହୋଇଣ ଏବେ ନିଜପୁରେ ଯାଅ ।
ଏମନ୍ତ କହିଣ ଦେବୀ ହେଲେ ଅନ୍ତର୍ଦ୍ଧାନ
ବର ପାଇଣ ପୁରକୁ ଚଳିଲେ ରାଜନ ।
ଆପଣାର ରାଜ୍ୟ ଧନ ସେ ଫେରି ପାଇଲେ
ଅଧମ କ୍ଷେତ୍ର ମୋହନ ଗୀତେ ଏହି ବୋଲେ ।

ଇତି ଶ୍ରୀ ବ୍ରହ୍ମବୈବର୍ତ୍ତ ପୁରାଣେ ପ୍ରକୃତି ଖଣ୍ଡେ ପ୍ରକୃତି ଦେବୀଙ୍କ ଚରିତ ବର୍ଣ୍ଣନେ
ନାମ ଅଷ୍ଟଷଷ୍ଟିତମ ଅଧ୍ୟାୟଃ ।

## ଊ ନ ସ ପ୍ତ ତି ତ ମ ଅ ଧ୍ୟା ୟ

### ନାରାୟଣଙ୍କ ଠାରୁ ପ୍ରକୃତି ଦେବୀଙ୍କର କବଚ ବିଷୟରେ ଶ୍ରବଣ କରିବା

ଏଥୁ ଅନନ୍ତରେ ପୁଣି ନାରଦ ମହର୍ଷି
ନାରାୟଣଙ୍କ କଥାରେ ହୋଇ ମହାତୋଷି ।
ବୋଇଲେ ହେ ମହାଭାଗ ମହାମାୟାଙ୍କର
କବଚ ସ୍ୱରୂପ ଏବେ କହ ମୋ ଆଗର ।

ନାରାୟଣ ବୋଇଲେ ହେ ଇଚ୍ଛାହେବ ଯେବେ
କହିବା ଶୁଣ ପ୍ରକୃତି କବଚକୁ ଏବେ ।
ଯେଉଁ କବଚରେ ପୂର୍ବେ ଗୋଲୋକେ ଶ୍ରୀହରି
ସ୍ତୁତି କଲେ ପ୍ରକୃତିଙ୍କୁ ତୋଷ ମନେ ଧରି ।

ଦ୍ୱିତୀୟରେ ମଧୁକୈଟଭ ବଧକାଳେ
ସ୍ତୁତି କରିବାରୁ ବିଷ୍ଣୁ ବିଜୟ ପାଇଲେ ।
ସେହି ସମୟରେ ପୁଣି ଦେବ ପ୍ରଜାପତି
ପ୍ରାଣ ସଙ୍କଟ ପଡ଼ନ୍ତେ କରିଥିଲେ ସ୍ତୁତି ।
ଚତୁର୍ଥରେ ମହାଦେବ ତ୍ରିପୁର ସଂଗ୍ରାମେ
ସ୍ତୁତି କଲାପରେ ସର୍ବ ଦେବଗଣ କ୍ରମେ ।
ମୁନି ଋଷିଙ୍କ ସହିତେ କରନ୍ତେ ପ୍ରାର୍ଥନା
ଖ୍ୟାତ ହେଲ ଜଗତରେ ଆହେ ମହାମନା ।
ଯେଉଁ ରୂପରେ ଶ୍ରୀକୃଷ୍ଣ ସ୍ତୁତି କରିଥିଲେ
କହୁଅଛି ତାହା ଏବେ ଶୁଣ ବତ୍ସ ଭଲେ ।
ବୋଇଲେ ଗୋ ଦେବୀ ତୁମ୍ଭେ ସକଳ ଜନନୀ
ତ୍ରିଗୁଣ ରୂପିଣୀ ଆଦ୍ୟାଶକ୍ତି ସନାତନୀ ।
ନିର୍ଗୁଣା ହୋଇଲେ ମଧ୍ୟ କାର୍ଯ୍ୟ ସମୟରେ
ପ୍ରକାଶିତ ହୋଇଥାଅ ଗୁଣ ସମେତରେ ।
ପରଂବ୍ରହ୍ମ ରୂପ ତୁମ୍ଭେ ଅଟ ମହାମାୟୀ
ତେଜରୂପେ ଆଲୋକିତ କରୁଅଛ ମହୀ ।
ସକଳ ପୂଜିତା ସର୍ବ ମଙ୍ଗଳ ଦାୟିନୀ ।
ତୁମ୍ଭେ ଅଟ ତ୍ରିଭୁବନ ଶକ୍ତି ସ୍ୱରୂପିଣୀ ।
ସର୍ବ ଜ୍ଞାନଦାୟୀ ଦେବୀ ପରମଈଶ୍ୱରୀ
ସଂସାରୁ ତରନ୍ତି ଲୋକେ ତୁମ୍ଭ ନାମ ଧରି ।
ଦେବଙ୍କ ପୂଜାରେ ତୁମ୍ଭେ ସ୍ୱାହା ନାମ ବହି
ପିତୃଙ୍କ ପୂଜାରେ ସ୍ୱଧାରୂପେ ଥାଅ ରହି ।
କ୍ଷୁଧା ତୃଷା ଦୟା ନିଦ୍ରା କାନ୍ତି ଶାନ୍ତି ପୁଷ୍ଟି
ଲଜ୍ଜା ତନ୍ଦ୍ରା ଶୋକ ପ୍ରୀତି ଆବର ସନ୍ତୁଷ୍ଟି ।
ଏହିପରି ନାନାରୂପେ ପ୍ରକାଶିତ ହୋଇ
ପାଳନ କରୁଛ ତୁମ୍ଭେ ସର୍ବଦା ଏ ମହୀ ।
ସକଳ ଦୈତ୍ୟଙ୍କୁ ମାରି ଦେବତାମାନଙ୍କୁ
ପ୍ରଦାନ କରିଛ ରାଜ୍ୟ ଧନ ସମ୍ମାନକୁ ।
ବ୍ରହ୍ମା ବିଷ୍ଣୁ ଶିବଙ୍କର ଶକ୍ତି ସ୍ୱରୂପରେ
ରହିଅଛ ସଙ୍ଗେ ସଙ୍ଗେ ସମସ୍ତ ଯୁଗରେ ।
ଗ୍ରାମଦେବୀ ବୋଲାଉଛ ସକଳ ଗ୍ରାମରେ
ଗୃହଦେବତା ସ୍ୱରୂପେ ଅଛ ଘରେ ଘରେ ।
ଦୁଷ୍ଟଙ୍କୁ ସଂହାରି ସାଧୁଜନଙ୍କୁ ପାଳନ
କରୁଅଛ ହିତାହିତ ଭାବ ପ୍ରତିଦିନ ।
ନିତ୍ୟକର୍ମ ଅଟ ତୁମ୍ଭେ ଦ୍ୱିଜମାନଙ୍କର
ପ୍ରତାପରୂପିଣୀ ଆର କ୍ଷତ୍ରିୟ ଜାତିର ।
ବାଣିଜ୍ୟ ନାମରେ ବୈଶ୍ୟଙ୍କର ରହିଛ
ଶୂଦ୍ର ଜାତିଠାରେ ସେବା ଭାବ ବହିଅଛ ।
କିନ୍ତୁ ଏ ସମସ୍ତ ଅଟେ କର୍ମର ବିଧାନ
ଯିଏ ଯେଉଁ କର୍ମକଲା ସେହି ଜାତି ନାମ ।
ଏ ଧରଣୀ ଯେତେବେଳେ ଜଳେ ବୁଡ଼ିଥିଲା
ଜୀବ ଜଗତର ସତ୍ତା କେଉଁଠି ନ ଥିଲା ।
କେବଳ ଗଗନ ଭେଦି ରହିଥିଲା ଜଳ
ଏକମାତ୍ର ତା ମଧ୍ୟରେ ପ୍ରଭୁ ଆଦିମୂଳ ।
ଯବ ଆଙ୍ଗୁଳି ପ୍ରମାଣ ତନ୍ଦ୍ରି ହୋଇକରି
ଶୋଇଥିଲେ କଳ୍ପବଟେ ନିରାକାର ହରି ।
ଲକ୍ଷ୍ମୀ ପାଦ ମଞ୍ଜାଳନେ ଥିଲେକ ମଗନ
ସରସ୍ୱତୀ କରୁଥିଲେ ଯେ ବୀଣା ବାଦନ ।
ଅନନ୍ତ ଶଯ୍ୟା ଉପରେ ବ୍ରହ୍ମାଣ୍ଡ ଗୋସାଇଁ
ଶୟନ କରିଣ ଥିଲେ ଘୋର ନିଦ୍ରେ ତହିଁ ।
କୀଟପତଙ୍ଗଠୁ ତରୁ ତୃଣ ଆଦିକରି
ସକଳ ଜୀବ ଜଗତ ଥିଲେ ଗର୍ଭେ ଧରି ।
ତାହାପରେ କେତେଦିନେ ଜଗତ ଜୀବନ
ସୁନିଦ୍ରା ତେଜିଣ ମେଲି ଚାହିଁଲେ ନୟନ ।
ଦେଖିଲେ ଗୋଟିଏ ମାତ୍ର ଜୀବ କେହି ନାହିଁ
ତାହାଙ୍କ ମହିମା ଆଉ ନ ଗାଇନ୍ତି କେହି ।
ବିଧାତା ତାଙ୍କୁ ନାହାନ୍ତି ମଣିମା ମଣିମା
କୁବେର ତାଙ୍କୁ ନାହାନ୍ତି ଗୁହାରି ଶୁଣିବା ।
ତାହା ଦେଖି ଜଗନ୍ନାଥ ବିଚାରିଲେ ମନେ
ବିହନ ସୃଷ୍ଟି ସର୍ଜ୍ଜନା କରିବା କେସନେ ।
ଏମନ୍ତ ବିଚାରି ନିଜ ଅଙ୍ଗୁ ତତକ୍ଷଣ
ଯୋଗମାୟାଙ୍କୁ ବାହାରି କରିଲେ ଆପଣ ।
ସେ ମାୟା ସଙ୍ଗରେ ତହିଁ ଖେଳା ଲୀଳାକଲେ
ତାପରେ ଗର୍ଭଧାରଣ ଦେବୀ ଯେ କରିଲେ ।
ଏହିଭାବେ ବହୁକାଳ ଗତ ହୋଇଯାନ୍ତେ
ଏକ ଡିମ୍ବ ଅକସ୍ମାତ ପଡ଼ିଲା ସୋହତେ ।
ତାହା ଦେଖି ନାରାୟଣ ମନେ ବ୍ୟସ୍ତହୋଇ
ନାଭିପଦ୍ମ ପଦ୍ମଯୋନି ଧାତାଙ୍କୁ ଜନ୍ମାଇ
ଆଦେଶ ଦେଲେ ଏ ସୃଷ୍ଟି କରିଅ ରଚନ
ମାନି ଆଦେଶ ସେ ଧାତା ଚଳିଲେ ବହନ ।
ଯେଉଁ ଅଣ୍ଡ ଗୋଟି ମାୟା କରିଥିଲେ ଜାତ
ସ୍ୱୟଂ ବିଷ୍ଣୁରୂପୀ ହରି ହୋଇଲେ ସମ୍ଭୂତ ।

ତାହାରେ ଶଙ୍କର ଜାତ ହୋଇଲେ ଶେଷରେ
ସୃଷ୍ଟି ସର୍ଜନା କରିଲେ ଆନନ୍ଦ ମନରେ ।
ଆଦ୍ୟେ ପୁରୁଷ ପ୍ରକୃତି ଦୁଇଜଣ ମିଳି
ଏହି ବ୍ରହ୍ମାଣ୍ଡକୁ ଗଢ଼ି ଅଛନ୍ତି ସେ ତୋଳି ।
ଏକମାତ୍ର ବ୍ରହ୍ମ ଅଟେ ସର୍ବ ପରେ ସାର
ବ୍ରହ୍ମରୁ ବ୍ରହ୍ମାଣ୍ଡ ହୋଇ ଅଛଇଁ ତୟାର ।
ଆମ୍ଭେମାନେ ପାପନେତ୍ରେ ନ ଦେଖି ତାହାଙ୍କୁ
ଭ୍ରମି ମରୁଅଛୁଁ ଚିହ୍ନି ନ ପାରିଣ ତାଙ୍କୁ ।
ଏକରୁ ଅନେକ ଅନେକରୁ ହୁଏ ଏକ
ଏହିପରି କରୁଅଛନ୍ତି ସୃଷ୍ଟିର ନାୟକ ।
ଏକ ବ୍ରହ୍ମ ଠାରୁ ହୁଏ କୋଟି ବ୍ରହ୍ମ ଜାତ
ପୁଣି ସେ କୋଟିକ ହୁଏ ଏକରେ ଗଣିତ ।
ତେଣୁ ସୁଜ୍ଞଜନଙ୍କୁ ମୁଁ କରେ ନିବେଦନ
ବ୍ରହ୍ମ ନାରାୟଣ ପାଦେ ଭଜ ସର୍ବ ଜନ ।
ତାହାଙ୍କ ବ୍ୟତୀତ ଆନଜଣେ କେହି ନାହିଁ
ପଥ ଦେଖାଇ ଆମ୍ଭଙ୍କୁ ନେଇ ଯେ ଆଣଇ ।

ଆଜ୍ଞମଧ୍ୟ ପ୍ରତିପଟେ ବ୍ରହ୍ମ ରହିଛନ୍ତି
ତାହାଙ୍କୁ ନିନ୍ଦା କରିବା ଅଟଇ ଅନୀତି ।
ମନୁଷ୍ୟ ମାନଙ୍କୁ ଦେଖି ଯେହୁ ଘୃଣାକରେ
ପରମ ବ୍ରହ୍ମ ହରିଙ୍କୁ ନିନ୍ଦଇ ମୁଖରେ ।
ଏଣୁ ସଭିଙ୍କ ପାଶରେ କରେ ନିବେଦନ
ବ୍ରହ୍ମ ନାରାୟଣ ପାଦ କରନ୍ତୁ ବନ୍ଦନ ।
ସେହି ବ୍ରହ୍ମରୁ ଯେ ବ୍ରହ୍ମବୈବର୍ତ୍ତ ତୟାର
ପାଠକଲେ ବୁଝିବେ ସେ ବ୍ରହ୍ମ ସମାଚାର ।
ବ୍ରହ୍ମ କିଏ କେଉଁପରି ତାଙ୍କର ମାହାତ୍ମ୍ୟ
ଭଜ ସର୍ବେ ଆନନ୍ଦରେ ହୋଇ କୃତ କୃତ
ମୁଁ ଅତି ମୂରୁଖଜନ ନାହିଁ ମୋର ଜ୍ଞାନ
କରି ନାହିଁ ସାଧୁସଙ୍ଗେ ମାତ୍ର ଏକଦିନ ।
ଜଗତ ଜନନୀଙ୍କର ପାଦପଦ୍ମ ଧ୍ୟାଇ
ଲେଖିଲି ଏ ଗ୍ରନ୍ଥ ଆନ କିଛି ନ ଜାଣଇ ।
ଏତିକ ମାତର କହି ନେଉଛି ବିଦାୟ
କ୍ଷେତ୍ର ମୋହନଙ୍କୁ ସାହା ହୁଅ ଦୟାମୟ ।

ସମାପ୍ତ

ମୁଦ୍ରାକର—ଶଶୀ ବେହେରା, ଶଶିକା ପ୍ରିଣ୍ଟିଂ ପ୍ରେସ, ଅଲିଶା ବଜାର, କଟକ-୨

# ବିଜ୍ଞାପନ

ମହାଶୟ,

ଆପଣ ଶୁଣି ସୁଖୀ ହେବେ ଯେ ଏତେ ଦିନ ପରେ ସାମନ୍ତ ଚନ୍ଦ୍ରଶେଖରଙ୍କ "ସିଦ୍ଧାନ୍ତ ଦର୍ପଣ" ଗ୍ରନ୍ଥର ଓଡ଼ିଆ ଟୀକା ସହିତ ପ୍ରକାଶ ପାଇଛି । ଏହାର ଯଥାର୍ଥ ସ୍ୱୟଂ ଲେଖିଥିଲେ :—

ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ
ନରଦେହେ ଥିବ ଯାବତ ହୃଦୟ (ବରକାଳ)

ଏହି ଗ୍ରନ୍ଥ ଓଡ଼ିଆ ଜାତିର ଓ ଓଡ଼ିଶାର ଗୌରବ । ସୁନ୍ଦର ବନ୍ଧେଇ ଓ ବିସ୍ତୃତ ମୁଖବନ୍ଧ ସହିତ ଆଠ ଶହ ପୃଷ୍ଠାର ଏହି ବୃହତ୍ ଗ୍ରନ୍ଥର ମୂଲ୍ୟ ରଖାଯାଇଛି ମାତ୍ର ଟ୨୯-୦୦ ।

ଅନୁରୋଧ ଆପଣଙ୍କ ପାଠାଗାର ପାଇଁ ଏ ଜାତୀୟ ମହାଗ୍ରନ୍ଥର ଅର୍ଡର ଦେଇ ବାଧିତ କରିବା ହେବେ । ଇତି

| | |
|---|---|
| ବଦାସାଲଲ୍ ଗୀତା | ଟ ୩୦-୦୦ |
| ଭକ୍ତ ଭୂମିକା (ଶ୍ରୀ ଗୌରକୁମାର ବ୍ରହ୍ମା) | ଟ ୪୦-୦୦ |
| ଭକ୍ତ ଗ୍ରନ୍ଥାବଳୀ (ଭୂମିକା ବ୍ୟତୀତ) | ଟ ୮୫-୦୦ |
| ଭୃଗୁ ସଂହିତା | ଟ ୧୧୨-୦୦ |
| ଭୀମଭୋଇ ଗ୍ରନ୍ଥାବଳୀ | ଟ ୨୫-୦୦ |
| ଓଡ଼ିଆ ସାହିତ୍ୟରେ ଭୀମଭୋଇ | ଟ ୪-୦୦ |
| ସତ୍ୟ ମହିମାଧର୍ମ (ଇଂରାଜୀ) | ଟ ୪-୦୦ |

ପଦ୍ମମଣି ସେନାପତି
ଅବସର ପ୍ରାପ୍ତ ଆଇ: ସି: ଏସ୍: ଅଫିସର

| | |
|---|---|
| ଓଡ଼ିଶାର ରାଜସ୍ୱ ଇତିହାସ | ଟ ୧୫-୦୦ |

---

**ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର**

ଅଲିସାବଜାର, କଟକ-୨